ନାଗ ନଗରେ ଏ ସମାନ ଶୋଭା ନାହିଁ ଯେ । ୧୩ । ସହଳେ ତ କର୍ବୁରିତ ଅଳକା । ପକାଇଲେ ଭୃଙ୍ଗଶ୍ରେଣୀରେ ଡକା । ଦମ୍ଭ ଅରମ୍ଭ ବିନାଶନ ଅଶେ । ମଞ୍ଜୁଳ କଲେ ଅବତଂସ ଶେଷେ ସେ । ଏମନ୍ତ ଚିତ୍ତରେ ଭାଳି ଯେ । ମର୍କତନଳୀରୁ ବାହାରି ଯାଉଛୁ କି ଅତି କୁଳତ ଗୁଳି ଯେ । ୧୪ । ଅଳକା ଊର୍ଦ୍ଧ୍ୱେ ଝିଲମିଲମାଳୀ । ଝଟକେ ଛଟକେ ଖଞ୍ଜିଲେ ଆଳୀ । ଏମନ୍ତ ଅଦ୍ଭୁତ ନ ଥିଲା ଦେଖା । ବିନା ମେଘରେ ସ୍ଥିର ବିଦ୍ୟୁଲ୍ଲେଖା ସେ । ପାଶକେ ଧାଡ଼ିଏ ତାର ଯେ । ଇଚ୍ଛାରେ ନେବ ବନ୍ଦୀ ହେବ ମଣ୍ଡିଲା ଅନଙ୍ଗ ବିଚକ୍ଷଣ ଯେ । ୧୫ । ଲଲାଟପଟ୍ଟ ଅର୍ଦ୍ଧ-ଗିରି ପରି । ମୃଗମଦ ତହିଁ ତିଳକ କରି । ସହୁ ବାଦ ଇଚ୍ଛି ନିଶାନାୟକ । ଉଆଇ ଅଣି ଅଢ଼େଣୀ ଶାୟକ ସେ । ରହିଛୁ ସଯତ ହୋଇ ଯେ । ଅଳକା ନିୟମସୀମାକୁ ଲଙ୍ଘିଲେ ହାଣିମ ସଂଶୟ ନାହିଁ ଯେ । ୧୬ । କର୍ଣ୍ଣେ ତାଟଙ୍କ ମଣ୍ଡିଲେ ବିଚୁରି । କବି ଗୀଷ୍ପତି ନାମ୍ପଁ ଅଣି ଧରି । ଜୀବ ଭାର୍ଗବକୁ ବାନ୍ଧିଲା କି ସେ । ଆନନ ବେଢ଼ାପାଶେ ବେଣୀ ପାଶେ ସେ । ନେତ୍ରାନ୍ତେ କରେ ତର୍ଜ୍ଜନ ଯେ । ଶ୍ରୁତିରେ ଉପମା ନାହିଁତ ବୋଲନ୍ତି

---

୧୩ । ବନ୍ଧ ଚଉଁରି—ଅଧାଚନ୍ଦ୍ର ତୁଲ୍ୟ ସୁନା ଗହଣା, ସୁନା ଦୁଇଟି ଦେବାରୁ ଦେଖାଗଲା । କାମ ଯମୁନା (କଳାବାଳ) ଜଳକେଳି—ପାଣିରେ ଖେଳିବା, ସ୍ୱର୍ଣ୍ଣନାବ—ସୁନାନାହା, ଯେପର୍ଣ୍ଣୀ—ଅତୁଲ୍ୟ, ନର—ମନୁଷ୍ୟ, ନାଗ—ସର୍ପ, ନାକ—ସ୍ୱର୍ଗ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରରେ ଏ ଶୋଭା ସଙ୍ଗେ କେହି ସମାନ ନୁହେଁ ।

୧୪ । ଅଳକା—ଅଳଙ୍କାର ବିଶେଷ ଓ ମୁଣ୍ଡର ଅଗର ଖୋଟବାଳ, କର୍ବୁରିତ—କୁଞ୍ଚୁକୁଞ୍ଚିଆ, ଭୃଙ୍ଗ—ଭଅଁର, ଅବତଂସ—ପଡ଼ିବା ବାହାରିବା, ନଳ ବନ୍ଧୁକ ଅଗରେ ପଡ଼ିଥିବା ଚୂର୍ଣ୍ଣ କୁନ୍ତଳ ଦେଖି ଭ୍ରମରମାନେ ଲଜ୍ଜା ପାଇଲେ ପୁଣି ତା ଦେହରେ ଝୁମ୍ପା ନାଇବାରୁ ପୁରୁଷମାନଙ୍କ ଦମ୍ଭ ଶେଷ ହେଲା, ମର୍କତ ନଳରୁ ଗୁଳି ଗଲାଭଳି ମାରି ପୁରୁଷଙ୍କୁ ମାରିଲା ।

୧୫ । ଅଳକା—ମୁଣ୍ଡରଅଳକା, ଊର୍ଦ୍ଧ୍ୱେ—ଉପରରେ, ଝିଲମିଲ ମାଳି—ସୁବର୍ଣ୍ଣର ଚକଚକିଆ ମୁଣ୍ଡର ମାଳା, ଅଦ୍ଭୁତ—ଆଶ୍ଚର୍ଯ୍ୟ, ବିଦ୍ୟୁଲ୍ଲେଖା—ବିଜୁଳି, ଅନଙ୍ଗ—ମଦନ, ବିଚକ୍ଷଣ—ଆଶ୍ଚର୍ଯ୍ୟ, ତାର—କଇଦଘର

୧୬ । ଲଲାଟପଟ୍ଟ—କପାଳ, ମୃଗମଦ—କସ୍ତୁରୀ, ନିଶାନାୟକ—ଚନ୍ଦ୍ର, ଅଢ଼େଣୀ—ପାଖିକିଆ ଚାଲ, ଶାୟକ—ଶର, ସଯତ—ସ୍ଥିର, ନିୟମସୀମାକୁ ଲଙ୍ଘିଲେ—ବିଶେଷ ଅଲଙ୍ଘିତ ହେଲେ ।

ତୁମ୍ଭେ କି କର ବର୍ଣ୍ଣନ ହେ ।୧୭। ରତନ ଫୁଲ ଅଛନ୍ତି ଯତନ । ଝଲ୍‌କେ ଝଲକା ଏ ଅନୁମାନ । ହର ମାରକୁ ଭସ୍ମ କର ଦେଲ । ଏକାଛନକ ରଛଠାରେ ଥିଲ ସେ । ଜଣି ଶୋଭାରେ ତାହାକୁ ଯେ । ଲୋକେ ବଡ଼ାଇ ଜାଣିବାକ ଛଡ଼ାଇ ମଣ୍ଡନ କଲେ ଏହାକୁ ଯେ ।୧୮। ମଲ୍ଲୀକଢ଼ୀ ତ ପର-ପର୍ ନହ । ମଣ୍ଡିଲେ ବେଣୀଖଞ୍ଜାପର୍ ସେହ । ଶର୍ଣ୍ଣିଲେ ସଜନୀ ଏହି ବବେକେ । ଭୁଲନ୍ତି ପୁଂସମନ ସଞ୍ଚଶ୍ୱକେ ସେ । ତହିଁକେ ପଣ୍ଡିତ ପୁଣି ଯେ । ବାଳୀ ବୋଲି ଭଲ ଗୁପତ ଶାଙ୍କୋଳୀ ପାଶରେ ରଖିବେ ଅଣି ଯେ ।୧୯। ନେତ୍ର ଭୁରୁ ବାଣ କମାଣ ଯୋଗେ । ମରମକୁ ଭେଦେ ବନା ପ୍ରୟୋଗେ । ଯାହା କନ୍ଦ୍ରପ କ ଶାଣି ତହିଁ ଦେଲେ । ଅଜ୍ କ ସଖୀ ସୃଷ୍ଟି ରଖିଥିଲେ ସେ । ବଡ଼ ଭଙ୍ଗୀ ସୁକୁମାର୍ଗ ଯେ । କୁତ୍ସିତ ଜନକୁ ଏ ଶସ୍ତ୍ରେ ମାରବ ନ ବକ୍ରେ ଏହା ବରୂର ଯେ ।୨୦। ଶ୍ରବଣକୁ ଯାହା ଲଞ୍ଜି ଲଗିଛୁ । ସେ କି ଅଖିକ ଡାକ ଶିଖାଉଛୁ । ବ୍ରହ୍ମହତ୍ୟା ହେବ ଧାତା ବଧରେ । ତୋ ଅର କୁରଙ୍ଗ ହରଡ ଧରେ ସେ । ପାରଲେ ତାହାକୁ ମାର ଯେ । କାହିଁ କାହିଁଛୁ ବୋଲିଛୁ ଖୋଜିବାରେ ଚଞ୍ଚଳ ଗତକ ତାର ଯେ ।୨୧। ଘୋଣାରେ ଦେଲେ ମୋତ ନାକଚଣା । ଠିକଣା କର ଏ ଉପଲକ୍ଷଣା । ମାର ନେବ ମନମୀନ ଓଷ୍ଠ ର । ଥୋପ ଲଗାଇ କି ବଡ଼ଶୀ ଧର ସେ । ପୃଷ୍ଠକେ ମାଣିକ୍ୟ ଗୁଣା ଯେ । ଝଷ୍ଠକେ କି ଦଶେ ଅନଳ କେ୍ୟାତ ସେ ଛଟକେ କରୁଛୁ ବଣା

---

୧୭ । ତାଟଙ୍କ—ଅଲଙ୍କାର ବଶେଷ, କାପ, କବ—ଶୁକ୍ର, ବାଚସ୍ପତ—ବୃହସ୍ପତ, ଜୀବ—ବୃହସ୍ପତ, ଭାର୍ଗବ—ଶୁକ୍ର, ଅନନ—ମୁହଁ, ନେତ୍ରାନ୍ତେ—ଅଖି ଶେଷରେ, ଶ୍ରୁତ—କର୍ଣ୍ଣ ।

୧୮ । ହର—ମହାଦେବ, ମାର—କନ୍ଦର୍ପ, ଏକଛନକ—ଏକା ସୁନ୍ଦର୍ଗ ସ୍ତ୍ରୀଶ୍ରେଣୀ ।

୧୯ । ମଲ୍ଲୀକଢ଼ି—ଅଳଂକାର ବଶେଷ, ପରପର୍—ଫେରଫେର୍, ବବେକେ—ବୁଦ୍ଧିରେ, ସଞ୍ଚଶ୍ୱକ—ଭ୍ରମର, ବାଳୀ—ସ୍ତ୍ରୀ, ଶାଙ୍କୋଳ—ବେଢ଼ି ।

୨୦ । ନେତ୍ର—ଅଖି, ଭୁରୁ—ଭ୍ରୂଲତା, କମାଣ—ବନ୍ଧୁକ, ମରମ—ଦେହ, ଭଙ୍ଗୀ—ପଣ୍ଡିତା, କୁତ୍ସିତ ଜନ—ସାମାନ୍ୟ ଲୋକ ।

୨୧ । ଶ୍ରବଣ—କାନ, ଲଞ୍ଜି—କଳାଗାର, ଧାତା-ବଧାତା ବଧ—ବନାଶ, କୁରଙ୍ଗ—ମୃଗ ।

ଯେ ॥ ଗଣ୍ଡେ ଗୃଣ୍ଡେ କର ମକରୀ ହେଲା । ମୁକୁରବମ୍ବେ ତ ତମାଳବଲ୍ଲୀ । ଚବୁକେ ଭ୍ରମରୀ ଓଷ୍ଠ ବନ୍ଧକୁ । ମଧୁ ନ ପିଏ କି ଏହି ବିବେକୁ ସେ । ନାସା କୀର ଅଛି ହୋମ୍ପେ ଯେ । ବିମ୍ବ ହୋଇ ଥିଲେ ଜମ୍ବୁ ବୋଲି ମୋତେ ନ ପୁଣ ଚଞ୍ଚୁରେ ଗୃପି ଯେ । ୨୩ । କଣ୍ଠେ ଦଅନ୍ତେ ମୋତି ଗ୍ରୀପସରୀ । ରହିଲେ ଉପମା ଏ ଅପସରି । କି କମ୍ବୁ ଜିଣିଲା ଯଶ ପ୍ରକାଶ । ମତ୍ତ କପୋତ କି କରୁଛି ହାସ ସେ । ଯୋଡ଼ିମାଳି ଛାଡମାଳି ଯେ । ଅଙ୍ଗମାଳଅଳି କେତେକ କହିବା ଯେତେକେ ମଣ୍ଡିଲେ ଅଳୀ ଯେ । ୨୪ । ଫୁଲି ଲମ୍ବି କଲା ଚରମ ଶୋଭା । ଖେଳାଇବା ପାଇଁ ଭରମ ପ୍ରଭା । ଶରଦେ କାମ କି ମଣ୍ଡନ କଲା । ନୀଳରଙ୍ଗ ପୀତବର୍ଣ୍ଣେ ଶୋଭିଲା ସେ । ବିଚକ୍ଷୁଣି ପ୍ରକଟି ଯେ । କି ଇନ୍ଦୀବର ଶୋଣକଞ୍ଜ କୁମୁଦ ନିର୍ମଳ ନଦୀରେ ଫୁଟି ଯେ ॥ ରୋମାବଳୀ-କର ଅଛି ପ୍ରସାରି । ଯଉବନ ଗଜ କୁଚ ଅମରୀ । ଗ୍ରୈବ ଘୋଡ଼ଣୀ କି ମଣ୍ଡନ ହାରୀ । ପ୍ରବାଳ ମାଳା କି ବଜ୍ରଲହରୀ ସେ । ପଦକ ମାହନ୍ତ ସ୍ଥାନୀ ଯେ । ଧନ୍ୟ ଧନ୍ୟ ଘ୍ରମା ସୁଷମା କଲେ ତା ଏହି ଉପମାକୁ ଘେନି ଯେ । ୨୬ । ବାହୁଟିସାର ଭାବ ଦେଲେ ତାହିଁ । କ୍ଷୀନ ତାଡ଼ନକ ତାଡ଼କ ବାହି । ଅଙ୍ଗୁଳିଠାରେ ମଣିବନ୍ଧ ପଛେ । ଅଙ୍ଗୁଳି ମଣ୍ଡିଲେ ଅତ୍ୟନ୍ତ ସ୍ବଚ୍ଛ ସେ । ଦେଲେ ମରକତ ଚୁଡ଼ୀ ଯେ । ସଖୀମାନେ ଦାମ

---

୨୨ । ଘୋଣା—ନାକପୁଡ଼ା, ଉପଲକ୍ଷଣା—ଉପମା, ପୃଷ୍ଠକେ—ପୁଡ଼ାରେ ଅନଳ—ଅଗ୍ନି ।

୨୩ । ଗଣ୍ଡେ—ଗାଲରେ, ଗୃଣ୍ଡେ—ଶୀଘ୍ର, ମକରୀ—ମକର ରୂପ ଚିହ୍ନ, ମୁକୁର ବିମ୍ବ—ଅରସୀ, ତମାଳବଲ୍ଲୀ—ତମାଳପତ୍ର, ଚବୁକେ—ଗାଲରେ ଭ୍ରମରୀ—ଚିହ୍ନମାନ୍ତି, ବିମ୍ବ—ପାଚିଲା କଇଁଣିକାକୁଣ୍ଡ, କୀର—ଶୁଆ, ଜମ୍ବୁ—ଜାମୁକୋଳି ।

୨୪ । ଗ୍ରୀପସରି—ଗଳାର ଅଳଙ୍କାର, ଅପସରି—ଘୁଞ୍ଚି, କମ୍ବୁ—ଶଙ୍ଖ, ଯୋଡ଼ିମାଳି—ମାଳିସବୁ ।

୨୫ । ଫୁଲି—ହୋମା, ଚରମ—ପିଠି, ପ୍ରକଟ—ପ୍ରକାଶ ହୋଇ, ଇନ୍ଦୀବର—କଇଁ, ଶୋଣକଞ୍ଜ—ରକ୍ତକଇଁ ।

୨୬ । ରୋମାବଳୀ—ଲୋମସବୁ, କର—ହାତ, ହାତୀଶୁଣ୍ଢ-କଳଶ ପ୍ରସାରି—ଲମ୍ବାଇ, ଗଜ—ହାତୀ, ଅମରୀ—ଦେବସ୍ତ୍ରୀ, ଗ୍ରୈବ—କାଞ୍ଚିଲା, ଘୋଡ଼ଣୀ—ଘୋଡ଼ାଇବାଜିନିଷ, ହାରୀ—ହାର, ପ୍ରବାଳ—ପୋହଳା, ସୁଷମା—ସୁନ୍ଦର ।

ଭ୍ରମରେ ଭମଁରେ ଭ୍ରମରେ କି ଅବା ଜଡ଼ି ଯେ । ୨୭ । ସଖୀମାନେ ପାଞ୍ଚ ଅଙ୍ଗୁଳି ଗୁହି । କଲେ ପାଞ୍ଚ ପାଞ୍ଚ ନାଗର ରହି । ପଞ୍ଚନାଗର ଭସ୍ମ ହେଲା ଦିନ । ଧୋଇଲେ କି ଦେଖି ଏ ରମ୍ୟ ସ୍ଥାନ ସେ । ଭେଦିବ ପଞ୍ଚମନକୁ ଯେ । ପଞ୍ଚରତ୍ନ ଦେଇ ପୂଜା କରିବା କି ବୋଲି ମୁଦି ଦେଲେ ତାକୁ ଯେ । ୨୮ । ହରିତାଳୀ କାଳି ଯେନି ବନିତା । ପଦ ଉପରେ ଉକୁଟାଇ ଲତା । ସୁନାକଚ୍ଛପ ବାଧି ବିରଚନା । ଫୁଙ୍କିଲେ ତହିଁ ମରକତ ମୀନା ସେ । ବେଢ଼ରେ ସରୁ ଅଳତା ଯେ । ପାଟସୂତ୍ର ଫାନ୍ଦେ ଫାନ୍ଦିଲା ତାହାକୁ କିବା କୌତୁକୀ ଧାତା ଯେ । ୨୯ । ହଂସକ ଯାହାଟି ଦେଲେ ବା ପାଦେ । ହଂସକୁ ଏମନ୍ତ କହିବ ନାଦେ । ଇଚ୍ଛାରେ ତ ସମ ନୁହ ଗଡକି । ଭୀତ ନ ଲଭିବ କିନ୍ତୁ ଏତକି ସେ । ତୁମ୍ଭେତ ପୋଷିଲା ପକ୍ଷୀ ଯେ । ଅଣି ନଥିବାର ଚନେ ଲକ୍ଷ୍ୟିବାର ତୁମ୍ଭର କି ଦୋଷ ଅଛି ଯେ ।୩୦। ବଳା ପାଦେ ଅଛି ଅବଳା କେହି । ଏହି ବସ୍ତୁରେ କି ଖଞ୍ଜିଲେ ସହି । ହୋଇଅଛି ପୁଣି ଅତି ଝମକ । ଯୁବା ଚେତନା ଚମକ ଝମକ ସେ । ଖଞ୍ଜିଲେ ମଞ୍ଜୁ ମଞ୍ଜୀର ସେ ।

---

୨୭ । ବାହୁଟିସାର—ହାତରେ ଉତ୍ତମବାଜୁ, ଭାବି—ଚିନ୍ତାକରି, ତାଡ଼ନକ—ଯେ ତାଡ଼ଉଦିଏ, ତାଡ଼କ—ତାଡ଼, ମଣିବନ୍ଧ—ହାତଗଣ୍ଠି, ଅଙ୍ଗୁଳି-ବେଢ଼ି ବିଶେଷ, ଅନୁପମ ସ୍ୱଚ୍ଛ—ପରିଷ୍କାର ଭାବେ, ଗୌରବର୍ଣ୍ଣ-ହାତରେ ମର୍କତ କି କଳାଝାଇଁ ରତ୍ନର ଚୁଡ଼ି ଦେବାରୁ ଭ୍ରମର କି ଭଅଁରମାନେ ଭ୍ରମରେ କେତକୀ ଫୁଲରେ ବସି ଚୁମ୍ବିଲା ପରି ଦେଖାଗଲା ।

୨୮ । ପାଞ୍ଚ—ଭାବିବା, ପଞ୍ଚ ନାଗର—କନ୍ଦର୍ପ ଫୁଲଧନୁ, ରମ୍ୟ—ସୁନ୍ଦର, ଭେଦିବ—ଭେଦ କରିବ, ପଞ୍ଚମନକୁ—ମନଭିତରକୁ, ପଞ୍ଚରତ୍ନ—ପାଞ୍ଚ ପ୍ରକାର ରତ୍ନ ।

୨୯ । ହରିତାଳୀ—ହଳଦିଆ ରଙ୍ଗ, କାଳି—ସ୍ୟାହି, ବନିତା—ସ୍ତ୍ରୀ, ଉକୁଟାଇ—କୁଟି । ସୁନାକଚ୍ଛପ—ସୁନା କଇଁଛ, ମୀନା,—ଖଞ୍ଜିବା, ବେଢ଼ରେ—ଗୋଡ଼ରେ, ପାଟସୂତ୍ର—ପାଟସୂତା, କୌତୁକି—କୁତୂହଳୀ, ଧାତା—ବିଧାତା, ମରକତରେ ଲାଲରଙ୍ଗ ପରି ଗୋଡ଼ରେ ଅଳତା ଥିବାରୁ ପାଟ ସୂତାରେ ଗୁନ୍ଥିଲାପରି ଦେଖାଗଲା ବିଧାତା କୌତୁକରେ ଏହିପରି କରିଛି କି ?

୩୦ । ହଂସକ—ବଳା, ଗଡକି-ଗୁଳକି, ଭୀତ-ଭୟ, ଲକ୍ଷ୍ୟିବାର-ଦେଖିବାର ।

ତ୍ରିପୁର ତ୍ରିପୁର ପର ଅତ୍ରୁରକୁ ସ୍ମର କି ସାଙ୍କଳ୍ପ ତୂର ଯେ । ୩୧ । ଛଡ଼ାଇବ ସେ ଝିଙ୍କାରି ଝଙ୍କାର । ବଢ଼ାଇବ ପୁଣି କାମ ବିକାର । ପ୍ରପଦେ ଦେଲେ ଝୁଣ୍ଟିଆ ବାଙ୍କେଣୀ । ନ ଜାଣି କାହିଁକି ଏଡ଼େ ସାଙ୍କେଣି ସେ । ସହଚରୀ ହୋଇ ଲୋଭା ଯେ । ଶାଢ଼ୀ ପାଲଟିବା ପାଇଁ ସେ ଅବନୀଶୋଭା କରାଇଲେ ଉଭା ଯେ । ୩୨ । ବାହାରକଲେ ନୀଳ ଝୀନ-ଶାଢ଼ୀ । ସୁନ୍ଦର ଧଡ଼ୀ ଫୁଲ ଲଗ ପଡ଼ି । ବସିଲେ ରହିବ ମୁଠା ଭିତରେ । ସତେ ରହିଥିଲେ ବଂଶନଳରେ ସେ । ଉଞ୍ଚୁଲେ କୁଞ୍ଚୁଲେ ସଖୀ ଯେ । ବାଳା ବଳ ଅଖି କାଚୁ ପିନ୍ଧାଇଲେ ଉଟମାଏ ବୁଣ୍ଡି ଦେଖି ଯେ । ୩୩ । ଉରଜେ ପଡ଼ ମୋହିଲା ନେତ୍ରକୁ । ମୁଦ୍ଧ ଥୋଇଲା କି ଉଲାଛନ୍ଦକୁ । ସ୍ଥୂଳ ଦୁଇ ଲୁଚ ଲୁଚ ଦିଶିଲା । ଯନ୍ତ୍ରତୁମ୍ବୀ କି ନୀଳକଷ କଲା ସେ । ତ୍ରିକୋଣ ଟେଳ ଜଘନେ ଯେ । ରୋମାବଳୀଦଣ୍ଡ ମଣ୍ଡନ ଚିରାଳ ପରାସ୍ତେ ପରତେ ମନେ ଯେ । ୩୪ । ନିବଡ଼ ନୀବି ଛବି ଗଲା ଜଣା । କାମ ମନ୍ଦରେ ଜାଗ୍ରତକୁ ଠଣା । ରଚିଲେ କ୍ରୀଡ଼ା ଅଗେ ଲମ୍ବି ପଡ଼ି । ଜାଣେ ମଦନ ଯାଉଥିଲା ଯୋଡ଼ି ସେ । ଜୀବ ଦେବ କରେ ବାନ୍ଧୁ ଯେ । ଯୁବାଙ୍କ ଅଧୋଗତିକି ବିଚାର କି ତେମନ୍ତ ଏ ଧୂମପନ୍ଥ ଯେ । ୩୫ । ବାଜିବା ବେଳକୁ ଯେଉଁ

---

୩୧ । ଅବଳା—ସ୍ତ୍ରୀ, ଚମକ—ଚମକାଇବା, ଝମକ-ବାଦ୍ୟ, ମଞ୍ଜୁ—ସୁନ୍ଦର, ମଞ୍ଜୀର—ପାଦଭୂଷଣ, ତ୍ରିପୁର-ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର, ତ୍ରିପୁରପର—ମହାଦେବ, ଅତ୍ରୁର—ଅସ୍ଥିର, ସ୍ମର—କନ୍ଦର୍ପ, ସାଙ୍କଳ୍ପ—ବିକଳ୍ପ, ତୂର—ଶର ।

୩୨ । ଝିଙ୍କାରି—ଝିଣ୍ଟିକା ବିଶେଷ, ଝଙ୍କାର—ଶବ୍ଦ, କାମବିକାର—କାମଭାବନା । ପ୍ରପଦେ—ପାଦଉପରେ, ଅବନୀଶୋଭା ପୃଥିବୀ ମଣ୍ଡନୀ ।

୩୩ । ଝୀନ—ସରୁ, ବଂଶନଳୀ—ବାଉଁଶ ନଳ, ଉଞ୍ଚୁଲେ—ସଜାଡ଼ିଲେ କୁଞ୍ଚୁଲେ—କୁଞ୍ଚକଲେ । ବାଳା—ଲାବଣ୍ୟବତୀ ।

୩୪ । ଉରଜେ-ସ୍ତନରେ, ନେତ୍ରକୁ ଅଖିକୁ, ମୁଦ୍ଧ—ବନ୍ଧକର, ଛନ୍ଦ—ଛତା, ସ୍ଥୂଳ-ପିଣ୍ଡ, ଲୁଚ-ସୁନ୍ଦର, ଯନ୍ତ୍ରତୁମ୍ବୀ-ଲାଉଫଳ ବାଜା, ନୀଳକଷ-ନେଳିଅରଙ୍ଗ, ତ୍ରିକୋଣ—ତିନି କୋଣିଆ, ଟେଳ-ଲୁଗା, ଚିରାଳ—ପତାକା, ପରତେ—ବିଶ୍ୱାସ ।

୩୫ । ନିବଡ଼—ଗାଢ଼, ନୀବି,—ଭଙ୍ଗୀ, ଜାଗ୍ରତ—ଚେତନା, ଠଣା-ସ୍ଥାନ, ଜୀବ—ପ୍ରାଣ, ଅଧୋଗତି—ମନ୍ଦଦଶା, ଧୂମପନ୍ଥ-ଧୂଆଁ ସରୁ ।

ରସନା । ଯୋଗୀଙ୍କ ବୋଲିବ ଯୋଗେ ରସନା । ଯୋଗିଙ୍କି ବୋଲିବ ଯୋଗରେ ରସ । କଳାକେଳି ରସ ଲଭି ବିରସ ସେ । ଭାବି କେଶରୀ କଟିକି ଯେ । ଅତି ହରଷରେ ବାନ୍ଧିଲେ ବାନ୍ଧବୀ ବାଳେଣୀ କ୍ଷୁଦ୍ରଘଣ୍ଟିକି ଯେ । ୩୬ । ଭୁଞ୍ଜାଇଲେ ଭଞ୍ଜି ଜମ୍ବୁରୁ ପାନ । ଏଣିକି ଅଧର ଦୁକେ ପରସନ୍ନ । ବିଦ୍ରୁମ ଜପି ରଙ୍ଗାଇଲେ ପୁଣ । ଅରୁଣ ଭଲି କି ସିନ୍ଦୁରେ ସ୍ନାନ ସେ । ଶୀତରେ ମୁକୁର ଦେଇ ଯେ । ହେଲି କି ନୋହିଲି ବୋଲି ପଚାରିଲେ ରମଣୀ ହସିଲି ହୋଇ ଯେ । ୩୭ । ଘୋଡ଼ାଇଦେଲେ ଯେ ଜରି ଘୋଡ଼ଣୀ । ଶମ୍ପାରେ ଅଚ୍ଛାଦିତ ନୀଳମଣି । ଗ୍ରେପଣ ଶବ ଅତୁଳା ପିତୁଳା । ଭେ କଲି କରି କେହି ସ୍ଥିର ହେଲି ସେ । ଅକ୍ଷି ପକ୍ଷୀ-ଅଠା କାଠି ଯେ । ଘୋଡ଼ାଇ ଦେଲେ କି ଏହି ଭାବନାରେ ଧନାକେତେ ଥାଇ ସୃଷ୍ଟି ଯେ । ୩୮ । ହିରଣ୍ୟତନୁରେ ଯେ ଷଡଙ୍ଗାଗ୍ରି । ଦାସବତ୍ସଳ ସ୍ୱାମ ନରହରି । ଧ୍ୟାନେ ଅଜିତ ଅଘ କରି ହତ । ଜୟଇନ୍ଦ୍ର ବୀରବର ରଚିତ ଯେ । ଏ ରସିକସିନ୍ଧୁ ଛାନ୍ଦ ଯେ । ଭବି ସେ ଜାଣିବେ ଯେତେ ଶ୍ରମ ଏଥି ଏ ବେଶପେଶଳ ଛାନ୍ଦ ଯେ । ୩୯ ।

---

୩୬ । ରସନା—ଜିଭ, ରସ ନା-ମଜ୍ଜନାହିଁ, କେଶରୀ କଟି-ସିଂହ କଟି, କଳାକେଳି—ରତି ।

୩୭ । ଭୁଞ୍ଜାଇଲେ-ଖୁଆଇଲେ, ଅଧର—ଓଷ୍ଠ, ପରସନ—ପ୍ରସନ୍ନ ସୁନ୍ଦର ବିଦ୍ରୁମ—ପୋହଳା, ଅରୁଣ—ବାଳରବି, ମୁକୁର—ଅରସି ।

୩୮ । ଶମ୍ପା—ବିଜୁଳି, ସୃଷ୍ଟି—ପୃଥିବୀ ।

ଲବଣ୍ୟବତୀ ଉପରେ ଜରିଘୋଡ଼ଣୀ ଘୋଡ଼ାଇ ଦେବାରୁ ବିଜୁଳିପରି ଚକ୍‌ଚକ୍ ଦେଖାଗଲା । ଶବ ପିତୁଳାକୁ ଦେଖିଲେ ଯେପରି ମନ ଲାଖି ରହେ ଅଠାକାଠିରେ ପକ୍ଷୀ ଯେପରି ଲାଖି ରହେ—ଲବଣ୍ୟବତୀର ରୂପ ମାଧୁରୀରେ ସେହିପରି ଯୁବାଜନଙ୍କ ମନ ଲାଖିଯିବ । ପୃଥିବୀର ଯୁବା ନଷ୍ଟ ହେବେ ଭାବି ଘୋଡ଼ାଇ ଦେଲେ ।

୩୯ । ହିରଣ୍ୟ—ରାକ୍ଷସ, ତନୁ—ଦେହ,ଷଡଙ୍ଗାଗ୍ରି—ଖଣ୍ଡିଆକାଗ୍ରି । ହିରଣ୍ୟ ଅସୁର ଦେହକୁ ଯେ ବିଦାରଣ କରିଥିଲେ, ଅଜିତ—ଅତ୍ୟନ୍ତ, ଅଘ—ପାପ, ହତ—ନାଶ, ପେଶଳ—ସୁନ୍ଦର ।

ଲବଣ୍ୟବତୀଙ୍କ ସଖିମାନେ ସବୁ ଗହଣା ଓ ଲୁଗା ପିନ୍ଧାଇଦେଇ ନାନା ପ୍ରକାର ହାସ ପରିହାସ କଲେ ।

---

# ପଞ୍ଚମ ଛାନ୍ଦ

## ( ଲବଣ୍ୟବତୀର ଫୁଲବଗିଚ୍ଚାରେ ଭ୍ରମଣ )

ରାଗ—ବସନ୍ତ

ଏହି ସମୟରେ ସୁନ୍ଦରୀ ଛାମୁରେ ପ୍ରଭ୍ରମଞ୍ଜୁଳା ଜଣାଇଲା । ଅତି ମଧୁର ମଧୁଋତୁ ପ୍ରବେଶ କରୁଛ ଦିନ ହେଲା ହୋଇଲା । ଶ୍ରବଣ । କର ନାହୁଁ ନବକାମିନୀ । ପିକବଚନେ ପୁନଃ ପୁନଃ ପ୍ରକାଶ କଲଣି ଅନ୍ଧାର ଯାମିନୀ । ୧ । ମଳୟଶିଖର ଶିରୀ ଗ୍ଦେର କର ବହିଲଣି ମନ୍ଦସମୀର । ସୁମନାକୁ ବାସ ଗ୍ଦେରାଇ ନେବଟି ବୋଲି କହିଲଣି ଭ୍ରମର । କେଶର । କେଶରେ ହେଲେଣି ମଞ୍ଜୁଳ । କେଶରେ ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବଞ୍ଜୁଳ । ୨ । ମଲ୍ଲୀ ମାଧବୀ ମକରନ୍ଦ ସାଧବୀ ହେଲେଣି ବାନ୍ଧବୀ କାନନେ । ତୁଷାର ନାଶ ଗୃହି ହାସ ପ୍ରକାଶ କଲେଣି ପଙ୍କଜ-ଆନନେ । ହେଲଣି । ଚର୍ଚ୍ଚରୀ ପ୍ରକଟ କଟକେ । ଅତନୁ ଫୁଲର-ବିଶିଖ କାର୍ମୁକ ଧେନି ଚଳିଲଣି କାମୁକେ । ୩ । ଦୋଳା ଲୀଳା ଟଳିଗଲଣି ନଗର ଗ୍ଦେର ହେଲଣି ସ୍ୱେଦକୁ । ଚନ୍ଦନ କର୍ପୂର ସୁଧାଲେପପୂର ବ୍ୟଞ୍ଜନ ବଢ଼ାଇ ମୃଦକୁ । ଚତୁର । ଜାଣି ନ ଥିବୁ ତୁ କପାଇଁ । ଅଭି ଅଭିରାମ ଅରାମ ଦେଖିବା ବିଜେ କରିବାକୁ

---

## ପଞ୍ଚମ ଛାନ୍ଦ

୧ । ମଧୁର—ମନୋହର, ମଧୁଋତୁ—ବସନ୍ତଋତୁ, ନବ-ନୂଆ, କାମିନୀ—ସ୍ତ୍ରୀ ପିକବଚନା—କୋଇଲି ସ୍ୱର, ପୁନଃ ପୁନଃ—ଥରକୁ ଥର, ଯାମିନୀ—ରାତ୍ରୀ ।

୨ । ମଳୟ ଶିଖର—ମଳୟ ପର୍ବତ ଉପର, ଶିରୀ—ଶୋଭା, ମନ୍ଦଧୀର, ସମୀର ପବନ, ସୁମନା—ଫୁଲ, ସ୍ତ୍ରୀ ବା ବାସ ଓ ବାସନା ଲଗା, ଭ୍ରମର—ଭଅଁର, ପୁରୁଷ କେଶର—ନାଗେଶ୍ୱର ଫୁଲ, କେଶରେ—ବାଳରେ, ଜୁଡ଼ାରେ, ମଞ୍ଜୁଳ—ସୁନ୍ଦର, ବଞ୍ଜୁଳ—ଅଶୋକ ଫଳ ।

୩ । ମକରନ୍ଦ—ମଧୁ, ସାଧବୀ—ସୁଲକ୍ଷଣୀ ପୂର୍ଣ୍ଣ, ବାନ୍ଧବୀ—ସଜନୀ (ଲବଣ୍ୟବତୀ) କାନନେ—ବଣରେ, ତୁଷାର—ବରଫ, ପଙ୍କଜଆନନେ—ପଦ୍ମ ମୁଖରେ, ଚର୍ଚ୍ଚରୀ—ପିଚକାରୀ, ପ୍ରକଟ—ପ୍ରକାଶ, ଅତନୁ—କନ୍ଦର୍ପ, ବିଶିଖ—ଶର, କାର୍ମୁକ—ଧନୁ, କାମୁକେ—କାମାସକ୍ତ ପୁରୁଷମାନେ ।

କଣାଇ । ୪ । ସଜନୀ ନିକର ଜାଣି ସୀତ୍କାର ମାର୍ଗ ପରସ୍ତାର ରଚିଲେ । ଅମଳ କମଳ କୋମଳ ଚରଣ ପୀଡ଼ା ନୋହିବାକୁ ପାଞ୍ଚିଲେ । ପମ୍ନାରେ । ଗନ୍ଧସାର ଗୋଳି ସିଞ୍ଚିଲେ । ଯୁବତୀ ସେବତୀ ପାଖୁଡ଼ା ମିଶାଇ ଘନସାର ଚୂର ବାଞ୍ଛିଲେ । ୫ । ଝରି ପରଖ ବାଞ୍ଛଣା ପାନମୁଣା ସଜନୀ ସଜାଡ଼ିଲେ ତହିଁ । ମନ୍ଦୀନନ୍ଦନା ଜଗତ ବନ୍ଦନାକୁ କରଭର ଦେଇ ଉଠାଇ । ସୁନ୍ଦରୀ । ସୃଷ୍ଟି ରାଜା ରାଜକୁମାରୀ । ଶିରୁର ଶ୍ୱେତଅତପତ୍ର ଟେକିଲେ ଚାମର ଚାଳନ ପ୍ରଚୁର । ୬ । କେଉଁ ପ୍ରବୀଣା ବୀଣାକୁ ବଜାଉଛି ଯାଉଛି ପ୍ରତୀତ ହେଉଛି । ବନ୍ଧୁରେ ବନ୍ଧୁର ବୀଥିଟି ଏଥିରେ ସାବଧାନ ଥାଉ କହୁଛି । ଗମନେ । ଜେମାର ମୁଁ ମନେ କରଇଁ । ମନମଥ ରଥ ଯାତ୍ରା କି କରୁଛି ପଥ ମନୋରଥ ପୂରାଇ । ୭ । ଲଲାଟ ଲପନ ଚାନ୍ଦ ଦରପଣ ଚିକୁର ଚାମର ଯହିଁରେ । ତରଙ୍ଗ କୁରଙ୍ଗନୟନ ଭୁବଙ୍ଗ କି ରଙ୍ଗ କରଇ ତହିଁରେ । କଳଶ । ଚକ କୁଚ ଶ୍ରୋଣୀ ଚଟୁଳ । କଟୀମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ । ୮ । ଶୋଭି ଏ ବିଧିରେ ପ୍ରବେଶ ସଧୀରେ ପୀନସ୍ତନୀଏ ବିପିନରେ । ବୁଲିବା ଖେଳିବା କୁସୁମ ତୋଳିବା ଆରମ୍ଭିଲେ ତୋଷ ମନରେ । ତହିଁରେ । ଛଳ ଉକ୍ତିମାନ କହିଲେ ।

---

୪ । ସ୍ୱେଦ—ଝାଳ, ଲୀଳା—ଖେଳା, ସୁଧାଲେପା—ଚୂନଲିପା, ବ୍ୟଜନ—ବିଚଣା, ମୃଦକୁ—ବନ୍ଦହେବାକୁ, ଅଭ—ବର୍ତ୍ତିମାନ, ଅଭିରାମ—ସ୍ନେହ, ସୁନ୍ଦର, ଅରାମ—ବଗିଚା ।

୫ । ସଜନୀ ନିକର—ସଖୀସବୁ, ସୀତ୍କାର—ସମ୍ମତ, ମାର୍ଗ—ବାଟ, ଅମଳ—ପରିଷ୍କାର, କମଳ—ପଦ୍ମ, ପମ୍ନାର—ସୁବାସଜଳ, ଗନ୍ଧସାର—ଚନ୍ଦନ, ଘନସାର—କର୍ପୂର ।

୬ । ଝରି—ପାଣିମାଠିଆ, ପରଖ—ପିକଦାନୀ, ପାନମୁଣା—ପାନ ରହିବା ଜାଗା, କରଭର—ହାତଭରା ଦେଇ, ସୃଷ୍ଟି—ସଂସାର, (ଏଠାରେ ସ୍ତ୍ରୀ ସଂସାର ) ସୁନ୍ଦରୀସୃଷ୍ଟି ରାଜା—ସୁନ୍ଦରୀ ଶ୍ରେଷ୍ଠା, ଶ୍ୱେତ—ଧଳା, ଆତପତ୍ର—ଛତା ।

୭ । ପ୍ରତୀତ—ବିଶ୍ୱାସ, ବନ୍ଧୁର—ଅବଢ଼ା ଖାବଢ଼ା, ବନ୍ଧୁ—ଲାବଣ୍ୟବତୀର (ସଙ୍ଗିନୀର) ବୀଥି—ବାଟ, ମନୋରଥ-ମନକାମନା, ଲାବଣ୍ୟବତୀ ଯିବାରୁ ବାଟରେ କନ୍ଦର୍ପର ରଥ ଗଲାପରି ଦେଖାଗଲା ।

୮ । ଲଲାଟଲପନ—ମୁଣ୍ଡ ଓ ମୁଖ, ଚାନ୍ଦ—ଚନ୍ଦ୍ର, ଦର୍ପଣ—ଆରସି, ଚିକୁର—ବାଳ, ଚାମର—ଚଅଁର, ତରଙ୍ଗ କୁରଙ୍ଗ ନୟନ—ତରଳ

ଶୁଣି ପରଭୃତ ଚକିତ ସ୍ତୁକିତ ମୁନିବିଭୂତକ ବହିଲେ ।୯। କହେ ଏକ ନାରୀ ବିଶେଷେ ସୁନାରୀ ଏ ଦେଶରେ ବାସ କରିଛି । ଭୃଙ୍ଗ କିଂପୁରୁଷ ଚଞ୍ଚଳ ମାନସ ଏଥି ତଥି ପୁଣ ଯାଉଛି । ତହିଁକି । ଛଳ କହିଲି କେଉଁ ଭୀରୁ । ମହାବିବେକୀ ହୋଇ ତୁହି କିପାଇଁ ମଧୁପ ନାମକୁ ବିସ୍ମରୁ ।୧୦। ଏକକୁ ଗୃହିଁ ଅନେକ ସଖୀ କହି ନିକଟେ ନାଗେଶ୍ୱର ମୋର । ବୋଇଲି ହୋଇଥାଇଟି ନାଗେଶ୍ୱର ସୁପର୍ଣ୍ଣର କର ଆଦର । ସେ ଛଳେ । ଶଙ୍କିଲି ନାଗେଶ୍ୱର କହ । ସୁମନାଭୂଷଣ ଦମଣ୍ଡ ପାଇବ ତାପରେ ଯାଇଣ

---

ମୃଗନେତ୍ର, ତୁରଙ୍ଗ—ଘୋଡ଼ା, କୁଚ—ସ୍ତନ, ଶ୍ରୋଣୀ—ପିଚ୍ଛ, ପ୍ରକଟି—ପ୍ରକାଶ ହୋଇ, ଅଞ୍ଚଳ—କାନି ।

ଅରପଦରେତ ମନ୍ମଥରଥ ଲାବଣ୍ୟବତୀକ ଧରାଯାଇଛି— ଯେଣେ ରଥରେ ତ ଚନ୍ଦ୍ରାତପ ଦର୍ପଣ ଥାଏ ଏ ଲାବଣ୍ୟବତୀ ରଥରେ ମୁଣ୍ଡ ହେଲା ଚନ୍ଦ୍ର—ମୁହଁ ହେଲା ଦର୍ପଣ, ରଥ ପାଖରେ ଚଅଁର ପଡ଼େ ଏହାର ବାଳ ହେଲା ଚଅଁର, ରଥରେ ଘୋଡ଼ା ଲାଗିଥାଏ—ଏହାର ତରଳ ଆଖି ହେଲା ଘୋଡ଼ା, ରଥରେ କଳଶ ଓ ଚକ ଥାଏ— ଏ ରଥରେ ସ୍ତନ ହେଲା କଳଶ, ପିଚ୍ଛ ହେଲା ଚକ, ରଥରେ ଘଣ୍ଟି ବାଜେ ଏହାର କଟି ଘାଗୁଡ଼ି ହେଲା ଘଣ୍ଟି, ରଥରେ ପତାକା ଥାଏ, ଏହାର କାନି ହେଲା ପତାକା ।

୯ । ପୀନସ୍ତନାଏ—ଉଚ୍ଚସ୍ତନାଏ, ବିଜନରେ—ବନରେ, ଫୁଲ ବଗିଚ୍ଛରେ କୁସୁମ—ଫୁଲ, ପରଭୃତ—କୋକିଳ, ମୁନିବିଭୂତ—ଋଷି ପ୍ରକୃତ । ଅର୍ଥାତ୍ ଏହାଙ୍କ କଣ୍ଠସ୍ୱରରେ କୋକିଳ ହାରିଯାଇ ଋଷିଙ୍କ ପରି ତୁନି ହେଲା ।

୧୦ । ସୁନାରୀ—ବଣିଆ, ସୁନାରୀ ଫୁଲଗଛ, ଉତ୍ତମ ସ୍ତ୍ରୀ, ଭୃଙ୍ଗ—ଭଅଁର, କିଂପୁରୁଷ—ଅସୁନ୍ଦର ପୁରୁଷ, ମାନସ—ମନ, ଭୀରୁ—ସ୍ତ୍ରୀ, ମହା ବିବେକୀ-ଅତ୍ୟନ୍ତ ଜ୍ଞାନୀ, ମଧୁପ-ଭ୍ରମର, ମଦୁଆ; ବିସ୍ମରୁ-ଭୁଲିଯାଉ ।

ଜଣେ ସଖୀ କହିଲା, ଏଠାରେ ସୁନାରୀଫୁଲ ଫୁଟିବାରୁ ଭ୍ରମର ଆସି ସେ ଫୁଲରେ ବସି ଅବିବେକୀ ହୀନ ପୁରୁଷ ପରି ତାକୁ ଛାଡ଼ି ଅନ୍ୟ ଫୁଲକୁ ଉଡ଼ି ଯାଉଛି—ଅନ୍ୟ ଜଣେ କହିଲା ନା ତା ନୁହେଁ—ତୁ ଭୁଲ କରୁଛୁ । ଏଠାରେ ଲାବଣ୍ୟବତୀ ଥିବାରୁ କୁତ୍ସିତ ପୁରୁଷମାନେ ମଦୁଆଙ୍କ ଭଳି ଅନାଇ ଅନାଇ ଚାଲିଯାଉଛନ୍ତି, ପୁରୁଷତ ଭ୍ରମର ପରି, ସେ ମଧ୍ୟ କାମ ମଦରେ ମଦୁଆ ପରି ହୁଅନ୍ତି ।

ଅଗ୍ରେହ । ୧୧ । କେ ତାହାକୁ କହେ ମୋହଠାରେଁ ସଖୀ ରଖିଥିବୁ ଏକା କରୁଣା । ଦେବ ବଲ୍ଲଭକୁ ଲଭିବାରୁ ତୋତେ ବାଧାତା କଲଣି ଫୁରୁଣା । ସେ ଶୁଣି । ବୋଇଲା ଏ କଥା ଛାଡ଼ରେ । ଖୋଜିଲେ ନ ପାଇ ମୁଁ ବନ୍ଧୁଜୀବକୁ ପଡ଼ିଲି ବରାହ ଦାଢ଼ରେ । ୧୨ । କେଡ଼େ ଚତୁରରେ କହେ ସହଚରୀ ମୁଖକୁ ତାହାର ଅନାଇ । ବଶ କରବାରେ ହୋଇଲା ଉତ୍ତରେ ମଲ୍ଲି ମଲ୍ଲି ହେଉ କାପାଇଁ । ସେ ବୋଲେ । ଭଙ୍ଗିରେ ଅଳକ ତୋଡାଇ । କାଅଲୀ ହେଲଣି ଦେଖିଲା ଉତ୍ତରୁ ପଲାଶ ପାଶେ ଯା ଗମଇଁ ।୧୩। କେ କହେ ଅଶୋକ ଲଭିଲୁ ସୁନ୍ଦରୀ କେତକୀ ହେଲଟି ମୋହର । ସେ କହେ

---

୧୧ । ନାଗେଶ୍ୱର-ଫୁଲବିଶେଷ ସର୍ପରାଜ-ବାସୁକୀ, ଐରାବତ-ହସ୍ତୀ, ସୁପର୍ଣ୍ଣ— କଅଁଳପତ୍ର, ଗରୁଡ଼, ସୁମନ ଭୂଷଣ-ଫୁଲଦ୍ୱାରା ମଣ୍ଡିତ, ଦେବତାଙ୍କର ପିନ୍ଧିବା ପଦାର୍ଥ, ଜଣକୁ ଗୁହିଁ ଅନ୍ୟଜଣେ କହିଲା ମୋପାଖରେ ନାଗେଶ୍ୱର ଗଛ ଅଛୁ । ଅନ୍ୟଜଣେ କହିଲା ନାଗେଶ୍ୱର ତ ବାସୁକୀ ସେ ହୋଇଥିଲେ ଗରୁଡ଼କୁ ଡାକ, ନା ତା ନୁହେଁ—ନାଗେଶ୍ୱର ଗଛର କଅଁଳପତ୍ର ଆଣି ବସିବା, ଅନ୍ୟଜଣେ କହିଲା ତା ନୁହେ, ନାଗେଶ୍ୱର ଐରାବତ ହସ୍ତୀଯାଇ ଚଢ଼ିଲେ ଦେବତା ଭୋଗ ପାଇବା, ଅନ୍ୟଲୋକ କହିଲା ନା ତା ନୁହେ, ନାଗେଶ୍ୱର ମହାଦେବଙ୍କୁ ଅରେହ୍ନ କ ପୂଜା କର ସୁମନ ଭୂଷଣ—କ ଶ୍ରେଷ୍ଠା ସ୍ତ୍ରୀ ଲବଣ୍ୟବତୀ ଦମନ୍ତ ପାଇବା ଉତ୍ତମ ବର ପାଇବା ।

୧୨ । ଦେବବଲ୍ଲଭ—ପୁନ୍ନାଗଗଛ, ଇନ୍ଦ୍ର, ବନ୍ଧୁଜୀବ—ବଧୁଲି ଫୁଲ, ପତି; ବରାହ ଦାଢ଼—ବଣର ବାରା ଦାଢ଼ରେ, କଣ୍ଟାଗଛ ବିଶେଷ, କେ ସଖି କାହାକୁ କହେ ମୋଠାରେ କରୁଣା କ ଦୟା ରଖିଥିବୁ, ଦେବବଲ୍ଲଭ—ଯେ ଇନ୍ଦ୍ରକୁ ପାଇବାରୁ ଅର୍ଥାତ୍ ଇନ୍ଦ୍ରପର ସ୍ୱାମୀ ପାଇବାକୁ ବହୁ ତୋତେ ଆନନ୍ଦ କଲଣି, କଏ କହେ, ତୁ କଅଣ ଏ ପୁନ୍ନାଗ ଗଛ ଦେଖିବାରୁ ଆନନ୍ଦ ହେଉଛୁ । ଅନ୍ୟଜଣେ କହେ ସେ କଥା ଛାଡ଼, ମୁଁ ବନ୍ଧୁକଫୁଲ ଅଧ ନ ପାଇବାରୁ ବରାହ ଦାଢ଼ କ କଣ୍ଟାବଣରେ ପଡ଼ିଗଲି, କାତର ନୁହେଁ, ପରମସ୍ୱାମୀ କ ଉତ୍ତମ ସ୍ୱାମୀ ନ ପାଇବାରୁ ବରାହ ହାବୁଡ଼େ ପଡ଼ିଗଲି ।

୧୩ । କରବୀର-କନିଅର, ଉତ୍ତମ ପୁରୁଷ, କାଅଲୀ-ଫୁଲବିଶେଷ, ସୁନ୍ଦରୀ, ପଳାଶ-ଫୁଲ, ଅସୁନ୍ଦର ପୁରୁଷ, ସଖୀ କେଡ଼େ ଚତୁରତାରେ ଲବଣ୍ୟ-ବତୀ ମୁହିଁକୁ ଅନାଇ କହେ, ଉତ୍ତମପୁରୁଷରେ ବଶ ହେଲାପରେ ଅଭ

ସୁବର୍ଣ୍ଣକାନ୍ତିହର ସେହି ଗୋଡ଼ାଇ ଯିବୁଟି ଶରୀର । ଏକାଳେ, ଆଜ ଜଣେ ଛଳ ପ୍ରଚାର । ଦେଖାଇ ତରୁ ଭ୍ରମରଅନା ପାଶକୁ ଯିବ କି ନ ଯିବ ପଚାର ।୧୪। ଦେଖରେ ରସାଳ ବିଟପୀ ପ୍ରବାଳ ବକୁଳ ମାଳରେ ଶୋହୁଛି । ଶୋଭିବନ ପ୍ରିୟ ଅବଲମ୍ବି ଥିଲେ ବହୁତ ସ୍ତୋଲମ୍ବ ମୋହୁଛି । ଏମନ୍ତ । ଭାବ ବନେ କରୁଁ ବିଳାସ । ଘେନିଣ ଚର୍ଚ୍ଚରୀବଧୂ ସହଚରୀ ପାରବାରିକାଏ ପ୍ରବେଶ ।୧୫। ଦେଖି ହରଷ ବୃଷ୍ଟି ପାତେ ସାରସଜାତ ରସ ରସପଣ୍ଡିତା । କମନୀୟକମ ଚଜତନା ଘେନ କାଞ୍ଚଲରେ ହେଲ ଶୋଭିତା । ବାନ୍ଧିଲ । ଭଙ୍ଗ ମଧ୍ୟେ ଶାଢ଼ୀ ପଣନ୍ତ । ଫଗୁମ୍ବଣା ଖୋସି ହସିବାର ଚାହିଁ ସଖୀଏ ସାଜିଲେ ତ୍ୱରିତ ।୧୬। ଉନ୍ମତ୍ତ ମତ୍ତକାଶିନୀ ସଙ୍ଗେ ରଙ୍ଗେ ତରଙ୍ଗେ ଖେଳିଲେ କାମିନୀ । ମଣ୍ଡି ଅକାଶେ ଏକ ବେଳେ ପ୍ରକାଶେ କି ଝବା ଅନେକ ଦାମିନୀ । କି ଅବା । ତଳପ୍ରସ୍ଫୁଳନା ହେମର । ମଦା ଅନୁରାଗ ପରାଗବୃଷ୍ଟିରେ ହୋଇ ଅଛନ୍ତି ଛତପର ।୧୭। କଞ୍ଚନ ଗଞ୍ଜନ ଗଞ୍ଜନ-

---

ମଲ୍ଲି ମଲ୍ଲି ଛଳନା କାହିଁକି କରୁ, ଅନ୍ୟଜଣେ କହେ ତା ନୁହେ, ତୁ କନିଅରକୁ ଲୋଭ କରି ମଲ୍ଲି କାହିଁକି ପଚାରୁ ନଅଳୀ ଫୁଲକୁ ; ଦେଖିବାରୁ ପଳାଶ ପାଶକୁ ଆଜ ଯିବୁ କାହିଁକି ।

୧୪ । ଅଶୋକ-ଅଶୋକଫୁଲ, ଖୁସି । ଶରୀର-ଦେହ, କିଏ କହେ ଅଶୋକ ଫୁଲକୁ ଦେଖ,ଅନ୍ୟ କହେ ଲବଣ୍ୟବତୀ ଖୁସି ହୋଇ ଯାଉଛ, ପୁଣି କିଏ କହେ କେତକୀ କି ଦେଖ, ଅନ୍ୟ କହେ କେତକୀ କାନ୍ତି ଯେ ଲବଣ୍ୟବତୀ ସେ ତ ସୁବର୍ଣ୍ଣ, କି ସୁନା ରଙ୍ଗକୁ ହରଣ କରନ୍ତି, ତେଣୁ ଦେହ ଘୋଡ଼ାଇ ହୋଇଯିବୁ, କିଏ ଦେଖିଲେ ଲୋଭାଇବ, ଭ୍ରମରଅନା ଫୁଲକୁ ତୋଳ, ସେ ମାର ଭ୍ରମରପର ଭୂଷିଦେବଟି ।

୧୫ । ରସାଳ—ଆମ୍ବ, ବିଟପୀ—ଗଛ, ପ୍ରବାଳ—ପୋହଳାପର ଲାଲବର୍ଣ୍ଣ । ବକୁଳ—ବଉଳ, ବନପ୍ରିୟ—କୋଇଲି, ଅବଲମ୍ବନ—ଆଶ୍ରୟ, କୋଳ କରିବା, ସ୍ତୋଲମ୍ବ—ଭ୍ରମର, ଚର୍ଚ୍ଚରୀ—ପିଚକାରୀ, ଦେଖ ଆମ୍ବ ଗଛର ବଉଳ ଲାଲବର୍ଣ୍ଣ ହେବାରୁ, କୋଇଲିକୁ ଆଲିଙ୍ଗନ ଦେଉଛି । ତଥାପି ଭ୍ରମର ମଧ୍ୟ ଯାଉଛି, ଯେପରି ବିଟପୀମାନେ ନିଜସ୍ୱାମୀ ଥାଇ ଜାର ପୁରୁଷରେ ମୋହ କରନ୍ତି, ଏହାରେ କଥାବାର୍ତ୍ତା ହେଉ ଅନ୍ୟ ଜଣେ ସହଚରୀ ଅବୀର ପିଚକାରୀ ନେଇ ପହଞ୍ଚିଲେ ।

୧୬, ୧୭ । ସାରସ-ହଂସ, ଜାତ-ଜଣା, କମନୀୟ-ସୁନ୍ଦର, କମ-ଚାହିଁତ । ଫଗୁମ୍ବଣା-ଅବିରମୁଣି, ଉନ୍ମତ୍ତ-ଉଦ୍ରେକିତ ପୂର୍ଣ୍ଣ କି ଯେଉଁ କାମିନୀ ।

ନେତ୍ରୀକି କେଉଁ ସୁହାଇ ସୁଧାଇଛନ୍ତି । ଅଜ ଅସାଧ ହୋଇ କେଉଁ ସୃଷ୍ଟିକି ରହୁଛନ୍ତି ମନରେ ଧ୍ୟାଉଛନ୍ତି । ନାହିଁକି । ଏତେକ ବିବେକ ତାହାର । କୋଟିଏ ବ୍ରହ୍ମାଣ୍ଡ ଗୋଟିଏ ଭଙ୍ଗିରେ ଜିଣିମା ଗୁମାନ ଯାହାର । ୧୮ । ମୁଠାରୁ ଫିଟି ଯିବାରେ ଏ ପ୍ରଗାଢ ଫଗୁ ଖେଳିବାରେ ଲଳନା । ବସନ୍ତରଜା ବଶକୁ କି କରନ୍ତି ରଙ୍ଗପାଟଚେଳଗୁଳନା । ସେ ରଜ । ଯାଇଁ ଶୂନ୍ୟେ ପୁଣ୍ଡ ହୋଇଲା । ଅତ୍ୟନ୍ତ ଗୁଣିକ ଦଗପରିବାର ମାଣିକ୍ୟଛନ୍ଦ କି ଧଇଲା । ୧୯ । କଙ୍କଣ-କ୍ୱଣିତଧ୍ୱନିରୁ ମଣ୍ଡିତ ଭୁଜ ଉଣ୍ଡ୍ରିମ କି ବାଇଲା । ଜଇବାଚ-ବାଣୀ ମଙ୍ଗଳଗୀତ କି ଅଭିଷେକବେଳେ ହୋଇଲା । ସ୍ୱଭାବେ । କୁଚ ପୂର୍ଣ୍ଣକୁମ୍ଭ ସାଜୁଛି । ଗୁରୁ ଶୈଳ ଚୂତପଲ୍ଲବ ସଂଯୁକ୍ତ ହାର ଉପହାର ସାଜୁଛି । ୨୦ । ରମଣୀ ରମଣୀୟ କଲେ ଅମ୍ବରଗୁଣ୍ଡିରେ ସେ ବନସରଣୀ । ମହୀମହିଳା ଋତୁକାଳ ଲଭିଲା ଏସନ ମାନସକୁ ଆଣି । ସେ ଧୂଳି । କାହିଁ ପବନ-ଯୋଗେ ଉଡ଼ି । ଶୁଭସୂଚକ କିମ୍ବା କଉତଖ କି ଯାଉଛି ଶିରେ ବାନ୍ଧି ଶାଢ଼ୀ ।୨୧। ପଦ୍ମାରନାରେ ନିରନ୍ତରେ ପିଚକା ଖେଳନ୍ତେ ମୀନକ୍ଷୁହୃଦୃଶା । ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା । ବିଜୁଳି । ପର

---

ସୁନ୍ଦରୀ ସ୍ତ୍ରୀ । ତରଙ୍ଗ—ଢେଉ । ଦାମିନୀ—ବିଜୁଳି । ହେମ—ସୁନା । ଅନୁରାଗ—ସ୍ନେହ । ମହୀ—ପୃଥିବୀ । ପରାଗ—ଫୁଲର ରେଣୁ ।

୧୮ । କଞ୍ଚନ—ସୁନ୍ଦର । ଖଞ୍ଜନ ଗଞ୍ଜନ—ଖଞ୍ଜନପକ୍ଷୀ ଅକ୍ଷି କି ଯାହା ଅକ୍ଷିଛଟା ତୁଚ୍ଛ କରେ ।

୧୯ । ପ୍ରଗାଢ—ଜଣାଯିବା । ଫଗୁ—ଅବିର । ଲଳନା—ସ୍ତ୍ରୀ । ରଙ୍ଗପାଟ—ଲାଲପାଟ । ଚେଳ—ଲୁଗା । ରଜ—ଗୁଣ୍ଡ । ପୁଣ୍ଡ—ଏକତ୍ରିତ । ପରିବାର—ଗୃହକର । ଛନ୍ଦ—ଛଡା ।

୨୦ । କଙ୍କଣ କମ୍ପିତ—କଙ୍କଣର ଝଣ ଝଣ ଧ୍ୱନି ବା ଶବ୍ଦ । ଭୁଜ—ହାତ, ଉଣ୍ଡ୍ରିମ—ଡେଙ୍ଗୁରା । ବାଣୀ—କଥା, ମଙ୍ଗଳ ଗୀତ—ଶୁଭ ଗୀତ । ଗୁରୁ—ସୁନ୍ଦର । ଶୈଳ—କାଞ୍ଚୁଲା । ଚୂତ ପଲ୍ଲବ—ଅମ୍ବ କଅଁଳିଆ ପତ୍ର । ହାତ କଙ୍କଣ ଶବ୍ଦ—ଡେଙ୍ଗୁରା, କଥାବାର୍ତ୍ତା; ଶୁଭ ଗୀତ ହେଲା ଅଭିଷେକ ହେଲେ ପୂର୍ଣ୍ଣକୁମ୍ଭ ଆମ୍ବପତ୍ର ଦରକାର ଏଠାରେ କୁଚ ପୂର୍ଣ୍ଣକୁମ୍ଭ କାଞ୍ଚୁଲା ଆମ୍ବପତ୍ର ହେଲା ।

୨୧ । ରମଣୀ—ସ୍ତ୍ରୀ, ରମଣୀୟ—ସୁନ୍ଦର, ବନସରଣୀ—ବଣବାଟ, ମହୀ-ମହିଳା—ପୃଥିବୀରୂପ ସ୍ତ୍ରୀ, ମାନସ—ମନ, ଶୁଭସୂଚକ—ଭଲ ଚିହ୍ନ ।

ଫଳ ଭୂଷା ରତନ । ଅଙ୍ଗରାଗେ ଅଦ୍ଭୁତ ଉଡ଼ୁପଡ଼େ ହୋଏ କି କରକା ପତନ । ୨୨ । କୁଙ୍କୁମ ପିଶକା ବାଜି ଜର ଜର ସୁନ୍ଦର ଉରଜ ତାହାର । କନକାଚଳରୁ କିବା ହରତାଳ ପ୍ରବାହ ହେଉଛୁ ବାହାର । କର୍ପୂର । ଗୁଣ୍ଡି ମଣ୍ଡିତ ତାହା ସ୍ତନ । ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁଯୁଗଳ କି ହୋଇଲେ ଭସ୍ମ ବଲେ-ପନ । ୨୩ । ତାହା କୁଚ ଫଗୁସଙ୍ଗରୁ ସୁସଞ୍ଚ ଏହା ପାଞ୍ଚ ହୋଏ ମାନସେ । ହୃଦୟସରୋବର ମଧ୍ୟେ ଉଦୟ କୋକନଦ କଢ଼ୀଯୁଗ୍ମ ସେ । ତାହାର । ଛୁଣ୍ଡ଼ ହାର ଖସେ ମୁକୁତା । ପୟୋଧର ଛଳେ କ୍ଷୀରବିନ୍ଦୁ ବୃଷ୍ଟି କର-ବାରେ କି ସେ ଶୋଭିତା । ୨୪ । କାଶ୍ମୀରରଜ କେ ମାରନ୍ତେ ପାଲଟି ଗ୍ରୀବା ବକ୍ର କର ଗୃହିଲ । ମନ୍ଦମରୁତେ କି ଭଲଟି ନଳନ ଅଳି ସଂଯୁକ୍ତରେ ରହିଲ । କେ ତାହା । ମୁଖେ କସ୍ତୁରୀ ପଙ୍କ ଡାଳି । ମୃଗାଙ୍କ କଳଙ୍କ ଛଡ଼ାଇ ହେବାରୁ ବହୁଯାଉଛୁ କିବା ଢାଳି । ୨୫ । ତାହା ଲଲାଟୁ ସିନ୍ଦୁର ବହୁ ପଡ଼େ ସ୍ୱେଦ ହୋଇବାରୁ ଜନିତ । କେଶରାହୁ ଦନ୍ତଘାତରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ । ସେକାଳେ । ଅତି ଚଞ୍ଚଳ ନେତ୍ରଗତି । ଦଗଧରାକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତୀ । ୨୬ । ରତ୍ନକିରଣେ ଭାନୁପ୍ରଭା ପ୍ରକାଶ ଶ୍ରବଣେ ତାଙ୍କ ଚଳନ୍ତି । ପ୍ରମଦା ପ୍ରମୋଦଭରେ କି କରନ୍ତି ଶ୍ରୀଅଙ୍ଗେ ମଙ୍ଗଳ ଆଳତି । ଚଳିତ । ନାସିକା ମୋତି ଉପହାର ।

---

୨୨ । ପମୀର—ସୁବାସ, ମୀର—ଜଳ, ନିରନ୍ତର—ସର୍ବଦା, ମୀରରୁହ—ପଦ୍ମ, ତୃଣା—ଅର୍ଘି, ମଞ୍ଜୁ—ସୁନ୍ଦର, ମଞ୍ଜୀର—ଗୋଡ଼ ବାଜେଣୀ, ଘନ ରବ—ବର୍ଷା ଶବ୍ଦ, ଭୂଷା—ଅଳଙ୍କାର, ଅଙ୍ଗରାଗ—ଦେହର ଗନ୍ଧ, କରକା—କୁଅପଥର ।

୨୩ । ଉରଜ—ସ୍ତନ, ବକ୍ଷ, କନକାଚଳ—ସୁନା ପର୍ବତ, ହରତାଳ—ହଳଦିଆ ରଙ୍ଗର ଧାତୁ, ପ୍ରବାହ—ସ୍ରୋତ, ସୁବର୍ଣ୍ଣ ସ୍ୱୟମ୍ଭୁ—ସୁନା ମହାଦେବ । ଶମ୍ଭୁ ଯୁଗଳ—ମହାଦେବ ଦ୍ୱୟ, ଭସ୍ମ—ପାଉଁଶ, ବିଲେପନ—ବୋଳି ହେବା ।

୨୪ । ସୁସଞ୍ଚ—ସୁନ୍ଦର । ହୃଦୟ ସରୋବର—ହୃଦୟ ରୂପ ପୋଖରୀ । କୋକନଦ—ପଦ୍ମ । ଯୁଗ୍ମ—ଦୁଇ, ପୟୋଧର—ମେଘ, କୁଚ । କ୍ଷୀର—ଦୁଧ ।

୨୫ । କାଶ୍ମୀର ରଜ—କୁଙ୍କୁମ ଗୁଣ୍ଡି । ପାଲଟି—ଫେରି । ଗ୍ରୀବା—ବେକ । ବକ୍ର—ବଙ୍କା । ମନ୍ଦମରୁତ—ସୁଗନ୍ଧଯୁକ୍ତ ପବନ, ନଳିନ—ପଦ୍ମ । ମୃଗାଙ୍କ—ଚନ୍ଦ୍ର ।

୨୬ । ସ୍ୱେଦ—ଝାଳ, ବ୍ୟକତ—ପ୍ରକାଶିତ, ଦଗଧରା—ଗୃହଅଗ୍ରେ ।

ବାଦେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀଗଣେ ଅହଙ୍କାର । ୨୭ । କେଉଁ ଲତାରୁ କୁସୁମ ଖସିବାରୁ ଏମନ୍ତ ହେଉଛୁ ପରତେ । ଧନ୍ୟ ଧନ୍ୟବୋଲି ପ୍ରଶଂସା କର କି ରତ୍ନ ବର୍ଷୁଛନ୍ତି ନରତେ । ପରାଗ ଛଳେ ସିଞ୍ଚୁଛନ୍ତି କର୍ପୂର । ପଲ୍ଲବ ଛଳେ ପଣନ୍ତେ ବାଞ୍ଛୁଛନ୍ତି ଉପକାର ଭୁତେ ତାଙ୍କର । ୨୮ । କେଉଁ କେଉଁ ତରୁ ତରୁଣୀମାନଙ୍କୁ ପକ୍ଷୀ ନିନାଦରେ କହନ୍ତି । ଏପରି ଉତ୍ସବ କେବେ ନୋହିଥିଲା ଦେଖି ନ ଥିବ ସୁରପତି । କେ ତରୁ । ଶାଖା ଲେଟନ୍ତି ଫଳଭରେ । କି ପରିଚଯ୍ୟ ଆରମ୍ଭ କରୁଛନ୍ତି ରମ୍ଭୋରୁ ପାଦ ଲାଗୁ ଶିରେ । ୨୯ । ଏମନ୍ତ ବେଳେ ଏକ ସଖୀ କହିଲା ତିନି ପ୍ରହର ହେଲା ବେଳ । ସ୍ନାନମାନଙ୍କୁ ଅବଧାନ ନୋହିଲା ଏତେବେଳେ ରହୁ କୁତୂହଳ । ପୁଣି ସେ । ସେ କଥା କଲା ଅଙ୍ଗୀ-କାର । ଏହି ସମୟେ ଥୋକାଏ ଦାସୀ ଆସି ଘେନିଣ ମାର୍ଜନା ସମ୍ଭାର ॥ ସରୋବର ତୀରେ ପ୍ରବେଶ ସୁବେଶ ଲାଗି ସମ୍ପୂର୍ଣ୍ଣ ଏହି ଛାନ୍ଦ । କବି ଚତୁରୀ ଅନେକ ଅଛି ପୁରି ଘେନିଲେ ଜନ୍ମିବ ଆନନ୍ଦ । ଜାଣିଲା । ଜନ ମନକୁ ଏ ତୋଷିବ । ମୂର୍ଖସ୍ବଭାବ ଅଦୃଷ୍ଟବଳାପରି ସେ କାହିଁ ରସ ପ୍ରକାଶିବ । ୩୧ । ଅନନ୍ତଭୂଷଣ ବୃଷଧନ୍ତୁ ଯୁତ ସହୃଦ ଭବତାପନାଶି । ଶ୍ରୀନୀଳସ୍ଥ ଦ୍ୱିଜରାଜ ବନ୍ଦନୀୟ ଜନଙ୍କସୁଖକୁ ପ୍ରକାଶି । ସୁମରି । ମନେ ସେ ରାମଚନ୍ଦ୍ର ଶିବ । କହେ ଉପେନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣ ଉତ୍ସବ । ୩୨ ।

---

୨୭ । ଭାନୁପ୍ରଭା—ସୂର୍ଯ୍ୟତେଜ, ଶ୍ରବଣ—କାନ, ପ୍ରମଦା—ଯୁବା ସ୍ତ୍ରୀ, ଅନଙ୍ଗ—କନ୍ଦର୍ପ,ପ୍ରମାଦଭରେ—ଖୁସିରେ, ନର୍ତ୍ତକୀ—ନାଚବାଲୀ ।

୨୮ । କୁସୁମ—ଫୁଲ, ଉପକାରଭୁତେ—ଭଲ ନିମନ୍ତେ ।

୨୯ । ତରୁ—ଗଛ, ପକ୍ଷୀନିନାଦ—ଚଢ଼େଇଶବ୍ଦ,ସୁରପତି—ଇନ୍ଦ୍ର,ରମ୍ଭୋରୁ —କଦଳୀଗଛପରି ଜଙ୍ଘ ଯାହାର ବୃକ୍ଷାଳ ।

୩୦ । ସ୍ନାନ—ଗାଧୋଇବା, କୁତୂହଳ—ଆନନ୍ଦ, ଅଙ୍ଗୀକାର—ସ୍ୱୀକାର, ମାର୍ଜନା—ଗାଧୁଆ ।

୩୧ । ସରୋବର—ପୋଖରୀ, ତୀର—କୂଳ,ଜନମନ—ଲୋକମନ,ଅଦୃଷ୍ଟ-ରଜା—ବାଳିକା ।

୩୨ । ଅନନ୍ତ—ବାସୁକୀ, ଭୂଷଣ—ଅଳଙ୍କାର, ବୃଷଧନ୍ତୁ ଅର୍ଦ୍ଧ ଚନ୍ଦ୍ର, ଯୁତ—ମଣ୍ଡିତ, ସହୃଦ—ହୃଦ ସହିତ ଅର୍ଥାତ୍ ହୃଦରେ ଥିବା, ଭବ—

## ଷଷ୍ଠ ଛାନ୍ଦ

( ଲବଣ୍ୟବତୀର ସରୋବରରେ ସ୍ନାନ ବିଷୟ )

ରାଗ—ରାମକେରୀ

ମନ ଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠଉପରେ ବସି । ୧
ସରସୀଶୋଭିତ ଅନାଇଁ ମନ ନୋହେ ଲୋଭିତ ।
ତଟ-ଘଟଣ ବିଦ୍ରୁମରେ ପକ୍ଷିପନ୍ତି ବିମ୍ବିତ । ୨ ।
କି ନୀଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି ।
ଅବନୀବନିତା ବିସ୍ତାରେ କବା ବଣିବା ଇଚ୍ଛି । ୩ ।
ପାବଚ୍ଛ ସ୍ୱଚ୍ଛ-ସ୍ଫଟିକରେ ନୀରତୀର ପ୍ରତୀତ ।
ସୁବେଣୀ ପରଶ ଭାବ କି ତହିଁ ତ୍ରିବେଣୀ ଖ୍ୟାତ । ୪ ।

---

ପୃଥିବୀ, ତାପ—କଷ୍ଟ, ନାଶି—ନାଶକରି, ଶ୍ରୀ—ଲକ୍ଷ୍ମୀ, ନିଳୟ—ଘର, ଦ୍ୱିଜରାଜ—ବ୍ରାହ୍ମଣ, ଶ୍ରେଷ୍ଠ—ବ୍ରହ୍ମଜ୍ଞାନୀ, ଜନକ—ଜନକଋଷି, ବର୍ଣ୍ଣ ଉଦ୍ଭବ—ବର୍ଣ୍ଣ ପବନ ।

ଯାହାର ନାଗ ଭୂଷଣ କି ନାଗ ଉପରେ ଶୟନ, ବୃଷ ଧନୁ ମକର ପ୍ରଭୃତି ଅଷ୍ଟାଦଶ ଚିହ୍ନ ଯାହା ଦେହରେ ଅଛି, ପୁଣି ଯେ ସଂସାରର ଦୁଃଖ ବିନାଶକାରୀ ଓ ଲକ୍ଷ୍ମୀଙ୍କ ପୁରରେ ବାସ କରନ୍ତି ସେହି ବ୍ରହ୍ମଙ୍କ କି ନର-ମାନଙ୍କର ପୂଜ୍ୟ ଓ ବର୍ଣ୍ଣ ପବନକାରୀ ଏ ଗ୍ରନ୍ଥ ଉପେନ୍ଦ୍ର ଭଞ୍ଜ କରିଛନ୍ତି ।

---

## ଷଷ୍ଠ ଛାନ୍ଦ

୧ । ନୃପସୁତା—ରାଜକନ୍ୟା, ସୁକେଶୀ—ଉତ୍ତମ ବାଳଯୁକ୍ତା, ବକୁଳ—ବଉଳ, ପିଠ—ଚଉତରା ।

୨ । ସରସୀ—ପୋଖରୀ, ଶୋଭିତ—ସୁନ୍ଦର, ତଟ—ପାଣିକୂଳ, ଘଟଣ—ସୌନ୍ଦର୍ଯ୍ୟ, ବିଦ୍ରୁମ—ପୋହଳା, ଗଛବିଶେଷ, ବିମ୍ବିତ—ପ୍ରକାଶିତ ।

୩ । ହଂସାବଳୀ—ହଂସସବୁ, ରଙ୍ଗଧଡ଼ୀ—ଲାଲଧଡ଼ୀ,ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ ।

୪ । ପାବଚ୍ଛ—ପାହାଚ, ସ୍ୱଚ୍ଛ—ପରିଷ୍କାର, ନୀର—ଜଳ, ତୀର—କୂଳ । ପ୍ରତୀତ—ଦେଖାଯିବା, ସୁବେଣୀ—ଲବଣ୍ୟବତୀ, ପରଶ—ଛୁଇଁବା, ଭାବ—ମନେକରି, ତ୍ରିବେଣୀ—ଗଙ୍ଗା ଯମୁନା ଓ ସରସ୍ୱତୀ ସଙ୍ଗମସ୍ଥାନ ।



“କବ ବସୁବଲ ବଣିକ ହେଲା ତୁମ୍ଭି ବୁଡ଼ଲା,
ନ ବୁଡ଼ି ଘଇଲ ସଲିଲ ଉପରରେ ରହିଲା ।”

ଦୀପଦଣ୍ଡୀ ଲଭି ମରାଳପନ୍ତ ଦଏ ଭଙ୍ଗୀ ।
ବଡ଼ ବଡ଼ଭୀଙ୍କ ବେଢ଼ିକି ଶୋଭା ଚୁର୍ଣ୍ଣ ଚଙ୍ଗୀ । ୫ ।
ଜଳ ଜମ୍ବାଳ ଅବିଳରେ ଜନମନ ହରୁଛି ।
ଜଳ ନିର୍ମଳରେ ଅଦର ଅଦରଶୁଁ ସାରୁଛି । ୬ ।
ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି ।
ନର୍ତ୍ତକୀଠାବରୁ ଭଙ୍ଗୀ ଶିକ୍ଷା ପରି ଏହାରି । ୭ ।
ଅମୃତ ସଙ୍ଗତେ ହୋଇଛି ମିତ ମଧୁର ଗୁଣେ ।
ବିଧୁର ସ୍ନେହକୁ ବିଧୁର କରେ ଶୀତଳ ପଣେ । ୮ ।
କାମ ସରାଳୀରେ ପ୍ରକାଶମାନ ସୁଖଦାନରେ ।
କୁମୁଦରେ ଯେଣୁ ବିଦିତ ତେଣୁ ହରପ୍ରକାରେ । ୯ ।
ସରଶୋଭା ଦେଖି ଦେଖି ସେ ସରେ ମର୍ଦ୍ଦନ ବିଧି ।
ବକ୍ଷପ୍ରମାଣ ଜଳେ ଯାଇଁ ବିଜେ ଲାବଣ୍ୟନିଧି । ୧୦ ।
କଚ ବିଗୁରଲ ବିଚିତ୍ର ହେଲି ତୁମ୍ବୀ ବୁଡ଼ିଲି ।
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲି ।୧୧।
କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ।
ବିଷମ ସମସ୍ୟା ପୂରଣ ହେଲି ଏହି ଠାବରେ ।୧୨।
ଅପୂର୍ବ ଅମ୍ବୁଜ ମୁଖକୁ ଗୃହିଁ ଭୃଙ୍ଗ ଚମତ୍କାର ।
ଚୁମ୍ବିବା ଲୋଭରେ ଧାଇଁଲେ ଶୁଣ୍ଡ ଗୃହିଁ କାତର ।୧୩।

---

୫ । ମରାଳ—ହଂସ, ପନ୍ତ—ସମୂହ, ବଡ଼ଭୀ—କୋଠା, ଚୁର୍ଣ୍ଣଚଙ୍ଗୀ—ଅଳ୍ପଲିପ୍ତ ଶ୍ରେଷ୍ଠ ବେଶ, ଚୂନଲିପା ।

୬ । ଜମ୍ବାଳ—ପଙ୍କ, ଅବିଳ—ଗୋଳିଅ, ଅଦରଶୁଁ—ଦର୍ପଣରୁ ।

୭ । ଗମ୍ଭୀର—ଶାନ୍ତ, ନର୍ତ୍ତକୀ—ନାଚବାଲି ।

୮ । ବିଧୁ—ଚନ୍ଦ୍ର, ବିଧୁର—ତୁଚ୍ଛ ।

୯ । କାମ—କନ୍ଦର୍ପ, ସରାଳି—ପକ୍ଷୀ, କୁମୁଦ—କଇଁ, ବିଦିତ—ପ୍ରକାଶିତ । ହର—ବସ୍ତୁ ।

୧୦ । ସରଶୋଭା—ପୋଖରୀ ସୁନ୍ଦର ପଣ, ବକ୍ଷପ୍ରମାଣ—ଛାତିପର୍ଯ୍ୟନ୍ତ ।

୧୧ । ବିଚିତ୍ର—ଆଶ୍ଚର୍ଯ୍ୟ, ତୁମ୍ବୀ—ଲାଉ (କୁଚ), ଶଇଳ—ପର୍ବତ, ପଥର, ଏଠାରେ ଶଇଳ କୁଚ, ସଲିଳ—ଜଳ ।

୧୨ । ଜୀବରେ—ପ୍ରାଣରେ, ବିଷମ—ଆଶ୍ଚର୍ଯ୍ୟ, ସମସ୍ୟା—ପ୍ରସଙ୍ଗ ।

୧୩ । ଅପୂର୍ବ—ସୁନ୍ଦର, ଅମ୍ବୁଜ—ପଦ୍ମ, ଭୃଙ୍ଗ—ଭଅଁର, ଶୁଣ୍ଡ—ଦଣ୍ଡ ।

କେଣ ଦରଶନେ ରଥାଙ୍ଗ ଧାଇଁ ଅହାରବଶେ ।
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ ।୧୪।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳଲଞ୍ଛି ଅନାଇଁ ଦେଇ ।
ଗମ୍ଭୀରଜଳରେ ପଶିଲେ ମୀନ ଭୟକୁ ପାଇ ।୧୫।
ଭୃରୁ ନୟନ ଆନନକୁ ଗୃହି ଖଞ୍ଜନମାନେ ।
କୁରଙ୍ଗ ହେ ଅମ୍ଭେ ମଲୁଇଁ ବୋଲି ଡାକିଲେ ସ୍ୱନେ ।୧୬।
ଶମ୍ବରଆନନୀ ସମ୍ବରେ ସେହିକାଳେ ପଶିଲେ ।
ହାସ ପରିହାସ ସରସ-ଉକ୍ତିମାନ ଭାଷିଲେ ।୧୭।
ଦେଖ ରେ ନଳିନୀ ନଳିନୀ ନଳିନୀରେ ପୂରିତ ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।୧୮।
ଵି-ବ୍ରଜ ବିରାଜ ଅଛନ୍ତି ମୀନ ଭକ୍ଷଣ ପାଇଁ ।
ରାଜୀବ ରାଜୀବନୟନା ଏଥି ଶୋଭା କରଇ ।୧୯।
ସଲିଳେ ଉଡ଼ୁପ ଦେଖରେ ହୋଇଅଛି ଶୋଭନ ।
ସଲୀଳେ ଉଡ଼ୁପବଦନୀ ଖେଳିବାକୁ ମୋ ମନ ।୨୦।
ନବୀନଜୀମୂତ ଜୀମୂତସ୍ତନୀ କି ଏ ଉଦିତ ।
ଏ ନୀଳକମଳ କମଳବନ୍ଧୁ ବହି ଦିଶନ୍ତି ।୨୧।

---

୧୪ । ରଥାଙ୍ଗ—ଚକ୍ରବାକ, ଅହାର—ଖାଦ୍ୟ, ବିଚ୍ଛେଦ—ପୃଥକ୍ ।

୧୫ । ନୟନ—ଚକ୍ଷୁ, ଉଜ୍ଜ୍ୱଳ—ଦୀପ୍ତିମାନ, କଜ୍ଜ୍ୱଳଲଞ୍ଛି—ଅଖିରିକଳାଗାର ।

୧୬ । ଆନନ—ମୁହଁ, ସ୍ୱନ—ଶବ୍ଦ,

୧୭ । ଶମ୍ବରଆନନୀ—ପଦ୍ମମୁଖୀ, ଶମ୍ବରେ—ପାଣିରେ, ପରିହାସ—ଥଟ୍ଟା, ଉକ୍ତି—କଥା ।

୧୮ । ନଳିନୀ—ସୁନ୍ଦରୀ ସ୍ତ୍ରୀ, ନଳିନୀ—ପୋଖରୀ, ନଳିନୀରେ-ପଦ୍ମରେ, ଭ୍ରମରେ—ଭ୍ରମରେ, ଭ୍ରମରେ—ଭଅଁରମାନେ, ଭ୍ରମରେ-ଭଉଁରୀରେ ଶୋଭିତ—ସୁନ୍ଦର ।

୧୯ । ଵି—ପକ୍ଷୀ, ବ୍ରଜ—ସମୂହ, ମୀନ—ମାଛ, ରାଜୀବ ନୟନା—ପଦ୍ମଲୋଚନା ।

୨୦ । ସଲିଳେ—ଜଳରେ, ଉଡ଼ୁପ—ଡଙ୍ଗା, ସଲୀଳେ—ଲୀଳାସହକାରେ । ଉଡ଼ୁପବଦନୀ—ଚନ୍ଦ୍ରବଦନୀ ।

୨୧ । ନବୀନ-ନୂଆ, ଜୀମୂତ-ମେଘ, ପର୍ବତ, ଉଦିତ-ପ୍ରକାଶିତ ନୀଳକମଳ—ନୀଳପଦ୍ମ, କମଳ—ଜଳ ।

ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନ ।
ଜୀବନବନ୍ଧୁ ଏ କଷ୍ଟସ୍ଥ ପ୍ରାଣୀଙ୍କର ଜୀବନ ।୨୨।
ଅହିମକର ତାପ ନାଶେ ଶୋଭ୍ରି ସାରସଚକେ ।
ଅହି ମକର ତାପନାଶେ ଶୋଭ୍ରି ସାରସ ଚକେ ।୨୩।
ବଣ ପ୍ରକାଶିବ ସୁମନ-ସର ସୁମନସବ ।
ମହୀକି ଅଣିଲ ସୁମନ-ସର ସୁମନସର ।୨୪।
ମନ୍ତ୍ରୀଙ୍କା ପୁଚ୍ଛିଲ କେମାନ୍ତୁ ଗୃହବର୍ଣ୍ଣେ ଏସନେ ।
ଏକାକ୍ଷରେ ଖ୍ୟାତ ଧରଣୀ (୧) କରଭୂଷା ଦ୍ୱିବର୍ଣ୍ଣେ (୨) ।୨୫।
ବୟସ ନାମ ଖ୍ୟାତ (୩) ମୁକ୍ତ ଯାହା କରେ (୪) ସେ ହେବ ।
ପ୍ରାକର୍ମ ଦ୍ୱିବର୍ଣ୍ଣେ (୫) ବଲ୍ଲେମେ ସ୍ୱୟମ୍ବର (୬) ହେବ ।୨୬।
ନ୍ୟସ୍ତେ ବସନ୍ତାଦ ଫୁଲେଇ (୭) ତହିଁ ତୃତୀର ନାମ (୮) ।
ସମସ୍ତ ପଢ଼ିଲେ ହୋଇବ ଜଳେ ଥିଲ କୁସୁମ (୯) ।୨୭।
ଚତୁର୍ଥ ତୁରଙ୍ଗେ ଜାଣିଲ ହସି କହିଲ ତହିଁ ।
ହଂସ-କରବର (୧୦) ପର୍ଯ୍ୟନ୍ତେ ମୋତେ ପରନ୍ତେ ହୋଇ ।୨୮।
'ଫଳ' ବେଦବର୍ଣ୍ଣ ପ୍ରାନ୍ତରେ ଦେଲେ ମୁକୁତା ନାମା (୧୧) ।
ଶୁଣି ଧନ୍ୟ ବୋଲି ପ୍ରଶଂସା କଲେ ସକଳ ବାମା ।୨୯।

---

୨୨ । ଭୁବନ-ଜଳ,ଭୁବନ-ଦେଶ, ଜୀବନବନ୍ଧୁ-ପ୍ରାଣବନ୍ଧୁ; ଜୀବନ—ଜଳ

୨୩ । ଅହିମକର—ସୂର୍ଯ୍ୟ, ତାପ—ତେଜ, ସାରସଚକ୍ର-ହଂସସମୂହ, ଅହି-ସର୍ପ, ମକର—ମଗର, ସାରସଚକ୍ର—ପଦ୍ମସମୂହ ।

୨୪ । ବଣ—ବଣ୍ୟତା, ସୁମନସର—ସ୍ୱର୍ଗଲୋକ, ଦେବତା, ସୁମନସର—ଅନନ୍ଦ, ମହୀ—ପୃଥିବୀ । ସୁମନ—ପୁଷ୍ପ । ସର—ସମୂହ ପୋଖରୀ । ସୁମନଶର—କନ୍ଦର୍ପବାଣ ।

୨୫ ଠାରୁ ୨୯ । ମନ୍ତ୍ରୀଙ୍କା—ମନ୍ତ୍ରୀଝିଅ । ୧—ଧରଣୀ-ଭୂ । ୨—କରଭୂଷା—ହାତଅଳଙ୍କାର ବଳୟ । ୩—ବୟସ ନାମ—ବୟ ।୪-ମୁକ୍ତ ଯାହା କରେ—ଲୟ । ୫ - ପ୍ରାକର୍ମ—ବଳ । ୬-ବଲ୍ଲେମେ-ସ୍ୱୟମ୍ବର—ଲବ, ୭—ବସନ୍ତାଦପୂର୍ବେ—ବକୁଳ । ତୃତୀରନାମ——କୁଳ । ୯—ଜଳେଥିଲ କୁସୁମ—ପଦ୍ମ । ହଂସ କରିବର-କୁବଳୟ । ୧୧—ମୁକ୍ତା—ମୁକୁତା, ବାମା—ସ୍ତ୍ରୀ ।

ଏ ବଧୂରେ ଭ୍ରଷି ଭ୍ରବତୀ କଲ କ୍ଷେପଣ ଭର ।
ଦେଖିବା ନ ଥିଲ ଚଞ୍ଚଳ ବରଷିବାର ବାର ।୩୦ ।
ଜତ୍ପ୍ଳନ ପ୍ଲବନେ ଭରଜମାନେ କି ମନୋହର ।
ନଳଦୀକ୍ଷା ପାଇ ନାୟକ ଭେଳା କଲେ ଭୂଧର ।୩୧ ।
ଅଜ କି କୁସୁମନାୟକ ରଜ ବହିବ ଲୀଳା ।
କରୁଛୁ ତେମନ୍ତ ଶୋଭାକୁ ପୁଣି ବହିଲେ ବାଳା ।୩୨ ।
ବୃଦ୍ଧ କେ ତାହାର ଚରଣ ଧରୁଁ ସେ ଜାଣି ଭ୍ରଷି ।
ଗଡରେ ଗଜ ଅଛୁ ବୋଲି ମୋତେ କୂର୍ମୀର ଗ୍ରାସି ।୩୩ ।
ନାୟୀ ବାର ବାର ବୋହିଲେ ତହିଁ ଘଞ୍ଜଏ ଯାଏ ।
ହାସ କୁମୁଦ ନେତ୍ର ମୀନ, ମୁଖ କମଳ ପ୍ରାୟେ ।୩୪।
କଘନ ପୁଲିନ, ଉରଜ ଚକ୍ରବାକ ମିଥୁନ ।
ରୋମାବଳୀ ଅଳିଅବଳୀ, ଗତି ହଂସ ସମାନ ।୩୫।
ଉଦର କମଳ ପଲ୍ଲବ, ନାଭି ଜଳଭଉଁରି ।
କରକୋକନଦ, ସୁବାହୁ ଯହିଁ ମୃଣାଳ ସରି ।୩୬।
ବାଳୀ ଜଳେ ମିଳି କରନ୍ତ କେଳି ଏ ହୋଏ ଜଣା ।
ସଖୀ ସଙ୍ଗେ ମିଶି କ୍ରୀଡ଼ଇ ଯହିଁ ଚଞ୍ଚଳେକ୍ଷଣା ।୩୭।
ତାହିଁକ ଏମନ୍ତେ ବୋଇଲେ ବୋଲି କେ ବା ବୋଲିବ ।
ସୁଲକ୍ଷଣାକୁ ଏ ଲକ୍ଷଣା କାହୁଁ ସମାନ ହେବ ।୩୮ ।

---

୩୦ । ବଧୂ—କାସୁମ । ଭ୍ରବତୀ—ନଥା । ବାର—ଜଳ । କ୍ଷେପଣ—ଫୋପାଡ଼ିବା । ବରଷିବାର—ପଡ଼ିବାର ।

୩୧ । ଜତ୍ପ୍ଳନ—ଡିଆଁହୋଇ । ପ୍ଲାବନେ-ପହଁରିବାରେ । ଉରଜ-କୁଚ ।
ନଳ ଦୀକ୍ଷା—ରାମ ସେନାପତି ନଳର ସ୍ୱଭାବ । ଭୂଧର-ପର୍ବତ ।
ଭେଳା—ଡଙ୍ଗା ।

୩୨ । କୁସୁମ ନାୟକ—କନ୍ଦର୍ପ ଧନୁ । ରଜ—ରଜା, କନ୍ଦର୍ପ । ବହିବ ବୋଇତ, ଲୀଳା—ଖେଳା ।

୩୩ ଠାରୁ ୩୬ । ଚକ୍ରବାକମିଥୁନ-ଚକୁଆ ଚକୋଇଦୁଇ ।
ରୋମାବଳୀ—ଲୋମସବୁ, ଅଳିଅବଳୀ—ଷଟ୍ପଦମାନେ, ଉଦର—
ପେଟ, କର—ହାତ, କୋକନଦ—ରକ୍ତପଦ୍ମ, ମୃଣାଳ—ପଦ୍ମନାଡ଼ ।

୩୭ । ଚଞ୍ଚଳେକ୍ଷଣା (ଚଞ୍ଚଳ+ଈକ୍ଷଣା)—ଶୀଘ୍ର ଦୃଷ୍ଟି ପକାଇବା ।
୩୮ । ଲକ୍ଷଣା—ଉପମା, ବର୍ଣ୍ଣନା ।

ସ୍ନାନ ଅବଶେଷେ କୂଳକୁ କୁଳପାଳିକା ଆସି ।
ଗଜର ଅଙ୍ଗରେ ଜଡ଼ି ସେ ଶାଢ଼ୀ ଏମନ୍ତ ଦିଶି । ୩୯ ।
ସ୍ଫଟିକବାଡ଼ ଫୁଟି ଦିଶେ କି ସେ ହେମ ପିତୁଳା ।
ସ୍ତନସଂପୁଟେ କି ବାରଣଦନ୍ତ ପିଧାନ କଲା । ୪୦ ।
ଅତି ତରଳର ନୀରରେ ଯହୁଁ ଏମନ୍ତ ଭାବ ।
ସେ ଚନ୍ଦ୍ରଶିଳଶଇଳ କି ହାସଚନ୍ଦ୍ରରେ ଦ୍ରବ । ୪୧ ।
ବିନ୍ଦୁ ବିନ୍ଦୁ ଜଳ ବହୁଛି ଚାରୁ କୁଟିଳବାଳେ ।
ତୁଷାର ବୃଷ୍ଟି କି ହୋଇଛି ନବତମାଳଦଳେ । ୪୨ ।
ନବଘନେ କିବା ଉଇଁଛି ତାର ତାରକାଶ୍ରେଣୀ ।
ମୋତପତନ କି ହୋଇଛି ନୀଳମଣି ଧରଣୀ । ୪୩ ।
ଅଙ୍ଗ ଅଙ୍ଗନାର ପୋଛିଲେ ସଖୀମାନେ ସତ୍ୱରେ ।
କେଶ ପୋଛିଦେଇ ଗଣ୍ଠି କି ଦେଲେ ଅଗ୍ର ଭାଗରେ । ୪୪ ।
ଜଡ଼ିଦେଲେ ପୀତାମ୍ବରକୁ ଉରୁସନ୍ଧିକି ରୁନ୍ଧି ।
ପିନ୍ଧି ନିତମ୍ବିନୀ ନିବିଡ଼େ ନୀବିବନ୍ଧକୁ ବାନ୍ଧି । ୪୫ ।
ତୋରା ହୋଇଲା ଗୋରାଦେହ ଅଲିଙ୍ଗନକୁ ପାଇ ।
ଧଡ଼ି ନ ଥିଲେ ଶାଢ଼ୀ ଥିଲା ପରି ଦିଶନ୍ତା ନାହିଁ । ୪୬ ।

---

୩୯ । ଅବଶେଷେ—ଶେଷରେ । କୁଳପାଳିକା—କୁଳ ସ୍ତ୍ରୀ,ସତୀ ସ୍ତ୍ରୀ, ଗଜର—ଗୋରା, ଅଙ୍ଗ—ଦେହ ।

୪୦ । ହେମପିତୁଳା—ସୁନାରୂପ, ସ୍ତନସଂପୁଟେ—ଉଭୟ କୁଚ ମିଳନ ସନ୍ଧି ।

୪୧ । ନୀରରେ—ପାଣିରେ, ଭାବ—ଚନ୍ଦ୍ରାକର, ଚନ୍ଦ୍ରଶିଳ—ଚନ୍ଦ୍ରକାନ୍ତମଣି, ଶଇଳ—ପର୍ବତ, ହାସଚନ୍ଦ୍ର—ହସରୂପକ ଚନ୍ଦ୍ର, ଦ୍ରବ-ତରଳିଯାଇ ।

୪୨ । ଚାରୁ—ସୁନ୍ଦର, କୁଟିଳ—କୁଞ୍ଚ,କୁଞ୍ଚିଆ, ତୁଷାର—କାକର,ନବ—ନୂଆ, ତମାଳ-ସତ୍ୟାମ୍ବା, ଦଳେ—ପତ୍ରରେ ।

୪୩ । ନବଘନ—ମେଘ, ତାର—ଉଜ୍ଜ୍ୱଳ, ତାରକାଶ୍ରେଣୀ—ତାରା ସବୁ, ପତନ—ଝଡ଼ିବା, ନୀଳମଣି ଧରଣୀ—ନୀଳମଣି ରୂପକ ପୃଥିବୀ ।

୪୪ । ଅଙ୍ଗ—ଦେହ, ଅଙ୍ଗନା—ସ୍ତ୍ରୀ, ସତ୍ୱରେ—ଶୀଘ୍ରରେ ।

୪୫ । ଜଡ଼ିଦେଲେ—ଘୋଡ଼ାଇଲେ, ପୀତାମ୍ବର—ହଳଦିଆ ପାଟଲୁଗା, ଉରୁସନ୍ଧିକି—ଜଙ୍ଘ ଭିତରକୁ,ରୁନ୍ଧି—ଭିଡ଼ି,ନିତମ୍ବିନୀ-ଉତ୍ତମ ପିଚୁଯୁକ୍ତ ସ୍ତ୍ରୀ । ନିବିଡ଼େ—ଗାଢ଼ଭାବରେ, ନୀବିବନ୍ଧ—ଲୁଗାର ଖୋସଣୀ ।

୪୬ । ତୋରା—ତେଜୋବନ୍ତ, ଅତିସୁନ୍ଦର ।

ଜଣାଇଲେ ଏବେ ମନ୍ଦରେ ମିବା ଅସ୍ତ ଧନେଶ ।
ଜଗତମୋହନୀ ଜଗତୀପରେ ହେବୁ ସୁବେଶ । ୪୭ ।
ଶୁଣିକର କରପଲ୍ଲବ ଦେଇ ବାଳେ ସୁଦଶ୍ରୀ ।
ଭାମଭଲାକୁ ସେ ଅକ୍ଷେପି ସଜନୀକି ପଗ୍ଭର । ୪୮ ।
ହର କରେ କସ ଶୋଭିତ (୧) ଘନେ କେ ହୋଏ ଭିନ୍ନ (୨)
ଭାମେ କାମୁକ କ କରନ୍ତ (୩) ଭ୍ରମ କାହିଁ ଶୋଭନ (୪) । ୪୯ ।
କେ ବରଙ୍ଗ-ଗ୍ରୀବ (୫) ସଂସାରକରତା କେ (୬) ଅଟଇ ।
ନୃପତ ଅଗରେ କ ବୋଲି ପ୍ରତିହାରୀ ଡାକଇ । (୭) । ୫୦ ।
କ ଶୋଭା କରେ ଚନ୍ଦ୍ର କରେ (୮) ତାର କାହିଁ ଉଦିତ (୯) ।
ବାସ୍ତୁର ସର୍ବଦା ମଣ୍ଡନ କ କ (୧୦) କହ ତ୍ୱରିତ । ୫୧ ।
ସେ କହେ କମଳ (୧) ରଥାଙ୍ଗ(୨)ଦର(୩)ଗଦା(୪)ନନ୍ଦକ (୫)
ମଣି(୬) ମା(୭) ହରିତଅମ୍ବର (୮)ବୋଲି ହୋଏ ବିବେକ ।୫୨।
ଶ୍ରବଣେ ପ୍ରଶଂସା ସଂସାରସାର-ରମଣୀ କଲା ।
ସଦନେ ପ୍ରବେଶ ହୋଇ ସେ ପୁଣି ସୁବେଶ ହେଲା । ୫୩ ।
ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ ।
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗହିଁ ବ୍ୟକ୍ତ । ୫୪ ।
ଛବିଧି ଯମକ ରୂପକ ଅଣଯୁରେ ଦୀପକ ।
ବହିର୍ଲିପି ଅନ୍ତର୍ଲିପିକା ଯେଣୁ କର୍ଣ୍ଣରୋଚକ । ୫୫ ।

---

୪୭ । ମନ୍ଦରେ—ଘରକୁ, ଧନେଶ—ସୂର୍ଯ୍ୟ, ଜଗତୀ—କୋଠାଘରର ଛାତ ।
୪୮ । ଅକ୍ଷେପି—ଅନାଇ ।
୪୯ । ୫୦ । ୫୧ । (୧) ପଦ୍ମ (୨)ଚକ୍ରୁଅଚକୋଣ(୩) ଶୃଙ୍ଗାର(୪) ଗଦା (୫) ନନ୍ଦ (୬) ବ୍ରହ୍ମା (୭) ମଣିମା (୮) ଦଗ (୯) ଆକାଶ (୧୦) ତୁଳସୀ । ସଂସାରକର୍ତ୍ତା—ଜଗତକର୍ତ୍ତା, ନୃପତ—ରାଜା, ପ୍ରତିହାରୀ—ପଡ଼ିହାରୀ, ଚନ୍ଦ୍ରକରେ—ଚନ୍ଦ୍ର କରନ୍ତେ, ଉଦିତ—ପ୍ରକାଶିତ ।
୫୨ । (୧) କମଳ—ପଦ୍ମ (୨) ରଥାଙ୍ଗ—ଚକ୍ର (୩) ଦର—ଶଙ୍ଖ (୪) ଗଦା-କୌମୋଦକୀ (୫) ନନ୍ଦକ—ଖଡ୍ଗ (୬) ମଣି—କୌସ୍ତୁଭ (୭) ମା—ଲକ୍ଷ୍ମୀ (୮) ହରିତ ଅମ୍ବର—ହଳଦିଆ ପାଟଲୁଗା ।
୫୩ । ସଦନେ—ଘରେ ।
୫୪ । ବ୍ୟକ୍ତରୋଚକ—କାନର ତୃପ୍ତିଦାୟକ ।

ବଳି-ଛଳି ରାମ-ବାମନମୂର୍ତ୍ତି ମନରେ ଧ୍ୟାୟି ।
ଉପେନ୍ଦ୍ର ବୀରବର ଯେ ଏହୁ ରସ କହଇ । ୫୭ ।

## ସପ୍ତମ ଛାନ୍ଦ

( ବାଜକର ସିଂହଳକୁ ଯାଇ ଇନ୍ଦ୍ରଜାଲ ବିଦ୍ୟା ଦେଖାଇବା )

ରାମ—ଭୂପାଳ

ଏଥୁଅନ୍ତେ ଶୁଣ ଜନେ ମନଦେଇ । ମନୋହର ବସନ୍ତ ଋତୁକୁ ଚାହିଁ । ୧ ।
ବିଜେ ଅଗ୍ରମେ କର୍ଣ୍ଣାଟରାଜ-ସୁତ । ସମୀପରେ ବସିଛନ୍ତି ଚତୁର ମିତ । ୨ ।
ସାବଧାନ ମଣିମା ଖୁଣ୍ଟିଆ ଡାକେ । ସେବା ନିପୁଣ ତହିଁ ଗଣିକା ଲୋକେ ।୩।
ଯଶ ବର୍ଣ୍ଣନା କରନ୍ତି ଭାଟେ ଶ୍ଳେଷେ । ଏକପଦରେ ଗୀତ କବିତ୍ୱ ବସେ ।୪।
ଚନ୍ଦ୍ର ସେହୁ ଭୂପ ପର ବୀର ଦାନୀ । କୀର୍ତ୍ତି ନିଷ୍ଠେ ତାର ହାର ଧୀରମାନୀ ।୫।
ଯାନ ଜବ ଦେଖି ପର ଦର୍ପ ହାନେ । ପାଏ ସୁଖଭାବନୀୟ ତନ୍ନଦନେ ।୬।
ଭେଟେ କବି ଗୀତକର ନିବନ୍ଧରେ । ପ୍ରାନ୍ତୟମକ ଶୃଙ୍ଖଳା ଗୋମୂତ୍ରରେ ।୭।
ଦ ର ଚ ଯୁ ହ ର ଧୀ ର ପ୍ର ଶଂ ସା ର ।
ସା ର ଅ ଯୁ କ ର କ ର ଏ ଙ୍ଗ ସା ର ।୮।
ସା ର ସା ର ସ ତ ଗ ଛ ହେ ଳୁ ମା ର ।
ମା ର ପ ର ଣ ତ ଅ ଛ ସୁ କୁ ମା ର ।୯।
ହଟ ଦେଖାଉଅଛନ୍ତି ନଟ ତହିଁ । ଚଢ଼ି ବଂଶଶଳାକାରେ ଢୋଲ ବାଇ ।୧୦।

୫୭ । ବଳି—ଅସୁର ରାଜ, ଛଳି-କପଟକରି, ଭଗବାନ ବାମନ ହୋଇ ବଳିକୁ ପାତାଳେ ଚାପିଥିଲେ ।
ଲାବଣ୍ୟବତୀ ସଖିମାନଙ୍କ ସଙ୍ଗରେ ନେଇ ବନରେ କ୍ରୀଡ଼ା କରି ପୋଖରୀରେ ସ୍ନାନକରି ନାନାପ୍ରକାର ହାସପରିହାସ ହୋଇ ଦର୍ଶନ ସୂର୍ଯ୍ୟ ଅସ୍ତ ବେଳକୁ ଘରକୁ ଆସି ବେଶ ହେଲା ।

## ସପ୍ତମ ଛାନ୍ଦ

୨ । ଅଗ୍ରମେ—ଚଉକାରେ, ବିଜେ—ବସି, ସମୀପରେ—ପାଖରେ ।
୪ । ଶ୍ଳେଷ—ଗୀତଛନ୍ଦରେ, ଦ୍ୱିଅର୍ଥକ ।
୫ । ଦାନୀ—ଦାନଶୀଳ, କୀର୍ତ୍ତି—ଯଶ,ଧୀର—ବିନୟ,ମାନୀ—ଅଭିମାନୀ ।
୬ । ଦର୍ପହାନେ—କ୍ଷମତାନାଶରେ,ସୁଖଭାବନୀୟ—ଉତ୍ତମ ମନମତ କଥା
୧୦ । ନଟ—ଚେଲା,ବଂଶଶଳାକା—ବାଉଁଶସ୍ତମ୍ଭ ବା ଶୂଳ,ବାଇ—ବଜାଇ

ନାଟ କରୁଅଛନ୍ତି ଗଣିକା ଅଳୀ । ଗୀତ ଗାଉଅଛନ୍ତି ଗୁଣିକେ ମିଳି । ୧୧ ।
ଗଜ ଅଶ୍ୱ ରତନ ବସନ ମାନ । ମୂଲ୍ୟ କରୁଅଛନ୍ତି ଜ୍ଞାନଶୀଳ ଜନ । ୧୨ ।
ସଂଗ୍ରାମ ନେ ଗତ ଯୁଦ୍ଧକଥା ଭାଷି । କରୁଛନ୍ତି ସାଧନ ପଦାତି ଅସି । ୧୩ ।
ବସନ୍ତଙ୍କ ମୁଖ ଗୃହି ପରିହାସେ । ଏହି ସମୟରେ ଗୁଣନିଧି ଭାଷେ । ୧୪ ।
ତୁମ୍ଭ କନ୍ୟା ଲାଭ ହେଲା ଦ୍ୱୀପାନ୍ତରେ । କିଛି ଅପୂର୍ବ ପଦାର୍ଥ ଏ ଉତ୍ତାରେ ॥
ଯୁବରାଜ ସ୍ଥମ୍ଭରେ ନ କଲ ଭେଟି । ଶୁଣି ସଲଜ୍ଜ ହୋଇ ସେ ବେଗେ ଉଠି ॥
ନିଜ ରମଣୀ ପାଶରୁ ନେଇ କୀର । ଦେଲା ପଢ଼ା ଶୁଣି ସର୍ବେ ତୋଷଭର ।୧୭।
ଏହିକାଳେ ଜଣାଇଲା ବେତ୍ରଧର । ଅସି ବୋଇତଅଳେକ ଅଛି ଦ୍ୱାର ॥
ବୋଲେ ସିଂହଳଦ୍ୱୀପୁଁ ଅସିଛି ମୁହିଁ । ଇଚ୍ଛା ମୋର ଯୁବରାଜ ଭେଟ ପାଇଁ ।୧୯।
ଶୁଣି ନୃପସୁତ କଲା ସୀକାର । ଅଣି ସ୍ଥମ୍ଭରେ ଭେଟାଇ ପ୍ରତିହାର । ୨୦ ।
ଶିରେ କର ଦେଇ ଭେଟି ଏତେ ଦ୍ରବ୍ୟ । ଦେଲା ପ୍ରମୋଦଚିତ୍ତରେ ସେ ସାଧବ
ମେଷଚକ୍ଷୁ ନୀଳା ବୃହତ୍ତକାନ୍ତ ହୀରା । ତାର ମୁକୁତା କୁକ୍କୁଟଡିମ୍ବ ପରା । ୨୨ ।
ଅଛି ସୁମାଣିକ୍ୟ ପଦ୍ମରାଗ ଜାତି । ଅଷ୍ଟବକ୍ର ପ୍ରବାଳହିଁ ପନ୍ତି ପନ୍ତି । ୨୩ ।
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ର ମଣି । ଲକ୍ଷ୍ମୀ ନାରାୟଣ ଶିଳା ନୋହେ ଗଣି ॥

---

୧୧ । ଗଣିକା ବେଶ୍ୟା, ଅଳୀ—ସ୍ତ୍ରୀ ଗୁଣିକେ—ବିଦ୍ୱାନମାନେ ।
୧୨ । ଗଜ—ହାତୀ, ଅଶ୍ୱ—ଘୋଡ଼ା, ବସନ—ଲୁଗା ।
୧୩ । ପଦାତି—ପାଇକ, ସାଧନ—ଯୁଦ୍ଧବିଦ୍ୟା ଅଭ୍ୟାସ କରିବା ।
୧୪ । ପରିହାସେ—ଥଟ୍ଟାରେ, ଭାଷେ—କହେ ।
୧୫ । ଦ୍ୱୀପାନ୍ତର—ଅନ୍ୟ ଦ୍ୱୀପର ।
୧୬ । ସଲଜ୍ଜ—ଲଜ୍ଜିତ, ବେଗେ—ଶୀଘ୍ରେ ।
୧୭ । ନିଜ—ଅପଣାର, ରମଣୀ—ସ୍ତ୍ରୀ, କୀର—ଶୁଆ ।
୧୮ । ବୋଇତଅଳେକ—ସାଧୁଜନ, ବାର୍ତ୍ତାବହ—ଦୂତ ।
୧୯ । ଭେଟ—ସାକ୍ଷାତ ।
୨୦ । ପ୍ରମୋଦ ଚିତ୍ତ—ଖୁସିମନ, ସାଧବ—ସନ୍ଥ, ଉତ୍ତମଲୋକ ।
୨୨ । ମେଷଚକ୍ଷୁ—ମେଣ୍ଢାଆଖି, କୁକ୍କୁଟ ଡିମ୍ବ—କୁକୁଡ଼ା ଅଣ୍ଡା ।
୨୩ । ସୁମାଣିକ୍ୟ—ଉତ୍ତମ ମାଣିକ୍ୟ, ପ୍ରବାଳ—ପୋହଳା, ପନ୍ତି ପନ୍ତି—ପେନ୍ଥାପେନ୍ଥା, ଅଷ୍ଟବକ୍ର—ଅଠପ୍ରକାର ବଙ୍କା, ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଅଗ୍ନି, ଐଶାନ୍ୟ, ନୈର୍ଋତ ବାୟୁ, ଅଠ ଦଗକୁ ।
୨୪ । ଶିଳା—ପଥର, ଲକ୍ଷ୍ମୀ ନାରାୟଣ—ବିଷ୍ଣୁ ଓ ଲକ୍ଷ୍ମୀ ।

ଅଗ୍ରୁ ଚନ୍ଦନ ଅତର ଶ୍ରୀକର୍ପୂର । ଜଳ୍ପ ପାଟଳ ଚୂଆ ପମ୍ଭାରମ୍ଭାର । ୨୫ ।
ସମସ୍ତ ଜୁଅଦ ଜାହ୍ନବୀଜଳ । ମନୋହର ବଂଶପତ୍ରି ହରତାଳ । ୨୬ ।
ରୌପ୍ୟ ଉଚ୍ଛାକୁ ଫୁଲ ତୁଳରେ ଦେଇ । ଜମ୍ବୁନଦ ବିନା ଅନ ହେମ ନାହିଁ ॥
ମଣି ପଦରେ ମିହୃରମଣି ଲେଖି । ଦନ୍ତେ ଦନ୍ତିଦନ୍ତ ନଖେ ବ୍ୟାଘ୍ରନଖି ।୨୮।
ଚର୍ମ ଅସନରେ ସାର ବୋଲଦାର । ଚର୍ମ-ଅଡ଼େଣୀ ଖଡ଼୍‌ଗଚର୍ମ ବାର ।୨୯।
ଜନା ତରବାରି ବୁନ୍ଦ ଯମଦର । ଶଙ୍ଖ ଦକ୍ଷିଣାବର୍ତ୍ତିକ ଶୁଦ୍ଧତର । ୩୦ ।
ଏକମୁଖୀ ରୁଦ୍ରାକ୍ଷରେ ସୁଶୋଭନ । ଶୃଚ୍ଛ କନକମୃଗ ଚର୍ଣ୍ଣସମାନ । ୩୧ ।
ଶୁଭ୍ର କାଗଜ ଲହୁରଦେଶଜାତ । ବାମ କାଞ୍ଚନ ମାଳା ଅପରମିତ । ୩୨ ।
ସିନ୍ଧୁଜାତ ହୟ ଭାରବାହ ଖର । ବଜ୍ରଜାତ ଗଜ ପାଟଭଲ୍ଲ କୀର । ୩୩ ।
ନେପାଳଜା ମୃଷିକା ଶାଳଅ ଗୃଚ୍ଛ । ଲବଙ୍ଗର ଲତା ଜାତଫଳ ତରୁ ।୩୪।
ଚକୋରକ ଧନଞ୍ଜାତ ପାରାବତ । କଳପନ ଶୂନ୍ୟଖରି ସୁରଞ୍ଜିତ । ୩୫ ।

---

୨୫ । ପାଟଳ—ସରୁ, ପମ୍ଭାର—ସୁବାସ, ମ୍ଭାର—ପାଣି ।

୨୬ । ସମସ୍ତ ଜୁଅଦ—ଖନିଜଦ୍ରବ୍ୟ ବିଶେଷ, ଜାହ୍ନବୀ—ଗଙ୍ଗା, ମନୋହର—ସୁନ୍ଦର, ବଂଶପତ୍ରି—ବାଉଁଶ ପତ୍ରିଆ ।

୨୭ । ରୌପ୍ୟ—ରୁପା, ତୁଳରେ—ସମାନରେ, ଜମ୍ବୁନଦ—ଉତ୍କୃଷ୍ଟ ସୁନା, ପତ୍ରିସୁନା, ହେମ—ସୁନା ।

୨୮ । ମିହୃରମଣି—ସୂର୍ଯ୍ୟକାନ୍ତ ମଣି, ଦନ୍ତିଦନ୍ତ—ହାତୀଦାନ୍ତ ।

୨୯ । ଅସନ—ବସିବା ଜାଗା, ସାର—ପ୍ରଧାନ, ବୋଲଦାର—କୃଷ୍ଣାଜୀନ ମୃଗଚର୍ମ, ଚର୍ମ ଅଡ଼େଣୀ—ଢାଲ, ଖଡ଼୍‌ଗ—ଖଣ୍ଡା, ଚର୍ମ—ଚମ ।

୩୦ । ଯମଦର—ଯମଦାଢ଼, ଦକ୍ଷିଣାବର୍ତ୍ତିକ—ଦକ୍ଷିଣମୁହାଁ, ଶୁଦ୍ଧତର—ବିଶୁଦ୍ଧ, ପବିତ୍ର ।

୩୧ । ସୁଶୋଭନ-ସୁନ୍ଦର, ଶୃଚ୍ଛ-ସୁନ୍ଦର, କନକ ମୃଗ-ସୁବର୍ଣ୍ଣ ସଦୃଶ ମୃଗ ।

୩୨ । ଶୁଭ୍ର କାଗଜ—ଧଳା କାଗଜ ।

୩୩ । ସିନ୍ଧୁଜାତ—ସମୁଦ୍ର ଘୋଟକ ବା ସିନ୍ଧୁ ଦେଶର ଘୋଡ଼ା, ହୟ—ଘୋଡ଼ା, ଭାରବାହ-ଭାରୁଆ, ଖର-ଗଧ, ବଜ୍ରଜାତ-ଐରାବତଅଂଶ, ଗଜ—ହାତୀ, ପାଟଭଲ୍ଲ—ଚନ୍ଦନା, ମୁହଁର ଦୁଇ ପାଖରେ ଲାଲ ଚିହ୍ନଥାଏ, କୀର-ଶୁଆ ।

୩୪ । ଜାତଫଳ—ଜାଇଫଳ, ତରୁ—ଗଛ ।

୩୫ । ପାରାବତ—ପାରା, ସୁରଞ୍ଜିତ—ସୁନ୍ଦର ।

ଲୋହ ଚୁମ୍ବକ ପରଶୁଗ୍ରାବ ଯହିଁ । ଦାସୀନେବ ଗଜସ୍ୱବେଶରେ ଶୋହି ।୩୬।
ଶୃଙ୍ଗ କମାଣ ତୀର ଚାତକ ପନ । ଲଗିଛି ବଚନ ବଣ କରେ ନେନ ।୩୭।
ମାନଦରଶାୟୁକ ଉତ୍ତମଫର୍ସି । ଅଛି ରୋପଣ ବନବେ ଚନ ଛର ।୩୮।
ଦେଖି ଦ୍ରବ୍ୟ ପଦାର୍ଥ ସମ୍ମୋହନରେ । କରେ ସାଧୁକୁ ପ୍ରଶଂସା ସୁମନରେ ॥
ଏକ ଦେଶେ ଏ ନ ମିଳେ ବିଚାରିଲେ । କେଉଁ ଦେଶରୁ ଆଗତ ପଚାରିଲେ ॥
ସେ ବୋଇଲା ସିଂହଳ ଦ୍ୱୀପର ମୁହିଁ । ଏ ଦେଶକୁ ଆସିଛି ବାଣିଜ୍ୟ ପାଇଁ ।୪୧।
ଯେହୁ ଲାବଣ୍ୟବତୀ ସମ୍ଭବସ୍ଥାନ । ତହିଁ ଅପୂରୁବ କେଉଁ ଦ୍ରବ୍ୟମାନ ।୪୨।
ଲକ୍ଷ୍ମୀ ପରିପୂରିତ ସେ ସବୁକାଳେ । ଏବେ ଅଧିକ ରାଜକୁମାରୀ ବଳେ ।୪୩।
ହେଉ ନାହିଁ ଯେ ଭରସା ତାହାଙ୍କର । ଏହା କହିବାକୁ ଛନ୍ତି ଅନୁସର ।୪୪।
ହର ଉତ୍ସଙ୍ଗସଦନ ମୋର ଭ୍ରଷ୍ଟ । ନୋହୁ ତାକୁ ନ କହିବୁ ଏ ମୋ ପୃଷ୍ଟ ।୪୫।
ଏ ବଚନ ଶ୍ରବଣେ ସେ ଚାରୁମିନେ । ପରସ୍ପରେ ଠାରାଠାରି ହେଲେ ନେନେ ॥
ମନ୍ତ୍ରୀସୁତ ବୋଇଲା ଭୃତ୍ୟଙ୍କୁ ଚାହିଁ । ଦିନ କେତେ ବେଗ ହେ ! ପଚାରିଯାଇ ॥
ଏ ବଚନକୁ ଜାଣିଲ ପ୍ରତିହାରୀ । ହୁଅ ସମସ୍ତେ ମେଲାଣି ନିଜପୁରୀ ।୪୮।
ତାହା ଜାଣି ପ୍ରମାଣେ ନିର୍ଜନ ସଭା । ପୁଚ୍ଛେ ସାଧୁକୁ ନୃପଜ ହୋଇ ଲୋଭୀ ॥
ତୁମ୍ଭେ ଯାହା କହିଲ ହେ ଅଲୌକିତ । ସତେ ଏମନ୍ତ ସୁନ୍ଦରୀ ମର୍ତ୍ତ୍ୟେ ଜାତ ।୫୦।
ସେ ବୋଇଲା ଆମ୍ଭ ପରେ ଏତେ କଥା । ଯେବେ ପ୍ରଥମପଦରେ ନାହିଁ ମିଥ୍ୟା ॥
ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ । ଲେଖୁଁ ଶୁଭ କର ତହୁଁ ମରଣକୁ ।୫୨।

---

୩୬ । ଲୋହ—ଲୁହା, ପରଶୁଗ୍ରାବ—ସ୍ପର୍ଶମଣି ପଥର ।
୩୭ । ଶୃଙ୍ଗ—ଶିଙ୍ଗ, କମାଣ—ତୋପ, ଚାତକ—ଚାତକପକ୍ଷୀର ପର, ବଚନ—ମନୋହର ।
୩୮ । ମାନଦରଶାୟୁକ—ସର୍ବଶ୍ରେଷ୍ଠ ଧନୁ ।
୩୯ । ସମ୍ମୋହନରେ—ବଶ୍ୟରେ, ସୁମନରେ—ଉତ୍ତମ ମନରେ ।
୪୦ । ଆଗତ—ଆସିଛି ।
୪୧ । ବାଣିଜ୍ୟ—ବ୍ୟବସାୟ ।
୪୨ । ସମ୍ଭବସ୍ଥାନ—ଜନ୍ମସ୍ଥାନ, ଅପୂରୁବ—ଆଶ୍ଚର୍ଯ୍ୟ ।
୪୩ । ରାଜକୁମାରୀ—ରାଜାଝିଅ ।
୪୫ । ଉତ୍ସଙ୍ଗ—କୋଳ, ସଦନ—ସ୍ଥାନ, ଭ୍ରଷ୍ଟ—ନାଶ, ପୃଷ୍ଟ—ଉନ୍ନତ ।
୪୬ । ଭୃତ୍ୟ—ଚାକର ।
୪୯ । ନିର୍ଜନ—ଜନଶୂନ୍ୟ, ନୃପଜ—ରାଜସୁତ, ଲୋଭୀ—ଲୋଭକର ।
୫୦ । ଅଲୌକିତ—ଆଶ୍ଚର୍ଯ୍ୟ, ମର୍ତ୍ତ୍ୟେ—ପୃଥିବୀରେ ।

ନାହିଁ ଖଳ ଦୁର୍ଜ୍ଜନ ନିର୍ଦ୍ଧନ ଜନ । ଶୁଣିଲ୍ବର ପ୍ରସଙ୍ଗ ନ କହୁଁ ପୁନଃ । ୫୩ ।
ଦୂତ କବ ଷଷ୍ଠ ଦ୍ଭିଜଜଣେ ଜଣେ । ନୋହୁଁ ଅଧିକ କହିବ୍ର କ କାରଣେ ॥
ଯାହା ସମେ ବ୍ରହ୍ମାଣ୍ଡ ଉଦରେ ବର । ନାହିଁ ଜଳଗଲ୍ଭ ଦନ୍ତ ପଞ୍ଚଶର । ୫୫ ।
ତାକୁ ସମାନ ଦେବାକୁ ଅଛୁ ଏହୁ । ଯାହା ଦର୍ପଣ ମଧ୍ୟରେ ଦଶେ ସେହୁ ॥
ତାକୁ ଏରୂପେ ନିର୍ମାଣ କଲ ବହୁ । କୀଟ କାଠୁ ଯେମନ୍ତେ ଅକ୍ଷର ହୋଇ ।୫୭।
ଯେତେ କବ ବର୍ଣ୍ଣିଛନ୍ତ ଯେତେ ନାରୀ । ଠିକେ କହୁ ରମ୍ଭା ରତ ନୋହେ ସରି ॥
ବଡ଼ କର ବୋଲନ୍ତ ଲାବଣ୍ୟବତୀ । ସେହୁ ଜନମ ହୋଇଣ ଅଛୁ କ୍ଷିତି ।୫୯।
ଯଥା ନ ଦେଖି ନଖାଇ ସୁଧା ନାମ । ସର୍ବମତେ କହ ସ୍ୱାଦୁ ମନୋରମ ।୬୦।
ତଥା ଅଗ୍ରୁ ଜାତ ହେବ ବୋଲି ବାମା । ଖ୍ୟାତ ହୋଇଲ୍ଭ ଲାବଣ୍ୟବତୀ ନାମା ॥
ହାସ ଅଧର ଗୁହିଁଲେ ଏ ସଂଶୟୁ । କରଅଛୁ କାହା ଶୋଭା କେ ଉଦୟୁ ।୬୨
ବାଳଅରୁଣ କ ସୁଧା ସ୍ନାନ କର । ଅନୁରାଗ ହରଷ ମିଶିଲ୍ଭ ପର । ୬୩ ।
କବା ମାଣିକ୍ୟକୁହରୁ ମୋତ ଜ୍ୟୋତ । ଦଶେ ତଥା ଝଟକଇ ଦନ୍ତପନ୍ତ ।୬୪।
ସେ ଅଧରେ ଶୋଭା ତାମ୍ବୂଳବୋଳ । କେ କାହ କୁ ରଙ୍ଗକଲ୍ଭ ହୋଏ ଗୋଳ
କାହା ରଦନ ସେ କାଳେ କ ସୁନ୍ଦର । ସିନ୍ଦୁରରେ ମାଜିଲ୍ଭ କ ଘନସାର ।୬୬।

---

୫୩ । ଦୁର୍ଜ୍ଜନ—ଦୁଷ୍ଟ, ନିର୍ଦ୍ଧନ—ଦୁଃଖୀ, ପ୍ରସଙ୍ଗ—ବିଷୟ ।
୫୫ । ବ୍ରହ୍ମାଣ୍ଡ ଉଦରେ—ସଂସାର ମଧ୍ୟରେ, ବର—ଶ୍ରେଷ୍ଠ, ସ୍ୱାମୀ, ପଞ୍ଚବାଣ—କନ୍ଦର୍ପ ।
୫୭ । କୀଟ—ପୋକ, ନିର୍ମାଣ—ତଆର ।
୫୮ । ବର୍ଣ୍ଣିଛନ୍ତ—ବର୍ଣ୍ଣନା କରଛନ୍ତ, ନାରୀ—ସ୍ତ୍ରୀ, ସର—ସମାନ ।
୫୯ । ବଡ଼କର—ପ୍ରଧାନ ବୋଲି, କ୍ଷିତି—ପୃଥିବୀ ।
୬୦ । ସୁଧା-ଅମୃତ, ସର୍ବମତେ-ସମସ୍ତଙ୍କ ବିଗ୍ଭରରେ, ମନୋରମ-ଭଲ ।
୬୧ । ବାମା—ସ୍ତ୍ରୀ, ଖ୍ୟାତ—ବିଖ୍ୟାତ ।
୬୨ । ଅଧର—ଓଷ୍ଠ, ସଂଶୟ—ସନ୍ଦେହ, ଉଦୟ—ପ୍ରକାଶ ।
୬୩ । ବାଳଅରୁଣ—ବାଳସୂର୍ଯ୍ୟ, (ସକାଳ ସୂର୍ଯ୍ୟ, ସମୁଦ୍ରରୁ ଉଠିଲ୍ଭ ବେଳେ) ସୁଧାସ୍ନାନ—ଜଳରେ ଗାଧୋଇବା । ଅନୁରାଗ—ସ୍ନେହ ।
୬୪ । ମାଣିକ୍ୟ କୁହରୁ—ମାଣିକ୍ୟ ଗୁମ୍ଫାରୁ, ଝଟକଇ—ଉଜ୍ଜ୍ୱଳ ଦଶେ, ଦନ୍ତପନ୍ତ—ଦାନ୍ତସବୁ ।
୬୫ । ତାମ୍ବୂଳ—ପାନ, ବୋଳ—ଛିଟ, ଗୋଳ—ଭ୍ରମ ।
୬୬ । ରଦନ—ଦାନ୍ତ, ଘନସାର—କର୍ପୂର ।

ବୋଲ ଢୋକିବା ବେଳେ ଦିଶଇ ଗଳେ । ଫଗୁ ପିଚକା ଯେମନ୍ତ ଢାଚନଳେ
ଜଳେ ଥାଇ ପାନପିକ କି ମଞ୍ଜୁଳ । ପକ୍ୱନାଗରଙ୍ଗ ପ୍ରାୟ ଗଣ୍ଡସ୍ଥଳ । ୬୮ ।
ଅଙ୍ଗେ ଅଛୁ ନବପୁଷ୍ପ ନବପକ୍ଷୀ । ଏକ ଏକ ଅଙ୍ଗେ ଲକ୍ଷି ରହେ ଅକ୍ଷି । ୬୯ ।
ଭୂଅଳଙ୍କୁ ଗୁଣି ଅଣି ଶୋଭାସାର । ଜଗଜ୍ଜୟୀ ଜଙ୍ଗମମୂରତି ମାର । ୭୦ ।
ଅବା ମନ୍ମଥର ମନଭେଦଶର । ମରମକୁ ଭେଦିବାରେ ମନୋହର । ୭୧ ।
ହର ପଥର ହେଲେ ହାତର ଘୋଟି । ଘେନ ଏଥର ଯିବ ହୃଦୟ ଫୁଟି ।୭୨।
ରୂପ ଚୁମ୍ବକଶିଳର ମିଳ କଏ । ହୃଦୁଁ କାଢ଼ିନେବ ମନ ଲୌହପ୍ରାୟେ ।୭୩।
ବରବର୍ଣ୍ଣନା ବର୍ଣ୍ଣନା କରି ଯେତେ । ଉପମାଙ୍କ ଲଭ ତାହା ହାନି ତେତେ ॥

---

୬୭ । ପାନପିକ ଢୋକିବା ବେଳେ ଗଳା ଲାଲଦିଶେ—ଯେପରି ଢାଚ ନଳରେ ଅବିର ପାଣି ପଡ଼ିଥିଲେ ଦେଖାଯାଏ ।

୬୮ । ମଞ୍ଜୁଳ—ସୁନ୍ଦର, ପକ୍ୱ—ପାଚିଲା, ନାଗରଙ୍ଗ—ଲେମ୍ବୁ, ଗଣ୍ଡସ୍ଥଳେ—ଗାଲରେ ।

୬୯ । ୧—ନବପୁଷ୍ପ—ନଅଗୋଟି ଫୁଲ, ୨—ନବପକ୍ଷୀ-ନଅଟି ଚଢ଼େଇ । ୧—ପଦ୍ମ ପରି ମୁଖ, ୨—ନୀଳକଇଁ ପରି ଚକ୍ଷୁ, ୩—ମନ୍ଦାର ପରି ଓଷ୍ଠ, ୪—ଶିରୀଷ ଫୁଲ ପରି ଦେହ, ୫—ତିଳଫୁଲ ପରି ନାସା, ୬—କୁନ୍ଦ ଫୁଲ ପରି ଦାନ୍ତ, ୭—ଚମ୍ପାଫୁଲ ପରି ଅଙ୍ଗୁଳି, ୮—କେତକୀ ପରି ବର୍ଣ୍ଣ, ୯—ମଲ୍ଲୀଫୁଲ ପରି ହାସ ।
୧—ନବପକ୍ଷୀ—ଖଞ୍ଜନ ପରି ଚକ୍ଷୁ, ୨—ଶୁଆ ପରି ନାକ, ୩—ମୟୂର ପରି କଣ୍ଠ, ୪—କୋଇଲି ପରି ସ୍ୱର, ୫—ହଂସ ପରି ଚାଲି, ୬—ଚକ୍ରବାକ ପରି ଗଣ୍ଡ, ୭—ସାରସର ଗ୍ରୀବାଣି, ୮—ବଗଦେହ ପରି ଦନ୍ତ, ୯—ହଳଦୀବସନ୍ତ ପରି ବର୍ଣ୍ଣ ।

୭୦ । ଜଗଜ୍ଜୟୀ—ସଂସାର ଜୟକାରୀ, ଜଙ୍ଗମ ମୂରତି—ଗମନଶୀଳ ରୂପ, ମାର—କନ୍ଦର୍ପ ।

୭୧ । ମନ୍ମଥର—କନ୍ଦର୍ପର, ମନଭେଦ ଶର—ମନକୁ ଭେଦ କରିବା ଶର, ହୃଦୟ—ଦେହ, ଫୁଟି—ପୋଡ଼ିହୋଇ ।

୭୨ । ହର—ମହାଦେବ ।

୭୪ । ବର ବର୍ଣ୍ଣନା—ଦିବ୍ୟ ସ୍ତ୍ରୀ (ଲାବଣ୍ୟବତୀ) ଲାବଣ୍ୟବତୀ ସଙ୍ଗେ ଯାହାକୁ ତୁଳନା କରିବ ସେ ସବୁ ତୁଳନା ଜିନିଷର ମର୍ଯ୍ୟାଦା ତୁଟିଯିବ ଅର୍ଥାତ୍ ସେମାନେ ସମାନ ହେବେ ନାହିଁ ।

ଭାବ ହାବଲୀଳା ବିଳାସାଦି ଶନ୍ତ । ଯାହା ଅଙ୍ଗେ ହୋଇଛନ୍ତି ମୂର୍ତ୍ତିମନ୍ତ ।୭୫।
ତାହା ଶୋଭା କହିଲେ ସରିବ କାହିଁ । ପୁର୍ବେ ନଥିଲା ନୋହିବ ଏବେ ନାହିଁ ॥
ରାଜା କହୁଛନ୍ତି ଜେମାଙ୍କୁ କର ବର । ମୋର ମିତ୍ର ମନ୍ତ୍ରୀଙ୍କ ହୋଇଛି ଭାର ।୭୭।
କନ୍ୟା ଅନୁରୂପେ ଅଜ ବର ନାହିଁ । ମନ ପ୍ରଧାନ ବାଞ୍ଛିକୁଅଛି ତହିଁ । ୭୮ ।
ଶୁଣି ମନ୍ତ୍ରୀସୁତ କଲା ଏ ଉତ୍ତର । ଅମ୍ଭ ନୃପତି ସୁତ ନୂତନ ମାର । ୭୯ ।
ହୋଇବ କି କାର୍ଯ୍ୟ ଉଦ୍‌ଯୋଗ କଲେ । ଶୁଣି ଶୁକ ପଚାରିଦେଲା ସେହି କାଳେ ॥
ସୁଧାପାନ କଲା ରାହୁ ଉପାୟରେ । ପ୍ରୀତ ହୋଇଅଛି ଚନ୍ଦ୍ର କୁମୁଦରେ ।୮୧।
ଗୁଞ୍ଜା ତୁଲା ହୋଇଛି ସୁବର୍ଣ୍ଣ ତୁଲେ । କର୍ମସବୁ ଉଚ୍ଛନ୍ନ ପାଞ୍ଚ ବଳେ ।୮୨।
ଶୁଣିକୁମାରବରଅଷ୍ଟୀର୍ଣ୍ଣଧେନ । ବୋଲେ ତୁହିଦେଖିଛୁ କି ମେଧାବତୀ ।୮୩।
କୀର କହିଲା ସେ ରସାଭୂଷା ଯୋଷା । ଶିଶୁକାଳରୁ ମୁହିଁ ତାହାଙ୍କ ପୋଷା ॥
ଶୁଣି ଚଞ୍ଚୁ ଚରଣଙ୍କୁ ଧରି ତାର । ପୁଣି ଧରିଲା ବୋଇତଅଳ କର । ୮୫ ।
ରାମା ନାମେ ମୋହନ ଜଣାଅଧର । ରୂପେ କି ଥିବ ନୋହିଛି ସେ ଗୋଚର ॥
ତୁମ୍ଭ ବଚନ ବସନ୍ତ ଋତୁ ହେଲା । ତାହା ଯୋଗୁଁ ଅଶାତରୁ ପଲ୍ଲବିଲା ।୮୭।
କଲେ ଶ୍ରବଣ ହୋଇ ଗ୍ରୀଷ୍ମକାଳ । ତାକୁ ଜାଳିଦେବଟି ବିରହାନଳ ।୮୮।
ଶୁଣି ସେ ବୋଇଲେ କୀର ହୁଅ ସ୍ଥିର । ଅମ୍ଭମାନଙ୍କୁ ଘେନି ଉପାୟ କର ।୮୯।
ପରବେଶ ହେଲେ ପୁଷ୍ପକାଳ ସାର । ପିକ ନ ଲଭଇ କାକ ସହକାର ।୯୦।

---

୭୫ । ଅଙ୍ଗେ—ଦେହରେ, ମୂର୍ତ୍ତିମନ୍ତ—ଦେହବନ୍ତ ।
୭୭ । ବର—ସ୍ୱାମୀ
୭୮ । ଅନୁରୂପେ—ସମାନରେ, ପ୍ରଧାନ—ଶ୍ରେଷ୍ଠ ।
୭୯ । ନୂତନ—ନୂଆ, ମାର—କନ୍ଦର୍ପ ।
୮୦ । ଉଦ୍‌ଯୋଗ—ଚେଷ୍ଟା, ସେହିକାଳେ—ସେହି ସମୟରେ ।
୮୧ । ସୁଧାପାନ—ଅମୃତପାନ, କୁମୁଦ—କଇଁ ।
୮୨ । ଗୁଞ୍ଜା—କାଇଁଚ ।
୮୩ । ମେଧାବତୀ—ବିଦୁଷୀ, ପଣ୍ଡିତା ।
୮୪ । କୀର—ଶୁଆ, ରସାଭୂଷା—ପୃଥିବୀର ଅଳଙ୍କାର, ଯୋଷା—ନାରୀ
ଶିଶୁକାଳରୁ—ପିଲାଦିନରୁ ।
୮୫ । ଚଞ୍ଚୁ—ଥଣ୍ଟ ।
୮୭ । ଅଶାତରୁ—ଅଶାବୃକ୍ଷ, ପଲ୍ଲବିଲା—ବୃଦ୍ଧିପାଇଲା
୮୮ । ବିରହାନଳ—କାମ ଅଗ୍ନି ।
୯୦ । ପୁଷ୍ପ କାଳ—ଫୁଟିଲା ସମୟ, ବସନ୍ତ ସମୟ, ସହକାର—ଅମ୍ବଗଛ ।

ଏ ବଚନେ ଶାନ୍ତ ଲଭି ସେହୁ ପୁନଃ । ଖଡ଼ି ପକାଇ କଲେ ଶକୁନମାନ ।୯୧।
ସାଧୁତକୁ ତହିଁ ଅନୁକୂଳ ଦେଲେ । ବାଙ୍କ ବ୍ରହ୍ମଗୃହୀ ଜଣେ ସଙ୍ଗେ କଲେ ॥
ଶୁଭେ ସେ କାଳେ ଅତାୟୀବାଣୀ ଭ୍ରମେ । ଗଲ ଦକ୍ଷିଣେ ଦ୍ୱିଜ ଗୋମାୟୁ ବାମେ
ପଛୁଁ ପବନ ବହିଲା ହୋଇ ସ୍ୱଚ୍ଛ । ଗୋପୀ ଧୀବରୀ ଡାକିଲେ ଦଧିମାଛ ।୯୪।
ଅଶା ବଢ଼ିଲା ଶୁଭସୂଚକ ଜାଣି । ସ୍କନ୍ଦ ସମାପତ ତୋଷ ପୁଂସମଣି ।୯୫।
ନୀଳ ରୋହିତଶରୀର ଦରହାରୀ । ଶ୍ରୁତିନିସ୍ତାରକ କୀର୍ତ୍ତି ଖ୍ୟାତକାରୀ ।୯୬।
ମୀନମୂର୍ତ୍ତି ରଘୁପତି ଶ୍ରୀପୟୂର । ଭାବେ ଉପଇନ୍ଦ୍ର ଭଞ୍ଜ ବୀରବର ।୯୭।

## ଅଷ୍ଟମ ଛାନ୍ଦ

( ଲାବଣ୍ୟବତୀର ଚିତ୍ରପଟ ଘେନି ସନ୍ନ୍ୟାସୀ ଚନ୍ଦ୍ରଭାନୁ ପାଶେ ପ୍ରବେଶ )

ରାଗ—ମଙ୍ଗଳ ଗୁର୍ଜ୍ଜରୀ ।

ଏଥୁ ଅନନ୍ତରେ ରସ ଶୁଣ ସୁଜନ । ମନ୍ତ୍ରୀକି ଡାକି ସିଂହଳଦ୍ୱୀପ ରାଜନ ॥
ବୋଇଲା କିଶୋରଦଶାପ୍ରାପ୍ତ କୁମାରୀ । କେବେବେଗେ ବର ଦେବା ବିବାହକରି ॥
ଶୁଣିଲେ ସୁନ୍ଦରୀ ଶୋଭି ହର ତୋଷରେ । ହରଘେନିଯିବେ ଅବା ବିଧି

୯୧ । ଶକୁନ—ଚିହ୍ନ ।
୯୨ । ବାଙ୍କ—ଜ୍ଞାନୀ, ବ୍ରହ୍ମଗୃହୀ—ଜିତେନ୍ଦ୍ରିୟ ।
୯୩ । ଗୋମାୟୁ—ବିଲୁଅ, ଭ୍ରମେ—ଭୁଲରେ, ଦ୍ୱିଜ—ବ୍ରାହ୍ମଣ ।
୯୪ । ଗୋପୀ—ଗଉଡୁଣୀ, ଧୀବରୀ—କେଉଟୁଣୀ, ଦଧି—ଦହି ।
୯୫ । ଶୁଭ ସୂଚକ—ମଙ୍ଗଳ ଚିହ୍ନ, ପୁଂସମଣି—ପୁରୁଷ ଶ୍ରେଷ୍ଠ ।
୯୬ । ନୀଳ—ନୀଳବର୍ଣ୍ଣ, ରୋହିତ—ରୋହିମାଛ, ଶରୀର—ଦେହ, ଦର·ଭୟ ହାରୀ—ହରଣକାରୀ, ଶ୍ରୁତି—ବେଦ, ନିସ୍ତାରକ—ଉଦ୍ଧାରକ, କୀର୍ତ୍ତି—ଯଶ, ଖ୍ୟାତକାରୀ—ବିଖ୍ୟାତକାରୀ, ମୀନମୂର୍ତ୍ତି—ମାଛରୂପ, ଶ୍ରୀପୟୂର—ଲକ୍ଷ୍ମୀଯୁକ୍ତ ପଦ ।

ଶଙ୍ଖାସୁର ବ୍ରହ୍ମାଙ୍କ ବେଦପୋଥି ନେଇ ସମୁଦ୍ରରେ ଲୁଚିବାରୁ ଭଗବାନ ମତ୍ସ୍ୟରୂପଧରି ତାକୁ ମାରି ବ୍ରହ୍ମାଙ୍କୁ ଶାନ୍ତ କରିଥିଲେ । ସେହି ଭଗବାନ ରାମଚନ୍ଦ୍ରଙ୍କୁ ମୋର ପ୍ରଣତ ।

## ଅଷ୍ଟମ ଛାନ୍ଦ

୨ । କିଶୋର ଦଶା—ଯୌବନ ଅବସ୍ଥା, କୁମାରୀ—ଝିଅ, ବର—ସ୍ୱାମୀ ।

ବଣରେ ।୩। ନୃପତି ହୋଇ ପ୍ରମାଦ ସମ୍ପତ୍ତିବାଧ । ଶିରୀସ୍ନେହ ତୁଟିଗଲେ-
ସେ ହେବେ କ୍ରୋଧ ॥ ଶୁଣି କରଯୋଡ଼ି କହେ ସଚିବପତିହିଁ । ମୋହ ବଚନକୁ
ବର ଦିଶୁଛି ନାହିଁ ।୪। ଶିବଙ୍କୁ ଦେଲେ ପାର୍ବତୀ ଶାପ ପଡ଼ିବ । ଭସ୍ମଭୂଷଣ
ଅଙ୍ଗେ ଏ କେହ୍ନ ଜଡ଼ିବ ।୬। ଚନ୍ଦ୍ର ତ କ୍ଷୀଣ କଳଙ୍କୀ ତହିଁକି ମୁଖ । ଅଶ୍ୱିନୀ-
କୁମାର ହେଲେ ତୁରଙ୍ଗ ମୁଖ ।୭। କୁସୁମଧନୁ ଅତନୁ ଅଛୁ ଅଉ କେ ।
ଟିକପଟ ଦେଖାଇବା ମାନବଲୋକେ ।୮। ରୁଣ୍ଡ ନରବରପନ୍ତି କରିବା
ଅଣି । ଇଚ୍ଛାବର ବଛୁ ପଛେ ରମଣୀ ମଣି ।୯। ଭୂପତି ବର
ତହିଁକି ହେଲେ ସମ୍ମତ । ମାନବେ ଲେଖା ନ ଗଲା ସୁନ୍ଦରୀ ଚିନ୍ତ ।୧୦।
ଜ୍ଞାନାନନ୍ଦ ନାମେ ଏକ ସନ୍ନ୍ୟାସୀ ଥିଲା । ସଚିବ ପ୍ରେରୁ ମାୟା
ସମୀପେ ଗଲା ।୧୧। ସେ କାଳେ ସେ ବିଶ୍ୱକର୍ମା ଏକତ୍ରମନେ ।
ନିର୍ମିଣୁଛନ୍ତି ପ୍ରତିମା କେମା ସମାନେ ।୧୨। ଜଗତମଞ୍ଜୁ ମଞ୍ଜୁଷା ମଧ୍ୟେ
ପ୍ରତିମା । ଦର୍ପଣ ଫୁଟି ଦିଶୁଛି ବାଳା ସୁଷମା ।୧୩। ଏକାଳେ
ସନ୍ନ୍ୟାସୀ କରି ସାମ ଗାୟନ । ଲବଣ୍ୟବତୀ ସ୍ୱରୂପ ଘେନିଲା
ଦାନ ।୧୪। ଦାନ କଲାବେଳେ ମାନ କହିଲେ ଏତେ । ଅମ୍ଭ ବନ୍ଧାଣିତ୍ୱ
ଖ୍ୟାତ କର ଜଗତେ ।୧୫। ସୀତ୍କାର କରି ଯୋଗୀ ବାହୁଡ଼ି ଅସି ।

---

୩। ହରି—ବସ୍ତ୍ର, ହରି—ଚୋରାଇ, ବଧୂବଶରେ—ବଧାତାବଳରେ ।

୪। ନୃପତି—ରାଜା, ପ୍ରମାଦ—ଦୁଃଖ, ଶିରୀ—ଲକ୍ଷ୍ମୀ, କ୍ରୋଧ—ରାଗ, ବସ୍ତ୍ର ଲବଣ୍ୟବତୀଙ୍କୁ ଦେଖି ଲୋଭକରି ନେଲେ ଲକ୍ଷ୍ମୀ ଅମ୍ଭଉପରେ ରାଗକରି ଚାଲିଯିବେ ତେଣୁ ଅମ୍ଭେ ଦୁଃଖିତ ହେବା—

୫-୬। ସଚିବ—ମନ୍ତ୍ରୀ, ଭସ୍ମ ଭୂଷଣ—ପାଉଁଶ ବୋଳା, ଅଙ୍ଗେ—ଦେହରେ ଜଡ଼ିବ—ମିଶିବ ।

୭। କଳଙ୍କୀ—କଳଙ୍କ ଯୁକ୍ତ, କ୍ଷୀଣ-ସରୁ, ତୁରଙ୍ଗ—ଘୋଡ଼ା ।

୮। କୁସୁମ ଧନୁ—କନ୍ଦର୍ପ, ମାନବଲୋକେ—ପୃଥିବୀରେ ।

୯। ରୁଣ୍ଡ – ଏକତ୍ରିତ, ନରବରପନ୍ତି—ରାଜାସବୁ ।

୧୦। ଭୂପତିବର—ରାଜାଶ୍ରେଷ୍ଠ ।

୧୧। ସମୀପେ—ପାଖକୁ ।

୧୨। ବିଶ୍ୱକର୍ମା—ସ୍ୱର୍ଗ କାରିଗର, ଏକତ୍ର—ଏକାଠି, ପ୍ରତିମା—ରୂପ,

୧୩। ମଞ୍ଜୁ-ସୁନ୍ଦର, ମଞ୍ଜୁଷା-ପେଡ଼ୀ, ସୁଷମା—ସୌନ୍ଦର୍ଯ୍ୟ ।

୧୪। ସାମ—ବେଦ ।

୧୫। ବନ୍ଧାଣିତ୍ୱ—କାରିଗର ପଣିଆ, ଖ୍ୟାତ—ପ୍ରଚାର ।

ଦେଖାଇ ସ୍ୱରୂପ ମନ୍ତ୍ରୀ ମତକୁ ତୋଷି । ୧୬ । ସେ ବୋଇଲେ ଧର୍ମତାତ ଅମ୍ଭେ ତୁମ୍ଭର । ଅମ୍ଭ ବୋଲେ ଏହା ଯେନ ଭ୍ରମ ସଂସାର । ୧୭ । ଦେଖାଇ ଭୂପତିଗଣେ ବଶ କରିବ । ଦୋଷ ଗୁଣ ସୁନ୍ଦର ପଣକୁ ବୁଝିବ ॥ ଏ ବଚନେ ଶିଷ୍ୟ କରେ ସେଡ଼ା ବୁହାଇ । ଏଣୁ ଏବେ ଏତେ ଦେଶ ଭ୍ରମିଲୁ ସେହି । ୧୯ । ଯେଉଁ ଦେଶେ ଯେଉଁ ରୂପେ କଲେ ଆଦର । କହୁଥାଇ ଗୃହିଁ ମହୀପତି ନିକର । ୨୦ । କୁନ୍ତଳେ କୁନ୍ତଳବର୍ଣ୍ଣେ ସାରିଲେ ଧନ । ମତ୍ସ୍ୟଜନ ମତ୍ସ୍ୟପରି ନିମିଷହୀନ । ୨୧ । ନିଷଧେ ନିଷେଧି ଅନ ଲୋଚନ କଲେ । ମାଳବରେ ମାଳା କରି ତାହା ଜପିଲେ ।୨୨। ମଘରେ ମଘବାପଦ ପାଇଲୁ ପରି । ବିଦେହେ ବିଦେହଶରେ ହୋଇଲେ ଘାରି । ୨୩ । କନୋଜଜ କନ୍ୟା ଉଜ ଶୁଭିଲୁ ବାଣୀ । ମରୁଦେଶ ମରୁ ରମ୍ଭା ଏମନ୍ତେ ଭଣି । ୨୪ । ଅଙ୍ଗରେ ଅଙ୍ଗନା ଅଙ୍ଗ ପ୍ରଶଂସା କଲେ । ଏହି ରମ୍ଭା ବୋଲି କଳି କଳିଙ୍ଗେ ହେଲେ ॥ ଧାତା ହଠ ଏହି ମରହଛି ଚତୁର । ସଉରାଷ୍ଟ୍ରେ ଭୂଷି ସଉଦାମିନୀ ସ୍ଥିର । ୨୫ । ଗୌଳେ ନିଗୌଳେ ଯୋଡ଼ାଇ ରଖିବା ଚିନ୍ତା । ଦ୍ରାବିଡ଼େ ନିବିଡ଼େ ଅଲିଙ୍ଗନେ ମମତା । ୨୬ । ଗୁଜୁରାଟ ରାତଦିନେ ଦେଖିବା ଇଚ୍ଛା । ବିଦର୍ଭରେ ଦର୍ଭହାସୀ ଦର୍ଶନ ବାଞ୍ଛା । ୨୮ । ଉତ୍କଳେ ଉତ୍କଳ ହୋଇ ବିରହେ ଭାସି । ଗଜସ୍ଥ ଏ ଗଜରବ ଗଜଡ଼େ ଭରି । ୨୯ । ନେପାଳେ କପାଳେ ଥିଲେ ପାଇବା ଭାବି । ମାଗଧେ

---

୧୬ । ବାହୁଡ଼ି—ଫେରି, ସ୍ୱରୂପ—ସେହିପରି ରୂପ ।

୧୭ । ଧର୍ମତାତ—ଧର୍ମପିତା, ଭ୍ରମ—ଭୁଲ, ସଂସାର—ଜଗତ ।

୧୮ । ଭୂପତିଗଣେ—ରାଜାମାନଙ୍କୁ ।

୨୦ । ଆଦର—ସମ୍ମାନ, ମହୀପତି ନିକର—ରାଜାସବୁ ।

୨୧ । କୁନ୍ତଳବର୍ଣ୍ଣ—ବାଳର ବର୍ଣ୍ଣପରି କଳା, ନିମିଷହୀନ—ଚକ୍ଷୁର ପଲକ ନ ପକାଇବା ।

୨୨ । ନିଷେଧି—ମନାକରି, ଲୋଚନ—ଦେଖିବା, ମାଳା—ହାର ।

୨୩ । ମଘବାପଦ—ଇନ୍ଦ୍ରପଦ, ବିଦେହଶର—କନ୍ଦର୍ପ ବାଣ ।

୨୪ । କନ୍ୟା—ସ୍ତ୍ରୀ, ଉଜ—ଶ୍ରେଷ୍ଠ, ବାଣୀ—କଥା, ଭଣି—କହି ।

୨୫ । ଧାତା—ବିଧାତା, ହଠ—ଗୁଳ୍ମକ, ସୌଦାମିନୀ—ବିଜୁଳି ।

୨୬ । ନିଗୌଳ—ଲଗା, ଚିନ୍ତା—ଭାବନା, ନିବିଡ଼େ—ଭଲଭାବରେ । ଅଲିଙ୍ଗନ—କୋଳକରିବା, ମମତା—ଇଚ୍ଛା।

୨୮ । ଦରହାସୀ—ମୃଦୁହାସୀ, ସୁନ୍ଦରୀ ।

୨୯ । ଉତ୍କଳ—ଉତ୍କଣ୍ଠିତ, ଗଜସ୍ଥ—ଶିବସ୍ତ୍ରୀ, ଗଜରବେ—ମାନ୍ୟସହିତ ।

ମାଗଧମୁଖେ ବର୍ଣ୍ଣାଇ ଛନ୍ଦ ।୩୦। କୁଞ୍ଜଗଳେ ଗଳେ ବାନ୍ଧି ବୁଲିବା ସ୍ନେହ୍ନୀ । ବଙ୍ଗାଳୀ ଗାଳି ଉପମାବଳୀକି ଦେଇ ।୩୧। ଲୋମଶ ଲୋମହର୍ଷିତ ଦେଖି ଉଦ୍ବତ । କଳେବରେ କଳେବରେ ଆନନ୍ଦ କାନ୍ତ ।୩୨। କେରଳେ ଭାବେ କେରଳମାୟା ହୋଇବ । ଯମନ ମନରୁ ଭିନ୍ନ ନୋହିଲା ଭାବ ।୩୩। ସିନ୍ଧୁରେ ଭାସିଲେ ସିନ୍ଧୁରେ ଯେ ଝାସିବ । ସିନ୍ଧୁରଗମନା ପ୍ରତ୍ତଅଙ୍ଗେ ମିଶିବ ।୩୪। ବାଳା ତୁଳାପିଚୁଳାକୁ ଚାହିଁ ସରାଗେ । ପିଚୁଳା କର ରଖିଲେ ନୟନ ଯୁଗେ ।୩୫। ବଦଗଧେ ବଦଗଧ କାମ ଦହନେ । ସେ ଭାବନା ନ ଛାଡ଼ିଲେ ରଜନୀ ଦିନେ ।୩୬। କେ ବୋଲେ ପଟ କି ଏ କାହାର କପଟ । ଦେଖିଲେ କାହିଁତ ଚିତ୍ତ ହୋଏ ଲମ୍ପଟ ।୩୭। କେ ବୋଲେ ଏ କେଉଁ ହେଲା ଦମ୍ଭରହିଲା । ସାତକୁମ୍ଭ କୁମ୍ଭଉରଜାକୁ ବହିଲା ।୩୮। କେ ବୋଲେ ସତେ କାମିନୀ ଅଛୁ ଏମନ୍ତେ । କେମନ୍ତେ ଗଢ଼ିଲା ବିହି ଅପୂର୍ବ କେତେ ।୩୯। କେ ବୋଲେ ସତେ ଏ ରୂପ ଥିଲେ ତରୁଣୀ । ଏତେକାଳେ ଅଳଙ୍କୃତା ହେଲା ଧରଣୀ ।୪୦। କେ ବୋଲେ ମୋହନ ମୂର୍ତ୍ତିମନ୍ତ ହୋଇଲା । ସକଳସୁନ୍ଦର ଅଙ୍ଗେ ଘେନି ଅଇଲା ।୪୧। କେ ବୋଲେ କି ଅନା ନୋହେ ନେତ୍ରସୁକୃତ । ଦେଖିଲାଇ ଲାବଣ୍ୟ-ବତୀର ଆକୃତ ।୪୨। ବଶୁରଲେ ଯୁବା ସୃଷ୍ଟି କିବା ପ୍ରଳୟ । ହୋଇଲା ହୋଇଛି ଉତପାତ ଉଦୟ ।୪୩। ବିଦ୍ୟାସ୍ଥିର ଇନ୍ଦୁ ଶର କାଣି ଧବସ ।

---

୩୦ । ମାଗଧମୁଖେ—ଭାଟମୁହଁରେ ।

୩୧ । ଉପମ ବଳୀ—ଉପମା ସବୁ ।

୩୨ । ଲୋମହର୍ଷିତ—ଲୋମଟାଙ୍କୁରିବା, କଳେବରେ—ଦେହରେ ।

୩୩ । କେରଳ—କେଳା, କେରଳଦେଶ ।

୩୪ । ସିନ୍ଧୁରେ—ସମୁଦ୍ରରେ, ଝାସିବ—ବୁଡ଼ିବ, ସିନ୍ଧୁର ଗମନା—ହାତୀଗମନା, ପ୍ରତ୍ତଅଙ୍ଗେ—ସାରାଦେହରେ ।

୩୫ । ସରାଗେ—ସ୍ନେହବଶରେ, ନୟନଯୁଗେ—ଚକ୍ଷୁ ଦୁଇରେ ।

୩୬ । ବଦଗଧ—ବ୍ୟସ୍ତ, କାମଦହନ—କନ୍ଦର୍ପାଘାତ, ରଜନୀ—ରାତ୍ରି ।

୩୮ । ସାତକୁମ୍ଭ—ସୁନାକୁମ୍ଭ ।

୪୦ । ତରୁଣୀ—ସ୍ତ୍ରୀ, ଅଳଙ୍କୃତା—ଭୂଷିତା, ଧରଣୀ—ପୃଥିବୀ ।

୪୨ । ନେତ୍ରସୁକୃତ—ଚକ୍ଷୁ ତପସ୍ୟା, ଆକୃତ—ରୂପ,

୪୩ । ପ୍ରଳୟ—ବିନାଶ, ଉଦୟ—ପ୍ରକାଶ ।

ଅମଳିନ ହୋଇ ଶ ନଳିନ ବିକାଶ ॥ ପୁଣି ବିଗ୍ରହଲେ ବଳଭୂମି ବିଗ୍ରହ ।
ଅଙ୍ଗେ ଅନଙ୍ଗ ରହିଲା କି ଦୁର୍ଗକର । ୪୫ । ଦେଖ ଏ ପ୍ରତ୍ୟକ୍ଷ କଥା
କରି କି ହରି । ମାରେ ଏବେ ଅରୋହିଛି ହରିକି କରି । ୪୬ । ଦର୍ଶନେ
ରଜନ ଯୋଗ ଅଟେ ଦେଇଛି । କଞ୍ଜପରେ କଞ୍ଜନ ଖଞ୍ଜନ ହୋଇଛି ।୪୭।
ଯେ କାମିଣୀ କେତେ ଅନୁମାନ କି ତାର । ନୋହେ ସେ ପୁରୁଷ କେଉଁ
ଥିସୃ ତା କର । ୪୮ । ହେଲେ ହୋଇଥିବ ଅବା ବିଧାତାମାତା । ମନେ
ମନାସିବା କଥା ହୁଅଇ କି ତା । ୪୯ । ପ୍ରୟୋଗେ ଅସୁରି ସୀତାସଦୃଶ
ପରି । ଏ ରୂପକୁ ଅଛି କି ସେ କାମିଣୀ କରି । ୫୦ । ଏମନ୍ତେ ସ୍ୱମା
ପ୍ରଶଂସା ସଂସାରେ ଖ୍ୟାତ । ନୃପତି ସମୂହ ହେଲେ ଉଛନ୍ନ ଚିତ୍ତ । ୫୧ ।
ମନକୁ ପେଷିତ କଲେ ସିଂହଳଦ୍ୱୀପ । ଶୟନେ ଦେଖିଲେ ସ୍ୱପ୍ନେ ବାଳାସ୍ୱରୂପ ॥
ଅସର ପାଇ ବିନ୍ଧିଲା କୁସୁମ ଶର । ସାରିଲେ ଉଶୀର ବାଟୀ ଶିଶିରକର ।୫୩।
ଶିଶିରକରରେ ରବି ଛବି ପାଇଲେ । ନବ-ପଲ୍ଲବଶୟନ କରି ଶୋଇଲେ
। ୫୪ । ଦ୍ୱିଜ ରୁଣ୍ଡୀଭୂତ କରି ଚଣ୍ଡୀ-ଚରଣ । ପ୍ରତିଦିନ କରିବାରେ
ହେଲେ ନିପୁଣ । ୫୫ । ଶମ୍ଭୁଗୋଷ୍ଠୀ ଅନୁକମ୍ପା କରିବା ପାଇଁ । ଶିରେ
ଗୋଦୋହନ କରି ରମ୍ଭା ଚଢ଼ାଇ ॥ ଅଜନ୍ମସୁଖୀ ନୟନେ ଦେଖିବା ପାଇଁ ।
ଗଣେଶଙ୍କୁ ଲଡ଼ୁ ଦେବା ଗଣନା ନାହିଁ । ୫୭ । କରେ ଛୁଇଁବାକୁ ତା'ର
କୁଚକଳସୀ । ରମାବଲ୍ଲଭଙ୍କୁ ଦେଲେ ଲକ୍ଷେ ତୁଳସୀ ।୫୮। କାମଶାସ୍ତ୍ର ଦେଖି

---

୪୪ । ବିଦ୍ୟୁ—ବିଜୁଳି, ଇନ୍ଦୁ—ଚନ୍ଦ୍ର, ଚିର—ସ୍ଥାୟୀ, ଅମଳିନ—ମଳିନ ନ ଯାଇ, ନଳିନ—ପଦ୍ମ, ବିକାଶ—ଫୁଟିବା ।

୪୫ । ବଳଭୂମି—ଯୁଦ୍ଧକ୍ରୀଡ଼ାସ୍ଥାନ, ଅନଙ୍ଗ—କନ୍ଦର୍ପ ।

୪୬ । କରି—ହାତୀ, ହରି—ସିଂହ, ଅରୋହିଛି—ଚଢ଼ିଛି ।

୪୭ । ଦଶନେ—ଦେଖିବାରେ, କଞ୍ଜ—ପଦ୍ମ ।

୪୯ । ମନାସିବା—ବାଞ୍ଛିବା, ବିଧାତାମାତା—ଅଦନାସ୍ତ୍ର ।

୫୨ । ପ୍ରେଷିତ—ଉତ୍ସୁକ, ପଠାଇବା, ବାଳାସ୍ୱରୂପ—ଲାବଣ୍ୟବତୀ ରୂପ ।

୫୩ । ଅସର—ଫୁରସତ, ଉଶୀର—ବେଣାଚେର, ଶିଶିରକର-ଚନ୍ଦ୍ରକିରଣ ।

୫୪ । ଶିଶିରକର—ଚନ୍ଦ୍ରର କିରଣ, ରବି—ସୂର୍ଯ୍ୟ, ନବପଲ୍ଲବ—ନୂଆପତ୍ର, କଅଁଳିଆ ପତ୍ର ।

୫୫ । ରୁଣ୍ଡୀଭୂତ—ଏକତ୍ର, ନିପୁଣ—ପାରଗ ।

୫୬ । ଶମ୍ଭୁଗୋଷ୍ଠୀ—ବିଜୁଳିପରି ଉଜ୍ଜ୍ୱଳ, ଦେହା ଅନୁକମ୍ପା—ଦୟା ।

୫୮ । କୁଚକଳଶୀ—ବର୍ତ୍ତୁଳ କୁଚ, ରମାବଲ୍ଲଭ—ନାରାୟଣ ।

ସ୍ତ୍ରିଗ୍ରୀବଶୀକରଣ । କଲେ ମନ୍ତ୍ର ଅଜପଥ୍ୟ ମଣି ଭୂଷଣ । ୫୯ । ଶୋଭା ଅର୍ଥେ ମଣ୍ଡି ହେଲେ ରତ୍ନାଳଙ୍କାରେ । ପଉଣ୍ଡ୍ରକ ବାସୁଦେବ ହେଲ ପ୍ରକାରେ ।୬୦। କେତକୀଫୁଲ ବାଞ୍ଛନ୍ତି ଯଥା ମଧୁପ । ତଥା ନୃପମଣ୍ଡଳ ବାଳାରେ ଲୋଲୁପ ॥ ନ ତୁଟିଲ ପୁଣି ଆଶା କେବେ ତାଙ୍କର । ବରବର୍ଣ୍ଣିନୀନାୟିକା ତ୍ରିବଳୀ ପ୍ରକାର । ୬୨ । ଉଇତରୁଫଳେ ଶବେ ଅଶାୟୀ ପର । ଲାବଣ୍ୟବତୀ ନାମକୁ ମନ୍ତ୍ରର କର । ୬୩ । ବାଳା ପ୍ରତଅଙ୍ଗ ଶୋଭା ମାନସେ ଥୋଇ । ଆପଣା ଶୋଭାକୁ ଆଦରଣରେ ଗୃହି । ୬୪ । ବାହ୍ୟରେ ଅରମ୍ଭ ସେ ଅନ୍ତରେ ବ୍ୟାକୁଳ । ଭସ୍ମ ଅଚ୍ଛନ୍ନରେ ଥାଇ ଯଥା ଅନଳ । ୬୫ । ବିଚକ୍ଷଣ ଜନ ପେଷି ସିଂହଳଦ୍ୱୀପେ । ପ୍ରୀତି ଲଗାଇଲେ ରତ୍ନେଶ୍ୱର ମହୀପେ ।୬୬। ଲାବଣ୍ୟବତୀ ସ୍ୱରୂପ ଅସିବା ଘୋଷ । ଅଗ୍ରେ ପ୍ରକଟ ହୋଇଲା କର୍ଣ୍ଣାଟ-ଦେଶ । ୬୭ । ଚନ୍ଦ୍ରଭାନୁ ଭୂପ ଯାହା ସାଧୁର କହି । ତାକୁ କେ କାମିନୀ ରୂପ ଚେ ପଟେ ଲହି । ୬୮ । ରୂପକାର ରଙ୍ଗାଜୀବ ମହୀରେ ତାହି । ମନକୁ ଆସେ ମଘବା ଭୁବନେ ନାହିଁ । ୬୯ । ହୋଇଥିଲି ମୋ ନେତ୍ରର ବାଧାତା ରଣୀ । ଶୁଝିବ ବୋଲି କି ଆଣେ ପ୍ରତ ତରୁଣୀ ।୭୦। ଗୁରୁଦ୍ରୋହୀ ପୁଣ ସ୍ୱର୍ଗ ଭୋଗ ପାଇଛୁ । ସାତସିନ୍ଧୁ ଚକ୍ରଭିତରରେ ରହିଛୁ । ୭୧ । ପକ୍ଷ ବିନା ହୋଇଅଛୁ ଗଗନଗଢ । ଜଳ ଉପରେ ଶଇଳ ଭାସି ଅଛନ୍ତି । ୭୨ ।

---

୬୦ । ରତ୍ନାଳଙ୍କାରେ—ସୁନା ଗହଣାରେ, ପୌଣ୍ଡ୍ରକ ବାସୁଦେବ—ପୌଣ୍ଡ୍ରକରାଜା ଯେପରି ନକଲି ଗଦା ପଦ୍ମ ଧରି କାଠଗରୁଡ଼ ଚଢ଼ି ବାସୁଦେବ ହୋଇଥିଲେ ।

୬୧ । ବାଞ୍ଛନ୍ତି—ଇଚ୍ଛା କରିବା, ମଧୁପ—ଭ୍ରମର, ନୃପମଣ୍ଡଳ—ରାଜାମାନେ ଲୋଲୁପ—ଲୋଭୀ ।

୬୨ । ତ୍ରିବଳୀ—କପାଳର ତିନିରେଖା ବା ପେଟର ତିନି ରେଖା ।

୬୩ । ଉଇ ତରୁଫଳ—ଡେଙ୍ଗାଗଛ ଫଳ, ଶବେ—ବାଙ୍ଗରମାନେ ।

୬୪ । ମାନସେ—ମନମଧ୍ୟରେ, ଆଦରଣରେ—ଆଦରରେ ।

୬୫ । ବାହାରରେ—ବାହାରେ, ଅନ୍ତରେ—ମନରେ, ଭସ୍ମ—ପାଉଁଶ, ଅଚ୍ଛନ୍ନ—ଘୋଡ଼ିହେବା, ମହୀପେ—ରାଜା ।

୬୬ । ବିଚକ୍ଷଣ—ଚତୁର, ମହୀପ—ରାଜା ।

୬୯ । ରଙ୍ଗାଜୀବ—ଚିତ୍ରକର, ମହୀରେ—ପୃଥିବୀରେ, ମଘବାଭୁବନ—ଇନ୍ଦ୍ରପୁର ।

୭୨ । ପକ୍ଷୀ—ଡେଣା, ଗଗନଗଢ—ଆକାଶରେ ଚିବା ।

ଯେଉଁ ଦାଇବେ ହୋଇଛୁ ଏତେ ବଧାନ । ସେହୁ ଦାଇବେ ହେଲ କ ବାଳାରତନ । ୭୩ । ଜ୍ୟେଷ୍ଠ ତୃଷିତ ଗୃତକ ଯେମନ୍ତ ହୋଇ । ଜଳଦ ଦର୍ଶନେ ତନମନ ହରଇ । ୭୪ । ଅଷାଢ଼େ ଘନ ଦୁର୍ଦ୍ଦିନ ଚକୋରପନ୍ତ । ଅଶା ଯେହ୍ନେ ଶରଦ ଅଗମେ କରନ୍ତ । ୭୫ । ସ୍ୱରୂପ ପ୍ରବେଶ ତଥା ଟେଳିଲ ଅଶା । ଅସର ହୋଇଲ ତେଣୁ ବାସର ନିଶା । ୭୬ । ପାଞ୍ଚେଟାଇ ପିଠିଥାଇ ମନକୁ ମୁଦେ । ଭର୍ତ୍ତ ଡେରେ ଯଥା ମୃଗ ଘଣ୍ଟି ଶବଦେ । ୭୭ । ସପ୍ରେମ ନୟନ ସେହୁ ଦଗକୁ ଟେକି । ନିରେଖେ ଢାଗଜଚକ୍ର ଯଥା କୁତୁକୀ । ୭୮ । ନିଦ୍ରା କ୍ଷୁଧା ବାଧା କରିପାରିଲେ ନାହିଁ । ଅଳପ ଅନୁରାଗ କ ହୋଇବ କହି । ୭୯ । ବନାୟକ ପୂଜ୍ୟ ସଦାଶିବ ତୋଷଦ । ସୁମନସ ଗଣର ଯେ ହରେ ବଷାଦ । ୮୦ । ଉପଇନ୍ଦ୍ର ଭଞ୍ଜ ବୀରବର ବର୍ଗୁବେ । ଏ ଗୀତ ଶେଷ କରିବ ତାଙ୍କ କୃପାରେ । ୮୧ ।

---

## ନବମ ଛାନ୍ଦ

(ଚନ୍ଦ୍ରଭାନୁ ପାଖରେ ଲବଣ୍ୟବତୀର ଚିତ୍ରପଟ ନେଇ ସନ୍ୟାସୀ ପ୍ରବେଶ)

ରାଗ—ସମଗୁର୍ଜ୍ଜରୀ

ହୋଇଲ ପ୍ରବେଶ ଗ୍ରୀଷମ ସମୟ ସୁଷମା ପ୍ରୌଢ଼ା ଯୁବତୀଙ୍କି । ରଜନୀ ମନୋହର କର ବହିଲ ପକ୍ୱଚୁତଫଳକାନ୍ତିକି । ପ୍ରଫୁଲ୍ଲ । ମଲ୍ଲିକା ହାସକୁ ବକାଶି । ରସିକଭ୍ରମର ଗୃଣ୍ଠୁକୁ ନିରତ ପାଟଳି ଶ୍ରବଣ ନିବେଶି । ୧ ।

---

୭୪ । ତୃଷିତ—ଶୋଷି, ଜଳଦ—ମେଘ, ତନମନ—ଏକମନରେ ।

୭୬ । ପାଞ୍ଚେଟାଇ—ଲେଉଟାଇ, ମୁଦେ—ଆନନ୍ଦେ ।

୭୭ । ଅସର—ସରିଲ ନାହିଁ, ବାସର—ଦନ, ନିଶା—ରାତ ।

୭୮ । ଢାଗଜଚକ୍ର—ଗୁଡ଼ି, କୁତୁକୀ—ଆନନ୍ଦମନ ।

୮୦ । ବନାୟକ—ଗଣେଶ, ତୋଷକ—ଅନନ୍ଦକାରୀ, ସୁମନଗଣ—ଦେବତାମାନେ, ବଷାଦ—ଦୁଃଖ ।

---

## ନବମ ଛାନ୍ଦ

୧ । ଗ୍ରୀଷମ-ଖରା, ସୁଷମା—ସୁନ୍ଦର, ପ୍ରୌଢ଼ା—ବୟସ ପ୍ରାପ୍ତା, ରଜନୀ—ରାତ, ପକ୍ୱ—ପାଚିଲ, ଚୂତ—ଅମ୍ବ, କାନ୍ତି—ବର୍ଣ୍ଣ, ପ୍ରଫୁଲ୍ଲ—ଆନନ୍ଦ ବକାଶି-ପ୍ରକାଶ କରି, ଗୃଣ୍ଠୁ—ଖୋସାମଦ କଥା, ପାଟଳି-ଫୁଲବଶେଷ ।

ହିଂକାଗ୍ନି ହଂକାର ହଂଶ୍ରଣିଅ ହଂମକେ ଚମକ ପକାଇ ଯିବାରେ । ଭଗିଲା ମନକୁ ଘନରସେ ନେଇ ଚନ୍ଦ୍ର କରଣେ ଶୋଇବାରେ । ଶାଳ୍ମଳୀ । ରଙ୍ଗେ ଅନୁରାଗ ଦେଖାଇ । ନବ ବିଟପକୁ ବିରହଦାବାଗ୍ନି ସଂଯୋଗରେ ଦହି-ପକାଇ । ୨ । କେତେ ରଞ୍ଜନ ବ୍ୟଜନ ପ୍ରଭଞ୍ଜନପର କେ ଶାନ୍ତକ ବହିଲା । ଜଳଯନ୍ତ୍ରପୂର କର୍ପୂର ଚନ୍ଦନ ମଣ୍ଡନରେ ଚିତ୍ତ ବହିଲା । ଜାଣିଲି । ଶୁଚ ମୂର୍ତ୍ତିମନ୍ତ ହୋଇଲା । ବିଦେଶ ନ ଯାଅ ବୋଲି ଜନକଙ୍କ କ ରଜେ ତୁଷାନଳ ଥୋଇଲା । ୩ । ଏମନ୍ତକାଳେ କାନନେ ନୃପସୁତ ପୁଷ୍କରିଣୀମଧ୍ୟ-ମଣ୍ଡପେ । ହୋଇ ମିତ୍ରସଙ୍ଗ ବାଳାର ପ୍ରସଙ୍ଗ ପକାଇ ତାହା ନାମ ଜପେ । ପ୍ରକାଶେ । ବେଳୁଁବେଳ ଏହି ଭାଷାକୁ । ସାଧୁ କହିଲା ପରି ବିଧୁବଦନା ଅଛୁ ଅସୁଛୁ ମାନସକୁ । ୪ । କହିଲେ ମିତ୍ରେ ନ ଘେନ ଏତେ ଚିନ୍ତେ ନ ଥିଲକୁ ନିକ ଜଗତ । ଘଟଣ ଘଟସ୍ତନା ସମେ ଘଟଣା ପିତୁଳା ହେଉଛୁ ଅଗତ । ଏ କାଳେ । ମାଳିକ କହେ ସନ୍ନିଧାନେ । ମହଲାରୁ ଅସିଛୁ ନାମ ମଦନିକା ଗଣିକା ତବ ଦରଶନେ । ୫ । ପଶ୍ଚରେ କୁମାର ପ୍ରଶଂସା ଯାହାର ଶୁଣୁଥିଲଇଁ ଏ ସେ ନାଗ୍ନି । ଯାହା ଜନମକାଳୁ ମର୍ତ୍ତ୍ୟମଣ୍ଡଳେ ଅସିଲେ ନାହିଁ ଅପସରୀ । ତହିଁକି । ହୋଇ କଲା ନନ୍ଦୀନନ୍ଦନ । ଜାଣି ସୀଉକାର ଅଣି ମାଳାକାର ଭେଟାଇଲା ରାମାରତନ । ୬ । ନବଯଉବନ ଶାଣରେ ଶାଣିତ କାହା ମନ ବଶ ନୋହିବ । ସ୍ତମ୍ଭନ ମେହନ ବଶ୍ୟ ଉଚ୍ଚାଟନ ମୂର୍ତ୍ତିମନ୍ତ କଲା ଦଇବ । ଦେଖିଲା । ମାନେ ଗାତ୍ରେ ଅର୍ଘ ଲଗିଲା । ଗୃପରେ ରୋପ ବସାଇ କୋପଭରେ ମାର ମରମରେ ଯୋଖିଲା । ୭ । ସୁବର୍ଣ୍ଣ ସୁବର୍ଣ୍ଣବଳୟ ଯାହାର ଏ ସଂଶୟକୁ କରାଉଛୁ । କାହାକୁ କେ ବଡ଼ ତାରତମ୍ୟ ଅଳ ବାରଣହିଁ ଯହିଁ ନୋହୁଛୁ । ଚିକୁର । ଲୋଟଣୀକୁଡ଼ାରେ

---

୨ । ହିଂକାଗ୍ନି—ପତଙ୍ଗବିଶେଷ, ହଂମକେ—ହଂନ ୨ ଶବ୍ଦରେ, ଘନରସ—ବର୍ଷା, ଶାଳ୍ମଳୀ—ଶିମିଳି, ନବବିଟପ—ନୂଆଗଛ, ନୂଆପୁରୁଷ, ଦାବାଗ୍ନି—ବନସ୍ଥର ଅଗ୍ନି, ଦହିପକାଇ—ପୋଡ଼ି ପକାଇ ।

୩ । ବ୍ୟଜନ—ବିଚଣା, ପ୍ରଭଞ୍ଜନ—ପବନ, ତୁଷାନଳ—ତପୂନ୍ୟଅଁ ।

୪ । କାନନେ—ବନରେ, ମଣ୍ଡପ—ପିଠ, ଚଉତରା; ପୁଷ୍କରିଣୀ—ପୋଖରୀ, ବିଧୁବଦନା—ଚନ୍ଦ୍ରବଦନା ।

୫ । ଜଗତ—ସଂସାର, ଘଟସ୍ତନା—ବର୍ତ୍ତୁଳକୁଚଯୁକ୍ତା, ଗଣିକା—ବେଶ୍ୟା ।

୬ । ଅପସରୀ—ସ୍ୱର୍ଗବେଶ୍ୟା ।

୭ । ଶାଣିତ—ଶାଣଦିଆ, ଗାତ୍ର—ଦେହ, ଗୃପ—ଧନୁ ।

ଶୋଭନ । ଏ ଭାବେ ବାଳବାି ପୁରୁଷଙ୍କ ମନ ବୋଲି କେ କରନ୍ତି ବନ୍ଧନ । ୮ । ମୋତିଜାଲି ଝଳି ତାରତାରକା କି ଉଦୟ ହେଲେ ନବ-ଘନେ । କିବା ଇନ୍ଦୁ କୁ ଗ୍ରାସୁ ସୁଧାବିନ୍ଦୁ କୁ ବହନ୍ତି ରାହୁ ଅପଘନେ । ତଳକୁ । ଦିବ୍ୟ ଚନ୍ଦ୍ରଝୁମ୍ପା ଲମ୍ବିତ । ଅର୍ଦ୍ଧେନ୍ଦୁ ଅଧୋଭାଗେ ଲଭି ଉଦୟ, ସପ୍ତଋଷି କିବା ଜଳିତ । ୯ । ଗୃହୁ ଅଳକା ଝିଲିମିଲି ମାଳିକା ଅଗ୍ରେ ଲମ୍ବିତ କ୍ଷୁଦ୍ର ମୋତି । ହେମଲତା ଶିଖେ ମଧୁକରପନ୍ତି ମଧୁ କିବା ସଞ୍ଚୁ ଅଛନ୍ତି । କସ୍ତୁରୀ । ଊର୍ଦ୍ଧ୍ୱ ତିଳକ ଭାଲଦେଶେ । ବିକାଶ ସାରଣି ମଧୁ ଅଳିବଂଶ ଗମନ କି ତମାଳ ପାଶେ । ୧୦ । ତାଙ୍କର ଦ୍ୱାରରେ ହସୁନ୍ତି ଶ୍ରବଣ ପାଶୋଦ ଉପମାନଙ୍କୁ । ଅଧର ବଜ୍ର ମଞ୍ଜୀକଢ଼ି ଧରନ୍ତି ଧୈର୍ଯ୍ୟ-ଧର ଧ୍ୱଂସନକୁ । ବଦନ । ବିଚାରେ କମଳୁ ବହନ୍ତି । ହା ହା ବାଳୀ ପୂରଝଳକ ଝଳକ ପଲକ ଘଡ଼ିଏ ଦେଉଛନ୍ତି । ୧୧ । ଲଳିତ-ଜ୍ୟୋତିଜ୍ୱଳିତ ମୋତିବର ଜ୍ଞାନ ନାଶନ ଯେ ତାହାର । ନିର୍ମଳ ଭାଗର ବିମ୍ବଓଷ୍ଠ ବିମ୍ବାଧର ଅର୍ଦ୍ଧତରୁଣୀତର । ଅବଦ୍ରା । ରୋହିଣୀଙ୍କ ଯେନ କୋଳରେ । କଳଙ୍କହୀନ ପଂଚଶବଗ୍ରୀଷ କି ଉଦିତ ଶରଦକାଳରେ । ୧୨ । ବଶୀକରଣ ବିବିଧ ମଣି ମନ୍ତ୍ର ଔଷଧ ଯେଉଁ ନେନେ ଅଛି । ଶୁଳୀ ଭଳି ଯତ ତାଳି ଅନାଇଲେ ତଳବେ ମନକୁ ପାଉଛନ୍ତି । ଯହିଁର । ଅଞ୍ଜନ ଦମ୍ଭକୁ ତରାସେ । ଭାଲ ଚନ୍ଦ୍ର ଖଣ୍ଡଚନ୍ଦ୍ରମା-ସୁଷମାସୀମାବାର ଗାର ପରା ସେ । ୧୩ । ରୋମାବଳୀ ଝଳି ମର୍ଦ୍ଦିତ ପ୍ରବାଳ କଟି ଘଣ୍ଟିରବ ସଂଯୁତ । ଉଦର ଯୁଗ ତୁମ୍ବି ସାରଣିବଳୀ ଚଳ ବକ୍ଷଗ୍ରୀ ଜଲ୍ଲ ଜାତ । ବିଧିରେ ।

---

୮ । ସୁବର୍ଣ୍ଣବଳୟ—ସୁନାପାହୁଡ଼, ସଂଶୟ—ସନ୍ଦେହ, ତାରତମ୍ୟ—ତୁଳନା । ବାରଣି—ଚିହ୍ନ, ଚକୁର—ବାଳ ।

୯ । ଝଳି—ଚକଚକ ହୋଇ, ତାର—ତେଜ, ତାରକା—ତାର, ଅପଘନେ—ଦେହରେ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର,ଅଧୋଭାଗ—ତଳଦେଶ ।

୧୦ । ମଧୁକର—ଭ୍ରମର, ପନ୍ତି—ସମୂହ, ମଧୁ—ମହୁ, ଊର୍ଦ୍ଧ୍ୱ—ଉପର, ତିଳକ—ଟୀକା, ଭାଲ—କପାଳ, ଅଳିବଂଶ—ଭ୍ରମର ବଂଶ ।

୧୧ । ଶ୍ରବଣ—କାନ, ଧ୍ୱଂସନ—ନାଶ ।

ବିମ୍ବ-କାନ୍ତି, କଳଙ୍କିତକାଳୁଡ଼, ପଂଚଶବଗ୍ରୀଶ—ପୂର୍ଣ୍ଣିମା ଚନ୍ଦ୍ର ।

୧୩ । ଶୂଳି-ମହାଦେବ, ଯତ— ଇନ୍ଦ୍ରଜୟକାରୀ, ଅଞ୍ଜନ-କଳା ।

ବଧିର ବୁଦ୍ଧି ଭ୍ରମ ହେଲା । ମନ୍ଦ ମଧୁର ଘନସାର ହାସଟି ଜାଣିଲି ଏତେ-
ଦୂର କଲା । ୧୪ । କର କାଞ୍ଚଲ ପାଟଡୋର ତରମେ ଭିଡ଼ ଅଚ୍ଛାଦଛନ୍ତି
ଯତନେ । ହିରଣ୍ୟଗର୍ଭ ହୁଡ଼ ବ୍ୟକ୍ତ ନୋହିବ ଏହି କାମନା କରି
ମନେ । ତାହାର । ଖେଳ ପର୍ଯ୍ୟେ ସେ ଧଣଇ । ତଇ ସ୍ଥୂଳ ଗୋପିତ
ନୋହେ ତଦା ନେତ୍ରେ ଅବନୀ ନ ଦେଖଇ । ୧୫ । ଏମନ୍ତ ମଣୁଛନ୍ତି
ଅଙ୍ଗରାଜ ପଦ ଅଙ୍ଗନାଠାରେ ସମ୍ଭାବିତ । ମହାଜତପାତ ମନ୍ଦ ବୋଲି
ତାକୁ କରୁଅଛି ଯେଣୁ ଗୁପତ । ସେ କଥା । ଯୁକ୍ତ ନୁହଇ ଦେଖିବାର ।
ଚୀର ଅଚ୍ଛାଦିତ ଏଥିକୁ କରିଛି ଫଳ ଚୁମ୍ବୁଛି ମଧୁକର । ୧୬ । କର
ସନାଳ କୋକନଦ ବାହାର କି ତନୁ ଶୋଭା ସରସୀରୁ । ଅତୁଲ୍ୟ ପଛେ
ଅନ ଭୂଷା ଧରିଛି ରୂପଗର୍ବିତା ଲକ୍ଷଣାରୁ । ରଣିତ । କିଙ୍କିଣୀ କଟୀରେ
ଖଞ୍ଜିଛି । କାମିନୀକ କାମରଥ ବୋଲିବାର ସତ ଘଣ୍ଟିଚୟ ସାଜିଛି । ୧୭ ।
ନାହିଁ ତୁଲା-କୋଟି-ଜଗତରେ ବୋଲି ଘେନିଛି ପାଦରେ ଅଦରେ ।
କ୍ଷୁଧା ନାସ୍ତି ଧନ୍ୟ ବୋଲାଇ ଅଲକ୍ତ ପଦରାଗ ବ୍ୟକ୍ତ ହେବାରେ । ଦିଶୁଛି ।
ଏପରିରେ ତନୁ ଗଜର । ଚମ୍ପକ ଗନ୍ଧ ପତନୀ ଶଙ୍ଖୀ ଥିବା ଚିକୁର ଧାଡ଼ିରୁ
ଗୋଚର । ୧୮ । କାର୍ଯ୍ୟକୁ କାରଣ କରି କହିଲଇଁ ମଦନକାର
ଶୋଭା କଛି । ବଖାର କହି ବସିଲେ ଏହି ଶଙ୍କା ବହୁତ ଛାନ୍ଦ ହେବା
ଅଛି । ଶୋଭାକୁ । ଗୁହିଁ ସ୍ଥଗିତ ନେତ୍ରପୁଂସ । ଜଣେ ଜଣାଇ ସିଂହଳ
ପତି ଜେମା ସ୍ୱରୂପ ହୋଇଲା ପ୍ରବେଶ । ୧୯ । ସମ୍ମୁଖେ ଉଠି ପାଗ୍ଲେଟି
ଯିବା ମନ ଜାଣି ନିଷେଧ କଲେ ମିତ । ଅସ ଅସ ବୋଲି ସନ୍ନ୍ୟାସୀ
ପାଶକୁ ଦୂତ ଉପରେ ଗଲେ ଦୂତ । ପ୍ରବେଶେ । ଅସନ ଦେଇ ଚସା-

---

୧୪ । ପ୍ରବାଳ—ପୋହଳା, କଟୀ—ଅଣ୍ଟା, ବଲକୀ—ବୀଣାରଦଣ୍ଡ,
ଘନସାର—କର୍ପୂର ।

୧୫ । ତରମେ—ପିଠିରେ ହିରଣ୍ୟଗର୍ଭ—ବ୍ରହ୍ମା, କାମନା—ଇଚ୍ଛା,
ସ୍ଥୂଳ—ମୋଟା ।

୧୬ । ଅଙ୍ଗନା—ସ୍ତ୍ରୀ, ଚୀର—ଲୁଗା, ଅଚ୍ଛାଦିତ—ଘୋଡ଼ିହେବା ।

୧୭ । କରସନାଳ—ପଦ୍ମନାଡ଼ ତୁଲ୍ୟ ହସ୍ତ, କୋକନଦ—ପଦ୍ମ, ସରସୀ
—ପୋଖରୀ, ରଣିତ—ଶବ୍ଦ କରିବା, ଘଣ୍ଟିଚୟ—ଘାଗୁଡ଼ିସବୁ ।

୧୮ । ତୁଲାକୋଟି—ନୂପୁର, ସୂରନାସ୍ତି—ଭଣ୍ଡାରୁଣୀ, ଅଲକ୍ତ—ଅଳତା
ଚିକୁର—ବାଳ ।

୧୯ । ଶଙ୍କା—ଭୟ ।

ଇଲେ । ଚତୁର ମିଳେ ଚତୁର ବାରବଧୂ ପ୍ରଶଂସାଦରେ କଥା ହେଲେ । ୨୦ । କେ ବୋଲେ ଗୁହିଁ ଚଞ୍ଚଳ ଚକ୍ଷୁପକ୍ଷ୍ମ ପତନେ ବୁଝି କରେ ବଣା । ଚନ୍ଦ୍ରେ ଚକୋର ବସି ସୁଧା ପିଇବା ମତୈ୍ୟ କି କମ୍ପାଉଛୁ ତେଣା । କେ ବୋଲେ । ଗୁହିଁ ନାସାଫୁଲ ପଣକୁ । ଏ ଗୃତୁସ୍ତିର ଗୃତୁସ୍ତି କରୁଛନ୍ତି ବଜସ୍ତୃ ଏ ଫୁଲବାଣକୁ । ୨୧ । କେ ବୋଲେ ଗୁହିଁ ଗୁହିଁ ଦେଇ ନୟନ ଭରଜପରେ ଯା ନାଅଇ । ଏହୁ ଶିବସେବା କାମ ପରାଭବ ନ କରବ ଏହା କହଇ । କେ ବୋଲେ । ଗୁହିଁ ତା ମଧୁର ହାସକୁ । ଅଧର ଦେଖାଇ ଦେଉଛୁ ତରୁଣ ଅରୁଣ ଜଣିଲ ଯଶକୁ । ୨୨ । ସନ୍ନ୍ୟାସୀ ଭୃଷି ଯାହା ପ୍ରତିପ୍ରତିମା ଅଣିଛୁ ଦର୍ଶନ ଦେବାକୁ । ଏ ଯୋଷା ଯୋଗ୍ୟ ନୋହେ ତା ପଦଘଷା ଉପଳ ଉପମା ହେବାକୁ । ଦ୍ଵେ ଯତ । କି କହ ମନ୍ତ୍ରୀକ ବୋଇଲେ । ପ୍ରତ୍ୟକ୍ଷ କଥାରେ କେଉଁ ଅନୁମାନ ବୋଲି ସେ ପେଡ଼ାକୁ ଫେଇଲେ । ୨୩ । ଏ ବାମାକୁ ବାସ ଉପହାର ଦଅ ଅଧିକାରୀଙ୍କ ଅଜ୍ଞା ଦେଇ । ତନୁନା ହେଲ ରାମା ରୂପ ଲୋକନେ ବକ୍ଷସ୍ତୁ ପଛକୁ ପକାଇ । ସମ୍ପୂର୍ଣ୍ଣ । ଏ ଛାନ୍ଦ ଚତୁର୍ବିଂଶପଦ । ଅଯୋଧ୍ୟାଇନ୍ଦ୍ର ଧ୍ୟାନରେ ଉପଇନ୍ଦ୍ର ନାଶିବ ଅର୍ଜିତ ଅପଦ । ୨୪ ।

---

---

୨୦ । ନିଷେଧ—ମନା, ବାରବଧୂ—ବେଶ୍ୟା ।

୨୧ । ଚକ୍ଷୁପକ୍ଷ୍ମ—ଆଖିପତା, ପତନ—ପକାଇବା, ଗୃତୁସ୍ତି—ଚ୍ଛ୍ରଲଙ୍ଘି । ଫୁଲବାଣ—କନ୍ଦର୍ପ ।

୨୨ । ଶିବସେବା—ମହାଦେବସେବା, କାମ—କନ୍ଦର୍ପ, ପରାଭବ—ହାରିଯିବା ଅଧର—ଓଷ୍ଠ ।

୨୩ । ପ୍ରତିପ୍ରତିମା—ରୂପଲକ୍ଷ୍ୟରେ, ଯୋଗ୍ୟ—ଉପଯୁକ୍ତ, ପଦଘଷା—ଗୋଡ଼ଘଷା, ଉପଳ—ପଥରଖଣ୍ଡ, ମନ୍ତ୍ରୀଜ—ମନ୍ତ୍ରୀପୁଅ ।

୨୪ । ତନୁସ୍ଥା—ଉଛନ୍ନଅ, ଲୋକନେ—ଦେଖିବାରେ, ଅପଦ—ଦୁଃଖ । ଚନ୍ଦ୍ରଭାନୁ ପାଶରେ ଲାବଣ୍ୟବତୀର ଚିତ୍ରପଟ ନେଇ ସନ୍ନ୍ୟାସୀର ପ୍ରବେଶ ।

---

## ଦଶମ ଛାନ୍ଦ

( ଚନ୍ଦ୍ରଭାନୁ ଲାବଣ୍ୟବତୀର ରୂପ ଦର୍ଶନ )

ରାଗ—ଦେଶାକ୍ଷ

ଏଥୁଅନନ୍ତରେ ରସିକସାର । କର୍ଣ୍ଣମୁଖରେ ସୁଧାପାନ କର ।
ନୃପସୁତ ଅଗେ ପେଣ୍ଡ ଫେଡ଼ିଲା । ସେ ରୂପ ଉପରେ ନେତ୍ର ପଡ଼ିଲା ।
କି ପଡ଼ିଲା । ନାହିଁ ଜଡ଼ିଲା ଘେନ । ଜଡ଼ିଲା ନାହିଁଟି ବୁଡ଼ିଲା ଜ୍ଞାନ । ୧ ।
ମୂର୍ତ୍ତିମନ୍ତ ଜଳୀ ମଦନ କଳା । କନକନିଭ ମଦନ ପିତୁଳା ।
କାଚବାଡ଼ପୁରେ ବସିଲା ପରି । ମୁକୁରେ ଫିଟି ଦିଶୁଛି ମାଧୁରୀ ।
କି ସୁନ୍ଦର । ସମେ ଅଜ ଚାହିଁଛି । ସଜୀବ ହୋଇ ବଜୀବ ହୋଇଛି । ୨ ।
ସରସିଜେ ଶିଶୁଅଳିଆବଳୀ । ବସିଥିଲା ପରି ଅଳକା ଝଳି ।
ଅଧରେତ ଅଛି ହାସ ଝଳକ । କର୍ପୂରେ ମାଜିଲା ପରି ମାଣିକ୍ୟ ।
କି ସୁନ୍ଦର । ପୁଣି ପକ୍ଷ୍ମ ଗୃଢୁରୀ । ସ୍ଥୂଳଦେବ ପରି ଧୈର୍ଯ୍ୟଚତୁରୀ । ୩ ।
ଅଗ ଅନୁରାଗ ଭ୍ରମ ଉପୁଜି । ରାମା କି ପ୍ରତିମା ନ ପାରେ ହେଜି ।
ଚକିତ ସ୍ତମ୍ଭିତ ଦଣ୍ଡେ ହୋଇଲା । ମନେ ମନେ ଲକ୍ଷେ ଚୁମ୍ବନ ଦେଲା ।
କି ସୁନ୍ଦର । ମନ ନୟନ ପ୍ରାଣ । ସେହି ଶୋଭାରେ କଲା ସମର୍ପଣ । ୪ ।
ଏଣୁ ସେ ସୁତନୁ ତନୁତନୁକୁ । ଅସେ ଅନୁମାନ ଅନୁମାନକୁ ।
ଅଲୋକିତ ହେଲା ଲୋକିତ କର । କରଇ ଉପମା ନୁହଇ ସର ।
କି ସୁନ୍ଦର । କବି ବଚନ ପଥ । କୃତାର୍ଥ କରଣେ ହେଲା ସମର୍ଥ । ୫ ।

---

## ଦଶମ ଛାନ୍ଦ

୨ । ମଦନକଳା—ଚାମକଳା, କନକ—ସୁନା, ନିଭ—ଉଜ୍ଜ୍ୱଳ, ପିତୁଳା—ରୂପ, କାଚବାଡ଼ପୁର—କାଚରେ ବାଡ଼ହୋଇଥିବା ଘର, ମୁକୁର—ଅରସି, ମାଧୁରୀ—ସୌନ୍ଦର୍ଯ୍ୟ ।

୩ । ସରସିଜ—ପୁଷ୍କରିଣୀ, ପଦ୍ମ । ଶିଶୁଅଳିଆବଳୀ—ଛୋଟ ଭଅଁର ସବୁ, ଅଧର—ଓଷ୍ଠ, ପକ୍ଷ୍ମ—ଆଖିପତା ।

୪ । ଅନୁରାଗ—ସ୍ନେହ, ଚକିତ—ଚାବା, ସ୍ତମ୍ଭିତ—ସ୍ଥିର, ସମର୍ପଣ—ଦେବା ।

୫ । ତନୁ ତନୁକୁ—ଦେହକୁଦେହ, ସବୁଦେହ; ଅଲୋକିତ—ଅପୂର୍ବ, ଲୋକିତ—ଦେଖିବା, ସମର୍ଥ—ସକ୍ଷମ ।

ବେଣୀ ଶୋଭା ଅବା ସାଧିବା ପାଇଁ । ରତୀଶ ପଛୀଶ ଅଛି ଉଥାଇ ।
କନକ ପିହାଣିଅଛି ଅସମ । ମୁକ୍ତାଜାଲ ମୁଠାଜାଲ ସମ ।
କି ସୁନ୍ଦର । ପଣ ଦଶେ କୁସୁମେ । ପୂଜା କରେ କି ଜଗଜ୍ଜୟୀକାମେ । ୬ ।
ଦ୍ୱିତୀୟାତିଥି ଭ୍ରମ ସେହିଠାରେ । ଅବତଂସ ଚନ୍ଦ୍ର ଝୁମ୍ପି ଥିବାରେ ।
ଜାଜ୍ୱଲ୍ୟ ତାରକା ବୃନ୍ଦ ଦୀଧିତି । ସୁଧାବିନ୍ଦୁ ସ୍ରବ ପରାୟେ ମୋତି ।
କି ସୁନ୍ଦର । କାମ ରତ୍ନତୋରଣା । ଝିଲ୍‌ମିଲ୍‌ମାଳୀ ସେହି ଲକ୍ଷଣା । ୭ ।
କର୍ଣ୍ଣ ହୋଇଅଛି ବନ୍ଦ-ଅବାସ । ଏଥିକି ଉପମା କରିବା କିସ ।
ଭାଳୁ ଭାଳୁ ଦୃଷ୍ଟି ପତନ ହେଲା । ବାଳିବୋଲି ମନେ ଯତନେ କଲା ।
କି ସୁନ୍ଦର । ଫୁଲ ସୁମଲ୍ଲୀ କଡ଼ୀ । ଫଳକ ଉପମାକୁ ଗଲା ହୁଡ଼ି । ୮ ।
ଭାଲ ଚାହିଁ କଲା ଭାଲ ବିଚାର । ଏ ହେମକାପ ତରସ ଧାତାର ।
ଲେଖିଛି ଚିହ୍ନକବିତ୍ୱ ଏଥିରେ । ଏ ବାଳା ସମାନ ନାହିଁ ପୃଥ୍ୱୀରେ ।
କି ସୁନ୍ଦର । ଗୁଣେ ନାଗଭୁବନେ । ସ୍ୱର୍ଗପୁରେ ଅଜ ନାହିଁ ସମାନେ । ୯ ।
ବଡ଼ କି ଚତୁର ପାଞ୍ଚିବା ଏହା । ବଡ଼ କବି ଜଡ଼ ଘେନିବେ ଯାହା ।
ରଙ୍ଗ ଶୁକ୍ଳ କଳା ତନ୍ନଜାତ । ଟୋପିଛଳେ ଅଛି ଅକ୍ଷରପନ୍ତି ।
କି ସୁନ୍ଦର । ଦୃଷ୍ଟି ଚଳିବ ନାହିଁ । ଦେଉଥିଲେ ତାର ଚିତାକୁ ଚାହିଁ । ୧୦ ।
ଶିବ ଶିର କଳାକର କଳାଏ । କଳା ହୋଇ ବିଷଜ୍ୱାଳାର ଭୟେ ।
ଭ୍ରୂରୁ ଠାରେ ହୀରୁ ପଳାଇ ଆସି । ଲକ୍ଷପ୍ରକାରେ ଏହି ଲକ୍ଷ୍ୟ ଦିଶି ।
କି ସୁନ୍ଦର । ପର୍ଶୁରାମ ପରଶୁ । ବାମା କହେ ଗ୍ରାମା ଶବଦବଶୁଁ । ୧୧ ।

---

୬ । ରତୀଶ—କନ୍ଦର୍ପ, କନକ—ସୁନା, କୁସୁମେ—ଫୁଲରେ, ଜଗଜ୍ଜୟୀ—ସଂସାରଜେତା ।

୭ । ଅବତଂସ—ପ୍ରକାଶ, ଜାଜ୍ୱଲ୍ୟ—ତେଜୀୟାନ, ଦୀଧିତି—କିରଣ, ରତ୍ନତୋରଣା—ସୁନା ଫାଟକ ।

୮ । ବନ୍ଦ ଅବାସ—କଏଦଘର, ବନ୍ଦିଆ ନାମକ ଅଳଙ୍କାର ସ୍ଥାନ, ସୁମଲ୍ଲୀକଡ଼ୀ—ଉତ୍ତମ ମଲ୍ଲୀକଢ଼ି, ହୁଡ଼ି—ଭୁଲ ।

୯ । ଭାଲ—କପାଳ, ତରସ୍ତ—ଭସ୍ମ, ଏକପ୍ରକାର ଚିହ୍ନ, ନାଗଭୁବନେ—ନାଗପୁରେ ବା ପାତାଳପୁରେ ।

୧୦ । ଅକ୍ଷରପନ୍ତି—ଅକ୍ଷରସବୁ, ଜଡ଼—ମୂର୍ଖ ।

୧୧ । ଶିବ—ମହାଦେବ, କଳାକର—ଚନ୍ଦ୍ର, ହୀରୁ—ରତ୍ନାକ୍ରୁ, ଲକ୍ଷ୍ୟ—ଉପମା ।

ଅତ ବଶାଳ ଚୁରବା ନୟନ । ଅଞ୍ଜନଲଞ୍ଜିବ୍ୟାଜେ ମହାମୁନ ।
ନ ମାରୁ ଗୃହାଁଣି ଛଟକ କର । ମରମକୁ ଭେଦିପାଇ ବାହାର ।
କି ସୁନ୍ଦର । ଦୃଷ୍ଟି କସ୍ରଇ ସତ । ଅନ୍ତେ ରଞ୍ଜତ ହେବାରୁ ବ୍ୟକତ ।୧୨।
ଏ ପାଞ୍ଚେ ଗୃହିଲ୍ଲ ଅନେକ ବାର । ଆପଣା ଗାତ୍ରକୁ ନେତ୍ରକୁ ଢାର ।
କ୍ଷତ ନ ଦେଖି ଲଭିଲ୍ଲ ତପୃର । ଚମତ୍କାରରେ ଚମତକାର ।
କି ସୁନ୍ଦର । ସମେ ଆନ ନ ଦିଶି । ଏହି ପଦକ ସେ ହୋଇଲ୍ଲ ଘୋଷି ।୧୩।
ଯେଉଁ ନୟନର ଏଡ଼େ ବଡ଼ାଇ । ମୃଗକୁ ଦେଲ୍ଲ ନଗର ଛଡ଼ାଇ ।
ବୁଡ଼ା କରଦେଲ୍ଲ ମୀନ କମଳ । ମୋ ସଙ୍ଗେ ହେଉଥାଅ ବୋଲି ତୁଲ ।
କି ସୁନ୍ଦର । ପଦ୍ମ ଥିଲକୁ ଦୋଷେ । ଦଣ୍ଡ ଦିଅଇଲ୍ଲ ତୁହିନ ବଶେ ।୧୪।
ଗଣ୍ଡେ ଚନ୍ଦିକା ପ୍ରକାର ମକରୀ । ଏ ଅନୁମାନରୁ ଆନ ନ କର ।
ନାସ୍ୱରଥ ସଜ ହେବା ହେତୁରେ । ମଣ୍ଡିଲ୍ଲ କନ୍ଦର୍ପ ନିଜ କେତୁରେ ।
କି ସୁନ୍ଦର । ନାସାପୃଷ୍ଠ ବେସର । ତୂଣୀର ସ୍ଥିତ ରତ୍ନପୁଙ୍ଖଶର ।୧୫।
ଏମନ୍ତ ସାଜେଣି ଗୃହିଁ କ ଓର । ସ୍ୱୟମ୍ଭୁ ଶମ୍ଭୁ କୁଚ ରୂପ ଧର ।
ଆଚ୍ଛାଦିତ ହୋଇ ଚେଳ-କବଚେ । ବାଳାରେ ଶରଣ ଉତ୍ତମ ପାଞ୍ଚେ ।
କି ସୁନ୍ଦର । ହାର ଜାହ୍ନବୀ ଦିଶେ । ରୋମାବଳୀ କାଳ ଭୁଜଙ୍ଗ ପାଶେ । ୧୬
ଫପୁଷ୍ଟ ଉପମା ଉରଜେ ମଞ୍ଜୁ । ମୁକୁତାମାଳା କୁନ୍ଦକାଳ ରଜ୍ଜୁ ।
ଯଉବନ ରାଜା ସର୍ବସ୍ୱ ତହିଁ । ପ୍ରେମାଳଙ୍କାର ସହିତେ ପୁରାଇ ।
କି ସୁନ୍ଦର । କର ଘୋଡ଼ାଇଅଛୁ । ଜାଗ୍ରତପଣ ଲଜ୍ଜାକୁ ଦେଇଛୁ ।୧୭।
ନୀଳ ଜଳଦ ବଜୁଳିକି ଭଣ୍ଡ । ଥିଲ୍ଲ ପରି କରେ ମର୍କତ ଚୁଣ୍ଡ ।
ଭୁଜେ ବାଜୁବନ୍ଧ ରତ୍ନ ମାଧୁରୀ । ନଦୀ ଲହରୀରେ କହ୍ଲାର ପରି ॥
କି ସୁନ୍ଦର । କଣି ଅଶୋକ କଳୀ । ମାଣିକ୍ୟମୁଦିରେ ଝଳି ଅଙ୍ଗୁଳି ।୧୮।

---

୧୨ । ଅଞ୍ଜନଲଞ୍ଜି—କଳାଗାର, ବ୍ୟର୍ଥ—ଛଳନା, ବ୍ୟକତ—ବାହାର ।
୧୩ । ଗାତ୍ର—ଦେହ, ନେତ୍ର—ଅକ୍ଷି, କ୍ଷତ—ଖଣ୍ଡିଆ ।
୧୪ । ନଗର—ପୁର, ମୀନ—ମାଛ, କମଳ—ପଦ୍ମ, ପାଣି, ତୁହିନ-କାକର ।
୧୫ । ଅନୁମାନ—ମନେକରିବା, କେତୁ—ପତାକା, ତୂଣୀର—ଶରଖୋଳ ।
୧୬ । ସ୍ୱୟମ୍ଭୁ—ବ୍ରହ୍ମା, ଶମ୍ଭୁ—ମହାଦେବ, ଆଚ୍ଛାଦିତ—ଘୋଡ଼ିହେବା, ବାଳା—ସ୍ତ୍ରୀ, ଜାହ୍ନବୀ—ଗଙ୍ଗା, କାଳଭୁଜଙ୍ଗ—କାଳସର୍ପ ।
୧୭ । ଫପୁଷ୍ଟ—ଫରୁଆ, ଉରଜେ—ବକ୍ଷରେ, ମଞ୍ଜୁ—ସୁନ୍ଦର, ରଜ୍ଜୁ—ଦଉଡ଼ି, ଜାଗ୍ରତପଣ—ହୁସିଆର ପଣିଆ ।
୧୮ । ନୀଳଜଳଦ—ନୀଳମେଘ, କହ୍ଲାର—ରକ୍ତପଦ୍ମ ।

ଚିବୁକ ଚତୁର୍ଥୀଚନ୍ଦ୍ର ଭ୍ରମସ୍ତି । କଳଙ୍କ ଅସିତ ପର ଅଙ୍କୁର ।
ଚୃପସ୍ତିରେ ମନୋରମ ଗଳା । ବ୍ୟାଧ ବୁଦ୍ଧି କି ଶିଖି ଏବେ କଳା ।
କି ସୁନ୍ଦର । ମତ୍ତକପୋତ ପାଶେ । ବାନ୍ଧି ଥୋଇଛନ୍ତି ଗିରିପରେ କି ସେ ।୧୯।
ସୁନ୍ଦରୀ ଅବଳାପଦକୁ ଭଲି । ନିବିଧେ ବନ୍ଧନ ହୋଇଛନ୍ତି ବଳି ।
ଅଛି କି ନାହିଁ ଏ ସଂଶୟ ମଧ୍ୟେ । ଭଙ୍ଗି ପଡ଼ିବାକୁ ସେଗୁଣେ ବାନ୍ଧେ ।
କି ସୁନ୍ଦର । ତହିଁ ଖଞ୍ଜି କିଙ୍କିଣୀ । ଏଣୁ କଟୀ ଥିବ ହେଉଛି ଜାଣି । ୨୦ ।
ଚିହ୍ନାଇଅଛି ବାସ କୁଞ୍ଚା ଦେଇ । ଗଢ଼ିଛି ପୁଣି ପିତୁଳା ବସାଇ ।
ନାଭିଅଧ ତନୁମାନେ ତାହାର । ଗୁଲ୍ଫ ପର୍ଯ୍ୟନ୍ତ ନୋହିଲେ ଗୋଚର
କି ସୁନ୍ଦର । ତହିଁ ଦଶୁଛି ପାଦେ । ସ୍ଥଳ ସରସିଜ ଶୋଭିରେ ନିନ୍ଦେ ।୨୧।
ଢୋଡ଼ର ଚୂଳୀ ମୃଗମଦଚିତା । ପଞ୍ଚିମାଣୀ ଙ୍ଗୁଳିଅରେ ମଣ୍ଡିତା
ହୋଇଛି ବ୍ୟକ୍ତ ଅଲକ୍ତ ରଙ୍ଗରେ । ଶରଣ ରକ୍ଷଣ ଅନୁରାଗରେ ।
କି ସୁନ୍ଦର । ଚରଣକୁ ବାଳାର । ଶରଣ ଅର୍ଥରେ ପ୍ରସାରୁ କର ।୨୨।
ମିଳ ଭେବେ ନୋହେ ଲାବଣ୍ୟଧାମ । ଅସିଅଛି ସିନା ପ୍ରତିପ୍ରତିମା ।
ସନ୍ନ୍ୟାସୀ ଭାଷିଲ ସେହି କାଳକୁ । କେମା ସୁନ୍ଦରମା ତୁଲେ ତଳକୁ ।
ହେ ସୁନ୍ଦର । ଅଙ୍ଗେ ଅଙ୍ଗେ ଏହାର । କମୀଁଗି ସିନା ଅଛି ରୂପକାର ।୨୩।
କୁମାର ଦମ୍ଭକୁ ଊଣା ଦଶିଲ । ବର୍ତ୍ତୁଳ ସତିବସୁତ ଭାଷିଲ ।
ସୁବର୍ଣ୍ଣ ସୀତାରେ ବଶ ଶ୍ରୀରାମ । ଯାହାର ଯହିଁରେ ବଳଇ ପ୍ରେମ ।
କି ଗୋସାଇଁ । ଏଥୁ ଅଧିକ ବୋଲ । ଆମ୍ଭ ବର୍ତ୍ତୁରେ ନାହିଁ ଏହାତୁଲ୍ୟ ।୨୪।
ନୃପଜ ବୋଲେ କିପାଁ ନୋହୁଥିବ । ଅଜୀବେ କଲ ଯେ କାମ ସଜୀବ ।
ସଜୀବ ବିଶେଷେ ଚତୁରୀ ଯେନ । ଶୋଭି ହୋଇଥିବ ନବଯୌବନା ।
କି ସଙ୍ଗାତ । ନୟନର କି ତପ । ଦେଖିଲଟିକି ସେ ବାଳା ସ୍ୱରୂପ ।୨୫।

---

୧୯ । ଚିବୁକ—ଗାଲ, ଭ୍ରମସ୍ତି—ଏକପ୍ରକାରଚିତା, ଅଙ୍କୁର—ଜାତହୋଇ ।
ମନୋରମ—ସୁନ୍ଦର, ବ୍ୟାଧ—ଶବର, ଗିରି—ପର୍ବତ ।
୨୦ । ଭଲି—ମନୋହର, କଟୀ—ଅଣ୍ଟା
୨୧ । ଗୁଲ୍ଫ—ଗୋଡ଼ଗଣ୍ଠି ।
୨୨ । ମୃଗମଦ—କସ୍ତୁରୀ, ବ୍ୟକ୍ତ—ପ୍ରକାଶ, ଅଲକ୍ତ-ଲାଖ, ପ୍ରସାରୁ-ଲମ୍ବାଉ
୨୩ । ଲାବଣ୍ୟଧାମ—ଶୋଭାସ୍ଥାନ, ରୂପକାର—ଚିତ୍ରକାର ।
୨୪ । ସତିବସୁତ—ମନ୍ତ୍ରୀପୁଅ ।
୨୫ । ନୃପଜ—ରାଜପୁତ୍ର, ଅଜୀବେ—ଜୀବହୀନରେ ।

ଏ ରୂପେ ବୋଲି କରିବାକୁ ଧ୍ୟାନ । ଦ୍ୱାର ହେଲା ଗତି ଦେବାକୁ ଘେନ
ପ୍ରାଣେ ତ ଅଜ ନ ରଖିବ ମାର । ଏହି କଥା ହେଲା ଏଥିର ସାର ।
କି ସଙ୍ଗାତ । ଅମ୍ଭ ସୁକୃତିରାଶି । ପିଙ୍ଗୁଳା ଅଣିଲା ହୋଇ ତପସ୍ୱୀ ।୨୬।
ବୀରକୁ ଉଚ୍ଚାଟ କରି ସନ୍ନ୍ୟାସୀ । ଚକ୍ଷୁ ବନ୍ଧନ ମାୟାକୁ ପ୍ରକାଶି ।
ଶିଷ୍ୟ ସଙ୍ଗେ ସେହିକ୍ଷଣି ଅନ୍ତର । ପ୍ରତେ ଅନ୍ତର୍ଦ୍ଧାନ ହେଲା ପ୍ରକାର ।
କି ସୁନ୍ଦର । ମନେ ହେଲା ଏ ଧାତା । ନୋହିଲେ ଗଢ଼ନ୍ତା କି ଏ ବନିତା ॥
ଚିତ୍ତୁ ନ ଛାଡ଼ିଲା ଏହି କାତର । ମାଗନ୍ତି ସୁଗତିସଙ୍ଗତ ବର ।
ଦମ୍ଭକୁ ହେଲା ତାହାର କାରଣ । ସ୍ୱରୂପକୁ ଛାଡ଼ିବାରୁ ଜାଣ ।
ସେ ସୁନ୍ଦର । କଲା ଏହି ଭରସା । ପ୍ରାପତି ମୋତେ ହୋଇବ ସୁଦୃଶା ।୨୮।
ଗୃହୁଁ ପ୍ରତିମା ଚକ୍ଷୁ ନ ପିଛାଡ଼ି । ତାତ ହୃକରି ପ୍ରତିବନ୍ଧ ପଡ଼ି ।
ପ୍ରତିବନ୍ଧ ପଡ଼ି ହୋଇବ କିସ । ଲେଖା ହେଲା ସେ ରୂପ ପ୍ରତିଦଶ ।
କି ସୁନ୍ଦର । ଚିତ୍ରପଟ ତା କଲା । ସଭାରେ ବସିବା କାଳ ହରିଲା ।୨୯।
ଯୋଗୀନ୍ଦ୍ର ପ୍ରବେଶ ସିଂହଳଦ୍ୱୀପେ । ଏକାନ୍ତେ କହିଲେ ମନ୍ତ୍ରୀ ସମୀପେ ।
କର୍ଣ୍ଣାଟ ଦେଶ ମହୀପତିସୁତ । କନ୍ୟାର ଅନୁରୂପେ ବର ସେ ତ ।
କି ସୁନ୍ଦର । ଗୁଣମନ୍ଦର ସେହି । ବୀରତୁଲ୍ୟ ହୋଇ ଜଗତେ ନାହିଁ ।୩୦।
ତାକୁ ଯେ ଦେଲା ଯୁବରାଜ ପଦ । ଜାଣିଲି ବିଧାତା ଅତି କୋବିଦ ।
ଆନ ରାଜପୁତ୍ରେ କୁଳବେଶ୍ୱର । ଯୁବତୀ ଚିତ୍ତ ରତନତସ୍କର ।
କି ସୁନ୍ଦର । ଜାତ କାମ ମହୀରେ । କୁମାର ଏଣୁ କହେ ବିଜ୍ଞଜନରେ ।୩୧।
ତାତ ବିବେକପଣେ ରାଜପଣ । ଜାଣି କରନ୍ତି ତାକୁ ସମର୍ପଣ ।
ଉଚ୍ଚାଟ ହୋଇଛନ୍ତି ସ୍ୱରୂପ ଦେଖି । ତାକୁ ପ୍ରଦାନ କରିବା ସୁମୁଖୀ ।
କି ସୁନ୍ଦର । କଥା ସଚିବ ଶୁଣି । ନୃପତି ଆଗେ ଜଣାଇଲା ପୁଣି ।୩୨।
କାହିଁକି ସଦୃଶ ରାଜା ବୋଇଲା । ମନ୍ତ୍ରୀ କହେ କେବେ ଲେଖା ନ ଥିଲା
ଭୂପତି କହେ ତାକୁ କି ପ୍ରକାରେ । ଦୁତ ନ ପେଷି ଅଣିବା ଏ ପୁରେ
କି ସୁନ୍ଦର । ପାଞ୍ଚ ମନ୍ତ୍ରୀ କଥନ । କରିବା ଅପୂର୍ବ ଯାତ୍ରା ରଚନ ।୩୩।

---

୨୬ । ଧ୍ୟାନ—ଚିନ୍ତା, ସୁକୃତିରାଶି—ଯଶସବୁ ।
୨୮ । ଚିତ୍ତୁ—ମନରୁ । କାତର—ଭୟ । ସୁଗତି—ଉତ୍ତମ ଗତି ।
୨୯ । ତାତ—ପିତା, ପ୍ରତିବନ୍ଧ—ବାଧା, ପ୍ରତିଦଶ—ପ୍ରତ୍ୟେକ ଦଗ ।
୩୦ । ଯୋଗୀନ୍ଦ୍ର—ସନ୍ନ୍ୟାସୀ, ଏକାନ୍ତ—ଏକୁଟିଆ, ସମୀପେ—ପାଖରେ ।
୩୧ । କୋବିଦ—ଜ୍ଞାନୀ, ବିଜ୍ଞଜନ—ଜ୍ଞାନୀଲୋକ ।
୩୨ । ଉଚ୍ଚାଟ—ଅସ୍ଥିର ।
୩୩ । ସଦୃଶ—ସମାନ, ଭୂପତି—ରାଜା ।

ବଣ ହୋଇଛୁ ଘୋଷ ଶୁଣି ଅସ୍ମୁ । ଅସ୍ମର କନ୍ୟା ଯାଚିବା ନ ଦଶୁ ।
ସର୍ବ ସମ୍ମତେ ଏ ବିଗ୍ରହର ମୂଳ । ଦୀର୍ଘ ଦନରେ କଲେ ଯାହା ଗୋଳ ।
କ ସୁନ୍ଦର । ଛାନ୍ଦ ହୋଇଲା ଶେଷ । ରାମ ରାମ ସ୍ତୁତି ଅଭଙ୍ଗଶ୍ଳେଷ ।୩୪।
ତାତବତ୍ସଳ ମୃନବେଶଧାରୀ । ଅଧିକ ଭୁଜଦର୍ପହତକାରୀ ।
ଉପଇନ୍ଦ୍ର ବୀରବର ଭାବଇ । ଏ ଗୀତ ଶୁଭେ ଶେଷ ହେବାପାଇଁ ।
ହେ ସୁଜନେ । ଶୁଣି ହୁଅ ସନ୍ତୋଷ । ଖଳ କର୍ଣ୍ଣବିଳେ ନୋହୁ ପ୍ରବେଶ ।୩୫।

## ଏକାଦଶ ଛାନ୍ଦ

( ଲାବଣ୍ୟବତୀର ସ୍ୱପ୍ନ ଦର୍ଶନ )

ରାଗ—ଗୈରୀ

ଏଥୁଅନ୍ତେ ଶୁଣ ରସ ଗ୍ରୀଷମେ ଜାଣି ପ୍ରବେଶ ଉଦୟ ତାରା ଜୀବେଶ ହେଲେ ଅକାଶେ । ଚକ-ସୁଖଚକ-ନକ ଛେଦନେ ହୀରକଚକ ଫିଙ୍ଗିଛୁ ତାତସିନ୍ଧୁରେ କାମ କ ରୋଷେ । ବେଶ ହେବେ କ ରାଜିବାଳୀ । ସ୍ଫଟିକ ପେଟୀରେ କବା କସ୍ତୁରୀ ଦଳ । ୧ ।

୩୪ । ଘୋଷ—ଶବ୍ଦ, ଦୀର୍ଘ ଦନରେ—ସାବଧାନ ।
୩୫ । ତାତବତ୍ସଳ—ପିତୃସ୍ନେହୀ, ଦର୍ପ—କ୍ଷମତା, ଖଳ—ଦୁଷ୍ଟ, କର୍ଣ୍ଣବିଳ—କାନ ଗହ୍ୱର ।

ଲାବଣ୍ୟବତୀର ଚିତ୍ରପଟ ସନ୍ନ୍ୟାସୀ ଚନ୍ଦ୍ରଭାନୁକୁ ଦେଖାନ୍ତେ, ସେ ମୋହିତ ହେଲେ ଓ କପରି ଏ କନ୍ୟାକୁ ପାଇବ ବୋଲି ଉଦ୍‌ବିଗ୍ନ ହୁଅନ୍ତେ ସନ୍ନ୍ୟାସୀ ନିଜର ବିବେକ ବଳରେ ବୁଝି ସିଂହଳ ମନ୍ତ୍ରୀକୁ କହିଲେ । ମନ୍ତ୍ରୀ ରାଜାଙ୍କୁ ଚନ୍ଦ୍ରଭାନୁ ସମ୍ବନ୍ଧେ ସବୁକଥା ବୁଝାଇ ଦେବାରୁ ରାଜା କହିଲେ, ଅମ୍ଭେ କନ୍ୟା ଦେବାକୁ ଡାକିବା ଅପେକ୍ଷା ଗୋଟିଏ ଯାତ୍ରା କରିବା ସେ ଦେଖିବାକୁ ଅସିଲେ କନ୍ୟା ବର ପାରଲେ ଭଲ ହେବ ।

## ଏକାଦଶ ଛାନ୍ଦ

୧ । ଜାଣି—ରାତି, ତାରାଜୀବେଶ-ଚନ୍ଦ୍ର, ଚକ—ଚକୁଆ ଚକୋଇ, ନକ—କୁମ୍ଭୀର, ହୀରକଚକ—ହୀରାଚକ, ତାତସିନ୍ଧୁ—ପିତାଙ୍କର ବାର୍ଦ୍ଧି, ଗ୍ରୀଷ୍ମ ଋତୁରେ ରାତି ହେବାରୁ ଚନ୍ଦ୍ର ଉଦୟ ହେଲେ । ଚନ୍ଦ୍ରକୁ ଦେଖି ଚକୁଆ

ଅଳ କି ବିଭିବର୍ଣ୍ଣକ ହୋଇବ ବିଭିକର କି ମଲ୍ଲୀମାଳା ଦେଇ ବିଧୁ କରଣେ ମଣି । ଏ ବିଚାର ସ୍ୱୟମ୍ବର ନାୟିକୁ ବରିଲି ବର ଏତେ କାଳେ ଦେଖାଗଲା ଏ କଥା ପୁଣି । ରତିକରେ ମହୀମହିଳା । ତାପି ହୋଇଥିଲା କି ଚନ୍ଦନ ଲେପିଲା । ୨ ।

ଶୀତଳ ଯାହା କରଣ ପରଶରେ ସମୀରଣ ରଣରଣ ମିଳାପଣ ଘେନି କି ଏବେ । ବିରହୀଗୁଣ ବିରହୀଠାରେ ଅଦରିଲା ସେହି ସେ ଅଟ୍ଟ ଯା ଗର୍ଭେ ତହୁଁ ଜାତ ସ୍ୱଭାବେ । ପୁଂସ ହୋଇ ସୁଧାଚତ୍ୱର । ଚନ୍ଦ୍ର ଗୃହିଁ ହୋଇଲା ଅଧିକେ କାତର । ୩ ।

ହାସ ନାସା ଗତ ସ୍ମିତ ବଚନ ରମ୍ୟତା ପ୍ରୀତ ଏକାନ୍ତ ହେବାର ଯେତେ କଥା ସ୍ମରେ । ସ୍ୱରଭଙ୍ଗ ପ୍ରବଳରେ ଭାଷା କେ ବର୍ଣ୍ଣେ ଜଗତରେ ତଥାପି ବାଳା ଭାବନା ଥାଇ ତହିଁରେ । ସବର୍ଣ୍ଣାଦ ଶବଦ ଶୁଣି । ସାଧୁ ଶୁକ ଅଇଲେ କି ହୁଅଇ ଗୁଣି ।୪।

ଯେମନ୍ତ ଦେଖିଛୁ ଶଙ୍କେ ତେମନ୍ତ ବଣଇ ନେନେ କେମନ୍ତେ ଲଭିବ ମୂଳ ବିଗ୍ରହ ଏହି । ଯେବେ ଏ ସୁବାବସ୍ଥେ ଦବ୍ୟଗ୍ରାମା ନାହିଁ ପାଶେ କି ଲଭ ତହୁଁ ନୃପତ ସମ୍ପତ୍ତ ଥାଇ । ଆରତେ ଯେ ଚନ୍ଦ୍ରିଲ ଶିବ । ତାକୁ ଦେଖାଅ ନୋହିଲେ ଯାଉ ଏ ଜୀବ ।୫।

---

ଚକୋରଇଙ୍କର ତ ସ୍ୱନିରେ ବିଚ୍ଛେଦ ହୁଏ, ସେହି ବିଚ୍ଛେଦ ହେଲା କୁମ୍ଭୀର ତାହା ନାଶ କରିବାକୁ କନ୍ଦର୍ପ "ବିଷ୍ଣୁ ଯେପରି ଚକ୍ରରେ ନକ୍ରକୁ ନାଶ ହାତୀକୁ ଉଦ୍ଧାର କରିଥିଲେ" ସେହିପରି ସ୍ୱୀୟରକ ପେଷିଛୁ । ପୁଣି ସ୍ୱନିରୂପକ ସ୍ତ୍ରୀ କଣ ବେଶ ହେବ ବୋଲି କସ୍ତୁରୀ ଦଳାହୋଇ କାରପେଡ଼ିରେ ରହିଛୁ କି ?

୨ । ବିଭିବର୍ଣ୍ଣ—ସ୍ୱନି, ବିଭି—ବାହା, ବର—ବରଣ କର, ବିଧୁ—ଚନ୍ଦ୍ର, କର୍ପୂର, ମହୀମହିଳା—ପୃଥିବୀରୂପକ ସ୍ତ୍ରୀ ।

୩ । ସମୀରଣ—ପବନ, ରଣରଣ—କନ୍ଦର୍ପ, ବିରହୀ—ନାଥ, ବିରହୀ—କାମୁକ, ସୁଧାଚତ୍ୱର—ଚୂନଲିପା ଅଗଣା, କାତର-ବିକଳ, ହତାଶ ।

୪ । ବଚନ—କଥା, ରମ୍ୟତା—ମଧୁରତା, "ହାସନାସା ଗତ ସ୍ମିତ ବଚନ ରମ୍ୟତା ପ୍ରୀତ ଏକାନ୍ତ" ଏହି ପଦର ପ୍ରଥମ ଅକ୍ଷର ହା ନାଗସ୍ୱର ପ୍ରିୟେ ହେଉଅଛୁ, ସ୍ମରେ—ମନେକରେ, ସ୍ୱରଭଙ୍ଗ—ଗଳାବସିବା, ସବର୍ଣ୍ଣାଦ—ସ ଯେଉଁ ଶବ୍ଦର ଅଗରେ ଥାଏ ।

୫ । ଦବ୍ୟଗ୍ରାମା—ସୁନ୍ଦରୀ ସ୍ତ୍ରୀ ।

ତେଣେ ନୃପତିନନ୍ଦନୀ ରୁଚିରତର ଗୃଦନୀ ରାଜରେ ମଣ୍ଡି ଗୃଦନୀ ଚନ୍ଦ୍ରକୁ ଗୃହିଁ । ପଦ୍ମିନୀ ହୋଇ ଜାତିର ଭଜି ମଦନବିଚାର କରଇ ଚତୁ-ରତ୍ନର ଶାସ୍ତ୍ର ପଢାଇ । ମୋହସମ କରମହୀନ । ତାହିଁ ପତିସଙ୍ଗ ନାହିଁ ଲଭି ଯୌବନ । ୬ ।

ସୁବର୍ଣ୍ଣ ସମାନ ନାରୀ ବିନୟୀ ଠାଙ୍ଗଣା ପରି ବିରହ ଅନଳେ ହୋଇଥାଇ ଯେ ଦହି । ଭାବଜଳଯୁକ୍ତବେଶେ ତୋଳ କଷଟିରେ କଷେ ପରଶ ରସାଣ ପ୍ରୀତି ବାନ ବଢ଼ାଇ । କାମ କରି କରଇ ଭୋଗ । ବଣିକ ଗୁଣିକପ୍ରିୟୁ ବହୁ ସରାଗ ।୭।

ଦୁର୍ଗା ମୋ ଦୁର୍ଗତି ହର ଏମନ୍ତ ବ୍ୟାକୁଳ ତାର ହର ଉମା ଦୟା କଲେ ସେ ନାରୀ ପ୍ରଂସେ । ନିଦ୍ରାବଶରେ ସ୍ୱପନ ଦେଖିଲେ ସତି ବିଧାନ ଏକ ଯୋଗିନୀ ପ୍ରବେଶ କୁମାର ପାଶେ । କର ଧରି ନିଦ୍ରା ଭାଙ୍ଗିଲା । ଗଗନ ମାର୍ଗେ କୁମାରୀପୁରକୁ ନେଲା । ୮ ।

ବୋଇଲା ଲାବଣ୍ୟବତୀ ଅଛଇ ଏହି ଯୁବତୀ ଗୃଦନୀରେ ଶୋଇଛନ୍ତି ଯେ ପଲ୍ୟଙ୍କପର । ସଖୀ ବେଢ଼ି ଗୃହପାଶେ ଜ୍ଞାନହୀନ ନିଦ୍ରାବଶେ ମନାଇ ପାଇଲେ ଭୋଗ କରି ନାଗର । ଏତେ କହି ହେଲା ଅନ୍ତର । ଶୋଭା ଗୃହିଁ ଲୋଭା ହୋଇ ଭଜା କୁମର ।୯।

ମନେ ପାଞ୍ଚେ ମଞ୍ଚେ ଜାତ କାହିଁକି ଏ ଅଦଭୁତ ଏବେ ଜାଣିଲି ମୋହର ନୟନଭାଗ୍ୟେ । ଏ ବର୍ଣ୍ଣେ ସୁବର୍ଣ୍ଣକମ ହୁଅନ୍ତା କି ତାରତମ ଭିନ୍ନ ଜାଣି ହେଲା ସିନା ରତନ ଯୋଗେ । ହରଷ ଏମନ୍ତ ସ୍ୱରୂପ । ଏତେ ତାଳ ଯାଏ ହୋଇଥିଲା ଏ ଗୋପ୍ୟ । ୧୦ ।

ଏକା ଏ ନୁହେ ହରଷ ପୁଣି ମିଶିଛି ସରସ ମିଳାଛୁ ଶୋଭା ବିଶେଷ ଦୀପ୍ତିକୁ ଘେନ । ସୁବାସ ମନ୍ଦର ଏହି ଦଶୁଅଛୁ ବ୍ୟକ୍ତ ହୋଇ ବହିଲା

---

୬ । ନୃପତି ନନ୍ଦନୀ—ରାଜକନ୍ୟା, ରୁଚିରତର—ଅତ୍ୟନ୍ତ ସୁନ୍ଦର, ଗୃଦନୀ—ଚଇତର, କରମହୀନ—ଭାଗ୍ୟହୀନ ।

୭ । ପରଶ—ଛୁଇଁବା, ରସାଣ—ମାଜିବା, ସରାଗ—ସ୍ନେହ ।

୮ । ଦୁର୍ଗତି—ଦୁଃଖ, ହରଉମା-ଶିବପାର୍ବତୀ, ନିଦ୍ରାବଶରେ—ନିଦରେ,

୯ । ଜ୍ଞାନହୀନ—ଚେତାଶୂନ୍ୟ ।

୧୦ । ମଞ୍ଚ—ପୃଥିବୀ, ନୟନ—ଚକ୍ଷୁ, ଗୋପ୍ୟ—ଲୁଚିବା ।



"ସଖୀବେଢ଼ି ଶୃଙ୍ଗପାରଣ ଜ୍ଞାନହୀନ ନିଦ୍ରାବଶେ
ମନାଇ ପାରିଲେ ଭୋଗ କଲ ନାହିଁ"

ସୁକୃତ କରିଥିଲି ଅବନୀ ! ଭାବ ହାବ ଲୀଳା ପ୍ରସନ୍ନ । ଦୁଷ୍ମନ୍ତ ଯାହା ପ୍ରସାଦେ ସେ କି ସମାନ । ୧୧ ।

ଅଣିମାଦସୁଖଦାୟୀ ଶୋଇଅଛୁ ଅଣିଅଛି ପଲ୍ୟଙ୍କଅଙ୍କରେ ଧଣେ ଏମନ୍ତ ଶୋଭା । ରସାଣ ରଜତବାଡ଼େ କନକଲତା କି ଜଡ଼େ ବିଶଦ ଘନରେ କି ସେ ଚପଳା ପ୍ରଭା । ବାମକର କପୋଳତଳ । କେନ୍ଦୁ ପଲ୍ଲବେ ଥୁଅ କି ଫୁଲ୍ଲ କମଳ । ୧୨ ।

ବୁଜିବାରୁ ଶୋଭିନେଏ କି ନୀଳେନ୍ଦୀବରପକ୍ଷ ଭଲ୍ଟାଇ ଦର୍ପଣେ ଥୋଇଛନ୍ତି କୁତୁକେ । କି ଅବା ଖଞ୍ଜନ ଯୁଗ ନିଷ୍ଚଳ ହେବାରୁ ଯୋଗ ଅଞ୍ଜନ ଅଠାକାଠିରେ ଏକାବେଳକେ । ମୀନଦ୍ୱୟ ଉଦୟ ଅସି । ମୃଗାଙ୍କ ଅଙ୍କରେ ହେଲି ପରସ୍ପ ଦଶି । ୧୩ ।

ବାମା ବାମଦେବ ଦୁଇ ଯେଣୁ ବିଜୟବଜୟୀ ଦ୍ୱନ୍ଦ୍ୱକର ପୂର୍ଣ୍ଣଚନ୍ଦ୍ର ଦ୍ୱିଭାଗ କଲେ । ଖଣ୍ଡେ ଖଣ୍ଡେ ଭାଲଦେଶେ କୀରତ ପ୍ରକାଶ ଅଶେ ନିଶ୍ଚେ ପ୍ରମୋଦ ମାନସେ ଅଣି ବହିଲେ । ଘେନିଅଛୁ ଚନ୍ଦନପାଟି । ଲୋକେ ଏହି ଉପମା ମନେ ପ୍ରକଟି । ୧୪ ।

ଝିଲ୍‌ମିଲ୍‌ମାଲି ପାନ ପରିରେ ଅତ ଶୋଭନ ମାର ମଙ୍ଗଳ ପଲ୍ଲବ ତୋରଣା ପରି । କନ୍ତୁରୀ କୁକୁଲୀ ଝଲ ବାଟେ ଚଳେ ଅଳିଅଳି

---

୧୧ । ଦୀପ୍ତି—ତେଜ, ସ୍ୱବାସ—ନିଜ ରହିବାଘର ।

୧୨ । ଅଣିମାଦ—ଅଷ୍ଟଐଶ୍ୱର୍ଯ୍ୟ, ପଲ୍ୟଙ୍କ ଅଙ୍କ-ପଲଙ୍କ ଉପରେ, ରଜତବାଡ଼—ରୁପା ବାଡ଼ରେ, କନକଲତା—ସୁବର୍ଣ୍ଣଲତା, ଜଡ଼େ—ଗୁଡ଼ାଇ ହୁଏ, ବିଶଦ—ଧଳା, ଘନ—ମେଘ, ଚପଳା—ବିଜୁଳି, କେନ୍ଦୁ-ପଲ୍ଲବେ—କେନ୍ଦୁ ପତ୍ରରେ ।

ଖଟ ଉପର ଧଳା ବିଛଣା ଉପରେ ଲାବଣ୍ୟବତୀ ହଳଦିଆ ଦେହକୁ ଶୋଇପଡ଼ିଥିବାରୁ ପ୍ରତ୍ୟକ୍ଷ ମନେକରେ ରୁପା ଭିତରେ ସୁନାଲତା ମାଡ଼ିଛି କି ବା ଧଳା ମେଘରେ ବିଜୁଳି ଦେଖାଯାଉଛି କି ?

୧୩ । ନୀଳେନ୍ଦୀ ବରପକ୍ଷ—ନୀଳକଇଁ ପାଖୁଡ଼ା, କୁତୁକେ—କୌତୁକରେ । ମୃଗାଙ୍କ—ଚନ୍ଦ୍ର, ଅଙ୍ଗ—ଦେହ,

୧୪ । ବାମଦେବ—ମହାଦେବ, ଦ୍ୱନ୍ଦ୍ୱ—କଳହ, ଭାଲ—କପାଳ, କୀରତ—ଯଶ, ଲୋକେ—ଦେଖିବାରୁ, ପ୍ରକଟି—ପ୍ରକାଶ ହୋଇ ।

ପକ୍ଷ ଗୁଳ କବା ଉଣ୍ଡ ଯିବାକୁ ଲୁବ୍ଧ । ମୁକୁତା ସୀମନ୍ତଉପରେ । କାଳିନ୍ଦୀ ମଧ୍ୟେ କି ବନ୍ଧେ ଜାହ୍ନବୀଧାରେ । ୧୫ ।

ଶଙ୍କାରୁ ଭରୁଛି ଯୋଷା ଚୂର୍ଣ୍ଣ ଚିକୁରକୁ ଖୋସା ଦିଶୁଛି ଯନ୍ତ୍ର ଚଉଁରୀ ରକ୍ତ ଭଉଁରୀ । କେତୁମୁଣ୍ଡ ତୁଣ୍ଡେ ପଶି ଗଲାଣି ଶରଦ ଶଶୀ କେବଳ କାରଣ ଦିଶୁଅଛି ମାଧୁରୀ । ଅଡ଼ଖୋଷା କୁସୁମ ତୋରୀ । ହାହାକାର କର ରୁଣ୍ଡୀଭୂତ କି ତାରୀ । ୧୬ ।

ଗଣ୍ଡଖଣ୍ଡପରେ ପଦ୍ମରାଗତାଟଙ୍କର ସଦ୍ମ ଚନ୍ଦ୍ରଠାରେ ସାନ୍ଦ୍ର ସ୍ନେହୀ ଅବନ୍ଧ୍ୟା କି ସେ । କରେ ବିପରୀତ ରତ ସେପରି ହୋଏ ପ୍ରତୀତ ମିଶିଣ ସେ ଜ୍ୟୋତି ଅପି ଫୁଲେ କି ଦଶେ । ଜଣାଉଛି ରସିକା ବର୍ଣ୍ଣ । ତୋ ଶୋଭା ଯଶ ହେଲଣି ମହୀରେ ପୂର୍ଣ୍ଣ । ୧୭ ।

ଅଛୁ ବଜ୍ରମଣ୍ଡିକଣ୍ଠୀ ବିଧାତା କି ବକ୍ରେ ଗଢ଼ି ସୁନ୍ଦରୀ ସଂସାରେ ଇନ୍ଦ୍ର କରି ଦେଇଛି । ଧଇର୍ଯ୍ୟ-ବୃନ୍ଦଅସୁର ନାଶ କରିଣ ଏଥିର ଥିରଗମନା କି ଥିର ହୋଇ ରହୁଛି । କହୁଛି ଫଳିବା ଫଳକ । ମୁହିଁ ରଖିନାହିଁ ସୁର ନେଇ ପଲକ । ୧୮ ।

ପାନ ଭଳ ପୁରୁ ତୁଣ୍ଡେ ଫୁଟି ଦିଶୁଅଛି ଗଣ୍ଡେ ମୁକୁରେ ଜବା କୁସୁମ ପ୍ରତିବିମ୍ବେ କି । ଶ୍ୱାସବଶେ ଫୁଲେ ଘୋଣା ତହିଁ ଲୀଳା ନାକଚଣା ଉତ୍ଫୁଲ୍ଲ ତିଳପୁଲକୁ ଭୃଙ୍ଗ ଚୁମ୍ବେ କି । ଥୋପିପଡ଼େ ରଙ୍ଗଅଧରେ । ଉପ୍ପ ହୀନ ପକ୍ୱବିମ୍ବେ ମନ ନ ଧରେ । ୧୯ ।

ଦମ୍ଭ ଉଦଧି ମନ୍ଥନ ଅଚଳସ୍ତନ ଚନ୍ଦନ ଲେପନ ହୋଇ ଶୋଭନ ବସନ ଗଲା । ସୁଧାକୋଷ ବେଳ୍ପ ଅଣି ତାଙ୍କି କି କାଚ ତାଳୁଣୀ ଭଲା

---

୧୫ । ପକ୍ଷ୍ମବତୋରଣ—ପକ୍ଷରେ ହୋଇଥିବା ଫାଟକ, କବୁରି କୁରୁଳି—ମୁହଁ ଉପରକୁ ପଡ଼ିଥିବା ଝେଣ୍ଟବାଳ, ବାତେ—ପବନରେ, ଅଳି-ଅଳି—ଭ୍ରମର ସବୁ, ସୀମନ୍ତ—ମୁଣ୍ଡର ସିନ୍ଥି, ସୁନ୍ଥା ।

୧୬ । ଚିକୁର—ବାଳ, ଚୂର୍ଣ୍ଣ—ଝେଣ୍ଟ, କେତୁମୁଣ୍ଡତୁଣ୍ଡେ—ରାହୁପାଟିରେ, ରୁଣ୍ଡୀଭୂତ—ଏକତ୍ରିତ ।

୧୭ । ଗଣ୍ଡ—ଗାଲ, ସଦ୍ମ—ସ୍ଥାନ, ସାନ୍ଦ୍ର—ଅତ୍ୟନ୍ତ, ପ୍ରତୀତ—ବିଶ୍ୱାସ ।

୧୮ । ବଜ୍ର-ହୀରା, ଇନ୍ଦ୍ର—ଶ୍ରେଷ୍ଠ, ଥିରଗମନା-ଧୀରଗମନା, ସୁର-ଦେବତା ।

୧୯ । ପ୍ରତିବିମ୍ବ—ପ୍ରକାଶହେବା, ମୁକୁର—ଅରସୀ, ଜବା—ମନ୍ଦାର, ଘୋଣା—ନାକପୁଡ଼ା, ଉତ୍ଫୁଲ୍ଲ—ଅନନ୍ଦ, ଭୃଙ୍ଗ—ଭଅଁର, ପକ୍ୱବିମ୍ବ—ପାଚିଲା କଇଁଚ କାକୁଡ଼ ।

ଦସ୍ୟୁତ ଭୋଗକୁ ରଖିଛୁ ବାଳୀ । ସ୍ଫଟିକ ପ୍ରାସାଦ ସଦୃଶୀ । ନବଘନ କାନ୍ତ ଅଛୁ ତହିଁରେ ମିଶି । ୨୦ ।

ଯାଉଁଳ ଗାଡ଼ ସଜାଡ଼ ଲଳଅଗ୍ର ଶଙ୍ଖଚୂଡ଼ୀ ସୁପ୍ରୀତରେ ଘେନା-ବାରୁ କାନ୍ତ ଅଧିକା । ସ୍ତ୍ରୀତେ ଶୀତେ କରସ୍ଥିତ ନଖେ ମଞ୍ଜୁ ମଞ୍ଜୁଅତ ଚକିତ ହୋଇଛୁ ପୁଣି ଗୃନ୍ଧ ତାରକା । ତ୍ରୁମ୍ବୀ ଦଣ୍ଡସାର ଭଅଲ । ବୀଣା ହେବ ଗୁଣ ଅଣି ଯାଇଛୁ ବାହୁ । ୨୧ ।

ଦାରଶନେ ପ୍ରେମବାଜ ଦଣ୍ଡେ ସଂଶୟ ଉପୁଜ କର ନାହିଁ ବେଣୀ ଫୁଟି ଦଶୁଛୁ କସ । ଗୃହିଁ କଚ୍ଛପ ଜଘନ ଭାଜଲ ସନ୍ଦେହମାନ ଏ ତାହା ବନ୍ଧନରକ୍ଷୁ କଲ ମାନସ । ଜରୁ ଦେଖି ଦୂରୁଁ ସେ ଲେଖି । ମାଂସଳ ଗଉର ପକ୍ୱ ଚୂତ କି ଶୋଭ । ୨୨ ।

ଶାଢ଼ୀଧଡ଼ି ପଡ଼ି ଜଡ଼ି କାବଡ଼େ ମୀବ କାବାଡ଼ି ଅଛୁ କେତେ ଛନ୍ଦେ ଭଙ୍ଗି ବବେକ ଭଳ । କନ୍ଦମ୍ବ ଭୂବଧର ପବାଚ୍ଛବ ମନୋହର ଚଉ ମଣ୍ଡି ଦ୍ୱିରଦ ବନ୍ଧନ ଶିକୁଳ । ଉପମା ବୁଡ଼ାଇବ କୂଟେ । ଶୋଭାନଦୀ କି ଭଉଁସି ଦେଇ ପ୍ରକଟେ । ୨୩ ।

---

୨୦ । ଉଦଧି—ସମୁଦ୍ର, ଅଚଳ—ପର୍ବତ, ବସନ – ଲୁଗା, ସୁଧାକୋଷ—ଅମୃତଭାଣ୍ଡ, ଦସ୍ୟୁତ-ରାକ୍ଷସ ଓ ପୁରୁଷ, ପ୍ରାସାଦ-କୋଠା, ନବଘନ—ନୂଆମେଘ । ଦମ୍ଭରୂପ ସମୁଦ୍ରକୁ କୁଚରୂପ ପର୍ବତରେ ମନ୍ଥୁଛୁ । ସମୁଦ୍ର ମନ୍ଥନରେ ସୁଧା ବାହାରେ ଏଠାରେ ଚନ୍ଦନ ବୋଳି ହୋଇଥିବା ଓ ଲୁଗା ଘୋଡ଼ାଇ ହୋଇଥିବାରୁ ସେହିପରି ଦଶେ । ଅମୃତ ଭାଣ୍ଡ ହେଲା କୁଚ, ସେଦୁଇଟିକୁ ଅଣି ତା ଉପରେ କାଚ ଚାକୁଣୀ ଘୋଡ଼ାଇଲା ପରି ଲୁଗା ଘୋଡ଼ି ହୋଇଛୁ । କାରଣ କାଳେ ରାକ୍ଷସ ଅମୃତ ଖାଇବେ ଏଠାରେ କାଳେ ପୁରୁଷ ଭୋଗ କରିବ ।

୨୧ । ସ୍ତ୍ରୀତେ—ପିଠିରେ, କର—ହାତ, ଶୀତେ—ତଳରେ, ମଞ୍ଜୁ—ସୁନ୍ଦର, ତ୍ରୁମ୍ବୀ—ଲଉ, ଦଣ୍ଡସାର—ବୀଣାଦଣ୍ଡ ।

୨୨ । ସଂଶୟ—ସନ୍ଦେହ, ଉପୁଜ—ଜାତହୋଇ, କଚ୍ଛପ—କଇଁଛ, ଜଘନ—ଜଙ୍ଘ, ପକ୍ୱ—ପାଚିଲା, ଚୂତ—ଅମ୍ବ ।

୨୩ । କାବଡ଼େ—ଚାଣକର, ମୀବ—କଣ୍ଠ, ଭୂବଧର—ପର୍ବତ, ପବା—ବଜ୍ର, ଦ୍ୱିରଦ – ହାତୀ ।

ନିତମ୍ବ ନଗମ ସ୍ଥାନ ପାଶ ପାଡନ୍ତି ମଦନ ଧରିବାକୁ ଅଛିପକ୍ଷୀ କର ମମତା । କଲେ କି ନୟନ ମନ ମାନିବରେ ତାର ସଦନ ହେଲେ ସେ ମାନ ସଦନ ଏ ସଂଶୟତା । ଅବକାଶ ରଖିଲ ନାହିଁ । ଅଜ ଶୋଭା ଦେଖିବାକୁ ଉଚ୍ଛନ୍ନ ଯହିଁ । ୨୪ ।

ଭନ୍ତୁ ନ ଭନ୍ତୁ ବାନ୍ଧବୀ ଅଗ ମୁଁ ନିଦ୍ରା ଭାଙ୍ଗିବ ତନୁ ହେଲେ ଛୁଇଁଥିବ ଏ ବଡ଼ ଲଭ । ଯେ ପ୍ରରେ ବାଳା ମନାଇଁ ନିଷ୍ଟେଁ ମର୍ତ୍ତ୍ୟେ ଇନ୍ଦ୍ର ସେହି ମନରେ ଭାବନା କରି ପରମ ଶୁଭ । କାନ୍ତ ଧରି ଦେଲ ଝୁଲଇ । ପୁଂସ-କର ଲଗି ନିଦ୍ରା ବିନାଶ ହୋଇ । ୨୫ ।

ଜଡି ଭାଙ୍ଗନ୍ତେ ଅଳସ କି ଶୋଭା କୁଚକଳଶ ଟେକି ହୋଏ କି ମେରୁକୁ କଣିବା ଗର୍ବେ । ଊର୍ଦ୍ଧ୍ୱେ ଛନ୍ଦ କର ବେନି ଶୋଭା ଲପନକୁ ଘେନି ଚନ୍ଦ୍ରେ କି ବଦ୍ଧ୍ୟପରଧି ହୋଇଲ ଏବେ । ମୁଖ ଜୃମ୍ଭାବଶେ ରାଜିତ । ଦରବିକଶିତ କୋକନଦ ଯେମନ୍ତ । ୨୬ ।

ନୟନେ ଚଞ୍ଚଳ ମିଶେ ଗଣବଣା ଏଣୀ କି ସେ ଶର ପ୍ରାୟେ ଯାଇ ପୁଂସଲଖେ ପଡ଼ିଲ । ସେ ସୁନ୍ଦର ପାରାବାର ରସରତନଆକର ମୀନ ପ୍ରାୟେ ହୋଇ ତହିଁ ବେଗେ ବୁଡ଼ିଲ । ଲଜେ ମୁଖ ନୁଅଇଁ ଘନେ । ସମ୍ଭାବନା କଲ ପ୍ରାୟେ ଜଟିଳ ଛନ୍ଦେ । ୨୭ ।

ଭାଳୁଛି ନୁହଇ ମାର ନାହିଁ ଫୁଲ ଧନୁଶର ସୁଧାକର ନୋହେ ତହିଁ କଳଙ୍କ ଅଛି । ଅଜ ଦେବତାମାନଙ୍କ କପାଁ ଅଣିବ ମନକୁ ମୋହର ସୁକୃତୁଁ ଏ ପୁରୁଷ ହୋଇଛି । ମୋର ପୁଣି ସୁକୃତ କେତେ । ଏମନ୍ତ ଶୋଭା ହେବାରୁ ଜାତ ଜଗତେ । ୨୮ ।

---

୨୪ । ନିତମ୍ବ—ପିଚ୍ଛ, ମଦନ—କନ୍ଦର୍ପ, ମମତା—ଇଚ୍ଛା, ସଦନ—ଗୃହ ଅବକାଶ—ଫୁରସେତ ।

୨୫ । ତନୁ—ଦେହ, ମର୍ତ୍ତ୍ୟେ—ପୃଥିବୀରେ, ବିନାଶ—କ୍ଷୟ ।

୨୬ । ଲପନ—ମୁଖ, ବଦ୍ଧ୍ୟପରଧି—ଶିକୁଳିରେ ବେଢ଼ାଇବା, ଜୃମ୍ଭା—ହାଇ, ରାଜିତ—ଶୋଭିତ, ଦରବିକଶିତ—ଦରଫୁଟା, କୋକନଦ—ପଦ୍ମ

୨୭ । ଗଣବଣା—ପଲଛଡ଼ା, ଏଣୀ—ମୃଗୀ, ପାରାବାର—ସମୁଦ୍ର, ଆକର —ଖଣି, ସମ୍ଭାବନା—ଅଦର ।

୨୮ । ସୁଧାକର—ଚନ୍ଦ୍ର, ଜଗତ—ସଂସାର ।

ନିକଟେ ଗୋକୁଳେ ହର ମୋହନରୂପକୁ ଧର ଥିଲେ ନାଶ କରିଛନ୍ତି ଅବନୀଭର । ଏତେବେଳେ ଅବତାର କିପାଁ ହୋଇବ ତାଙ୍କର କି ମୂର୍ତ୍ତିମନ୍ତ ଜପମାଦ୍ରିବ୍ୟଙ୍କ ସାର । ଏ ରୂପେ ବିଗୃରୁଁ ସୁକେଶୀ । କ୍ଷୀର ନୀର ପ୍ରାୟ ମନ ପ୍ରତ୍ୟକ୍ଷେ ମିଶି । ୨୯ ।

ଏକାଳେ କର କୋରକ କର ତରୁଣତଳଙ୍କ ବୋଇଲା ହେ ଜୀବେଶ୍ୱର ବିନୟ ଘେନ । ଚରଣେ ଅଳତା ପର ପଛେ ପଛେ ଛାଇ ପର ଅନୁସରିଥିବାକୁ ମୋ ହେଉଛି ମନ । ମୋତେ ଦିଅ ବସନ ଭାଗ୍ୟ । ହେଲିଣି ସବୁମତେ ମୁଁ କୃତାର୍ଥ ଯୋଗ୍ୟ । ୩୦ ।

ଯେବେ ମୋର ଭାଗ୍ୟ ନାହିଁ ତୋତେ କି ପାରନ୍ତି ଗୃହି ବିଶେ- ଷତ ତନୁ ଛୁଇଁ ଏ କଥା ଭାବ । ମୋ ମତେ ମୁଁ ତୋ ସେବକ ହେଲିଣି କାମପାବକ ଜାଳିଲେ ଏହୁ ଅଯଶ କାହାକୁ ହେବ । ବିନୟ ପ୍ରଶଂସାକୁ ବାଣୀ । ନାହିଁ ମୁଁ କି କହିବି ତୁ ଦୟାଳୁ ମଣି । ୩୧ ।

ମିଥ୍ୟା ନୋହେ ନିଦ୍ରାବ୍ୟାଜେ ନେଇ ଯମଦାଢ଼କୁ ଯେ ରଖିଥିଲି ପଞ୍ଜରକୋଷ୍ଠୁ କର ବାହାର । ହୃଦରେ ମାର ଓଠାର ଘେନିଗଲି ଝଟ କର ଦେଖ ମୁଖରେ ରୁଧିରେ ହୋଏ କର୍ବୁର । ହାସ ଔଷଧୀଶ ପ୍ରକାଶ । ନ କଲେ ନବୀନା ଗଲି ସିନା ବିନାଶ । ୩୨ ।

ସେ ରମଣୀ ଚନ୍ଦ୍ରମଣି ହୋଇଲା ଏମନ୍ତ ମଣି ଗୃହୀଚନ୍ଦ୍ରେ ଦ୍ରବି- ଭୂତ କଲା ନାଗର । ହାସ ପୂରିଲା ପର୍ଯ୍ୟନ୍ତେ ଶ୍ରୀମୁଖ ପ୍ରସନ୍ନ ହୋଏ ହେଲା ଜାଣି ବଚନେ ନେ ତା ସୀକାର । କରଧର ଶିରେ ଲଗାଇ । କୋଳ କର ସୁରସିକ ପଲ୍ୟଙ୍କେ ନେଇ । ୩୩ ।

---

୨୯ । ଅବନୀଭର—ପୃଥ୍ୱୀଭରରେ, ଗୋକୁଳ—ଗୋପକୁ, ଅବତାର—ଜନ୍ମ, କ୍ଷୀର—ଦୁଧ, ନୀର—ପାଣି ।

୩୦ । କୋରକ—କୋଳ, ତରୁଣ—ଯୁବା, ଚରଣ—ପାଦ, ବସନଭାଗ୍ୟ—ଲୁଗାରଭାଗ୍ୟ, ଅର୍ଥାତ୍ ଲୁଗା ତ ସବୁବେଳେ ଦେହରେ ଲାଗିଥାଏ ମୋତେ ସେହିପରି ସବୁବେଳେ ଘେନିଥାଅ ।

୩୧ । କାମପାବକ—କନ୍ଦର୍ପ ଅଗ୍ନି, ଅଯଶ—ନିନ୍ଦା, ବାଣୀ—କଥା ।

୩୨ । ନିଦ୍ରାବ୍ୟାଜେ—ନିଦଛଳରେ, ପଞ୍ଜରକୋଷ୍ଠୁ—ପଞ୍ଜରାକୋଷରୁ, ରୁଧିର—ରକ୍ତ, ଔଷଧୀଶ—ଚନ୍ଦ୍ର ।

୩୩ । ସୀକାର—ମାନିବା ।

ବସି ବସାଇଲା କୋଳେ ଲପନ ଚୁମ୍ବିବାବେଳେ ଜେମା କରେ ଦେଲା ବେଗେ ରତନମୁଦ୍ରୀ । ଜେମା କାଢ଼ି ମୋତିମାଳା ଲମ୍ବାଇଲା ପ୍ରସଙ୍ଗଳା ପରସ୍ପର ବରଣେ ହୋଇଲେ ପ୍ରମୋଦ । ସେକାଳକୁ ଅସ୍ତ ଚନ୍ଦ୍ରମା । କୁମାର ସ୍ୱରୂପବାଢ଼େ ଲେଖି ପ୍ରତିମା । ୩୪ ।

ଦେବୀ ଯେ ମାୟା ହରିଲା ବୀରକୁ ସ୍ୱପ୍ନରେ ନେଲା ରଜନୀ ବିନାଶ ନିଦ୍ରା ସେକାଳେ ହତ । ବକ୍ର କପାଁ ନ ପଡ଼ିଲା ଏ ଦଣ୍ଡ କାହିଁକି ହେଲା ପିଶୁନ ଧାତା କି କଲା ଦାରୁଣ କୃତ । ରାମ ବୋଲି ବିସ୍ମୟ ହୋଇ । ଉପଇନ୍ଦ୍ର ବୀରବର ଏ ରସ କହି । ୩୫ ।

---

## ଦ୍ୱାଦଶ ଛାନ୍ଦ

### ( ଲାବଣ୍ୟବତୀର ବିଳାପ )

ରାଗ—ଭୈରବୀ

ଚେତ ଚତୁର୍ଦ୍ଦିଗ ଗୃହୀଁଲା ନିଶିନାଶେ ପାଶେ ନାହିଁ ଦିବ୍ୟ ତରୁଣ ।
ମାର ହୃଦେ ହାତ ନାଥ ନାଥ ବୋଲି ଅତି ଉଚ୍ଚେ କଲା କାରୁଣ୍ୟ ।
ଖୋଜେ ଅଧୀରେ । ଚେତନା ହତ ସେ ବଧିରେ ।
ଶେଯ ଲେଉଟାଇ କଟି ଫିଟାଇ କର ଭିଡ଼ି କୁଚ ସନ୍ଧିରେ । ୧ ।

---

୩୪ । ରତନମୁଦ୍ରୀ—ସୁନାମୁଦ୍ରୀ, ପ୍ରମୋଦ—ଆନନ୍ଦିତ ।

୩୫ । ରଜନୀ—ରାତି, ବିନାଶ—ଶେଷ, ପିଶୁନ—ଖଳ, ନିଷ୍ଠୁର ।
ଲାବଣ୍ୟବତୀ ଚନ୍ଦ୍ରଭାନୁ ରୂପରେ ମୁଗ୍ଧ ହୋଇ ମନରେ ଚିନ୍ତାକରି ଶିବ ପାର୍ବତୀଙ୍କି ଡାକନ୍ତେ ଶିବ ପାର୍ବତୀ ଯୋଗିନୀଦ୍ୱାରା ଚନ୍ଦ୍ରଭାନୁକୁ ଲାବଣ୍ୟବତୀ ପୁରକୁ ନେଲେ, ସେଠାରେ ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ଉଠାଇ ପରସ୍ପର ବରଣମାଳା ଦେଇ ଆନନ୍ଦରେ ଶୋଇବା ସମୟରେ ଯୋଗିନୀମାନେ ଚନ୍ଦ୍ରଭାନୁକୁ ସେଠାରୁ ଆଣି ନିଜପୁରରେ ଛାଡ଼ି ଦେଇ ଗଲେ ।

---

## ଦ୍ୱାଦଶ ଛାନ୍ଦ

୧ । ଚେତ—ଚେଇଁ, ନିଶିନାଶେ—ରାତିଶେଷରେ, କାରୁଣ୍ୟ—କାନ୍ଦବା, ଶେଯ—ବିଛଣା, କବରୀ—ବାଳ, କୁଚସନ୍ଧି—ସ୍ତନମଧ୍ୟ, ଏହାଲେଖିବା ତାତ୍ପର୍ଯ୍ୟ ଏହି ଯେ ଚନ୍ଦ୍ରଭାନୁ ଯିବାରୁ ଲାବଣ୍ୟବତୀ ଉଠି ଦେଖିଲା

ପୁଣି ବୋଲଇ ହେ ଜାଣି ମୁଁ ନ ଥିଲି ଦଇବ ତୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଷିଲୁ କେଉଁ କାରଣ ।
ଭୁଞ୍ଜି ବସିବା-, ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କପାଁଦେଲୁ ।୨।
ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚ୍ଛୁରଲେ ଏ କ ବଷୟ ।
ତାରତରଳ ନୟନରେ ସରଳ ହୃଦୟା ପୁରାଉଛୁ ଲୁହ ।
ବାଳୀ ରତନ । ବାଳିଶ ପରାୟ ହୋଇଲୁ ।
ପୁରୁଷପଦ ଦବାକର ଅଗମ୍ୟ ପୁରେ କାହୁଁ ପ୍ରିୟ ପାଇଲୁ ।୩।
ବୋଲେ ନାଗରୀ ସାଗରେ ସ୍ନାନ କର ଯେମନ୍ତେ ତୃଷା ନ ତୁଟିଲା ।
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶା ତ ଘଟିଲା ।
ଦବ୍ୟ ପୁରୁଷେ । ଅସି ରସି ବସି ମୋ ପାଶେ ।
ଅଙ୍ଗେ ଅଙ୍ଗ ମେଳେ ରସ ଜାତବେଳେ ବଚ୍ଛେଦ ହୋଇଲେ କ ଦୋଷେ ।୪।
ଅଳି ଭାଳିଲେ ଚନ୍ଦନ ମହୀରୁହ ପରାୟେ ଏହୁ ଅନ୍ତଃପୁର ।
ଉରଗ କଞ୍ଚୁକେ ବେଷ୍ଟିତ ହେବାରେ ଗ୍ରାବି ଦବସେ ଭୟଙ୍କର ।
ଅଛୁ ତହିଁରେ । ପବନର ମାତ୍ର ସ୍ମରଣ ।
ଏ କେଉଁ ଦେବରେ ଗମ୍ୟ ହୋଇଥିବ ଭେଦ ତ ନ ଥିବ ମନୁଷ୍ୟ ।୫।

---

ପୁରୁଷ ନାହିଁ । ତହୁଁ ଶେଯ ଲେଉଟାଇଲା—ତା ନା ଚନ୍ଦ୍ରଭାନୁ ଚନ୍ଦ୍ର ଓ ଭାନୁ ତୁଳାରାଶିକୁ ଯାନ୍ତ—ଶେଯରେ ତ ତୁଳା ଅଛି କାଳେ ଯାଇଥିବେ, ପୁଣି ବାଲକୁ ଫିଟାଇଲା କାରଣ ଚନ୍ଦ୍ର ତ ମେଘରେ ରହନ୍ତି କାଳେ ବାଲ ରୂପ ମେଘରେ ଏ ଲୁଚିଥିବେ, ପୁଣି ଚନ୍ଦ୍ର ତ ପର୍ବତ ମଧ୍ୟରେ ଅସ୍ତ ହୁଅନ୍ତି, ଏ କାଳେ କୁଚପର୍ବତ ସନ୍ଧରେ ଥିବେ ।

୨ । ଦାରୁଣ—କଷ୍ଟୁର, କ୍ଷୁଧାତୁର—ଭୋକ, ସୁଧାତୁଲ୍ୟ—ଅମୃତ ସମାନ, ଭୁଞ୍ଜିବସିବା—ଖାଇବସିବା, କୁଳିଶ—ବଜ୍ର ।

୩ । ତାର—ଉଜ୍ଜ୍ୱଳ, ତରଳ—ଚଳ ଚଳ, ନୟନ—ଆଖି, ବାଳୀରତନ—ନାରୀଶ୍ରେଷ୍ଠ, ବାଳିଶ—ବାତୁଳ, ଦବାକର—ସୂର୍ଯ୍ୟ, ପ୍ରିୟ—ସ୍ୱାମୀ । ସଖୀମାନେ କହିଲେ ଏ ପୁରମଧ୍ୟକୁ ତ ସୂର୍ଯ୍ୟକିରଣ ପଡ଼େ ନାହିଁ କେଉଁ ପୁରୁଷ କପରେ ଅସିଲା ?

୪ । ସାଗର—ସମୁଦ୍ର, ସ୍ନାନ—ଗାଧୋଇବା, ତୃଷା—ଶୋଷ, କଳ୍ପତରୁ—କଳ୍ପବୃକ୍ଷ, ଅଙ୍ଗ—ଦେହ ।

୫ । ଅଳୀ—ସଖୀ, ଚନ୍ଦନ ମହୀରୁହ—ଚନ୍ଦନ ଗଛ, ଅନ୍ତଃପୁର—ଭିତରପୁର, ଉରଗ—ସର୍ପ, କଞ୍ଚୁକ—ପ୍ରହରୀ, ଗମ୍ୟ—ଅସିବା ।

କେମାକୁ ପୁଛିଲେ ତାଣ୍ଡବ ଶବକୁ ଦେଖିଛୁ ତ ଶିବ ସଦନେ ।
ତହିଁ କେଉଁ ଦେବେ କଣ ହେଲୁ ଏବେ କାଅବା ରସିଲୁ ମଦନେ ।
ଶୁଣି ସୁନ୍ଦରୀ । ଶିର କମ୍ପାଇ କଲା ନାହିଁ ।
ଧାତ୍ରୀ ପୁତ୍ରୀ ମନ୍ତ୍ରୀ ସୁତାକୁ ବୋଇଲା ସ୍ୱପନରେ ଭୁଲ କପାଇଁ ।୬।

ଚିକୁର ଶୋଭ ମୁକୁର ପ୍ରତିବିମ୍ବ ଅଲଙ୍ଗନେ ଯେବେ ଆସିବ ।
ମୃଗତୃଷ୍ଣା ଜଳ ତୃଷାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ ।
କହେ ସଚିବ-, ସୁତା ସବୁ ବଢ଼ ଦାଇବ ।
କାହା ମନେ ଥିଲା ଅଗାଧ ସମୁଦ୍ର ଚୁଳୁ ଭିତରେ ସମ୍ଭାଇବ ।୭।

ସେ ପୁଣି ବୋଇଲା ସେ କଥା ସେରୂପେ ଏ କଥା କୁଜ୍‌ଝଟିପ୍ଲବନ ।
ପବନକୁ ଫାଶ ପାତିବସିଥିଲେ ସେ କାହିଁ ହୋଇବ ବନ୍ଧନ ।
ପୁଣି ସେ କହେ । ଉଷା-ଅନିରୁଦ୍ଧ କେମନ୍ତ ।
ସେ ବୋଲେ ସେତ ଯଦୁପୁରେ ସେ ଥିଲା ଜାଣିଲେ ଏ କାହୁଁ ସମ୍ଭୂତ ।୮।

ପରିମଳା ନାମେ ସଜନୀ ବୋଇଲା କେମାକୁ ଅନାଇଁ ସମ୍ମୁଖ ।
ଆଖିଥାଉଁ ଦେଖି ନ ପାର ସଙ୍କେତ ଭୋଳ ହୁଅ କାହିଁ ପାଇଁକ ।
ନୋହେ ସ୍ୱପନ । ସତ କାହିଁକ ନା ବାଳାକୁ ।
କେଉଁ ଦେବୀର ଏ ମାୟା ହେଲେ ହେବ ଲଭିବୁ ବଲ୍ଲଭ ଲୀଳାକୁ ।୯।

---

ସର୍ପମାନେ କହିଲେ ଚନ୍ଦନ ଗଛର ସୁବାସ ଥିବାରୁ ସାପମାନେ ତା ଦେହରେ ଥାନ୍ତି, ଏ ପୁରରେ କେମା ଥିବାରୁ ସର୍ପରୂପ ପହରିବାଳା ଘେରି ରହିଛନ୍ତି, କେମାନ ପବନ ଅସିପାରେ, ଆଉ କିଏ ଅସିବ, ଏଠାକୁ କେଉଁ ଦେବତା ବା ଅସିଥିବ, ମନୁଷ୍ୟର ତ ଅସିବା ସାଧ୍ୟନୁହେ ।

୬ । ତାଣ୍ଡବଶବ--ମହାଦେବ ତାଣ୍ଡବ ନୃତ୍ୟ ବେଳେ ସବୁ ଦେବତା ଥାନ୍ତି, ସେ ଶବ ଦେଖିଥିବ, ଶିବସଦନେ—ମହାଦେବଙ୍କ ମନ୍ଦିରରେ,ମଦନ-କନ୍ଦର୍ପ, ଧାତ୍ରୀପୁତ୍ରୀ—ଦାସୀଝିଅ ।

୭ । ଚିକୁରଶୋଭ—ଅତିସୁନ୍ଦରୀ, ମୁକୁର ପ୍ରତିବିମ୍ବ—ଦର୍ପଣରେ ଦେଖାଯିବା ରୂପ, ମୃଗତୃଷ୍ଣା—ମରୀଚିକା, ଅଗାଧ—ଅସୀମ, ଚୁଳୁ—ଅଞ୍ଜୁଳା, ଅଗସ୍ତି ସପ୍ତ ସମୁଦ୍ରକୁ ଚୁଳୁକରି ଧରିଥିଲେ ।

୮ । ସେରୂପେ—ସେହିଭଳି, କୁଜ୍‌ଝଟି ପ୍ଲବନ—କୁହୁଡ଼ିରେ ପହଁରିବା, ବା ବୁଡ଼ିବା, ଉଷା ଅନିରୁଦ୍ଧ—ବାଣାସୁର ଝିଅ ଉଷାକୁ ଗୁପ୍ତଭାବରେ କୃଷ୍ଣଙ୍କ ପୁଅ ଅନିରୁଦ୍ଧ ହରଣ କରିବାରୁ ଯୁଦ୍ଧହେଲା, ଶେଷରେ ବାଣା ପରାସ୍ତ ହୋଇ ଉଷାକୁ ଅନିରୁଦ୍ଧ ସହିତ ବିବାହ କଲା ।

୯ । ସଙ୍କେତ—ଚିହ୍ନ, ବଲ୍ଲଭଲୀଳା—ସ୍ୱାମୀସୁଖ ।

ଗଣ୍ଡମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୂଳବୋଳ ତ ଲାଗିଛୁ ।
ପାନବଶରେ ରଦବାସ ବିଶେଷ ଶୋଭା ଦନ୍ତ କ୍ଷତ ହୋଇଛୁ ।
ଚନ୍ଦ୍ର ଚନ୍ଦନ । ଠାବେ ଠାବେ ଅଙ୍ଗେ ଜଡ଼ିଛୁ ।
କାମକାତରେ ଭିଡ଼ିଛୁ ତରତରେ କଙ୍କଣ ପଦରେ ପୀଡ଼ିଛୁ ।୧୦।
ଛୁଇଁବା ବେଳରେ ଶ୍ରୀଅଙ୍ଗ କେମାର ଦେଇଥିବ ସିନା ଆଦରେ ।
ଯେଉଁ ମୃଦ୍ରିକା ଅନାମିକାମଣ୍ଡନ କେହୁ ଦେଖିଛ କି ଏ ପୁରେ ।
ଯହୁଁ ଦେଖାଇ । ଏରୂପେ ସଙ୍କେତକାକର ।
ଏକାଳେ ଜଣେ ଗୃହିଁ ବୋଲେ ବାଡ଼କୁ ସେ ପଦ୍ମ ଏ ଚିତ୍ର ସୁନ୍ଦର ।୧୧।
ଉପମାସୃଷ୍ଟି ସୃଷ୍ଟି କର ବିମ୍ବୋଷ୍ଠୀ ଦୁର୍ଲ୍ଲଭ ବଲ୍ଲଭ ରୂପକୁ ।
ଦେଖି ଭାଳିଲେ ପରମେଷ୍ଠୀ ଗୋଟିଏ କଲ୍ପ କୋଟିଏ କନ୍ଦର୍ପକୁ ।
ସର୍ବ ସଜନୀ । ଅନିମିଷ ହୋଇ ରହିଲେ ।
ନୋହିଲେ କାହିଁକି ଜଗତମୋହିନୀମନକୁ ମୋହିଲ କହିଲେ ।୧୨।
ପ୍ରବୋଧ କଲେ ଏ ବଧୂରେ ସଧୀରେ ବୁଦ୍ଧିରେ ଦେଖାଇ ପ୍ରମାଣ ।
ପୁରୁଷପଦେ ଏହାଙ୍କୁ ସ୍ତ୍ରୀପଦେ ତୋତେ ଧାତା କଲା ନିର୍ମାଣ ।
ଆଉ ଅନରେ । ସଙ୍ଗତ କାହୁଁ ଭିଆଇବ ।
ତୁଳାପାନେ ଊଣା ଅଧିକ ପଦାର୍ଥ ପଡ଼ିଲେ କି ସମେ ରହିବ ।୧୩।

---

୧୦ । ଗଣ୍ଡ ମଣ୍ଡଳ—ଗାଲସହ ଓଷ୍ଠ, ପାଟଳ—ଲାଲ, ତାମ୍ବୂଳବୋଳ—ପାନବୋଳ, ପାନ ବଶରେ—ପିଇବା ଇଚ୍ଛାରେ, ରଦବାସ-ଓଷ୍ଠ, ଦନ୍ତକ୍ଷତ—ଦାନ୍ତ ଦାଗ, ଦାନ୍ତଦ୍ୱାରା ଖଣ୍ଡିଆ, ଚନ୍ଦ୍ର—କର୍ପୂର, କାମକାତରେ—କନ୍ଦର୍ପ ଭୋଳରେ, କଙ୍କଣ ପାଦରେ ପୀଡ଼ିଛୁ--କଙ୍କଣ ଦାଗ ଗୋଡ଼ରେ ରହିଛୁ ।

୧୧ । ମୃଦ୍ରିକା—ମୁଦ, ଅନାମିକା—କାଣିଅଙ୍ଗୁଠି ପାଖ ଅଙ୍ଗୁଠି, ସଙ୍କେତ—କାକର—ଚିହ୍ନସବୁ, ବାଡ଼—ଚିତ୍ରପଟ ।

୧୨ । ଉପମାସୃଷ୍ଟି—ଉପମାସବୁ, ସୃଷ୍ଟି—ତିଆରି, ବିମ୍ବୋଷ୍ଠୀ—ଲାବଣ୍ୟବତୀ, ଦୁର୍ଲ୍ଲଭ—ଦୁଷ୍ପ୍ରାପ୍ୟ, ସୁନ୍ଦର, ପରମେଷ୍ଠି—ବ୍ରହ୍ମା, ଅନିମିଷ—ଏକ ଦୃଷ୍ଟିରେ ଚକ୍ଷୁପତା ନ ପକାଇ ।

୧୩ । ପ୍ରବୋଧ—ଶାନ୍ତ, ବଧୂରେ—ନିପୁଣରେ, ସଧୀରେ—ଧୀରଭାବରେ, ଧାତା—ବିଧାତା, ନିର୍ମାଣ—ତିଆରି, ତୁଳାପାନ—ଓଜନକରିବା—ତରାଜୁ ।

ଏତେ କହି ଦେଲେ ମାତକ ବଢ଼ାଇ ସେ ତନୁ ବହିଲା ଷୀଣକୁ ।
ସ୍ୱପନସଙ୍ଗ ପ୍ରସଙ୍ଗ ଚିନ୍ତା ଚଳ ଗୃହି ହରୁଥାଏ ଦିନକୁ ।
ବଡ଼ା ହେବାକୁ । ଶରଧା ହୋଏ ଏହାଭିବ ।
ପୁଣି ସେ ପୁରୁଷପାଶକୁ ଅଇଲେ ଅଞ୍ଚଳେ ଚଞ୍ଚଳ ବାନ୍ଧିବ ।୧୪।
ବିରହ ଅଧିକ ଧୂକ ଜଳ ବେଶ ହାସ ଭୂମିଧରାଶୟନ ।
ଅପଘନେ ଘରକଲା ସ୍ମରଜ୍ୱର ନୀରପୂର ହେଲା ନୟନ ।
ମହା ଆକୁଳ । ଜନତ ହୋଇଲା କାରଣେ ।
ସ୍ତୋକ ସ୍ତୋକ କରି ତନୁକୁ କାଟିଲା ମଦନ ବସାଇ କରତେ ।୧୫।
ବୋଲଇ ସଖି ରେ ବିଚକ୍ଷ ନାଗର-ସ୍ନେହସାଗରରେ ମଜ୍ଜିଲି ।
ଅବଶ୍ୟ ଲଭିବି ଭାବରତନକୁ ଏମନ୍ତ ଚିତ୍ତରେ ହେଜିଲି ।
ଏତେ ବେଳକୁ । ଜୀବନ ଆଶାକୁ ତେଜିଲି ।
କାମଭ୍ରମେ ପଡ଼ି କରମବଶରେ କୂଳ ନ ପାଇ ମୁଁ ବୁଡ଼ିଲି ।୧୬।
ଯିବାକୁ ଜୀବ ଶୋଚନା ହେଜନାହିଁ ଏହି କଥାକୁ ମନେ ଭାବ ।
ସାଗର ଝାସ ଫଳ କାଳ ବାଅର୍ଥ ହେବ ମନାସିବା ପାଇବ ।
କୃପା କରିବ । ଅଜ କର୍ଣ୍ଣଧାର ହୋଇବ ।
କଲା କଥା ଯେହି ଅନ୍ୟଥା କରନ୍ତି ଏମନ୍ତ ଦାରୁଣ ଦଇବ ।୧୭।
ସଖୀ କହିଲେ ଦୁଃଖ ସହି ଧଇର୍ଯ୍ୟ ହେଲେ କାର୍ଯ୍ୟ ଲଭି ଅବଶ୍ୟ ।
ହରି ଅରିଘାତ ସହି ରହିଲରୁ ସୁର ପିଇଛନ୍ତି ପୀୟୂଷ ।
ତୁ ଯେ ତୃଷାର୍ତ୍ତୀ-, ଗୃତକୀ ତୋ ତୃଷା ହରିବ ।
ମଙ୍ଗଳ ଚଳନେ ଓର୍ଜିଲା ଘନ କି ଜଳ ବରଷା ନ କରିବ ।୧୮।

---

୧୪ । ମାତ—ପ୍ରାତଃକୃତ୍ୟ, କ୍ଷୀଣ—ସରୁ, ପ୍ରସଙ୍ଗ—ବିଷୟ, କଥା, ଅଞ୍ଚଳ—କାନି, ସ୍ୱପନ ସଙ୍ଗେ—ସ୍ୱପନରେ ମିଳନହେବା ।
୧୫ । ଧୂକ—ଭୁଲ୍ଛି, ଧରା—ପୃଥିବୀ, ଶୟନ—ଶୋଇବା, ଅପଘନ—ଦେହ, ସ୍ମରଜ୍ୱର—ମଦନବିକାର, ନୀର—ପାଣି, ପୂର—ପୂର୍ଣ୍ଣ, ସ୍ତୋକ ସ୍ତୋକ—ଟିକି ଟିକି ।
୧୭ । ଶୋଚନା—ଦୁଃଖ, ସାଗର—ସମୁଦ୍ର, ବାଅର୍ଥ—ଅକାରଣ, କର୍ଣ୍ଣଧାର—ନାବିକ, ଦାରୁଣ—ନିଷ୍ଠୁର ।
୧୮ । ହରି—ମାଙ୍କଡ଼ ବିଷ୍ଣୁ, ଅରି—ଶତ୍ରୁ, ଶତ୍ରୁ, ଘାତ—ଆଘାତ, ସମୁଦ୍ର ମନ୍ଥନ ବେଳେ ବିଷ୍ଣୁଙ୍କ ଚକ୍ରଘାତ ସହିକରି ସୁର ଅମୃତ ପିଇଥିଲା । ତୃଷାର୍ତ୍ତୀ—ଶୋଷୀ, ମଙ୍ଗଳଗ୍ରହ ଚଳିଲେ ବର୍ଷା ବେଶିହୁଏ ।

ଏକାଳେ ବଳୟଶୋଭା କୁବଳୟନୟନା ମଳୟ ସମୀରେ
ଛଳେ ସ୍ୱୈରୀ ପ୍ରୀତ ତୁମ୍ଭଙ୍କ ବୋଲୁଅଛୁ ସେହୁ ଗୁଣ ବହୁ ମୋଠାରେ ।
ଅହେ ପବନ । ବୋଲୁଅ ଜଗତଜୀବନ ।
ଏବେ ମୋ ଜୀବନ ନେବାକୁ ହୋଇଛ ଯଥା ସନ୍ନିପାତେ ଜୀବନ ।୧୯।
ଯହିଁ ତହିଁ ତୋତେ ମଧୁକାଳ ହୋଏ ଦକ୍ଷିଣା ଶବଦ ପ୍ରକଟ ।
ସେତୁ ହେତୁରେ ଯେଉଁମାନେ ରଖିଲେ କି ନନ୍ଦବା ସେତ ମର୍କଟ ।
ମନ୍ଦ ମରୁତ । ବୋଲୁଛୁ ଯେଣୁ ତନୁ ପୋଡ଼ୁ ।
ଦେବତା ହୋଇଲେ ପୁଣ ମାତାଗୁଣ ରାବଣ ପର୍ଯ୍ୟ ନ ଛାଡୁ ।୨୦।
ଲଗିଲେ, କମ୍ପି ବ୍ୟଥିତ ନ କରବୁ କାଳେ ବୋଲାଇ ଖଣ୍ଡଭୂତ ।
ଏତେକ ବିବେକ ଇନ୍ଦ୍ରର (୧) ନୋହିଲା ଦେହରୁ ହେବ ବଳବନ୍ତ ।
ଜଳ ପବନ । ଏକ ସିନା ସ୍ତୁତ ନ ଘେନ ।
ରାମଠାରୁ (୨) ଜଣାଯାଉଛୁ ନାସତ ହେବ ଗଲାବେଳେ ଜୀବନ ।୨୧।
ପୁଣି ଶୁଣି ପିକବାଣୀ ଗୁଣି ଜୈମିନିଙ୍କ ମଣିଣ ବଜ୍ରପାତ ।
ଚେତନାବଶେ ଅବଶେ ବସେ ଭାଷେ ମୋ ହତର କେଉଁ ମହତ ।
ମୁଁ ଯେ ଅବଳା । ମୋ ବଧ ଜଗତେ କଳୁଷ ।
ବକୁଳଆସବ ଅଗୁଁ ଦ୍ୱିଜ ହେଲେ ହୋଇଲୁ କି ଜ୍ଞାନ-ବିନାଶ ।୨୨।

---

୧୯ । ବଳୟ—ଖଡ଼ୁ, କୁବଳୟ—ରକ୍ତପଦ୍ମ, ନୟନ—ଚକ୍ଷୁ, କୁବଳୟ ନୟନା—ରକ୍ତପଦ୍ମନେତ୍ରୀ, ମଳୟ—ସୁଗନ୍ଧଯୁକ୍ତ, ସମୀର—ପବନ, ଜଗତ ଜୀବନ—ସଂସାରର ପ୍ରାଣ ଓ ପବନ, ଜୀବନ—ପାଣି ।

୨୦ । ମଧୁକାଳ ବସନ୍ତ ସମୟ, ଦକ୍ଷିଣା ଶବଦ—ଦକ୍ଷିଣ ନାୟକର ଆଖ୍ୟା, ଦକ୍ଷିଣ ନାୟକ ତାର ସ୍ତ୍ରୀ ବ୍ୟତୀତ ଅନ୍ୟକୁ ଅନାଏ ନାହିଁ । ସେତୁ—ବନ୍ଧ, ଏଠାରେ ସେତୁବନ୍ଧ । ମର୍କଟ—ମାଙ୍କଡ଼, ମରୁତ—ପବନ, ତନୁ—ଦେହ,ରାବଣର ମାତା—ନିକଷା ଅସୁରୁଣୀ, ରାବଣ ଋଷିପୁତ୍ର ହେଲେ ମଧ୍ୟ ମା ଗୁଣରେ ବଡ଼ ଦୁଷ୍ଟ ଥିଲା ।

୨୧ । ଖଣ୍ଡଭୂତ—ଖଣ୍ଡିଆଭୂତ (୧) ଇନ୍ଦ୍ର ମାତା ଗର୍ଭରେ ପବନକୁ ଅଣଚାଶ ଖଣ୍ଡ କରିଥିଲେ ମଧ୍ୟ ସେ ଅକ୍ଷୟ ହେତୁ ଅଣଚାଶ ରୂପ ଧରି ବଳବାନ ହେଲେ (୨) ରାମ ସମୁଦ୍ରକୁ ସ୍ତୁତ କରିଲା ଠାରେ ସମୁଦ୍ର ନ ଶୁଣନ୍ତେ ରାମ ମାରିବାକୁ ବସନ୍ତେ ବାଟଦେଲା ।

୨୨ । ପିକବାଣୀ—କୋଇଲି ସ୍ୱର ଅର୍ଥାତ୍ କୋଇଲିସ୍ୱର, ବଜ୍ରପର ଜଣାଗଲା ବଜ୍ର ପଡ଼ିଲେ ଯେପରି ଜୈମିନିଙ୍କ ସ୍ମରଣ କଲେ ତାହା ନିବାରଣ ହୁଏ, କଳୁଷ-ନିନ୍ଦା,ବକୁଳ-ବଉଳ, ଆସବ-ମଦ, ଦ୍ୱିଜ-ବ୍ରାହ୍ମଣ, ପକ୍ଷୀ ।

ପଞ୍ଚମସ୍ୱରେ ତୋ ପଞ୍ଚଶର ଥିଲା ପଞ୍ଚତ୍ୱ ଇଚ୍ଛା କର ମୋର ।
କଳକଣ୍ଠ ନାମ ଅଦ୍ୟ ବର୍ଣ୍ଣ ଏବେ ଅଶ୍ଳେଷ କଲ୍କି କି ଅକାର ।
ଅଗୁଁ ଜାଣି ମୁଁ । ନ ଥିଲି ଏମନ୍ତ ବୋଲିଣ ।
ବ୍ୟାଧ ପୋଷି ବଧ ବସ୍ତୁରଥିଲେ ତୁ କିପାଁ ଦେଖାନ୍ତୁ ବଡ଼ପଣ ।୨୩।
କୁସୁମଶରକୁ ପୁଣି ବୋଲିଅଛୁ ହତ୍ୟା ଘେନିବୁ କି ମୋହର ।
ଏ କେଉଁ ବଡ଼ାଇ ମନୁ ଜାତ ହୋଇ ମନ୍ମଥ ପଦ ପୁରସ୍କାର ।
ତୁ କି କସ୍ତୁରୀ । ଠାରୁ ଏ ଦୀକ୍ଷାକୁ ପାଇଲୁ ।
ପଶୁସମ୍ଭବ ଅଚେତ ଦ୍ରବ୍ୟ ସଙ୍ଗେ ବସ୍ତୁରେ ତୁଳନା ହୋଇଲୁ ।୨୪।
ଯେ ବୋଲେ ମାର ତାହାକୁ ତୁହି ମାର ନମାର ବୋଲେ ମୁଁ ନାରତେ ।
ମୋ ତନୁ ନାଶ କର ବାସ କରବୁ କାହିଁ ବସ୍ତୁର କରୁ ଏତେ ।
ଦେଖ ଅନଳ । କ ଷ୍ଟୁକୁ ନଷ୍ଟ କର ଲଭେ ।
ପ୍ରେତ ହେବାରୁ ପ୍ରେତପତି ସମୀପେ ନେବା ବସ୍ତୁର କରୁ ଏବେ ।୨୫।
ଯାହା କୁମାର ତେତେ ସିଦ୍ଧି କି କର ଛାଡ଼ବୁ କି ନୋହେ ବେଭାର ।
ଯାହାକୁ ମାର ତହିଁରୁ କେତେ ଭୂତ ପ୍ରାପତ ହେଲଣି ତୋହର ।
ମୁଁ ତା ହୁଉଛୁ । ଏହି ସୁକୃତରୁ ନିଷ୍ଟୟୁ ।
ଗର୍ବରେ ଭୂତ ସ୍ୱରୂପ ହୋଇଥିଲୁ ଅନୁଚିତ ଚିତ୍ତ ଉଦୟୁ ।୨୬।
ରୋଗ ଋଣ ଶେ ଶେଷକୁ ରଖିଲେ ଅପଣାର ବାଧା ସେ କଥା ।
ସର୍ବ ସର୍ବଜ୍ଞତା କଲା କଥା ପୁଣି କାହିଁକି କଲେ ସେ ଅନ୍ୟଥା ।

---

୨୩ । ପଞ୍ଚମସ୍ୱରେ—କୋଇଲି ସ୍ୱରପରି ମଧୁର ସ୍ୱରରେ, ପଞ୍ଚଶର—ଫୁଲଶର, ପଞ୍ଚତ୍ୱ—ମରଣ, କଳକଣ୍ଠ ଅଦ୍ୟରେ ଅକାର ଦେଲେ, କାଳକଣ୍ଠ ହେଲା, ବ୍ୟାଧ—ଶବର ।

୨୪ । କୁସୁମଶର—କନ୍ଦର୍ପ ବାଣ, କସ୍ତୁରୀ ଦୀକ୍ଷା—କସ୍ତୁରୀ ଯେଉଁ ମୃଗଠାରୁ ବାହାରେ ସେ ନାଶହୁଏ । ସେହିପରି କନ୍ଦର୍ପ ମନରୁ ଜାତ ହୋଇ ମନକୁ ଦହିଲା ।

୨୫ । ମାର—କନ୍ଦର୍ପ, ମାର—ମାରିପକାଇବା, ପ୍ରେତପତି—ଯମ, କନ୍ଦର୍ପ ମରିବାରୁ ପ୍ରେତ ହୋଇ ଯମ ନିକଟକୁ ଗଲା ପୁଣି ଜୀବନ ପାଇଲା ।

୨୬ । କୁମର—ପୁତ୍ର, ଭୂତ—ସମ୍ପତ୍ତି, ଚିତ୍ତଉଦୟ—ମନଦେବା ।

ନାହିଁ ଶୋଚନ । ହେଲେ ହେଲି ମୁଁ ହୀନମାନ ।
ପୁଣି ଜାଣିବେ ବିଷବୃକ୍ଷ ସ୍ଥାପିବା ଉମା କର ଯେ ଧନ ମାନ । ୨୭ ।
କାମିର କେଉଁ ଦେବତାରେ ବିଶ୍ୱାସ ନିଶ୍ୱାସ ଦୁଇ କଥା ନାହିଁ ।
ସିନ୍ଧୁ ଶମ୍ବରେ ସମ୍ବର ବୁଡ଼ାଇଲା ତେବେ ରହିଲୁ ଜୀବେ ତୁହି ।
ଏତେ କହି ସେ । ଖରଶ୍ୱାସ ତେଜି ମଉନ ।
ଅଳୀଅଙ୍ଗେ ଢଳି ପଡ଼ିଲାବେଳକୁ କର୍ଣ୍ଣେ ଫୁଙ୍କି କଲେ ଚେତନ । ୨୮
ସଲିଳ ସିଞ୍ଚିଲେ ସଖୀଏ ବିଞ୍ଚିଲେ ପଲ୍ଲବଶଯ୍ୟାରେ ଶୁଆଇ ।
ଦେଖିଲେ ମୃଣାଳ ବ୍ୟାଳ ମଣି ରମଣୀ ଚମକି ସୁପର୍ଣ୍ଣ ବୋଲଇ ।
କରେ ଭଜନ । ଶିବ ଶିବ ବୋଲି ବନିତା ।
ଗଳାର ହାର କରୁ କରୁ ବାହାର ଫୁଟିଫାଟିଗଲେ ମୁକୁତା । ୨୯ ।

---

୨୭ । ସର୍ବଜ୍ଞାତା—ମହାଦେବ, ଅନ୍ୟଥା—ଅକାରଣ, ଉମା—ପାର୍ବତୀ, ମହାଦେବ କାମକୁ ତୁଚ୍ଛ କରିଥିଲେ । ଉମା ମାନକରିବାରୁ ପୁଣି ଓ କନ୍ଦର୍ପକୁ ଜୀବଦାନ ଦେଲେ ଏ ହେଲା ଯୋଗୀ ପକ୍ଷରେ ବିଷ ସଦୃଶ ।

୨୮ । କାମୀର—କାମୁକଲୋକର, ସିନ୍ଧୁଶମ୍ବର—ସମୁଦ୍ରପାଣି, ସମ୍ବର—ସମ୍ବରାସୁର, କାମ ଆସି ରୁକ୍ମିଣୀ କୋଳରେ ଜନ୍ମ ହୁଅନ୍ତେ ସମ୍ବରାସୁର ଅନ୍ତୁଡ଼ିଶାଳୁ ଚୋରାଇ ନେଇ ସମୁଦ୍ରରେ ପକାଇ ଦେଇଥିଲା ସେଠାରେ ତାକୁ ମାଛ ଗିଳିଥିଲା । ସେ ମାଛ ସମ୍ବରାସୁରକୁ କେଉଟ ଧରି ଭେଟିଦେଲା, ମାଛ କାଟନ୍ତେ ତା ଭିତରୁ ସୁନ୍ଦର ଶିଶୁ ମିଳିଲା । ସମ୍ବରାସୁର ବଳପୂର୍ବକ ରତିକୁ ନିଜ ସ୍ତ୍ରୀ କରିବ ବୋଲି ଘରେ ରଖିଥିଲା । ରତିକି ସେ ଶିଶୁକୁ ଦେଲା । ନାରଦ ଏ ସବୁ ବିଷୟ ରତିକୁ କହନ୍ତେ ସେଠାରେ କନ୍ଦର୍ପ ବଡ଼ ହୋଇ ସମ୍ବରାସୁରକୁ ମାରି ରତିକୁ ଉଦ୍ଧାର କରିଥିଲେ । ଏତେକଷ୍ଟରେ କନ୍ଦର୍ପର ଜୀବନ ରହିଲା ।

୨୯ । ସଲିଳ—ପାଣି, ପଲ୍ଲବଶଯ୍ୟା—କଅଁଳିଆପତ୍ର ବିଛଣା, ମୃଣାଳ—ପଦ୍ମନାଡ଼, ବ୍ୟାଳ—ସର୍ପ, ସୁପର୍ଣ୍ଣ—ଗରୁଡ଼, ଥଣ୍ଡା ହେବବୋଲି ପଦ୍ମନାଡ଼ ଦିଅନ୍ତେ ସାପ ମନେକରି ଗରୁଡ଼ଙ୍କୁ ସ୍ମରିଲାପରି ସେ ଉଠି ବସିଲା, ତାର ବିରହ ବେଦନା ବେଶି ହେବାରୁ ବେକର ହାର ଗରମ ହୋଇଥିବା ହେତୁ ଥରଥର କରି ଛୁଣ୍ଡାନ୍ତେ ମୁକ୍ତା ସବୁ ଫାଟିଗଲା ।

ସହଚରୀଏ ତା ଚରିତ ଅନାଇଁ ତ୍ୱରିତେ ଏମନ୍ତ ବିଚାରି ।
ଦୂର କରିଣ ଶୁକ ସାରୀପଞ୍ଜରୀ ଉପାଡ଼ିବା ପୁଷ୍ପମଞ୍ଜରୀ ।
ଜଳାକାଙ୍କ୍ଷି । ଉଶୀର ବାଟି କଲେ ହତ ।
ବିଚାରିଲେ ନବବଧୂ ବିଧୁ କେହି ନ ଦେଖିବ ଏହା ଭାବ ତ ।୩୦।
ଜଣେ କହିଲା ଅତି ଯତ୍ନ କରିଣ ଗୋପ୍ୟ ମନ୍ଦିରେ ରଖିଥିବା ।
କେ କହେ ଜନନୀ ହକରୀ ସେ କାଳେ ହେଲେ କି ଉପାୟ କରିବା ।
କେଉଁ ସଜନୀ । ବୋଇଲା ଏ ବିଚାର ଭଲ ।
ଘାସ ଦିଆଇ ଶଶ କୃଶ କରିବା ମାଡ଼ିବସୁ ଚନ୍ଦ୍ର ମଣ୍ଡଳ ।୩୧ ।
କେ କହେ ଏ କିଛି ନୋହେ ଗଗନକୁ କେ ପୁଣି କରିବେ ଗମନ ।
ରାହୁ ଯୋଡ଼ ହେବା ନିମିତ୍ତ କରିବା ଜୟଦୈବତୀଙ୍କ ପ୍ରସନ୍ନ ।
ଶୁଣି ସେ ବୋଲେ । ସେ ପାପୀ ଶରୀର ଅମର ।
ସିଂହିକାସୁତ ଉଦରକୁ ଚିରିବ ପରି ହନୁମାନ ପ୍ରକାର ।୩୨।
ଚତୁର ସଖୀ ବୋଇଲା ସର୍ବପର ବିଚାର ଏହି ରେ ସଜନୀ ।
କି ମନ୍ତ୍ରେ ବଶ କରନ୍ତାଇଁ ରହନ୍ତା ଏ ପୁରେ ଦିବସ ରଜନୀ ।
ମହାମାନ୍ତ୍ରିକ । ଜନମାନଙ୍କୁ ଗୋ ପଚାର ।
ମନ୍ତ୍ରୀନନ୍ଦନା ବୋଇଲା ଏଥୁ ତହୁଁ କିପାଁ ବୃଥା କର ବିଚାର ।୩୩।
ବଡ଼ ହୋଇବ କଷ ହୋଇ ଅର୍ଜିଲା କର୍ମ ସିନା ଭୋଗ ହୋଇବ ।
ସାଗର ମନ୍ଥନେ ଗରଳ ପାଇଲେ ଭୋଗ କରନ୍ତି ମହାଦେବ ।
ଶୁଣି ଏ ବାଣୀ । ସମସ୍ତ ବୋଇଲେ ପ୍ରମାଣ ।
ଶିରୀଷଦେହାରେ ଏହା ଅବଜାଲ୍ଲ କଲେ ଅତି ଉଚେ କାରୁଣ୍ୟ ।୩୪।

---

୩୦ । ପୁଷ୍ପମଲ୍ଲୀ—ଫୁଲଗଛ, ଉଶୀର—ବେଣା, ଯେଉଁସବୁ ସୁନ୍ଦର ଜିନିଷ ଦେଖିଲେ କାମ ଜାତ ହୁଏ ସେ ସବୁକୁ ସଜନୀମାନେ ପାଖରୁ ଦୂର କଲେ । କାରଣରେ ବିରହ ଅବେଶ ହେଲେ କାଳେ ପ୍ରାଣ ଯାଇପାରେ ।

୩୨ । ଜୟ ଦୈବତୀ—ଜଗତମାତା, ଜୟ ଦୁଇଫାଳ ହୋଇଥିଲା ତାକୁ ସେ ଯୋଡ଼ି ଜୀବଦାନ ଦେଇଥିଲେ, ହନୁ ସିଂହିକାର ଗର୍ଭକୁ ଚିରିବାହାରିଲା, ଚନ୍ଦ୍ର ରାହୁକୁ ପରାସ୍ତ କରି ବାହାରେ ।

୩୩ । ମହାମାନ୍ତ୍ରିକ—ଯେଉଁମାନେ ଭଲ ମନ୍ତ୍ର ଜାଣନ୍ତି ।

୩୪ । ଶିରୀଷଦେହା—ଶିରୀଷ ଫୁଲ ଦେହୀ ଯେ ଲାବଣ୍ୟବତୀ ।

ଲାବଣ୍ୟନଦୀର କ ବ୍ୟାଧି ବୁଝିବ ଶଦ୍ଦ ରାଜା ରାଣୀ ଶୁଣିଲେ ।
ହୋଇ ଉତ୍ସୁକ ଚକିତ୍ସକ ମନ୍ତ୍ରୀକି ହକରା କରାଇ ଆଣିଲେ ।
ଶୁଣି ସେ ଯାଇଁ । ଦେଖିଲେ ରମଣୀରତନ ।
ଜରତା ମୃଦୁସୁଲ୍ଲୀ ଆଗେ କହିଲେ ଏ ଜ୍ୱରକୁ ଏହି ବିଧାନ । ୩୫ ।
ରସବନା ଏ ନ ଘୁଞ୍ଚିବ ରୁଚିବ ମଧୁର ଆହାର ହୋଇଲେ ।
ଶାନ୍ତ ହେବ ଚିନ୍ତା ତାପ ରାଜେ ଚନ୍ଦ୍ରଭାନୁରେ ଏକ ଶଯ୍ୟା କଲେ ।
ରୋଗ ବିଷମ । ରାଗଜନ୍ୟ ହୋଇ ହୋଇଛୁ ।
ପୁଟପାକରେ ଯେତେକ ଅଉଷଧି ଏ ଗୁଣ ନ କରିବେ କିଛୁ ।୩୬।
କଟରେ ଯେତେ ସଖି ଥିଲେ ଶୁଣିରେ ରହିଲେ ବିରସ ମତରେ ।
ଚତୁର ନାମେ ମାଳମୀ ପରବେଶ ଏହି ସମୟେ ଅନ୍ତଃପୁରେ ।
ପୁଷ୍ପ ଗୃଙ୍ଗଡ଼ା । ଘେନି ସନ୍ନିକଟ ହୋଇଲା ।
ଯେମନ୍ତ ସୁଟବେଶ ପହିଁକି ପ୍ରବେଶ ଅରୁନ୍ଧକୁ ସେ ରହିଲା । ୩୭ ।
ହେ ରାମ କାମସୁନ୍ଦର ଗୁଣବନ୍ତ ଶିଳୀମୁଖ ଧନୁ ଧାରଣ ।
ସିତାମ୍ବୁଜମୁଖୀ ପ୍ରୀତି ପ୍ରମୋଦିତ ହର ମିଦପଣ ପ୍ରମାଣ ।
ଜାଣ ବିରହ । ବିପତ୍ତି ହର ତତପର ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅତି ମନୋହର । ୩୮ ।

---

୩୫ । ବ୍ୟାଧି—ରୋଗ, ଉତ୍ସୁକ-ଉଛୁକ, ଚକିତ୍ସକ—ବୈଦ୍ୟ, ମୃଦୁସୁଲ୍ଲୀ-ଗୃହକରଣୀ ।

୩୬ । ରସ-ବୃକ୍ଷ ଲତାଦି ରସ, ପୁଣି ଶୃଙ୍ଗାର ରସ, ସୁମଧୁର ଆହାର—ସୁମିଷ୍ଟ ଖାଦ୍ୟ, ଓଷ୍ଠର ମଧୁପାନ, ଚନ୍ଦ୍ର ଭାନୁ—ସନ୍ଧ୍ୟାସମୟେ, ରାଜପୁତ୍ର, ଚନ୍ଦ୍ର କିରଣ; ରାଗଜନ୍ୟ—କୋଧ ସଞ୍ଜାତ, ବିରହ ସଞ୍ଜାତ ।

୩୮ । ଶିଳୀମୁଖ—ଭ୍ରମର, ସୀତାମ୍ବୁଜ—ଧଳା ପଦ୍ମ, ହର—ସୂର୍ଯ୍ୟ ଓ ବିଷ୍ଣୁ । କାମ ଯେପରି ଭଅଁରକୁ ନେଇ ଧନୁ କରିଥାଏ ରାମ ସେହିପରି ଶିଳୀମୁଖ ବା ବାଣକୁ ଧରିଛନ୍ତି—ସୂର୍ଯ୍ୟ ଯେପରି ସୀତାମ୍ବୁଜ ଧଳାପଦ୍ମକୁ ପ୍ରେମ କରନ୍ତି ରାମ ସେହିପରି ସୀତାଙ୍କର ମୁଖ ପଦ୍ମକୁ ଦେଖି ପ୍ରେମ କରୁଅଛନ୍ତି—

## ତ୍ରୟୋଦଶ ଛାନ୍ଦ

( ମାଳଣୀର ବେଶ ବର୍ଣ୍ଣନ )

ରାଗ—କଉଶିକ, ମୁନିବର ବାଣୀରେ ଗାଇବ

ଏଥୁ ଅନନ୍ତରେ ରସ । ଶୁଣ ହେ ମାଳଣୀ ବେଶ । ଚୈତ୍ରଫଳ ପର-ଖୋସା । ଖୋସିଛୁ ଯୋଷା ଯେ ।୧। ଗର୍ଭିକ କଲ୍ଲ ଚଉଁରୀ । ପ୍ରକାଶେ ରତ୍ନ ଭଉଁରୀ । ଖଞ୍ଜିଅଛୁ ଗୋଟି ଚମ୍ପା । ଧଇର୍ଯ୍ୟ କମ୍ପା ଏ ।୨। ଅନ୍ଧାର ନିଶାରେ ନଭେ । ନିର୍ମଳ ତାରା କି ଶୋଭେ । ଦିଶଇ ତେମନ୍ତ ପରା । ଲୋଚନ-କାରା ଏ ।୩। ଏଥକୁ କେଶ ନିଭଙ୍ଗେ । ଧାରା ଦେଖାଇଛୁ ମାଙ୍ଗେ । ଘନ ରାହୁ ଭୃଙ୍ଗଶ୍ରେଣୀ । ଅଛି କି ଜିଣି ଏ ।୪। ଲଲାଟେ ଚନ୍ଦନ ଛିଟା । ସିନ୍ଦୁର ବିନ୍ଦୁ ଶୋଭିତା । ଚନ୍ଦ୍ର କୋଳେ କି ସବିତା । ଏହି ଭଙ୍ଗିତା ଏ ।୫। ଶ୍ରବଣେ ରୁଚିକୁଣ୍ଡଳ । ଦୋହଲେ ଗଣ୍ଡ ମଣ୍ଡଳ । ସୁବର୍ଣ୍ଣ ପାଣି ଉପରେ । ଚଉଳୁ ହରେ ଏ ।୬। ଫୁଲଗୁଣା ମାଠଗୁଣା । କରଇ

---

ଲାବଣ୍ୟବତୀ ବିରହରେ ଅସ୍ଥିର ହେବା ଦେଖି ନାନାଦି ଉପଚାରରେ ଶାନ୍ତ କରାଇବାକୁ ଚେଷ୍ଟା କଲେ । ପିତାମାତା ଶୁଣି କିଛି ରୋଗ ମନେକରି ବୈଦ୍ୟଙ୍କୁ ଡକାଇ ପଠାଇଲେ । ବୈଦ୍ୟ ଦେଖିଲେ, ଏ ବିରହ ବ୍ୟାଧି ଏହାକୁ ଉପଚାର କାମଭୋଗ ତେଣୁ ଜଣତା ଧାଇଙ୍କି ଏହି କଥା କହିଦେଇ ଗଲେ ।

---

## ତ୍ରୟୋଦଶ ଛାନ୍ଦ

୧ । ଚୈତ୍ରଫଳ—ନାରଙ୍ଗ ଲେମ୍ବୁର ଫଳ, ଯୋଷା—ସ୍ତ୍ରୀ ।

୨ । ଗର୍ଭିକ—ଭିତରେ ପୂରାଇବା, ରତ୍ନଭଉଁରୀ—ସୁନାଭଉଁରୀ ।

୩ । ନିଶାରେ—ରାତ୍ରରେ, ନଭେ—ଆକାଶରେ, ଲୋଚନ—ଚକ୍ଷୁ, କାରା—ବନ୍ଦୀଗୃହ ।

୪ । କେଶ—ବାଳ, ନିଭଙ୍ଗେ—ଜଳଧାରରେ, ଘନ—ମେଘ, ରାହୁ—ରାହୁଗ୍ରହ, ଭୃଙ୍ଗଶ୍ରେଣୀ—ଭଅଁର ସବୁ ।

୫ । ଲଲାଟେ—କପାଳରେ, ସବିତା—ବାଳସୂର୍ଯ୍ୟ, ।

୬ । ଶ୍ରବଣରେ—କାନରେ, ରୁଚି—ସୁନ୍ଦର ।

ବିବେକ ବଣା । ନାସା ପୃଷ୍ଠକେ ପୃଷ୍ଠକେ । ଥାଇ ୟିଷ୍ଠକେ ଏ । ୭ । ଲଜ୍ଜି ବର୍ଷାନେ କଜ୍ଜ୍ୱଳ । ନୟନେ ଧରେଣ ଉଜ୍ଜ୍ୱଳ । ପଦ୍ମେ କ ଭ୍ରମର ଖେଳା । ତେମନ୍ତେ ତୋଳା ଏ । ୮ । କଣ୍ଠେ ସୁନାକଣ୍ଠି ମାଳି । ପ୍ରବାଳେ ହୋଇଛୁ ୟିଳ । ପଛକୁ ରୁଚିର ଫୁଲ । ମାନସ ଭୁଲ ଏ । ୯ । ଉଚ୍ଚ ଘଞ୍ଚ କୁଚ ବେନି । ହେଲାଦନ୍ତୁ ଯଉବନୀ । ଦେଖି ତ ନାହିଁ ଅବନୀ । ଲୋଚନ ବେନି ଏ । ୧୦ । ମାଦବାକୁ ଯୁବାକୁଳ । କାମ କର ଅନୁକୂଳ । ଚେକନ୍ତୁ କ ଶାଢ଼ୀଘର । ତଥା ସୁନ୍ଦର ଏ । ୧୧ । ବିଦମାଳୀ ପାଟବ୍ରତ । ତାଡ଼ରେ ଭୁଜ ଦୀପିତ । କାମ ଅଧ ଖଡ଼୍‌ବାହ୍ମା । ହସ୍ତରେ ଶୋହ୍ନଏ । ୧୨ । ବାମକରର ଅଙ୍ଗୁଳ । କିସର ମୁଦ୍ରୀରେ ୟିଳ । ଚରଣକେ ବଳା ପଟେ । ନାଦ ପ୍ରକଟେ ଯେ । ୧୩ । ପ୍ରପଦରେ କଂସାମୁଦ୍ରୀ । ଶବଦେ ଧଇର୍ଯ୍ୟ ଖେଦ । ବେଢ଼ରେ ଅଳତା ଶଦ । ଅତ ବିଚକ୍ଷ ଯେ । ୧୪ । ବ୍ୟକ୍ତ ବିଞ୍ଚଣୀ ପଣନ୍ତ । ଜରୁଜପରେ ଲମ୍ବିତ । ବନ୍ଦନ ଛନ୍ଦନ ଗୀବ । ମୋହନ ଛବି ଯେ । ୧୫ । ସ୍ତନ ଊର୍ଦ୍ଧ୍ୱେ କଣ୍ଠତଳେ । ମଣିବନ୍ଧେ କରମୂଳେ । ପାଦ ପରେ ଚିବୁକରେ । କ ମନୋହରେ ଯେ । ୧୬ । ହରିତାଳୀ କାଳୀ ଚିତା । ଉଲୁଟାଇଛୁ ବନିତା । ଦେହ ତ ଅତ୍ୟନ୍ତ ଗୋର । ତହିଁକି ତୋର ଯେ । ୧୭ । ନୋହେ ଉଚ୍ଚ ଖର୍ବ ଅତ । କଥା ଏ ନୋହେ

---

୭ । ବିବେକ—ବୁଦ୍ଧି, ନାସା—ନାକ, ପୃଷ୍ଠକେ—ପୃଢ଼ାରେ ।

୮ । ଲଜ୍ଜି—ଲଜ୍ଜା, ଉଜ୍ଜ୍ୱଳ—ତେଜ ।

୯ । ପ୍ରବାଳ—ପୋହଳା, ରୁଚିର—ସୁନ୍ଦର, ଫୁଲ—କୁଣ୍ଡି ବା ଫୁଲ, ମାନସ—ମନ ।

୧୦ । ଘଞ୍ଚ—ଲଗାଲଗି, ଯୌବନୀ—ଯୁବାବସ୍ଥା ପାଇଥିବା ସ୍ତ୍ରୀ ।

୧୧ । ଶାଢ଼ୀଘର—ଲୁଗାରଘର,

୧୨ । ପାଟବ୍ରତ—ପାଟବରତ, ଭୁଜ—ହାତ, ଦୀପିତ—ସୁନ୍ଦର ।

୧୩ । ବାମକର—ବାଁ ହାତ,ଚରଣକେ—ଗୋଟାଏ ଗୋଟାଏ ଗୋଡ଼ରେ, ନାଦ—ଶବ୍ଦ, ପ୍ରକଟେ— ବାହାରେ ।

୧୪ । ପ୍ରପଦରେ-ପାଦ ଅଙ୍ଗୁଳିରେ, ଧଇର୍ଯ୍ୟ-ମନ, ବେଢ଼ରେ—ଗୋଇଠିରେ

୧୫ । ବ୍ୟକ୍ତ—ପ୍ରକାଶିତ, ବିଞ୍ଚଣୀ— ବିଞ୍ଚଣା, ଜରୁ—ଜଙ୍ଘ ।

୧୬ । ମଣିବନ୍ଧ—ଖଡ଼ୁ ପିନ୍ଧିବା ଜାଗା ଗଣ୍ଠି ।

୧୭ । ଉଲୁଟାଇଛୁ—ଲୁଟାଇଛୁ, ବନିତା—ସ୍ତ୍ରୀ ।

ଯୁବତୀ । ପୀନ ନୋହୁ ଷୀଣ ନୋହୁ । ଏମନ୍ତ ଦେହସ୍ତ ଯେ । ୧୮ ।
ଖବର୍ଜ୍ଜିତ ଗଣ୍ଡି ଶିର । ପାଚିଲା ରସାଳ ପର । ବୟସ ଷୋଳ ସତର ।
ଏଥିଭିତର ଯେ । ୧୯ । କୁସୁମ ଗୁଙ୍ଗୁଡ଼ା ଭରେ । ଗୋଡ଼ାଇଛନ୍ତି
ଭ୍ରମରେ । ଗଜ ପରାୟେ ମନ୍ଥର । ଗମନ ଚାରୁ ଯେ । ୨୦ । ପଣନ୍ତ
ଦେଇଛନ୍ତି ଶିରେ । ଧରିଛନ୍ତି ଦକ୍ଷିଣ କରେ । ମୁଖ ହସିଲାର ପ୍ରାୟେ ।
କି ଶୋଭା ପାଏ ଯେ । ୨୧ । ମଲ୍ଲୀସୁତା ଅଗେ ନେଇ । ସୁମନ
ସମ୍ଭାର ଥୋଇ । ଧୀରେ ହର ଜମା ଅଙ୍କା । ଜହ୍ନୁଲ ବଙ୍କା ଯେ । ୨୨ ।
ସତ କି ବୋଲି ପରସ୍ପର । କେତକୀଜାତ ଗଜରା । ଛାମୁଁକୁ ନେଲା ସତ୍ବରେ ।
ପ୍ରମୋଦ ଭରେ ଯେ । ୨୩ । ବୋଲେ ଜେମା ସାବଧାନ । ହୁଅ ଅପୂର୍ବ
ବିଧାନ । ଜହ୍ନୁଛନ୍ତି ଚତୁରୀ ଅସି । ସୁଧାବରଷି ଯେ । ୨୪ । ସୁମା ଶୁଣି
ବୋଲେ ବସ । କେମନ୍ତ କଥା ସେ ଭାଷ । ଶୁଣି ଅରମ୍ଭିଲା ତହିଁ ।
ମାଳିନୀ କହୁ ଯେ । ୨୫ । ତୋ ଗଞ୍ଚଣୀଫୁଲ ମୋର । ଏଣୁ ଭଲ ବାଞ୍ଛା
ତୋର । ବରକୁ ମୁଁ କହୁଥାଇଁ । ହରେ ଜଣାଇଁ ଯେ । ୨୬ । ଗଲା କାଲି
ଚତୁର୍ଦ୍ଦଶୀ । ହୋଇଥିଲି ଉପବାସୀ । ଦେଉଳ ଭିତରେ ଯାଇଁ । ଜାଗର
ଦେଇ ଯେ । ୨୭ । ବସିଥିଲି ଜଜାଗରେ । ରଜନୀ ଅଛି ପ୍ରହରେ ।
ଅଳପ ଅସିଲା ତୋଳ । ଏମନ୍ତ ବେଳ ଯେ । ୨୮ । ଇଷିଦେ ଚଥା
ସୁନ୍ଦର । କେଣି ବେମ ଠାକୁର । ଶିରେ ଜଟା ଅର୍ଦ୍ଧଶଶୀ । ମଞ୍ଜୁଳ ଦଶୀ
ଯେ । ୨୯ । କୁନ୍ଦ କ୍ଷୀର ଦର ରୁଚି । ତେଜ ନଞ୍ଚି ତହିଁ ଶୁଚି ।
ହୋଇଛନ୍ତି ଦିଗମ୍ବର । ଭସ୍ମଧୂସର ଯେ । ୩୦ । ପାର୍ବତୀଙ୍କି ବାମକରେ ।

---

୧୮ । ଖର୍ବ—ବାଙ୍ଗର, ପୀନ—ମୋଟା, କ୍ଷୀଣ—ସରୁ ।
୧୯ । ଖବର୍ଜ୍ଜିତ—ନଥିବା, ରସାଳ—ଅମ୍ବ ।
୨୦ । କୁସୁମ—ଫୁଲ, ମନ୍ଥର—ଧୀର ।
୨୨ । ସୁମନସମ୍ଭାର—ଫୁଲସବୁ, ହରଜମା—ଶିବ ପାର୍ବତୀ, ବିଜ୍ଞାନ—ଜ୍ଞାନ
୨୩ । କେତକୀଜାତ—କେତକୀ ଫୁଲ ବର୍ଣ୍ଣଠାରୁ ବଳି, ପ୍ରମୋଦଭରେ—ଅତିଆନନ୍ଦରେ ।
୨୪ । ସୁଧା—ଅମୃତ ।
୨୫ । ସୁମା—ସ୍ତ୍ରୀ, ଲବଣ୍ୟବତୀ, ଭାଷ—କୁହ ।
୨୬ । ବାଞ୍ଛା—ଇଚ୍ଛା ।
୨୮ । ଜଜାଗରେ—ଅନିଦ୍ରାରେ, ରଜନୀ—ରାତି, ତୋଳ—ନିଦ ।
୨୯ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର, ମଞ୍ଜୁଳ—ସୁନ୍ଦର ।



"କୁସୁମ ଗୁଙ୍ଗଡ଼ା କରେ, ଗୋଡ଼ାଇଛନ୍ତି ଭ୍ରମରେ"

ଧରିଅଛନ୍ତି ସ୍ନେହରେ । ଦକ୍ଷିଣ କରରେ ବେଣ । ବଜେ ବିନୋଦ ସେ ୩୧ । ସେ ବେଣ ମୋତେ ଛୁଅଇଁ । ତକ୍ଷଣେ ମୋ ଚେତା ହୋଇ । ଗୃହିଁ ଶିବ ଶିବା ରମ୍ୟ । କଲି ପ୍ରଣମ୍ୟ ଯେ । ୩୨ । ମୃଣ ମୃଦୁହାସେ ପୂର୍ଣ୍ଣ । କଲେ ମୋତେ ଅବଧାନ । ନୃପଜାପାଇଁ ତୁ ମୋତେ । କଣାଇ ନତ୍ୟେ ଗୋ । ୩୩ । ଚନ୍ଦ୍ରମୁଖୀ ଏ ନିଶାରେ । ଶୋଇଥିଲା ଚନ୍ଦ୍ରକରେ । ମୋର ଅଜ୍ଞାରେ ଯୋଗିନୀ । ପ୍ରକ୍ରଷେ ଘେନି ଯେ । ୩୪ । ପ୍ରବେଶ ବାଳା ପାଶର । ଚହ୍ନାଇଦେଇ ଅନ୍ତର । ମେ ପୁଣି ନିଦ୍ରା ଭାଙ୍ଗିଲା । ବନସ୍ତୀ ହେଲା ଯେ । ୩୫ । ସ୍ୱମା ସୀତ୍କାର ବେଳେ । ଆଲିଙ୍ଗନ ହେବା କାଳେ । ଯୋଗିନୀ ମାୟାର ବଶ । ହରିଲା ସ୍ପର୍ଶ ଯେ । ୩୬ । ଏଣୁ ବହୁତ ବ୍ୟଥିତ । ହେଉଅଛୁ ଜେମାର ଜାତ । ତୁ ଯାଇ କହ ବାଳାକୁ । ଲଭିବ ତାକୁ ଯେ । ୩୭ । ମୁଁ ପୁଚ୍ଛା କଲି ଏମନ୍ତ । କେଉଁ ରାଜାର ସେ ସୁତ । ନାମ ତାର କସ ପୁଣି । କହିଲେ ଶୁଣି ସେ । ୩୮ । କର୍ଣ୍ଣାଟ କଞ୍ଚି ନଗରେ । ଶଶିଶେଖର କୋଳରେ । ହୋଇଅଛୁ ସେ ଜନମ । ଲୋକାଭିରାମ ଯେ । ୩୯ । ଚନ୍ଦ୍ରଭାନୁ ତାର ନାମ । କାମିନୀମୋହନ କାମ । ରମଣୀ ତାକୁ ପାଇବ । ସୁଖୀ ହୋଇବ ଯେ । ୪୦ । ସାଧୁ କୁଳ ବ୍ରହ୍ମଗୃହସ୍ଥ । ପରବେଶ କାଲି ପର । ଘେନି ତାହାର ସନ୍ଦେଶ । ହେବ ଏ ଦେଶ ଯେ । ୪୧ । ଏତେ ଅଜ୍ଞା ଦେଇ ହର । ହୋଇଲେ ଅନ୍ତର । ଆଜ ମୋତେ ନିଦ୍ରା ନାହିଁ । ଅଇଲି କହି ଯେ । ୪୨ । ନାମ ଶ୍ରବଣ

---

୩୦ । କୁନ୍ଦ—କୁନ୍ଦଫୁଲ, କ୍ଷୀର-ଦୁଧ, ଦର-ଅଙ୍ଗ, ଏସବୁ ଧଳା, ଦିଗମ୍ବର—ଲଙ୍ଗଳା, ଭସ୍ମଧୁସର—ପାଉଁଶ ବା ବଭୂତରେବୋଲା ହେବାରୁ ପାଉଁଶିଆ ଦିଶୁଥିଲେ ।

୩୨ । ରମ୍ୟ—ସୌନ୍ଦର୍ଯ୍ୟ, ପ୍ରଣମ୍ୟ—ନମସ୍କାର ।

୩୩ । ନୃପଜା—ରାଜସୁତା, ନତ୍ୟେ—ପ୍ରତିଦିନ ।

୩୪ । ଚନ୍ଦ୍ର କରେ—ଚନ୍ଦ୍ର କିରଣରେ ।

୩୬ । ସୀତ୍କାର—ସମ୍ମତ, ଆଲିଙ୍ଗନ—କୋଳ ।

୩୯ । ଲୋକାଭିରାମ—ମନୁଷ୍ୟ ମଧ୍ୟରେ ଅତି ସୁନ୍ଦର ।

୪୦ । କାମିନୀ ମୋହନ—ସ୍ତ୍ରୀ ମୋହକାରୀ, କାମ—କନ୍ଦର୍ପ ।

୪୧ । ସନ୍ଦେଶ—ଖବର, ବ୍ରହ୍ମଗୃହସ୍ଥ—ଯୋଗୀ ।

ତାହାର । ହେଲ ଚନ୍ଦ୍ର ଦବାଙ୍କର । ସଂଶୟ ଅନ୍ଧାର ଦୂର । କଲା ତାହାର ଯେ । ୪୩ । ପୁଣି ସେ କଳ ପର୍ଯ୍ୟନ୍ତେ । ଅଶୋକତରୁ ପଲ୍ଲବାଏ । ପ୍ରମୋଦ ପଦ୍ମପ୍ରକାଶେ । ରବ ସଦୃଶେ ଯେ । ୪୪ । ଶୁଣି ଯଥା ଘନଘୋଷ । ତୃଷାର୍ତ୍ତି ଗୃତକ ତୋଷ । ବରଷିବ କର ମତ । ହୋଇ ନୃପତ ଯେ ।୪୦। ଦେବଶ୍ରୀ ଚକୋର ମୋହ୍ନା । କର୍ପୂରକୁଡ଼କୁ ଗୃହିଁ । ସେ ଚନ୍ଦ୍ର ପାଇଲେ ଯଥା । ତଥା ଏ କଥା ଯେ । ୪୬ । ଚୂତ ହେଲେ ପଲ୍ଲବତ । ଭ୍ରବ ହେବେ ମୁକୁଳିତ । ପିକ ଯଥା ଅନନ୍ଦିତ । ହେଲେ ତେମନ୍ତ ଯେ ।୪୭। ସନ୍ନିପାତର ନାଠିକା । ଲଗିଲେ ଯଥା ତାଠକା । କଛୁ କଛୁ ହୋଏ ଭିନ୍ନ । ତେମନ୍ତ ମନ ଯେ । ୪୮ । ବାଳକ ପର୍ଯ୍ୟନ୍ତ ହୋଇ । ପୁଚ୍ଛା କଲେ ଡାହ୍ନ ଡାହ୍ନ । ମାଳମୀଙ୍କ କଲେ ଦାନ । କନ୍ଦ ବସନ ଯେ । ୪୯ । ଗିରିଜା ନମିତ୍ତେ ପୁଣି । ଦେଲେ ସେ ଚାରୁ କାଛେଣୀ । ଖଞ୍ଜିଲେ ମନ୍ଦାରମାଳୀ । ଜୂପନ ବଳି ଏ । ୫୦ । ଶମ୍ଭୁଅଙ୍ଗେ ଗୋଦୋହନ । ପାଇଁ ଦେଲେ ଧେନୁମାନ । ବିଲ୍ୱପତ୍ର ଜଳଶାୟୀ । ଭୋଗର ପାଇଁ ଯେ ।୫୧। ବରାଟକ ଦେଲେ ଫଣୀ । ନାଗ ଚନ୍ଦ୍ର ପାଇଁ ପୁଣି । ସୁବର୍ଣ୍ଣ ବଣିକ କରେ । ଦେଲେ ହର୍ଷରେ ଯେ । ୫୨ । ଚତୁର୍ବକ୍ତ୍ର କହେ କେମା । ଜଣାଇବ ହର ଉମା । ଘୁମ୍ବରେ ବାଣୀ ଏମନ୍ତ । ମୋର ଶପଥ ଗୋ । ୫୩ । ଯେବେ ଲଭିବ ସେ ଯୁବା । ମୋ ଜୀବଥିବାରେ ସେବା । ଦଧୂହିଁ ନୋହିବ

---

୪୩ । ଚନ୍ଦ୍ର ଦବାକର—ଚନ୍ଦ୍ରଭାନୁ ।

୪୪ । ଅଶୋକତରୁ—ଅଶୋକଗଛ, ରବ—ସୂର୍ଯ୍ୟ ।।

୪୫ । ଘନଘୋଷ—ମେଘଶବ୍ଦ, ତୃଷାର୍ତ୍ତି—ଶୋଷୀ, ତୃପତ—ସନ୍ତୋଷ

୪୭ । ଚୂତ—ଅମ୍ବ, ମୁକୁଳିତ—ବଉଳିବା ।

୪୯ । ଡାହ୍ନ ଡାହ୍ନ—ଥରକୁ ଥର, କନ୍ଦ ବସନ—ସୁନା ଓ ଲୁଗା ।

୫୦ । ଗିରିଜା—ପାର୍ବତୀ, କାଛେଣୀ—ଲୁଗା,ମନ୍ଦାରମାଳୀ—ମନ୍ଦାରଫୁଲର ମାଳା, ଜୂପନ—ପୂଜା, ବଳି—ଭୋଗଦ୍ରବ୍ୟ ।

୫୧ । ଶମ୍ଭୁ—ମହାଦେବ, ଗୋଦୋହନ—ଗାଈ ଦୁହିଁବା, ଧେନୁମାନ—ଦୁଧିଆଳି ଗାଈସବୁ; ବିଲ୍ୱପତ୍ର—ବେଲପତ୍ର ।

୫୨ । ବରାଟକ—କଉଡ଼ି, ନାଗ—ସର୍ପ, ଚନ୍ଦ୍ର—ଗୃହ, ସୁବର୍ଣ୍ଣ ବଣିକ—ସୁନାରୀ ବଣିଆ ।

୫୩ । ଚତୁର୍ବକ୍ତ୍ର—ମାଳମୀଙ୍କ, ଶପଥ—ରାଣ ।

ଧନେ । ବାଧି ବାଧାନେ ଯେ । ୫୪ । ନ ଥିଲେ ଲଭିବା ଯୋଗ । ମରଣ କରିବେ ବେଗ । ମୋ ଭୂଷା ଚମ୍ପା ଚଢ଼ାଇ । ପୂଜିବେ ସଖୀ ଯେ ।୫୫। ପୁଣି ବୋଲେ ସହଚରୀ । ଅଥିର ନୁହ ସୁନ୍ଦରି । ଭୁଇଁ କରେ ଭୁଞ୍ଜେ ଭୋଜ୍ୟ । ହେଲେ କି ସୁଖୀ ଗୋ । ୫୬ । ପକ୍ଷୀ ପକ୍ଷ ଥିଲେ ଯାଇ । ଶକ୍ୟାନୁରୂପେ ଗମଇ । ହେଲଣି ଏ କାର୍ଯ୍ୟ ପୂର୍ଣ୍ଣ । ସୂଚକମାନ ଗୋ ।୫୭। ଦିଶୁଛି ବାଧି ସମ୍ମୁଖ । ସ୍ୱପ୍ନ ଗତ ହେଲା ଦେଖ । କିଛିକାଳ ଧର ଧୈର୍ଯ୍ୟ । ଲଭିବୁ କାର୍ଯ୍ୟ ଗୋ । ୫୮ । ହେମନ୍ତ ଋତୁ ପ୍ରବେଶ । ପଦ୍ମବନ କରେ ଧ୍ୱଂସ । ମୂଳ ଥିବାରୁ ବସନ୍ତେ । ପଲ୍ଲବେ ସତେ ଯେ । ୫୯ । କ୍ଷୀଣ ହୋଇ କଷ୍ଟ ସହି । ଜୀବମାନେ ଥିଲେ ତୁହି । ଲଭିବୁ ପରମ ଭୋଗ । ଅଛି ଏ ଯୋଗ ଗୋ । ୬୦ । ମାଲତୀ ଅଗମ୍ୟ ବନେ । ଫୁଟିଲେ ବଞ୍ଚିବ ମନେ । ଭୃଙ୍ଗେ କି ଭୋଗ୍ୟ ନୁହଇ । ପରାଣ ସହି ଗୋ ।୬୧। ଏ କଥା ଜାଣ ତୁ ଚିତ୍ତ । ମଧୁମକ୍ଷିକା ସଞ୍ଚିତ । ଦେବଭୋଗ୍ୟ ହୁଏ କେହି । ବଞ୍ଚିବ ସହି ଗୋ । ୬୨ । ଫଣୀ ଜାଗ୍ରତେ ଚନ୍ଦନ । ଥିଲେହେଁ କର ଭାବନ । ଭୋଗ ହେଉଛି କି ନାହିଁ । ପରାଣ ସହି ଗୋ । ୬୩ । ଯେତେବେଳେ କୁସୁମ ଫୁଟେ । ତେବେ ସୁଗନ୍ଧ ପ୍ରକଟେ । ଯହିଁ ତହିଁ ନଦୀଜଳ । ସମୁଦ୍ରେ ମୂଳ ଗୋ । ୬୪ । ଏମନ୍ତ ବଚନ ସିଞ୍ଚି । କରି ମାନସ ପ୍ରବୋଧି । ଯତନ କଲେ ଲଳନା । ସଖୀ ପାଳନା ଏ । ୬୫ । ନାୟିକ ସୁଖଦାୟକ ।

---

୫୪ । ଜୀବ ଥିବାରୁ—ପ୍ରାଣ ଥିବାଯାଏ, ସେବା—ପୂଜା ।

୫୫ । ଭୂଷା—ଅଲଙ୍କାର, ଚମ୍ପା—ଚମ୍ପାଫୁଲ ।

୫୬ । ଅଥିର—ଅସ୍ଥିର, ଭୁଞ୍ଜେ—ଖାଏ ।

୫୭ । ଶକ୍ୟାନୁରୂପେ (ଶକ୍ୟ+ଅନୁରୂପେ) ଶକ୍ତି—କ୍ଷମତା, ଅନୁରୂପେ—ଅନୁସାରେ, ସୂଚକ—ଚିହ୍ନ ।

୫୯ । ଧ୍ୱଂସ—ନାଶ ।

୬୦ । ପରମ ଭୋଗ—ଶ୍ରେଷ୍ଠଭୋଗ ।

୬୧ । ଅଗମ୍ୟ ବନ—ଘୋର ଜଙ୍ଗଲ, ଭୃଙ୍ଗ—ଭଅଁର ।

୬୨ । ମଧୁମକ୍ଷିକା—ମହୁମାଛି ।

୬୩ । ଫଣୀ—ସର୍ପ ।

୬୪ । ସୁଗନ୍ଧ—ବାସନା, ପ୍ରକଟେ—ବାହାରେ ।

୬୫ । ମାନସ—ମନ ।

ତା ନାମ ତକ୍ର ତାରକ । ଜପିଲ ହୃଦରେ ଧର । ଅବନୀଶିରୀ ଏ । ୬୬ ।
ମାଳିନୀ ହେଲା ମେଲାଣି । ଗଲା ନିଜପୁର ପୁଣି । ଏ ଛାନ୍ଦ ହୋଇଲା ଶେଷ ।
ଅଛି ହରଷ ଏ । ୬୭ । ହଂସବଂଶକୁ ତୋଷି ତ । ସଦା ଶ୍ରୁତି ରଞ୍ଜିତ ।
କର୍ବୁରକାନ୍ତି ଗଞ୍ଜିତ । କାନ୍ତି ଦୀପିତ ଏ । ୬୮ । ସେ ରାମ ବଧୂରେ ଯାମି ।
ଭଞ୍ଜ ବୀରବର କହି । ଭୂମ୍ନ ରଚନା ସମସ୍ତ । ପୂରୁ ଏ ଗୀତ ହେ । ୬୯ ।

## ଚତୁର୍ଦ୍ଦଶ ଛାନ୍ଦ

( ଚନ୍ଦ୍ରଭାନୁର ଖେଦ ଓ ଶୋକ )

ରାଗ—ଭଳହଂସ କେଦାର

ଶୁଣ ରସିକ ରସ ଏଥୁ ଅନ୍ତରେ । କୁମର ଶୋଇଅଛି ପୁରଚତ୍ୱରେ ଯେ । କାତର ହୋଇ ଗୃହି ନିଦ୍ରା ବିନାଶେ । ନାହିଁ ଯାମିନୀ ନାହିଁ କାମିନୀ ପାଶେ ଯେ । ୧ । ବସି ଘୋଷିଲା ଆଇ ତାଠାରେ ମନ । ଏଣୁ ସ୍ୱପନେ ଦେଖା ଦେଲା ସେ ଧନ ଯେ । ଜରଦେଶକୁ ଗୃହି ଦେଖିଲା ହାର । କୁଙ୍କୁମେ ହୋଇଅଛି ସେ ଜରଜର ଯେ । ୨ । ଅହା ରେ ସୁକୁମାର

---

୬୬ । ନାୟକ—ପୁରୁଷ, ତାରକ—ମନ୍ତ୍ରର ନାମ, ଅବନୀ ଶିରୀ—ପୃଥିବୀର ସୁନ୍ଦରୀ ।

୬୮ । ହଂସବଂଶ—ସୂର୍ଯ୍ୟବଂଶ, ଶ୍ରୁତିରଞ୍ଜନ—କର୍ଣ୍ଣମୋହନ, କର୍ବୁର—ଶ୍ୟାମଳବର୍ଣ୍ଣ, କାନ୍ତି—ତେଜ ।

ଲାବଣ୍ୟବତୀର ବିରହ ଅବସ୍ଥା ଭୋଗବେଳେ ମାଳିନୀ ଫୁଲ ନେଇ ଆସି ଶିବ ପାର୍ବତୀ ଦେଇଥିବା ବର ବିଷୟ କହିବାରୁ ଲାବଣ୍ୟବତୀ ସନ୍ତୋଷ ହେଲା । ସେ ମାଳିନୀକୁ ପୁରସ୍କାର ଦେଇ ବିଦାୟ କଲା । ଲାବଣ୍ୟବତୀ ଭକ୍ତିଭରେ ଶିବ ପୂଜା କରାଇଲା ।

## ଚତୁର୍ଦ୍ଦଶ ଛାନ୍ଦ

୧ । ପୁରଚତ୍ୱରେ—ନଅର ଅଗଣାରେ, ଯାମିନୀ—ରାତି, କାମିନୀ—ସ୍ତ୍ରୀ, ( ଚନ୍ଦ୍ରଭାନୁ ନଅରର ଅଗଣାରେ ଶୋଇ ରାତ ଶେଷରେ ନିଦ ଭାଙ୍ଗନ୍ତେ ଦେଖିଲା ଆଜ ରାତ ନାହିଁ କି ସେ ସ୍ତ୍ରୀ ମଧ୍ୟ ନାହିଁ । )

୨ । ଜରଦେଶ—ଛାତି, ସେ ସ୍ତ୍ରୀଠାରେ ମନଦେଇ ଭାବିଲା, ସ୍ୱପନ ନା ସତ, ମାତ୍ର ଛାତିକି ଦେଖେ ତ ହାର ଓ ହଳଦୀ ଚିହ୍ନ ଅଛି ।

ନୃପକୁମାରୀ । ବୋଲି ହୃଦରେ ଦଂଷ୍ଟ କରନ୍ତୁ ମାରି ଯେ । ଜଳକଳଶେ ଚନ୍ଦ୍ର ବିମ୍ବକୁ ଧରି । ପାରିଲ ନାହିଁ ସୁଧା ଭୋଗକୁ କରି ଯେ ।୩। ମନ୍ତ୍ର-ମୂର୍ଚ୍ଛନ୍ତି ଅବା ସ୍ୱପନ ବୋଲି । ଜାଣିଲି ଏହି ଦେହେ କୃତାର୍ଥ ହେଲି ରେ । ସାକ୍ଷାତ ପରି ଦେଲି ସ୍ୱପନ ସଙ୍ଗ । କଲୁ ତ କାମବ୍ୟାଧକର-କୁରଙ୍ଗ ରେ ।୪। ସ୍ୱର୍ଗ ସମ୍ପଦ ଯେଉଁ କର୍ମରେ ଥାଇ । ବିଚଳ ମଣେ ବଜ୍ର ପତନେ ତହିଁ ରେ । ତୋର ହୃଦୟୁ ବନ୍ଧୁ କରୁଣା ସ୍ଥାନ । ତହୁଁ ଅଙ୍କୁରି ଯଥା କଠିନ ସ୍ତନ ରେ ।୫। ମନକୁ ଯେବେ ପାଶେ ରଖିଲୁ ତୋର । କି ଅପରାଧେ ମୋତେ କଲୁ ଅନ୍ତର ରେ । ଜାଣିବାରେ ମୋ ଦୋଷ ନାହିଁ ତ କିଛି । ଦଣେ ଯା ଦଣ୍ଡ ପୂର୍ଣ୍ଣ କରୁଣା ଅଛି ରେ ।୬। କି ଅବା ମୋତେ କାନ୍ତ ବୋଲିବା ପାଇଁ । ଲାଜ ପାଇଲୁ ଗୁରୁ ଚନ୍ଦ୍ରମା-ମୁହିଁ ରେ । ସେବି ମୁଁ ଥାନ୍ତି ପାଶେ ହୋଇ ଭୋଗ୍ୟର । ଏହା କପାଁ ନ କଲୁ ନାଗରିବର ରେ । ଶିବ କେମନ୍ତେ ଦେଖ ବହିଲେ ଶିରେ । ଶଶୀ ଶବଦ ଥାଉଁ ଚନ୍ଦ୍ର ସ୍ନେହରେ ଯେ । ଏମନ୍ତ ଅଣ ତୋର ଅବ-ଧାନକୁ । ପ୍ରଭୁ ସେ ବଡ଼ କରେ ଦାସଜନକୁ ରେ ।୮। ଭସ୍ମକୁ ଅଙ୍କୁରାଇ ତାହା ନୟନ । ତା ଥାଉଁ ଭସ୍ମ ହେଲେ ଅଶାୟୀଜନ ରେ । ଏ ଅପଯଶ ଦୋଷ ହେବ କାହାର । ଚରଣ ଧରେ ମୁଁ ଯେ ଶରଣ ତୋର ରେ ।୯। କଲେ ତୁ ଵର ଅନୁଗ୍ରହ ସୁଦନ୍ତି । ଅଳତା ଶଙ୍କେ ରଙ୍ଗକାର ତୁଅନ୍ତି ରେ । ସେବାରେ ଅଳୀ ଫୁଲ ଗୁନ୍ଥାରେ ମାଳୀ । ହୋଇ ଲଗାନ୍ତି କାମବଦନେ କାଳି ରେ ।୧୦। ପରିଶେଷରେ ଏନା ଅନ ବଚନେ । ଡାକନ୍ତି ନାହିଁ

---

୩ । ଜଳ କଳଶିରେ-ପାଣି ମାଠିଆରେ, ଚନ୍ଦ୍ରବିମ୍ବ-ଚନ୍ଦ୍ରର ପ୍ରତିମୂର୍ତ୍ତି ବା ଛାଇ ।

୪ । କାମବ୍ୟାଧ—କାମବାଣୁଅ, କର କି ହାତରେ କୁରଙ୍ଗ କି ହରିଣ ପରି ହେଲି ।

୫ । ସ୍ୱର୍ଗସମ୍ପଦ—ସ୍ୱର୍ଗସୁଖ, ବିଚଳ—ଅସ୍ଥିର, କରୁଣା ସ୍ଥାନ —ଦୟାର ଜାଗା, ଅଙ୍କୁରି—ଜାତ ହୋଇ ।

୬ । ଅପରାଧେ—ଦୋଷରେ, ଦଣେ—ଦଣ୍ଡକରେ ପୂର୍ଣ୍ଣ ଦେଖିବାରେ ।

୭ । ଭୋଗ୍ୟର—ଗୃହକର, ନାଗରିବର—ନାଗରୀ ଶ୍ରେଷ୍ଠ ।

୮ । ଅବଧାନ—ଜାଣିବା ।

୯ । ନୟନ—ଚକ୍ଷୁ, ଅଙ୍କୁରାଇ—ଜାତ କରାଇ, ଅପଯଶ—ନିନ୍ଦା ।

୧୦ । ସୁଦନ୍ତି—ସୁନ୍ଦରଦନ୍ତି, ଅଳୀ—ସଖୀ ।

ଛୋଟେ ରଜନୀ ଦିନେର । ପ୍ରସଙ୍ଗବଶେ ଆରମ୍ଭିଲେ ତୁ କୋପ । ଛଡ଼ାଉଥାନ୍ତ ଗୃହୁଁ ପ୍ରକାଶି ତାପ ରେ । ୧୧ । ଦ୍ରାକ୍ଷାରୁ ସ୍ୱାଦୁଁ ଘନସାରୁଁ ଶୀତଳ । ପିକୁଁ ସୁସ୍ୱର ଲବଣୀରୁ କୋମଳ ରେ । ଭାଷା କହିଲବେଳେ ନାସା ଫୁଲଇ । ଚକ୍ରବର୍ତ୍ତୀପଣକୁ ଗଣନ୍ତ ନାହିଁ ରେ । ୧୨ । ଏତେ ସହିଲ ନାହିଁ ଖଳ ବିଧାତା । ମୁଁ ତାର କେଉଁ ଶତ୍ରୁ ନ କଲ ଚିନ୍ତା ଯେ । ତୁଷାର ନାଶ କରେ ଜନମସ୍ଥାନ । ତାଠାରେ ନ ସମ୍ଭାଦେ ଏ କୁତ୍ସ-ମାନ ରେ । ୧୩ । ଦୁର୍ବଳ ମାରିବାକୁ ସମସ୍ତେ ଅଗ । କାମକୁ ମହାଦେବ କଲେ ଅନଙ୍ଗ ଯେ । ନୋହିଲ ତାଙ୍କ ଦର୍ପ ଦଳନ ଜଳି । ବିନା ଦୋଷରେ ଶରେ ମୋତେ ତ ଜାଳି ରେ । ୧୪ । ମିତ୍ରେ ଶୁଣି ବୋଇଲେ ଜୀବନ ରଖ । ଜୀବନରୁ ଅଧିକ କେହି ନ ଲେଖ ହେ । ଜୀବନ ଥିଲେ ହୁଏ ସବୁ ପ୍ରାପତ । ହୁଅଇ ସମ୍ଭାବିତ ଅସମ୍ଭାବିତ ହେ । ୧୫ । ଧ୍ରୁବ-ବାଳକ ବ୍ରହ୍ମଜ୍ଞାନ କହିଲ । ଅଗସ୍ତି କରୋଦରେ ସିନ୍ଧୁ ରହିଲ ଯେ । ପକ୍ଷ ନ ଥାଇ କପି ଗଗନ ଗତ । କର୍ପୂରରୁ ବିରହେ ଜାତ ତପତ ଯେ । ୧୬ । ବିଷହିଁ ହୁଏ ହିତ ସନ୍ନିପାତରେ । ବାସୁକୀ ବିନା ପୃଥ୍ୱୀ ଧାରଣ ନରେ ଯେ । ରାଜ୍ୟ ନ ଥାଇ ସର୍ବସମ୍ମତେ ରାଜା । କନ୍ଦର୍ପ ପାଉଅଛୁ ପୃଥ୍ୱୀରେ ପୂଜା ଯେ । ୧୭ । ଜଳ ବିହୀନେ ସବୁକାଳେ ପ୍ରକାଶ । ସବିତା-କରେ ହୋଇଅଛୁ ସାରସ ଯେ । ଶବଦ ଶୁଣେ ସର୍ପ ଶ୍ରୁତି ନ ଥାଇ । ପ୍ରହଲ୍ଲାଦ ମହୀନ୍ଦ୍ର ଜନକଦ୍ରୋହୀ ହେ । ୧୮ । ଏ କଥାମାନ ଯଥା ହୋଇଛୁ ଯେନ । ତଥା ସତ ହୋଇବ ତୁମ୍ଭ ସ୍ୱପନ ହେ । ସ୍ୱପନ ଯେବେ ତୁମ୍ଭେ ସତ୍ୟ ନ କର । କହ କାହିଁକି ଅଛୁ ତା ଦେଲ ହାର ଯେ । ୧୯ ।

---

୧୧ । ପ୍ରସଙ୍ଗ ବଶେ—କଥାରେ ।

୧୨ । ଦ୍ରାକ୍ଷା—ଅଙ୍ଗୁର, ଘନସାର—କର୍ପୂର, ଲବଣୀ—ଲହୁଣୀ, ଚକ୍ରବର୍ତ୍ତୀ—ଲକ୍ଷେ ରାଜାଙ୍କ ଉପରେ ଯେ ବଡ଼ ।

୧୩ । ତୁଷାର—କାକର, ଧାତା ଜନୁସ୍ଥାନ—ପଦ୍ମବନ ।

୧୪ । ଅନଙ୍ଗ—ଦେହଶୂନ୍ୟ, ଦର୍ପ—କ୍ଷମତା ।

୧୬ । କରୋଦରେ—ହାତର ଭିତରେ, ଅଗସ୍ତି ସମୁଦ୍ରକୁ ହାତରେ ଧରି ଚଳୁ କରିଥିଲେ । ହନୁମାନର ପକ୍ଷୀ ନ ଥାଇ ସେ ଶୂନ୍ୟରେ ଯାଉଥିଲ । ବିରହରେ କର୍ପୂର ମଧ୍ୟ ଅଗ୍ନିପରି ଜଣାଯାଏ ।

୧୮ । ସବିତା—ସୂର୍ଯ୍ୟ, କରେ—କିରଣରେ, ସାରସ—ପଦ୍ମ, ଶ୍ରୁତି—କାନ, ମହୀନ୍ଦ୍ର—ରାଜା, ଜନକ—ପିତା ।

ଯେବେ ସୁଯୋଗ ନାହିଁ ଭ୍ରମ୍ଭ କର୍ମର । କାହିଁ ସିଂହଳଦ୍ୱୀପ କାହିଁ ଏ ପୁର ହେ । କାହିଁ ସିଦ୍ଧଯୋଗିନୀ କେ କାହିଁ ଥିଲି । ସ୍ୱପ୍ନଠାର ମାୟାରେ ସାକ୍ଷାତ ହେଲି ଯେ । ୨୦ । ଆରତ ହେଲେ କାର୍ଯ୍ୟ ନୁହଇ ବେଗ । କାଳକୁ ଗୁହିଁ ଭୋଗ ହୁଅଇ ଯୋଗ ହେ । କୁମାର କହେ ମୋର ମୋହିଲା ଚିତ୍ତ । ଆରତ ହୋଇବାର ନୋହେ ଆୟୁତ୍ତ ଯେ । ୨୧ । ନାରୀକୁ ବଶ ହୋଇ ଜଗତେ ନାହିଁ । ବାନରୀ ରୂପେ (୧) ହେଲେ ପବନ ମୋହି ଯେ । ଏଥିକି ଅନୁସ୍ମରଜା ଦୁକେ ଧୀବରୀ (୨) ପରାଶର ଋଷିର ବିବେକ ହରି ଯେ । ୨୨ । ଅମୂଲ୍ୟ ଗ୍ରାମାରନ୍ ଦେଖା ଭାଗ୍ୟରେ । ବଶ ନୋହିବ କେହୁ ସୁବା ସଂସାରେ ଯେ । ଏମନ୍ତ ପଦାର୍ଥ କି ଲାବଣ୍ୟନିଧି । ସ୍ୱପ୍ନେ ତା ପରି ଦେଖି ନ ଥିବ ବିଧି ଯେ । ୨୩ । ବାଳୀର ଶୋଭା ସୁବେଶକୁ ସ୍ୱବେଶ । ଅଧରେ ସମାପତ ହୁଅଇ ହାସ ଯେ । ଅରୁଣ କୋଳେ ନବ ଚନ୍ଦ୍ରମା ଦିଶି । ବଜୁଳି ପରି ଯାଇ ସେକ୍ଷଣି ମିଶି ଯେ ॥ କାଚ କଳଶେ ଯଥା ଜଳା ଗୁନ୍ଥିତ । ପଡ଼ିଲା ପରି ଦିଶେ ନ ପଡ଼ଇ ତ ଯେ । ହସିଲାବେଳେ ଖସି ପଡ଼ିଲା ପରି । ଖସି ନ ପଡ଼େ ତଥା ଅମୃତ ଧାରି ଯେ ।୨୪। ତା ନେତ୍ର ଗତାଗତ ଅପାଙ୍ଗ ସରି । ଦୁଇ ଦିଗକୁ ଚାଳେ କେମନ୍ତେ କରି ସେ । ଅନଙ୍ଗ କି ତୁରଙ୍ଗ ଧାଡ଼ିଛି ଦେଇ । ତୀର ସନ୍ଧାନେ ଧୈର୍ଯ୍ୟ ଘଉଡ଼ି ନେଇ ସେ । ୨୫ । ଗୁହିଁବାମାନେ ବୁଝଡାଚ୍ ଚେତନ । କେଡ଼େ ମାଧୁରୀ ତହିଁ ପକ୍ଷ୍ମପତନ ଯେ । ଯେନି କି ନେନି ତାଂଟକଙ୍କୁ ସୁବ୍ରଜ । ଭିଦିତ ମୁଦିତକୁ ଭଜେ ନୀଳାବ୍ଜ ଯେ ।୨୬। ସୁବର୍ଣ୍ଣ ଘଟ କୁଚ ଯେମନ୍ତ ଦିଶେ । କେମନ୍ତେ

---

୨୦ । ସାକ୍ଷାତ—ଦେଖା ।

୨୧ । ଆରତ—ଆକୁଳ । ଆୟୁତ୍ତ—କ୍ଷମତା, ବଳ ।

୨୨ । ବାନରୀ—ଅଞ୍ଜନା ନାମ୍ନୀ ବାନରୀ ସହିତ ପବନ ପ୍ରୀତି କରିବାରୁ ହନୁମାନ ଜନ୍ମ ହେଲା । ଧୀବରୀ—କେଉଟୁଣୀ (ସତ୍ୟବତୀ) ସଙ୍ଗେ ପରାଶର ମୋହିତ ହୋଇଥିଲେ ।

୨୪ । ବାଳୀ—ସ୍ତ୍ରୀ, ଅଧର—ଓଠ, ଅରୁଣ—ବାଳସୂର୍ଯ୍ୟ ।

୨୫ । ଅପାଙ୍ଗ—ଆଖିକୋଣ, ତୁରଙ୍ଗ—ଘୋଡ଼ା, ତୀର—ଶର ।

୨୬ । ଚେତନା—ଚେତା, ମାଧୁରୀ—ମଧୁରତା, ପକ୍ଷ୍ମ ପତନ—ଆଖିପତା ପକାଇବା, ସୁବ୍ରଜ—ଚନ୍ଦ୍ର, ନୀଳାବ୍ଜ—ନୀଳପଦ୍ମ ।

ବୋଲ୍ କୁହା ନ ଯିବ ଶେଷେ ଯେ । ଏମନ୍ତ ହେଲେ ବାଣୀ ପବନ ପାଇଁ ।
ବର୍ଣ୍ଣନା କରୁଥାଇ ଉପମା ଦେଇ ଯେ । ୨୮ । ସୁନ୍ଦର ସଦନେ କ ସ୍ୱର୍ଣ୍ଣ
ପଞ୍ଜରୀ । ଧାତା ରଖିଛୁ ଅକ୍ଷିପକ୍ଷିଙ୍କ ଧରି ଯେ । ମେରୁ ଏଡ଼ିକ ବୋଲି ଉଚ
ଦେଖାଇ । ମନ ମିହିରକର ଛାଡ଼ି ନ ଯାଇ ଯେ । ୨୯ । ଢାଳି ଅନେକ
ଦାହ କନକ ବଲ୍ଲୀ । ଭୁଜାନ୍ତରକୁ ଯୋଡ଼ି ସମସ୍ତେ ବୋଲି ଯେ । ସ୍ତନ
ମଧୁର ମଧୁ କୋଷକୁ ଅଣି । ସଞ୍ଚିଲେ ରୋମାବଳୀ ସରଘାଶ୍ରେଣୀ ଯେ ।୩୦।
ଶୃଙ୍ଗାର ରସଲତା ରୋମାଳୀ ବ୍ୟାଜ । ଫଳିଛୁ ପ୍ରେମାମୃତ ଫଳ ଉରଜ ଯେ ।
ଇତର ଭାଗ୍ୟେ ପରାପତ ହେବ ସେ । ଧନ୍ୟ ବର୍ଣ୍ଣିଲି ସ୍ତନ ମଲ୍ଲିକ ଭାଷେ
ଯେ । ୩୧ । ଜାଣିଲି ସେହି ସ୍ତନ କଛୁ ସମାନ । ଲଭି ଏମାନ ଲଭିଲେ
କ ଏ ମାନ ଯେ । ଶ୍ରୀଫଳ ଯେ ଶ୍ରୀମନ୍ତ ପ୍ରଥମେଁ ହୋଇ । ତୃଣରାଜ ପଦକୁ
ପଛେ ପକାଇ ଯେ । ୩୨ । ରୁଦ୍ର ଶିବ ହେବାର ସଂଶୟ ଦୂର । ଏତେ
କାଳକେ ଅସି ହେଲ ମୋହର ଯେ । ଯେବେ ଲଭିଲି ସେ ସ୍ତନସ୍ପରଶ ।
ଜାନୁସିଂହାସନେ ବସିବ ଅବଶ୍ୟ ଯେ । ୩୩ । କୁମାର ବୋଲେ ଆନ
ବ୍ୟବସାୟକୁ । କର କ କାର୍ଯ୍ୟ ବର୍ଣ୍ଣୁଥିବା ତାହାକୁ ଯେ । କାନ୍ତ ଏମନ୍ତ
ଫଳ ତହିଁକ ଗୃହି । ଭାଲେ ଉଲକ ଲେଖି ହୋଇବ ଯହିଁ ଯେ । ୩୪ ।
ପୀୟୂଷ ପିତୁଳାକୁ ସୁନା ରସାଣ । ଏକା ଭାବି ବିଧାତା କଲା ଉଆଣ ଯେ ।
ସଂସାର ସାର ସବୁ ଲାବଣ୍ୟମାନ । ପ୍ରତିବିମ୍ବ ଦେଖିବ ହେବାକୁ ସ୍ଥାନ ଯେ ॥
କ ଗଜରବ ଅନ୍ୟ ଗଜର ଦ୍ରବେ । କୁଙ୍କୁମ ଶୋଭା କରେ ଯେ ଅବୟବେ

---

୨୮ । ସୁସଙ୍ଗ—ସୁନ୍ଦର, ଘଙ୍ଗ—ଲଗାଲଗି, ବାଣୀ—ସରସ୍ୱତୀ ।
୨୯ । ସଦନ-ଘର, ମିହିର-ସୂର୍ଯ୍ୟ, କର-କିରଣ, ମେରୁରୁ ଖସି ଯାଏ ନାହିଁ ।
୩୦ । ଦାହ କନକ—ପୋଡ଼ାସୁନା, ବଲ୍ଲୀ—ଲତା, ଭୁଜାନ୍ତର—(ଭୁଜ+ଅନ୍ତର) ଭୁଜ—ହାତ, ଅନ୍ତର—ଅଲଗା, ମଧୁକୋଷ-ମଧୁଫେଣା, ସରଘାଶ୍ରେଣୀ—ମହୁମାଛିମାନେ ।
୩୧ । ରୋମାଳୀ—ରୋମ ସବୁ, ବ୍ୟାଜ—ଛଳନା, ସଂପତ—ମିଳିବା ।
୩୨ । ଶ୍ରୀଫଳ—ନଡ଼ିଆ, ବେଲ । ଶ୍ରୀମନ୍ତ—ଲକ୍ଷ୍ମୀବନ୍ତ, ଶୋଭାଯୁକ୍ତ । ତୃଣରାଜ—ନଡ଼ିଆ ।
୩୩ । ରୁଦ୍ର—ଭୟଙ୍କର, ମହାଦେବ । ଶିବ—ମହାଦେବ, ସ୍ତନପରଶ—ସ୍ତନ ଛୁଇଁବା ।
୩୫ । ପୀୟୂଷ ପିତୁଳା—ଅମୃତମୟ ରୂପ ପ୍ରତିମା, ଲାବଣ୍ୟବତୀ । ପ୍ରତି-ବିମ୍ବ—ଛାଇ । ସୁନାରସାଣ—ସୁନାକୁ ଘଷିବା ।

ଯେ । ସିନ୍ଧୁକୁ ଗୁରୁ କର ମନ ଏମନ୍ତ । ମିଶିବ ଅଙ୍ଗେ ଜଳେ ଜଳ ଯେମନ୍ତ ଯେ । ୩୬ । ମମତା ଏହୁ ଖଗବର ପ୍ରକାର । ତା ଅଗେ ବସିଥିବ ଯୋଡ଼ଣି କର ଯେ । ପାର୍ବତୀ ଶିବ ଅର୍ଦ୍ଧଅଙ୍ଗ ପରିରେ । ସେ ଅଲଙ୍ଗନ ହୋଇଥିବ ଶରୀରେ ଯେ । ୩୭ । ବିଷ୍ଣୁ କୋଳୁଁ କମଳା ପରାୟେ ସେହୁ । ଅନ୍ତର ହୋଇ ଦଣ୍ଡେ ନ ଯିବ କାହିଁ ଯେ । କଳେବରକୁ ଯଥା ନ ଛାଡ଼େ ଛାଇ । ମୁଁ ତାକୁ ନ ଛାଡ଼ିବି ତେମନ୍ତ ହୋଇ ଯେ । ୩୮ । ଯେବେ ଜୀବନେ ଥିବ ଉପାୟ କର । ତେବେ ହେଲେ ମନାଇ ହର ଗଜରି ଯେ । ଲଭିବ ବଲ୍ଲଭୀ-ରତନ ଅବଶ୍ୟ । ଯୋଗେ ସଙ୍ଗମ ନୋହୁଁ ହୋଇଲେ ନାଶ ଯେ । ୩୯ । ତାକୁ ପାଇବି ଅଛୁ ଏହୁ ଭରସା । ଚନ୍ଦ୍ର ଲଭିଲା ମଲ୍ଲ ଉଦ୍ଧାରୁ ଶଶା (୧) ଯେ । ତା ନାମ କରୁଥିବି ମୁଁ ସୁମରଣ । ଗଲେ ତା ଜୀବ ହେବ ମୋ ସୁମରଣ ଯେ । ୪୦ । ପୁରୋଧାସୁତ ବୋଲେ ତୋ ଶତ୍ରୁ ମରୁ । ଦୁର୍ଗା କୃପାରୁ ଭୋଗ କର ତୁ ଭୀରୁ ଯେ । ସାଧୁତ ଶୁକ ବ୍ରହ୍ମଗୃହ ଯାଇଛୁ । ସେ ଅସିଲେ ଉପାୟ କରିବା କଛୁ ଯେ । ୪୧ । ଦ୍ୱୀପ ସପତ ଶୋଭେ ଜମ୍ବୁ ପ୍ଲକ୍ଷରେ । କୁଶ କ୍ରୌଞ୍ଚ ଶାକ ଶାଲ୍ମଳୀ ପୁଷ୍କରେ ଯେ । ଲବଣେକ୍ଷୁ ସୁରା ସର୍ପି ଦଧି ଦୁଗ୍ଧ । ପୟ ବେଢ଼ି ସପତ ସମୁଦ୍ର ସିଦ୍ଧ ଯେ । ୪୨ । ପୂର୍ବେ ନରରାଜାଏ ଅଛନ୍ତି ଭ୍ରମି । ସିଂହଳଦ୍ୱୀପେ ଅଛୁ କରୀନ୍ଦ୍ର-ଗାମୀ ଯେ । ଏଥି ପାଇଁ ଛାଡ଼ିବ କପାଁ ଜୀବନ । ଅବିରତେ କରିବା ଉପାୟ ମାନ ଯେ । ୪୩ । ସେ ତ ସ୍ୱଭାବେ ସ୍ତ୍ରୀ ପୁଂସ ଭଜିବ । ରସିକ ଜଣେ ସିନା ବଶ ହୋଇବ ଯେ । ଏମନ୍ତ ବଚନରେ ବୋଧିଲେ ଶତ୍ରୁ । ଏ ଛାନ୍ଦ ଅତି ରମ୍ୟ ହୋଇଲା ପ୍ରାନ୍ତ ଯେ । ୪୪ । ଦୈତ୍ୟହନ୍ତା ଚତୁରଭୁଜ

---

୩୬ । ଗଜର—ଗୋରା, ଧଳା । ଅବୟବ—ଦେହ, ଶରୀର ।

୩୭ । ଖଗବର—ଗରୁଡ଼ ।

୩୮ । କଳେବର—ଦେହ ।

୪୦ । ବଲ୍ଲଭୀରତନ—ସ୍ତ୍ରୀ ଶ୍ରେଷ୍ଠ (୧) ଶଶା ଯେପରି ଚନ୍ଦ୍ର କିରଣକୁ ଜଳ ମନେ କରି ଯାଇ ମରିଯିବାରୁ ଚନ୍ଦ୍ର ଦେହରେ ରହିଲା, ସେ ହେଲା ଚନ୍ଦ୍ରର କଳଙ୍କ, ସୁମରଣ—ଉତ୍ତମ ମରଣ ।

୪୧ । ପୁରୋଧା—ପୁରୋହିତ, ସୁତ—ପୁଅ, ଭୀରୁ—ଭୟାଳୁ ।

୪୩ । କରୀନ୍ଦ୍ରଗାମୀ—ହାତୀଗମନା, ଅବିରତ—ସର୍ବଦା ।

୪୪ । ରମ୍ୟ—ସୁନ୍ଦର, ପ୍ରାନ୍ତ—ଶେଷ ।

ରଞ୍ଜିତ । ଶକ୍ରଭାନୁ ପରାୟୁ ତେଜ ଜ୍ୱଳନ୍ତ ଯେ । ହେ ରାମ ନାରାୟଣ ଦୁରନ୍ତ ଧ୍ୱଂସ । କହଇ ଉପେନ୍ଦ୍ର ଭଞ୍ଜ ନରେଶ ଯେ । ୪୫ ।

## ପଞ୍ଚଦଶ ଛାନ୍ଦ

( ଐନ୍ଦ୍ରଜାଲିକ ଖେଳ ଦେଖାଇବା )

ରାଗ—ବସନ୍ତ ଭୈରବ

ଶୁଣ ଜନେ ଏଣୁ ବାଧାତାଙ୍କୁ ବଡ଼ ବୋଲି । ବ୍ୟାଜେ ଧନ ଅର୍ଜ୍ଜନେ ଅନେକ ଦେଶ ବୁଲି ସେ । ସିଂହଳଦ୍ୱୀପେ ପ୍ରବେଶ ହେଲା ନଟବର । କୌତୁକବଶକାରୀ ସେ ବିନୋଦ ନାମ ତାର ଯେ । ହସ୍ତେ ବାଙ୍କି କାଖେ ଯାଙ୍କ ଅଛି ସର୍ପପେଟୀ । ଦେହେ ଘଷି ହୋଇଛି ଚନ୍ଦନ ପରି ମାଟି ଯେ ।୧। ମଲ୍ଲବିଦ୍ୟା ପଣ୍ଡିତ ଫଳିଛି ବାହୁ ବେନି । ତହିଁ ତ ଶୋଭିତ ଯେ ମୟୂର-ଚୁଳି ଘେନି ଯେ । ବଙ୍କଜୁଡ଼ାକୁ ବେଢ଼ିଛି ଅଁଳାର ଫୁଲ । ଉଦ୍ଧାର ଧରିଛି ଭଲ ଭଲା ଓରମାଲ ଯେ । ସୁନାମୋଡ଼ିଆ ପନସକଢ଼ିଆ କୁଣ୍ଡଳ । ଦୋହଲି ଶୋଭା କରୁଛି ତା ଗଣ୍ଡମଣ୍ଡଳ ଯେ ।୨। ହସୁଁ ଦଶେ ସୁନାଖିଲି ଝଁଲି ଝଁଲି ଦନ୍ତେ । ପାନେ ପାଚିଯାଇଛି ସେ ଜମ୍ବୁଫଳ ମତେ ଯେ । ସିନ୍ଦୂର ଚାଳେହିଁ ତା ହଟକେଶ୍ୱର ଚଣେ । ବିଭୂତ ଘଷି ହୋଇଛି ଯୁଗଳ ଈକ୍ଷଣେ ଯେ । ବକଶ୍ୟାମଳ ବାନା ତା ଭୁଜଙ୍ଗ ପଇତା । ମହା ମହା ଗୁରୁମାନଙ୍କର ଦର୍ପ

୪୫ । ଶକ୍ରଭାନୁ—ଅଗ୍ନି, ଦୈତ୍ୟହନ୍ତା—ବ୍ୟସନାଶକାରୀ, ରଞ୍ଜିତ—ଶୋଭିତ, ଦୁରନ୍ତ—ଦୁଃଖ ।

ସ୍ୱପନ ପ୍ରସଙ୍ଗ ଶୁଣି ରାଜସୁତ ଲାବଣ୍ୟବତୀଙ୍କ ଚନ୍ତାରେ ଦୁଃଖିତ ହେଲେ ଓ ଏହି ସମୟରେ ବୟସ୍ୟମାନେ ତାଙ୍କୁ ପ୍ରବୋଧ ଦେଲେ ଓ ସେ ଲାବଣ୍ୟବତୀର ସନ୍ଧାନ ମଧ୍ୟ ପାଇଲେ ।

## ପଞ୍ଚଦଶ ଛାନ୍ଦ

୧ । ବ୍ୟାଜେ—ଛଳନାରେ, କପଟରେ । ସର୍ପପେଟୀ—ସାପପେଡ଼ି ।

୨ । ବଙ୍କଜୁଡ଼ା—ବାଙ୍କଜୁଡ଼ା ଗଣ୍ଡମଣ୍ଡଳ—ଗାଲ ।

୩ । ଝଁଲି ଝଁଲି—ଚକଚକ, ଜମ୍ବୁଫଳ—ଜାମୁକୋଳି, ଯୁଗଳ—ଦୁଇ, ଈକ୍ଷଣେ—ଆଖି, ବକ—ବଗ, ଶାମଳ—ଶାଳଦପକ୍ଷୀ, ଭୁଜଙ୍ଗ—ସାପ, ଦର୍ପହନ୍ତା—ଗର୍ବନାଶକାରୀ ।

ହନ୍ତା ଯେ । ୩ । ରୁଣ୍ଡ ଶିଞ୍ଜିନୀ ଚରଣେ କର କଙ୍କଣରେ । ବିରାଜୁଛି ହେମ ମାଳୀ ବାମଶ୍ରବଣରେ ଯେ । ପିନ୍ଧିଛି ପତଳା ଫେଟା ପରି ନୀଚ କରି ! ରଙ୍ଗପାଟ ଖଣ୍ଡିଏ କଟିରେ ମାଧୁରୀ ଯେ । ବେଢ଼ିଛନ୍ତି ଶିଷ୍ୟଉପଶିଷ୍ୟ ବେଶ ହୋଇ । କେ ଚଉତନା କେ ପାଗ ମୁଣ୍ଡେ ମଣ୍ଡିଥାଇ ଯେ । ୪ । ପିନ୍ଧି ଚଳନାକାଛକୁ ବାନ୍ଧିଛନ୍ତି ତାହି । ଭାଲେ କାଳି ଟିକା କେ ବିଭୂତିଭୂଷା ଦେହି ଯେ । ବହିଛନ୍ତି ସେ ଦୀର୍ଘଶଳାକା ଅଧ ଡୋଳ । ଘଟ ନାଟ ଅବଟା ରଣପା ଯେ ମଞ୍ଜୁଳ ଯେ । ମଧ୍ୟବର୍ତ୍ତୀ ପ୍ରେମରୂପା ନାଚେ ନଟୀସାର । ବୟସରେ ଷୋଡ଼ଶୀ ବେଶରେ ମନୋହର ଯେ । ୫ । ସେ ବିଟପୀ ବିଟପଧଇର୍ଯ୍ୟା ବିଟପୀଙ୍କ । ଛେଦନେ କୁଠାର ପରି ମନରେ ତରକା ଯେ । ଟିଡ଼େ କରି ଧରିବାକୁ ଦର୍ପଣ ଝଟକ । ମୁଖ ମାଠି ତଳେ କରୁଛି ଜକ ଜକ ଯେ । ଅଙ୍ଗେ ସଙ୍ଗ କରିଅଛି ସେ ବନହଳଦୀ । କାନ୍ତି ହୋଇଛି ପାଚିଲାଅମ୍ବ ପ୍ରତିଦ୍ୱନ୍ଦୀ ଯେ । ୬ । କବରୀରେ ଅଳକାକୁ ନୂତନେ ଗୁଞ୍ଜିଛି । ଫୁଲଗୁଡ଼ାଏ ଜଟାରେ ଯତନେ ମଣ୍ଡିଛି ଯେ । ଦଣ୍ଡିଛି ସେ ଜଳଦ ବଳାକୀ ମହୋଜ୍ଜ୍ୱଳ । ବହଳ କରି ଘେନିଛି ନୟନେ କଜ୍ଜ୍ୱଳ ଯେ । ମ୍ଳାନ ହୋଇ-ଲାକୁ ଅଛି ଚଞ୍ଚଳଚାତୁରୀ । ଖେଳା ଭୂମିଯାଏ ବାଢ଼ିଦେଇଛି କସ୍ତୁରୀ ଯେ । ୭ । ଅଭ୍ରଟିକା ଶୁଭ୍ର ହୋଇଅଛି ଭାଲପଟ । ଭାନୁକର ଲାଗି ଝଟକଇ ଝଟ ଝଟ ଯେ । ଜଳେ କି ତହିଁ ଜ୍ୱଳନ କାମଜାଳୀ ବହ୍ନି । ଅପୂର୍ବ ଉପମାକୁ ସେ ବାମା ଲଭଇ ଯେ । ଶରଲକ୍ଷ୍ୟ କଟାକ୍ଷ ତା ପାଇଁ ଯୋଗୀ-ରାଜ । ବନ୍ଧିବା ଭୟେ ଥବଲେ ମୃଗଚର୍ମ ତେଜି ଯେ । ୮ । ବେଣୀପୃଷ୍ଠରେ

---

୪ । ରୁଣ୍ଡ—ଏକତ୍ରିତ, ଚରଣ—ଗୋଡ଼, ହେମ—ସୁନା, ଶ୍ରବଣ—କାନ ।

୫ । ଭାଲେ-କପାଳରେ, ବିଭୂତି-ପାଉଁଶ, ଦୀର୍ଘ-ଲମ୍ବା, ଶଳାକା-ବାଡ଼ି, ନଟୀ—ନାଚବାଲୀ ।

୬ । ବିଟପୀ—ଅସତୀ, ବିଟପ—ଲମ୍ପଟ, ବିଟପି-ଗଛ, ପ୍ରତିଦ୍ୱନ୍ଦୀ—ଶତ୍ରୁ ।

୭ । ଜଳଦ—ମେଘ, ବଳାକୀ—ବଗସବୁ, କଳାବାଳ ମେଘଥିର ତା ପରେ ବଗପରି ଫୁଲ ନାଇଚି ।

୮ । ଭାନୁକର—ସୂର୍ଯ୍ୟକିରଣ, କାମଜାଳୀ—କନ୍ଦର୍ପ, ଜାଲପାରିଧି (ଜାଲପାରିଧି ହେଉଛି, ଶବରମାନେ ମୁଣ୍ଡରେ କାଅଁ ଖପରା ହାତରେ କାଅଁଖୁଣ୍ଟା ଧରି ବଣରେ ବୁଲିଲେ ମୃଗମାନେ ପନକ ଆସିଲେ ତାକୁ ମାରନ୍ତି ଏହାକୁ ଜାଲ ପାରିଧି କହନ୍ତି ।) କଟାକ୍ଷ—ଚାହାଣୀ ଯୋଗରାଜ—ତପସ୍ୱୀମାନେ ।

ତା ଗୁଣା-ନାକଚଣା ଅଛୁ । ନାସାଦଣ୍ଡି ଫୋଡ଼ାଇ ଗୁଣାଏ ଲଗାଇଛୁ ଯେ । ତନ୍ନ ପୃଚ୍ଛରେ ମୋତେ ରତ ବଚକ୍ଷଣାପଣେ । ନାସ୍ତି ନାହିଁ ବୋଲି ଚିହ୍ନ ବହୁଛୁ ଆପଣେ ଯେ । ସୁନା ମଲ୍ଲୀକଢ଼ୀ ଫୁଲ ଜାଲିପଟିଅମ । ବାଳାର ଦ୍ଦରଛୁ ଶ୍ରବଣକୁ ମନୋରମ ଯେ । ୯ । ତହିଁରେ ହଲଇ ସେ ଝଲକ ଝଲକାକୁ । ଅସ ବୋଲି ପାଶକୁ ଡାକଇ ପୁରୁଷଙ୍କୁ ଯେ । ଅଧରେ ଯେ ଦ୍ଦରଅଛୁ ପାନରଙ୍ଗ ସଙ୍ଗ । ପ୍ରବାଳ ଉପିଲ୍ଲ ଥୋପି ପଡ଼ଇ କି ରଙ୍ଗ ଯେ । କୁଟାଇଛୁ ଚିବୁକେ ମକ୍ଷିକା ସୂକ୍ଷ୍ମଚିହ୍ନ । ଓଷ୍ଠେ ମଧୁ ସଞ୍ଚିବାକୁ କି ସେ ଉପସ୍ଥିତ ଯେ । ୧୦ । ଲକ୍ଷା ଶିଷ୍ଟାରସେ ପଗୁଇଛୁ ଦନ୍ତସଜ୍ଜ । ଦେଉଛୁ ସେ ପାଚିଲ୍ଲ ଡାଳିମ୍ବମଞ୍ଜି ଗଞ୍ଜି ଯେ । କାଚମାଳୀ ମୋତିମାଳୀ କଣ୍ଠ ମାଳୀ ମଞ୍ଜୁ । କମ୍ବୁକଣ୍ଠେ ଲଗାଇଅଛୁ କି କୁନ୍ଦାରଞ୍ଜୁ ଯେ । ନବଘନ ଦେଖ୍ଲ ପ୍ରାୟ ଗିରିଶୃଙ୍ଗ ଚିଲ । ଉଚ୍ଚକୁଚେ ସଜତ ହୋଇଛୁ ନୀଳଚେଳୀ ଯେ ।୧୧। କକ୍ଷଭୁଜ ଅର୍ଦ୍ଧକୁ ବୋଲି ସେ ଅଛୁ ଗ୍ରାସି । କାଳନ୍ଦୀରୁ ମୃଣାଳ ବାହାର ପଗୁ ଧଣି ଯେ । ସେ ଭୁଜେ ବନ୍ଧଛୁ ରୂପାସୁତା ବଦମାଳୀ । ପାଣିରେ ତା ପାଣିକାଚ ମିହ୍ନା କଡ଼ଆଲୀ ଯେ । ଅଞ୍ଜନ ଚନ୍ଦେ ରଞ୍ଜନ କରଜ ପାପୁଲି । ଦର୍ପଣବସା ମୁଦରେ ଧାପିତ ଅଙ୍ଗୁଳୀ ଯେ । ୧୨ । ଅଛୁ ଜଙ୍ଘତଳେ ଭିଡ଼ି ଦେଇ କଟି ଡୋରେ । ପିନ୍ଧିଛୁ ସେ ଅତଲସ ଲହଙ୍ଗା ଉପରେ ଯେ । ବାନ୍ଧିଅଛୁ କ୍ଷୁଦ୍ରଘଣ୍ଟି ବାଜେ ଝମଝମ । କନ୍ଦେ ଉପରଣି ଜରିକଢ଼ିତ ସୁଷମ ଯେ । ରଣଝଣ ହୋଇ ଖଞ୍ଜାପାହୁଡ଼େ ଚରଣେ । ଡାକେ ରସିକେ ସଞ୍ଚିତ ଧନ ବିତରଣେ ଯେ । ୧୩ । ରୋମାବଳୀ ଗୁହିଁ ଜନେ ଭ୍ରମ ଉପୁଜଇ ।

---

୯ । ବଚବଚକ୍ଷଣା—ରତରେ ପାରଦର୍ଶୀ ଅର୍ଥାତ୍ ରତ ପଣ୍ଡିତା ।

୧୦ । ଅଧର-ଓଷ୍ଠ, ମକ୍ଷିକା-ମାଛି, ମଧୁ-ମହୁ, ଅମୃତ ।

୧୧ । ଲକ୍ଷା-ଅଲତା, ଦନ୍ତସଜ୍ଜ-ଦାନ୍ତସବୁ, ମଞ୍ଜୁ-ସୁନ୍ଦର, କମ୍ବୁ-ଶଙ୍ଖ, ନବଘନ-କଳାମେଘ, ଗିରିଶୃଙ୍ଗ-ପର୍ବତଶିଖ, ନୀଳଚେଳୀ-ନୀଳ ବର୍ଣ୍ଣ କାଞ୍ଚୁଲି, ନେଳଅ ଶାଢ଼ୀ ।

୧୨ । କକ୍ଷ-କାଖ, ଭୁଜ-ହାତ, ମୃଣାଳ-ପଦ୍ମନାଡ଼, ପାଣି-ହାତ, କରଜ-ନଖ, ଅଞ୍ଜନଚନ୍ଦ-କଳା ଶଢା ।

୧୩ । ଉପରଣି-ଓଢଣୀ ଗୃଦର, ଜରିକଢ଼ିତ-ଜରି କାମ ହୋଇଥିବା, ସୁଷମ-ସୁନ୍ଦର, ବିତରଣେ—ଦାନ କରିବା ନିମନ୍ତେ ।

ସ୍ତନପେଟୀରୁ କି କାଳବ୍ୟାଳ ବାହାରଇ ଯେ । ମୁଦ୍ରା ଲଗାଇଛୁ ଭଳି ଭଳି ପ୍ରପଦରେ । ଧରିଛୁ ଅମୃତ ଘଷାଧନ ବେନି କରେ ଯେ । ଏମନ୍ତରେ ନଟ ନଟୀ ରାଜଦ୍ୱାରେ ଯାଇ । ଦେଖିବାକୁ ଲୋକେ ଛନ୍ତି ସଙ୍ଗତେ ଗୋଡ଼ାଇ ଯେ । ୧୪ । ସିଂହଦ୍ୱାରେ ବସି ବଜାଇଲେ ଢୋଲ ତୁରୀ । ନୃପତଗୃହମୁରେ ଯାଇଁ ଜଣାଇଲେ ଦ୍ୱାରୀ ଯେ । ହେ ଦ୍ୱିଜେ ବନ୍ଧୁ କୁମୁଦ ବଧୁ ମହାରାଜ । ଅସିଛୁ ଇନ୍ଦ୍ରଜାଲିକ କର୍ଣ୍ଣାଟ ତା ରାଜ୍ୟ ଯେ । ଶୁଣି ଦମ୍ଭ ଦାତୃଗୁଣ ହରିବାକୁ ହଟ । ଅସ୍ତୁ ବୋଲିବାକୁ ତହିଁ ନୃପତି ମୁକୁଟ ଯେ । ୧୫ । ଗୃହିଁ ଦେଲେ ପ୍ରତିହାରୀ ଦଶ ବଂଶ ଧାଇଁ । ଛାମୁରେ ସେ ଭେଟାଇଲେ ନଟ ନଟୀ ନେଇ ଯେ । ରାଜା ପଚାରିଲେ ଅହୋ କି କି ବିଦ୍ୟା ଜାଣ । ସେ କହିଲ ଦ୍ୱୀପେଶ୍ୱର ସାବଧାନେ ଶୁଣ ହେ । କୁହୁକ ଗୋଟିକାଞ୍ଜନ ସ୍ତମ୍ଭନ ମୋହନ । ବଶ୍ୟ ଉଚ୍ଚାଟନ ଜାଣେ ହେ ଭୋଜ ରାଜନ ଯେ । ୧୬ । ଗଦ ପଦେ ବିଷଙ୍କାଡ଼ନେ ମୁଁ ଧନ୍ୱନ୍ତରୀ । ଗୁରୁଏ ଘେନନ୍ତି ମୋତେ ମହାଗୁରୁ କରି ଯେ । ମାୟା ରଚନରେ ମୟ ପରି ମୋତେ ଘେନ । ପୁଣ ଏ ଅଙ୍ଗନାସାରେ ଗୁଣ ଅକଥନ ଯେ । ନୃତ୍ୟ ଦେଖିଲେ ବାସବ ରମ୍ଭା ପାସୋରିବେ । ଗାନ ଶୁଣିଲେ ବାଣୀକୁ କ୍ୱପାଁ ପ୍ରଶଂସିବେ ହେ । ୧୭ । ଅମ୍ଭ କୁଳଧର୍ମ ବିଦ୍ୟାରେତ ନାହିଁ ସରି । ତୁମ୍ଭେ କି ଜ୍ଞାନ କରୁଛ କହ ଦଣ୍ଡଧାରି ହେ । ନୃପତି ବୋଇଲେ ରହ କର ସାରୁ ସନ୍ଧ୍ୟା । ସ୍ୱମାୟୁଣ ଦେଖାଅ ଜାଣିବା ତୁମ୍ଭ ବିଦ୍ୟା ହେ । କେତେବେଳେ ହେଲା ତହିଁ ସନ୍ଧ୍ୟା ଅବଶେଷ । ରାଜା ଅବରୋଧନାରୀ ଜଗତୀ ପ୍ରବେଶ ଯେ । ୧୮ । ବଡ଼

---

୧୪ । ରୋମାବଳୀ—ଲୋମସରୁ, ଭ୍ରମ-ଭୂଲ, ସ୍ତନ ପେଟିରୁ—ସ୍ତନ ପେଡ଼ିରୁ, କାଳବ୍ୟାଳ—କାଳସର୍ପ, ପ୍ରପଦ-ଗୋଡ଼ ଅଙ୍ଗୁଠି ।

୧୫ । ଦାତୃଗୁଣ—ଦାନପଣ, ନୃପତି ମୁକୁଟ—ରାଜଶ୍ରେଷ୍ଠ, କୁମୁଦ—କଇଁ ବଧୁ-ଚନ୍ଦ୍ର, କଇଁଫୁଲ ବନ୍ଧୁ ଚନ୍ଦ୍ରକୁ ଦେଖିଲେ ଯେପରି ଆନନ୍ଦ ହୁଏ ଆପଣ ବନ୍ଧୁ ଦେଖିଲେ ସେହିପରି ଆନନ୍ଦ ହୁଅନ୍ତି ।

୧୬ । ପ୍ରତିହାରୀ—ପଡ଼ିହାରୀ, ଦଶବଂଶ—ଦଶ କୋଡ଼ିଏ ଜଣ, ଭୋଜ ରାଜନ—ଭୋଜବାଙ୍କରେ ଶ୍ରେଷ୍ଠ ।

୧୭ । ଧନ୍ୱନ୍ତରୀ—ଦେବତାଙ୍କର ବୈଦ୍ୟ, ମୟ—ବଡ଼ ମାୟାବୀ ଅସୁର, ଅଙ୍ଗନା—ସ୍ତ୍ରୀ, ସାର—ଶ୍ରେଷ୍ଠ, ଅକଥନ—କହି ନୋହିବା ।

୧୮ । ଅବଶେଷ—ଶେଷ, ଅବରୋଧ—ବନ୍ଦୀ, ଅନ୍ତଃପୁରରେ ଥିବା ସ୍ତ୍ରୀ—ନାରୀ, ଏଠାରେ ରାଣୀ ।

ବଡ଼ଭ୍ରି ମସ୍ତକ ମଣ୍ଡିଲ୍ପ କୁମାରୀ । କେବଳ ଅନ୍ତ ସଙ୍ଗେ ପ୍ରିୟ ସହଚରୀ ଯେ । କରନ୍ତୁ କର୍ଣ୍ଣେନ୍ଦ୍ରଗଣି ଏ ପାଞ୍ଚ ସ୍ୱଭାବ । ରାମଚରିତ ଦେଖିଲେ କାମ ପୂର୍ଣ୍ଣ ହେବ ଯେ । ଏହିକାଳେ କାଳିକ ବୋଇଲ୍ପ ନେନ୍ଦ ବୁଜ । ନେନ୍ଦ ବୁଜନ୍ତେ ରଚିଲ୍ପ ଏ ମାୟାସମାଜ ଯେ । ୧୯ । ଶୁହିଁ ଲୋମୋଦ୍‌ଗମ-ଜନେ ଲୋମପାଦେ ବୋଲେ । ଜରତା ରତାରେ ଋଷ୍ୟଶୃଙ୍ଗ ଆସି ହେଲେ ଯେ । ସେ ଦେଶରେ ବୃଷ୍ଟି କଲ୍ପ ତୁଷ୍ଟି ହେଲେ ରାଜା । ଶାନ୍ତା କାନ୍ତା ଦେଇକରି କଲେ ଦିବ୍ୟ ପୂଜା ଯେ । ଦଶରଥ ମନୋରଥ ସାର୍ଥ ହେବା ପାଇଁ । ସେ ମୁନିଙ୍କି ଘେନି ଗଲେ ରଥରେ ବସାଇ ଯେ । ୨୦ । ଶୃରୁ ଚରୁ ସ୍ୱରୂପେ ହୋଇଲେ ପଦ୍ମନାଭ । କଉଶଲ୍ୟା କୈକେୟୀ ସୁମିତ୍ରା ଭକ୍ଷି ଜବ ଯେ । ଅଭିରାମ ଶ୍ରୀରାମ ଭରତ ଶୁଭରତ । ସୁଲକ୍ଷଣେ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ । କତୁ ରକ୍ଷା ହେତୁ ବିଶ୍ୱାମିତ୍ର ଅସିନେଲେ । ବନେ ତାଡ଼କା ଶମନଭୁବନେ ପେଷିଲେ ଯେ । ୨୧ । ସୁବାହୁ ସୁବାହୁ ଭଲେ ମାରି ମାରୀଚକୁ । ଆକାଶରେ ଶରେ ଉଡ଼ାଇଲେ ଯେ ଯଶକୁ ଯେ । ପଥରେ ପଥରେ ନାରୀ କରି କଲେ ମୋଦ । ଦାସ ବତ୍ସଳ ଦାସରେ ଧୁଆଇଲେ ପଦ ଯେ । ଖଣ୍ଡପରଶୁକୋଦଣ୍ଡ ବେନି ଖଣ୍ଡ କରି । ସୀତା ବିବାହ ନବାହ ନୃପଦର୍ପ ହରି ଯେ । ୨୨ । ବଜ୍ରପରି

---

୧୯ । ବଡ଼ଭ୍ରି—ବୋଠା, ମସ୍ତକ—ଉପର, କୁମାରୀ—ଲାବଣ୍ୟବତୀ ।

୨୦ । ଲୋମୋଦ୍‌ଗମ—ରୋମ ଠାକ୍ଲ ହିବା, ଲୋମପାଦ—ଜଣେ ସୂର୍ଯ୍ୟବଂଶୀୟ ରାଜା, ଜରତା— ଜଣେ ବେଶ୍ୟା, ଚତୁରେ—ଛଳନାରେ, ଋଷ୍ୟଶୃଙ୍ଗ —ଋଷିଜଣେ, ତୁଷ୍ଟି—ସନ୍ତୋଷ, କାନ୍ତା—ସ୍ତ୍ରୀ, ସାର୍ଥ—ସଫଳ, ଲୋମପାଦ ଦେଶରେ ବର୍ଷା ନ ହେବାରୁ ଜରତା ବେଶ୍ୟା କୌଶଳରେ ଋଷ୍ୟଶୃଙ୍ଗ ମୁନିଙ୍କ ଦେଶକୁ ଆଣିବାରୁ ବର୍ଷା ହେଲା, ଲୋମପାଦ ଖୁସିହୋଇ ତାଙ୍କ ଝିଅ ଶାନ୍ତାକୁ ଋଷ୍ୟଶୃଙ୍ଗଙ୍କୁ ବିଭାକରି ଆନନ୍ଦ ହେଲେ, ଦଶରଥ ମଧ୍ୟ ପୁତ୍ର ସକାଶ ତାଙ୍କୁ ନେଲେ ।

୨୧ । ଶୃରୁ—ସୁନ୍ଦର, ଚରୁ—ଯଜ୍ଞ ଅନ୍ନ, ପଦ୍ମନାଭ—ବିଷ୍ଣୁ, ଶୁଭରତ— ମଙ୍ଗଳ କାମୀ, ସଲକ୍ଷଣରେ—ଉତ୍ତମ ଲକ୍ଷଣରେ ପୂର୍ଣ୍ଣ, କତୁ— ଯାଗ, ଶମନ ଭୁବନ—ଯମପୁର ।

୨୨ । ସୁବାହୁ—ଦୀର୍ଘବାହୁ (ରାମଚନ୍ଦ୍ର), ପଥରେ—ବାଟରେ, ମୋଦ —ଆନନ୍ଦ, ଦାସରେ—କେଉଟ ଦ୍ୱାରା, ଖଣ୍ଡପରଶୁ—ମହାଦେବ, କୋଦଣ୍ଡ—ଧନୁ ।

ଭୃଗୁପତି ଭୃଗୁକୁ ଭେଦିଲେ । ଅଭିଷେକ କରିବା ମମତା ପିତା କଲେ ଯେ । ମନ୍ତ୍ରରାମନ୍ତନେ କାନ୍ତାନୁଜ ଘେନି ସଙ୍ଗେ । ବଚନ ଶକ୍ରକୂଟରେ ବାହାରିଲେ ରଙ୍ଗେ ଯେ । ବକ କଲେ, ଶକ୍ରସୁତଚକ ନେତ୍ରରାଜ । ଭରତ ପ୍ରବୋଧି ସୁବୁଦ୍ଧିରେ ଗିରି ତେଜି ଯେ । ୨୩ । ବୀରାୟୁଧେ ବୀରାୟୁଧେ ବଧ ବାଗୁରିଲେ । ଅମଳାନବସ୍ତ୍ର ବ୍ରହ୍ମଶସ୍ତ୍ରକୁ ପାଇଲେ ଯେ । ଦଣ୍ଡକାରଣ୍ୟକୁ ମଣ୍ଡି ସୂର୍ପଣଖା ଦଣ୍ଡି । ଖର ଖର ଦୂଷଣ ତ୍ରିଶିର ଶିର ଖଣ୍ଡି ଯେ । ହେମସାରଙ୍ଗରଙ୍ଗରେ ଲଙ୍କା ଦଣ୍ଡଧାରୀ । ସୀତା ଶୀତାଂଶୁମୁଖୀଙ୍କ ଉଟଜରୁ ହରି ଯେ । ୨୪ । ଫଳଦାନେ ମୋକ୍ଷଫଳ ଲଭିଲା ଶବରୀ । କ୍ଷୀରପାନେ ବର-ବରଳରେ ବାଞ୍ଛା ପୂରି ଯେ । କାମ କାମନାକୁ ମୂଳ ଚକ୍ରେ ଜନ୍ମାଇଲେ । ପମ୍ପାସରେ କୋକଶୋକକାରକ ହୋଇଲେ ଯେ । ମିତ୍ରବଂଶୀ ମିତ୍ର ବସି ମିତ୍ରପୁତ୍ର ସଙ୍ଗେ । ଭେଦ ଶାଳ ଦୁନ୍ଦୁଭି ଅସ୍ଥିକି ଗୃହଲେ ରଙ୍ଗେ ଯେ । ୨୫ । ଶାଖାମୃଗରାଜ ମୃଗରାଜ କୋଟିବଳ । ଶର ଶରଭରେ କଲେ ବିନାଶ ଚପଳ ଯେ । ମାଲ୍ୟବନ୍ତ ଧରଣୀଧରରେ ପୂର ବଶ । ରଘୁବୀର ବିରହେ ବରଷାକାଳ ବଞ୍ଚି ଯେ । କୁକ୍କୁଟକୁ ମୁକୁଟ ସେ ଗିରିକୂଟ ଦେଇ । ଲଭି ବଲ୍ଲଭୀ ଉଦନ୍ତ ଦୂତ ପଠିଆଇ ଯେ । ୨୬ ।

---

୨୩ । ଭୃଗୁପତି—ପର୍ଶୁରାମ, ଭୃଗୁ—ପର୍ବତ, ମମତା—ଇଚ୍ଛା, ମନ୍ତ୍ରରା ମନ୍ତ୍ରନେ—ମନ୍ତ୍ରରାଦାସୀ କପଟରେ ।
କାନ୍ତାନୁଜ (କାନ୍ତ+ଅନୁଜ) କାନ୍ତା—ସ୍ତ୍ରୀ (ସୀତା) ଅନୁଜ—ସାନ ଭାଇ (ଲକ୍ଷ୍ମଣ), ଶକ୍ରସୁତ—ଇନ୍ଦ୍ରପୁଅ, ଚକ—ଗୋଲ ।

୨୪ । ବୀରାୟୁଧେ—ବୀର ଅସ୍ତ୍ରରେ, ବିରାଧୁଧେ—ବିରାଧ ରାକ୍ଷସକୁ, ବଧ—ବିନାଶ, ଖର—ଶୀଘ୍ର, ଖର—ଖର ରାକ୍ଷସ, ହେମ—ସୁନା, ସାରଙ୍ଗ—ମୃଗ, ଦଣ୍ଡଧାରୀ—ରାଜା, ଶୀତାଂଶୁମୁଖୀ—ଚନ୍ଦ୍ରମୁଖୀ, ଉଟଜ—ପତ୍ର କୁଡ଼ିଆ ।

୨୫ । ବର ବରଳ-ଶ୍ରେଷ୍ଠ ଗୋପାଳ, ବାଞ୍ଛା-ଇଚ୍ଛା, କୋକ-ଚକ୍ରବାକ ପକ୍ଷୀ, ମିତ୍ରବଂଶୀ—ସୂର୍ଯ୍ୟବଂଶୀ, ମିତ୍ର—ସୂର୍ଯ୍ୟଙ୍କ ପୁଅ ସୁଗ୍ରୀବ ।

୨୬ । ଶାଖାମୃଗ—ବାନର, ମୃଗରାଜ—ସିଂହ, ଶରଭ—ଏକବାନର, ଚପଳ—ଶୀଘ୍ର, ଧରଣୀଧର—ପର୍ବତ, କୁକ୍କୁଟ—କୁକୁଡ଼ା, ଗିରିକୂଟେ—ପର୍ବତ କୋଡ଼ରେ, ବଲ୍ଲଭୀ—ସ୍ତ୍ରୀ, ଉଦନ୍ତ—ବାର୍ତ୍ତା ।

ଜଟେ ସେତୁ କଲେ ଶିଳେ ନଳେ ଦେଇ ଯଶ । ଲଙ୍କା ବେଢ଼ି ଶଙ୍କା କରାଇଲେ ଦୈତ୍ୟବଂଶ ଯେ । ବିଷଧରପାଶ ତ୍ରାସ ନାଶ କଲା ବୀଶ । ଅନୀକିନୀ ଅନେକ ହୋଇଲେ ରଣେ ନାଶ ଯେ । ଘଟକର୍ଣ୍ଣ ଘଟତ୍ୟାଗ ଅତିକାୟ କ୍ଷୟ । ପୁରୁହୂତଜିତ ହତ ବ୍ରହ୍ମାସ୍ତ୍ର ଉଦୟ ଯେ । ୨୭ ।

ହନୂମାନ ଗନ୍ଧମାଦନ ଗମନ ଲୀଳା । ଭରତ ଉଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଜୀଇଁଲ ଯେ । ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ । ଲଙ୍କପତି ଅଙ୍କପେଟୀ ଭିତରେ ପୂରାଇ ଯେ । ଅଭୀଷଣ ବିଭୀଷଣେ ଅଭିଷେକ କରି । ବଇଦେହୀ ଦହି ଅନଳରେ ହେମ ପରି ଯେ । ୨୮ ।

ପୁଷ୍ପକରେ ପୁଷ୍କରେ ସବଳେ କଲେ ଗତି । ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ଯେ । ଦେଖାଉଁ ଦେଖାଉଁ ରାମାୟଣ ମହୋତ୍ସବ । ଚନ୍ଦ୍ରବଦନୀକି ଦେଖାଇଲ ଅନ୍ୟଭାବ ଯେ । କର୍ଣ୍ଣାଟରାଜନନ୍ଦନ ରାମ ଆଗେ ଉଭା । ବିଶ୍ୱମ୍ଭର ଆଗେ ବିଶ୍ୱକେତୁ ଯଥା ଶୋଭା ଯେ । କୁମାରୀକି ଶୁଭୁଛି ଏମନ୍ତ ଜଣାଉଛୁ । ଆନବରେ ମୋର ପ୍ରୟୋଜନ ନାହିଁ କିଛି ଯେ । ୨୯ ।

ହେ ରାମ ଶ୍ୟାମ ସୁନ୍ଦର ଅଙ୍ଗ ଦଉକରି । ସୁଗ୍ରୀବକୁ ତାରା ବିଭୀଷଣେ ମନ୍ଦୋଦରୀ ଯେ । ଲବଣ୍ୟବତୀ ଯୁବତୀ ଶିରୋମଣି ମୋର । ମନୋହାରୀ ହୋଇବ ଏମନ୍ତ କୃପା କର ହେ । ୩୦ ।

ସ୍ୱେ ନବୀନା ବିନା ଆନେ ନ ରସେ ମୋ ମନ । ଦହନ କରୁଛି ମୋତେ ମଦନଦହନ ହେ । ପ୍ରଭୁ ତୁମ୍ଭେ ବିରହବେଦନା ଅନୁଭବୀ । ନ ଘେନିଲେ ଆଉ କାହା ଆଗେ ଜଣାଇବି ଯେ । କରୁଣା ଲୋକନେ ରାମ ଅସ୍ତୁବାଣୀ ଭାଷି । ଦେଖି ଶୁଣି ଏମନ୍ତ ସେ କସ୍ତୁରୀସୁବାସୀ ଯେ । ୩୧ ।

ଅଳୀକ ଦେଖାଇଦେଲ ଅଙ୍ଗୁଳି ଦେଖାଇ । ସ୍ୱପନ ସମ୍ପତ୍ତି

---

୨୭ । ସେତୁ—ବନ୍ଧ, ଶିଳେ—ପଥରରେ, ଶଙ୍କା—ଭୟ, ବିଷଧର ପାଶ—ନାଗପାଶ, ତ୍ରାସ—ଭୟ, ବୀଶ—ଗରୁଡ଼, ଅନୀକିନୀ—ପାଇକ ସୈନ୍ୟ, ଘଟତ୍ୟାଗ—ଦେହ ଛାଡ଼ିବା, କ୍ଷୟ—ନାଶ, ପୁରୁହୂତ—ଇନ୍ଦ୍ର, ପୁରୁହୂତଜିତ—ଇନ୍ଦ୍ରଜୟକାରୀ (ଇନ୍ଦ୍ରଜିତ) ।

୨୮ । ଉଦନ୍ତ—ବାର୍ତ୍ତା, ନରେନ୍ଦ୍ର ଶର—ଶ୍ରେଷ୍ଠଶର, ଅଭୀଷଣ—ଶାନ୍ତ, ଦହି—ପୋଡ଼ି, ଅନଳ—ନିଆଁ, ହେମ—ସୁନା ।

୨୯ । ପୁଷ୍ପକରେ—ପୁଷ୍ପକ ଯାନରେ, ପୁଷ୍କରେ—ଆକାଶରେ, ସବଳେ—ଦଳ ବଳ ସହିତ, ବିଶ୍ୱମ୍ଭର—ବିଷ୍ଣୁ, ବିଶ୍ୱକେତୁ—କନ୍ଦର୍ପ, ଏଣେ ରାମାୟଣକୁ ତେଣେ ମାୟାରେ ଲବଣ୍ୟବତୀକୁ କର୍ଣ୍ଣାଟ ରାଜସୁତ ଚନ୍ଦ୍ରଭାନୁକୁ ଦେଖାଉଛି ।

୩୧ । ଅନୁଭବୀ—ଭୋଗୀ, କରୁଣା—ଦୟା, କସ୍ତୁରୀ ସୁବାସୀ—କସ୍ତୁରୀବାସୀ

ପଢ ପୁରୁଷ ମୋ ଏହୁ ଯେ । ସଖୀ ବୋଇଲା ସୁନ୍ଦରସୃଷ୍ଟି ପୁରନ୍ଦର । ଏଥର ଅଇଲେ ପାଶେ ଏ ଉପାୟ କର ଯେ । ଉଦ୍ଧତକୁ ବିସ୍ମର ନ କର କମ୍ବୁକଣ୍ଠୀ । ଭେଟୁଁ ଦେବୁ ଅଞ୍ଚଳେ ଅଞ୍ଚଳେ ଦୃଢ଼ଗଣ୍ଠି ଯେ ।୩୨। ବାହୁବନ୍ଧନେ ବାନ୍ଧିବୁ ଅଭପରି କରି । ଯାଇ ନ ପାରିବ ଶେଷ ହୋଇଲେ ଶର୍ବରୀ ଗୋ । ରତିଭୋଗ ଯାଏ ଯେବେ ସହିବ ଦଇବ । ସେ ପ୍ରେମ ରଜ୍ଜୁରେ ବାନ୍ଧ ହୋଇଣ ରହିବ ଗୋ । ଯେଉଁ ରତି ରସ ବଶକରଇ ବ୍ରହ୍ମାଙ୍କୁ । ଅଧିକ କି କରିବା ପୁରୁଷ ଭ୍ରମରକୁ ଗୋ ॥ ସଜନୀ ଏ ମଧୁର ବଚନେ କହୁଁ କହୁଁ । ଜଗତ୍ରୀ ପ୍ରବେଶ ସେ କୁମାର ଗୃହୁଁ ଗୃହୁଁ ଯେ । କୁମାରୀ ବିଗୃରେ ସ୍ୱପ୍ନ ସଙ୍ଗ ଦାନ ଜାଣି । ସେହୁ ଶୁଭଲଗ୍ନ ଘେନି ବାହୁଣ୍ଡି କି ଅଛି ଯେ । ଏମନ୍ତେ ସେ ରସିକ ପ୍ରକାଶେ ବଚନକୁ । କଣିଲା ଧନ ଜୀବନ ମନ ଲୋଚନକୁ ଗୋ ।୩୪। ମଧୁବିନା ମଧୁପର ଅନ ରତି ନାହିଁ । ବିଧୁ ବିନା ଅନେ କି କୁମୁଦ ପ୍ରକାଶଇ ଗୋ । ଚଳୁଁ ବିନା ଅନ ଗତି ନାହିଁ ମୋ ଜଗତେ । ଅନକୁ ନ ବରି ଏକା ବରିବୁ ତୁ ମୋତେ ଗୋ । ଏତିକି ମାଗୁଣି ମୋ କେତକୀ ବରନାକୁ । ସେ କୁମର କରୁଁ ଏ ବିନୟ ବଚନ କୁ ଯେ ।୩୫। ସଖି ବୋଲେ ଅମ୍ଭ ସଖୀ ସତ୍ୟର ଜନନୀ । ବରଣି ଯେ କଣ୍ଠେ ମୁକୁତାମାଳ ଘେନି ଯେ । କୋଟିକଲ୍ପେ ଏ କଥା ହୋଇଛି ଜାଣ ଅନ । ଘନ ତେଜି ଗଙ୍ଗାଜଳେ ଗୃତକର ମନ ଯେ । ତୁମ୍ଭ ପୁରୁଷେ ସହଜେ ଚନ୍ଦ୍ରମା ପ୍ରକାର । ତାର ପତି ହୋଇଲେ କୁମୁଦେ ଭୋଗ କର ଯେ ॥ ଚନ୍ଦ୍ରମୁଖୀ କି ରଖିଛି ସଖୀ ଥିଲା ଲାଜ । ମନେ କରେ ଗଳାରେ ବେଢ଼ାଇ ଦେବି ଭୁଜ ଯେ । ଜାଣି ତାହା ସହଚରୀ ଅନ୍ତର ହେବାକୁ । କୁହୁକ କୁଶଳ ହରି ନେଲା ସେ ମାୟାକୁ ଯେ । କୁମାର କୁମାରୀ ଗତି ଅନକୁ ନ ଦଶି । ସମାୟୁଣ ଚରିତେ ସମସ୍ତେ ହେଲେ ତୋଷୀ ଯେ ।୩୭। ପଟ ହାଟକ କଟକ

---

୩୨ । ସୁନ୍ଦର ସୃଷ୍ଟି-ପୁରନ୍ଦର—ସୃଷ୍ଟିର ମଧ୍ୟରେ ଶ୍ରେଷ୍ଠ ।
ଅଞ୍ଚଳ—କାନି ।

୩୩ । ଶର୍ବରୀ—ରାତ୍ରି ।

୩୫ । ମଧୁ—ମହୁ ବା ଅମୃତ, ମଧୁପ—ଭ୍ରମର ।

୩୬ । ସତ୍ୟର ଜନନୀ—ସତକଥା କହିବାରେ ପ୍ରଧାନ ।

ଘୋଟକ ରଚନ । ହାଟ ବାଟ ଜୁର ଶାଢ଼ୀ ବାସ କଲେ ଦାନ ଯେ । ଯେତେ ଲୋକ ଦେଖୁଥିଲେ ଦେଲେ ସଭି ଜୁର । ସବୁରୂପେ ପୂର୍ଣ୍ଣ ହେଲା ମନୋରଥ ତାର ଯେ । ବ୍ୟାକୁଳ ଅନଳେ ଦଗ୍‌ଧ କୁଟିଳକଟାକ୍ଷା । ଶଙ୍କି ମିଷ୍ଟ ହେଲା ପ୍ରାୟ ମୋହ କଲା ରକ୍ଷା ହେ । ୩୮ । କେତେବେଳ ଏମନ୍ତେ ରହିଲା ଭାବମୟୀ । ଜନନୀ ହକର୍ବ କେତେ ଦଣ୍ଡକୁ ବଳାଇ ଯେ । ଏ କଥାରୁ ଶଙ୍କା ଉପୁଜାଇ ଦେଲେ ଆଳୀ । ଗୁପତ କଥା ପ୍ରକଟ ହେଲା ନବବାଳା ଗୋ । ତୁ ରାଜକୁମାରୀ ତୋତେ ହେବ ବଡ଼ ଲାଜ । ସରବ ଆମ୍ଭ ମହତ୍ତ୍ୱ ନ ପାଇବୁ କାର୍ଯ୍ୟ ଗୋ । ୩୯ । ହଳାହଳ ପାନେ ପ୍ରାଣ ରକ୍ଷା ବାଞ୍ଛାକରୁ । ସନ୍ନିପାତକୁ ସେ ହିତ ହୁଏ ସିନା ଭୀରୁ ଗୋ । ତେଜ ରୋଗ ଜନମିଲେ ଅଉ ରକ୍ଷା କାହିଁ । ଚତୁରୀର ଏତକ ବିବେକ ହେଉ ନାହିଁ ଗୋ । ଏହି ବଡ଼ ଭୟ ତା ନଟୁଁ ହୋଇ କର । ପଳାଇଲା ପ୍ରାଣକୁ ରଖିଲା ବେଳେ ଧର ଯେ । ୪୦ । ନଟ ଯାଇ କେତେ ଦିନେ କର୍ଣ୍ଣାଟେ ପ୍ରବେଶ । କୁମାରକୁ କହିଲା ଦୁର୍ଲ୍ଲଭ କନ୍ୟା ବଶ ଯେ । ନାମ ଦେଶ ପଚାରିଲେ ତାହିଁ ପ୍ରକାଶିଲା । କୁମାର ବାରୁରେ ମୋର ସୁକୃତ ଦଶିଲା ଯେ । ଅଘକରୀନ୍ଦ୍ର ପାରୀନ୍ଦ୍ର ଅଯୋଧ୍ୟା ନରେନ୍ଦ୍ର । ଭାବ ଛନ୍ଦ ଶେଷ କଲା ଭଞ୍ଜ ଉପେନ୍ଦ୍ର ଯେ । ୪୧ ।

---

୩୮ । ପଟ—ଲୁଗା ହାଟକ—ସୁନା, କଟକ—ଖଡ଼ୁ, ଘୋଟକ—ଘୋଡ଼ା କୁଟିଳ କଟାକ୍ଷା—ଯେ ବଙ୍କେଇ କରି ଚାହେଁ ଅର୍ଥାତ୍ ଲବଣ୍ୟବତୀ ।

୩୯ । ଜନନୀ ହକର୍ବ—ମା' ଡାକ, ପ୍ରକଟ—ପ୍ରକାଶ ।

୪୦ । ହଳାହଳ—ବିଷ ।

୪୧ । ସୁକୃତ—ଯଶ, ଅଘ କରୀନ୍ଦ୍ର—ପାପ ରୂପକ ହାତୀ, ପାରୀନ୍ଦ୍ର—ସିଂହ । ଲବଣ୍ୟବତୀର ଶୋଭା ଦେଖିବାକୁ କର୍ଣ୍ଣାଟସୁତ ବାଜକକୁ ପଠାଇ ଥିଲା । ସେ ସିଂହଳରେ ସମାପ୍ତ ଓ ଲବଣ୍ୟବତୀଙ୍କ ଚନ୍ଦ୍ରଭାନୁଙ୍କୁ ଦେଖି ଇ ତାର ଉତ୍କଣ୍ଠା ବଢ଼ାଇ ଫେରି ଆସି କୁମାରକୁ କହିବାରୁ ସେ ସନ୍ତୋଷ ହେଲା ।

# ଷୋଡ଼ଶ ଛାନ୍ଦ

( ଚନ୍ଦ୍ରଭାନୁ ମିତ୍ରଙ୍କୁ ଲାବଣ୍ୟବତୀ ଶୋଭା କହିବା )

ରାଗ—ଗୁଜ୍ଜରୀ

ଇନ୍ଦ୍ରଜାଲିକ ମୁଖୁଁ ଶୁଣି । ବଶ ହେବାରୁ ପୃଥୁଶ୍ରୋଣୀ ॥
ଛାତ୍ରେଲ ଶୋଭା ଅନୁରାଗ । କହୁଛ ପ୍ରକାଶେ ମିତ୍ର ଆଗ ॥
ହା ହା ସେ ନରେନ୍ଦ୍ର କୁମାରୀ । ଅବନୀ ଶିରୀ ସୁକୁମାରୀ ॥
ଯାହାଙ୍କ ଅଙ୍ଗେ ଶୋଭ ଥିଲା । ସୁକୃତ ମୂର୍ତ୍ତି ଭେଟାଇଲା ॥
ସଂସାରେ ଯେତେ ସୃଷ୍ଟି ଅଛି । ତାଠାରେ ପୁଷ୍ଟି ସେ ହୋଇଛି ॥
ଏଣୁ ଜଗତ ଜୟୁରୂପ । ପ୍ରଣି କନ୍ଦର୍ପ ରସକୂପ ॥
ତହିଁ ନୟନ ମୀନ ମଣ୍ଡ । କି ଚଳ ରହିବାର କୁଣ୍ଡ ॥
ଅଗ ପଛକୁ ସମ ଶୋଭା । ଶୋଭାବୃନ୍ଦରେ ଦେହପ୍ରଭା ।୪।
ପ୍ରଭାମାନଙ୍କ ନିଜ ଧାମ । ଅନ୍ୟୋଽନ୍ୟେ ନାମରୂପ ସମ ॥
ସମ ନୋହିଲେ ଅଜ କାହିଁ । ମୁକୁର ଦେଖାଇବଲେ ଦୁଇ ।୫।
ଅଳଙ୍କାରକୁ ଅଳଙ୍କାର । ନିଶ୍ଚୟ ସେହି ରାମାବର ॥
ଭୂଷାଦି ଯେତେ ଅଳଙ୍କାର । ସେମାନେ ଅଳଙ୍କାର ସାର ।୬।
ଅନୁରାଗର ଷଣ୍ଡ ସେହି । ଅନୁରାଗକୁ ଜନମାଇଁ ॥
ଯୌବନ ଶୋଭା ସେ କାମିନୀ । ଯୌବନ ଶୋଭା ତାହା ଘେନି ।୭।
ମୁଖ ପ୍ରଶଂସା କଳାକର । ତାହା ପ୍ରଶଂସା ମୁଖ ତାର ॥
ତା ରୂପ ଅସ୍ତ୍ରକର ଘେନ । ରୂପାସ୍ତ୍ର ବୋଲାଇ ମଦନ ।୮।

---

## ଷୋଡ଼ଶ ଛାନ୍ଦ

୧ । ପୃଥୁଶ୍ରୋଣୀ—ସୁନ୍ଦରୀ, ଛାତ୍ରେଲ—ଅନେକର, ଅନୁରାଗ—ସ୍ନେହ ।
୨ । ନରେନ୍ଦ୍ର କୁମାରୀ—ରାଜାଝିଅ, ଅବନୀ ଶିରୀ—ପୃଥିବୀର ଭୂଷଣ, ସୁକୃତ ମୂର୍ତ୍ତି—ପୁଣ୍ୟରୂପକ ମୂର୍ତ୍ତି ।
୩ । କୂପ—କୁଅ, ମୁକୁର—ଆରସି ।
୪ । ଷଣ୍ଡ—ପଦ୍ମନାଡ଼, ଶୋଭାବୃନ୍ଦ—ସୁନ୍ଦର ସମୂହ, ପ୍ରଭା—ତେଜ ।
୮ । କଳାକର—ଚନ୍ଦ୍ର, ରୂପାସ୍ତ୍ର—କନ୍ଦର୍ପ ।

ଯୁବାସଂସାର ସଂହାରଣୀ । ଯୋଷାରେ ସଂସାର ତାରେଣି ॥
କୁଙ୍କୁମ କାନ୍ତି ଅସମରେ । ସଂଚୋର ବହୁଛୁ ନାମରେ ।୯।
ସୁନ୍ଦରୀ ପୁରନ୍ଦର ମୋହ । ସୁନ୍ଦରୀ ପୁରନ୍ଦର ଏହ ॥
ଦେଖି ତା ସର୍ବାଙ୍ଗ ସୁନ୍ଦର । ଚିତ୍ତେ ଚିନ୍ତଇ ପୁରନ୍ଦର ।୧୦।
କି ତପ କରି ପିନ୍ଧାଶାଢ଼ି । ସେ ବାଳା ପ୍ରତିଅଙ୍ଗେ ଜଡ଼ି ॥
ଜାଣିଲେ ସେ ତପ ସାଧନ୍ତି । ତେତିକିବେଳୁଁ ହୁଏ ମତି ।୧୧।
ନିଦ୍ରାଭଙ୍ଗ ସଂଲଗ୍ନବେଳେ । ଭୃଙ୍ଗୀଏ ଅନୁକୂଳ କଲେ ॥
ଲୁଟି ଯେ କଲେ ଧୈର୍ଯ୍ୟଧନ । ପ୍ରଥମେ ଧରିନେଲେ ମନ ।୧୨।
ଅଙ୍ଗଦେଶରେ ଲଭ ପ୍ରୀତ । ହୋଇଥିବେ ଯେ ବେଣି ମନ୍ତ୍ରୀ ॥
କେ କେତେବେଳେ ବଳିଅର । ହୋଇଲେ ଅନୁଗ୍ରହ ତାର ।୧୨।
ଉରଜପୁର ଚକ୍ରବର୍ତ୍ତୀ । ଦେଖାଇ ବିଶେଷ ଉନ୍ନତ ॥
ଲେଖାଇ ନେଲା ହାତେ ପତ୍ର । ହେଲିବୋଲି ମୁଁ ତୋର ଭୃତ୍ୟ ।୧୪।
କନକ ମହୀଧରଠାରୁ । ଉଦରେ ରଖିଛି ତା ଭୀରୁ ॥
କସ୍ତୁରୀପଙ୍କ ବର୍ଣ୍ଣପନ୍ତି । ରୋମାଳି ବୋଲନ୍ତି ଅଛନ୍ତି ।୧୫।
ଯହିଁ ଏମନ୍ତ ଧୈର୍ଯ୍ୟବନ୍ତ । ଦେଖି ନ ପାରିଲ ଗୁରୁତ୍ୱ ॥
ଅଜ କାହାର ତାକୁ ଗୃହିଁ । ବାଞ୍ଛା ନୋହିବ ଦାସ ହୋଇ ।୧୬।
ବାଳୀ ଚାଳିଲାବେଳେ ନେତ୍ର । ଜୀବନ ହୋଇଲା ଅରତ ॥
ଖେଳି ଅସୁଛୁ କାଳ ଅହି । ଏ ମୋତେ ଦଂଶିବାର ପାଇଁ ।୧୭।
ପିଛଡ଼ା ପେଡ଼ାମଧ୍ୟେ ଥିଲା । କିରୂପେ ଫିଟି ଏ ଅଇଲା ॥
ନ ମାନିବାରୁ ଗଦ ପଦ । ନିଶସ୍ତ୍ର ହେଲା ବିଷବୈଦ୍ୟ ।୧୮।
ଏକାଳେ ନେତ୍ରବୋଧ ତାକୁ । ତାଳି ଏ ଦେବ ଅମୃତକୁ ॥
ଅହିଁ ଭୁ ହୋଇଲୁ ଅମର । ଦେଖି ଏ ଶିଗ୍ରପ୍ରାପ୍ତ ମୋର ।୧୯।
ଅନୁରାଗ ଗୃହିଣୀ ସେହୁ । ଅପାଙ୍ଗ ଥିଲା ସାକ୍ଷୀ ହୋଇ ॥
ଶୋଭା ସେ ଦଶିଲା ଏମନ୍ତ । ଫୁଲ୍ଲାରବିନ୍ଦେ ଅଳିଯୁକ୍ତ ॥

---

୯ । ପୁରନ୍ଦରୀ—ଇନ୍ଦ୍ରାଣୀ ।
୧୪ । ଉରଜ—କୁଚ, ଚକ୍ରବର୍ତ୍ତୀ—ଶ୍ରେଷ୍ଠ ।
୧୫ । କନକ—ସୁବର୍ଣ୍ଣ, ମହୀଧର—ପର୍ବତ ।
୧୭ । ଅହି—ସାପ ।
୧୮ । ପିଛଡ଼ା—ଅଖିପତା, ବିଷବୈଦ୍ୟ—ବେଳା ।
୨୦ । ଅପାଙ୍ଗ—ଅଖିକୋଣ ଫୁଲ୍ଲାରବିନ୍ଦ—ଫୁଟିଲା ପଦ୍ମ, ଅଳି—ଭ୍ରମର

ଅନଙ୍ଗ ପବନ ବଳାରେ । ଝିଟିତ ଚାଳିବା ପ୍ରକାରେ ॥
ଘେନି ଶୁକଳ ରଙ୍ଗ କଳା । ପଲଙ୍କ କବା ଶଯ୍ୟ କଲ ।୨୧।
ମୋହର କି ଇତର ପୁଣ୍ୟ । ତ୍ରିବେଣୀ ଘାଟେ କଲି ସ୍ନାନ ॥
କଟାକ୍ଷ ଅଙ୍କୁଶ ସଦୃଶୀ । ମନ ମାତଙ୍ଗକୁ ଅକର୍ଷି ।୨୨।
ଜଙ୍ଘୁଳ ମାହୁନ୍ତ ଅରୋହି । ତାର ଅୟୂତ୍ର କର ନେଇ ॥
ଜାନୁ ଅର୍ଗଳର ନିକଟେ । ଥିଲି ଶିକୁଳା ନୀବିକୂଟେ ।୨୩।
ନିବଡ଼େ ପକାଇଲି ବାନ୍ଧି । ଭ୍ରମ ମଦର୍ ପାନେ ବୋଧି ॥
ଖବଲ୍ ସ୍ଵର୍ଗଦ୍ଵାର ଏହି । ମୋକ୍ଷ ଏଥିରେ ଅଛି ରହି ।୨୪।
ସାନିଧ୍ୟେ ମଧ୍ୟେ ସିଂହ ସ୍ଥିତ । ନୋହିଲେ ହୁଅନ୍ତା ଏମନ୍ତ ॥
ନିତମ୍ବ ଚନ୍ଦ୍ରବିମ୍ବ ସତ । ସେ ସ୍ଥାନେ ହୁଅଇ ଉଦିତ ।୨୫।
ଲଭିଲି ଯେତେ ପୁଣ୍ୟ ତେତେ । ଲଙ୍ଘି ତା ପାରନ୍ତି କେମନ୍ତେ ॥
ଜଘନ ଭଦ୍ରାସନ ଗୋପ୍ୟ । ବିଶ୍ରାମେ ଇନ୍ଦ୍ରପଦ ସ୍ଥାପେ ।୨୬।
ଏହି ଅଭୀଷ୍ଟ କରୁଅଛି । ନ ଜାଣି ଧାତା କି ଲେଖିଛି ॥
ମନ ବୁଦ୍ଧି ନୟନ ପ୍ରାଣ । ତାହାର କିଣା ହେଲେ ଜାଣ ।୨୭।
ଏଣୁ ମୋ ଭଲ ମନ୍ଦ କର୍ମ । ନୋହିଲା ନବୀନ ବନିତା ॥
ମୋର ଦେହରେ ମୋ ଅୟୂତ୍ତ । କେହି ବହିଲା ଘେନ ଚିତ୍ତ ।୨୮।
ତାହି କନକ ବରନୀକି । ସୁଭାଗ୍ୟ ଗଲା ମୋର ବକି ॥
ଓଷ୍ଠ ପ୍ରବାଳପାନେ ଥିଲି । ହାସ ମୁକୁତାରେ କିଣିଲି ।୨୯।
ସେହି ତାହା କିଣିଗଲା ସିନା । ଏବେ ମୁଁ ପାଉଛି ବେଦନା ॥
ରତି ରତନ ବରତନ । ଦେଇ କରିବାକୁ ଯତନ ।୩୦।
କେ ଯାଇ ଜଣାନ୍ତା ମୋ ପାଇଁ । କରୁଣା କଲ୍ପତରୁ ସେହି ॥
ଅହା କରନ୍ତା ଏହା ଶୁଣି । ଗ୍ଲାମୁକୁ ନିଅଇ ସେଷଣି ।୩୧।
ଧଅନ୍ତା ଅଶେଷ ସମ୍ପତ୍ତି । ତହନ୍ତା ପାଇବା ବିପତ୍ତି ॥
ମନକୁ ମନାଇ ସେବାରେ । ମନ୍ତନ୍ତି ମୁଁ ନିଶି ଦିବାରେ ।୩୨।
ଯାହାର ନାସା ଫୁଲ୍ଲପଣ । ଫୁଲାଇ ଦେଇ ଫୁଲବାଣ ॥
ବିଗ୍ରହେ ଏ ତୂଣୀ ସମରେ । ଅସ୍ତ୍ର ତ କମ୍ପାଇବ ଦ୍ଵାରେ ।୩୩।

---

୨୨ । ମାତଙ୍ଗ—ହାତୀ ।
୨୬ । ଜଘନ—ଜଙ୍ଘ, ଭଦ୍ରାସନ—ସିଂହାସନ ।
୨୯ । ତାହି କନକବରନୀ—ପୋଡ଼ାସୁନା ସମାନ ବର୍ଣ୍ଣ ଯାହାର ।
୩୦ । ଶମ୍ବରାରି—କନ୍ଦର୍ପ, ରମା—ସ୍ତ୍ରୀ ।
୩୩ । ଫୁଲବାଣ—କନ୍ଦର୍ପ, ତୂଣୀ—ଶରମୁଣା ।

ସବୁ ସୁବେଶ ମାନେ ତାକୁ । ସେ ପୁଣି ସୁବେଶ ବେଶକୁ ॥
ମଳିନ ହୋଇଥିଲେ ବେଶେ । ଜଗତ ମୋହି ପାରଇ ସେ ।୩୪।
ପଙ୍କ ମଧ୍ୟରେ ପଦ୍ମ ଥାଇ । ଯଥା ରସିକ ଭୃଙ୍ଗ ମୋହି ॥
ଯେମନ୍ତ ଦେବତାଏ ଶିରେ । ବହନ୍ତି ବଧୁ ସୁର୍ଣ୍ଣ କରେ ।୩୫।
ହାର କରନ୍ତି ସମ୍ଭାର । ରମା ସୁଷମା ସେହିପର ॥
ସ୍ୱଭାବେ ମୋର ବେନି ଅଖି । ଯହିଁ ପଡ଼ଇ ରହେ ଲଖି ।୩୬।
ସେ କୋଟି କୋଟି ହୋଇଥିଲେ । ସେ ଶୋଭା ଦେଖିଥାନ୍ତି ଭଲେ ॥
ଅଙ୍ଗେ ଶତ ଶତ ରଖି । ସୁଖୀ ହୁଅନ୍ତି ଦେଖି ଦେଖି ।୩୭।
ଯେ ବାଳ ଚରିତ ଅଶେଷ । ଏମନ୍ତ କହୁଁ କହୁଁ ପୁଂସ ॥
ଗୁରୁ ପୁରୁଷ କଲ ଅନ । ଏ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ ।୩୮।
ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ । ବରହି କୋଷରୁ ସମ୍ଭବ ॥
ମନୁଷ୍ୟ ଏହି ଅଦଭୁତ । ଭଞ୍ଜାନୁଭଞ୍ଜ ନାମ ସତ ।୩୯।
ବଶିଷ୍ଟ ବଶିଷ୍ଠ ପାଳକା । ଶ୍ରୀରାମେ ଦତ୍ତ ରାଜଟିକା ॥
ସେ କୁଳେ ରାଜା ଧନଞ୍ଜୟ । ସମସ୍ତ ଗୁଣର ନିଳୟ ।୪୦।
ଧନୁଷର ଅଧିକ ପଣେ । ଲୋକ ବିଖ୍ୟାତ କବିଗୁଣେ ॥
ତଦ୍‌ଗତ ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ ।୪୧।
ତାହାଙ୍କ ଜ୍ୟେଷ୍ଠସୁତ ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି ॥
ତାରକ ମନ୍ତ୍ର ପସାଦେ । ମୋହର କବିପଣ ଉଦେ ।୪୨।
କଳଙ୍କ ବିହୀନ ମୋ ଗୀତ । ଖଳ ସହୁରେ ଅଦୂଷିତ ॥
ବିଶଦ ସୁଧାକର ଏହୁ । ସୁମନାବୃନ୍ଦ ସୁଖଦାୟୀ ।୪୩।
ନାରିକେଳ ଯେ ରସପୂର । ଭକ୍ଷି ନ ପାରଇ ବାନର ॥
ତାର କି ସ୍ୱାଦୁ ଯଶ ନୋହି । ପ୍ରସଙ୍ଗ ଗଲା ମଧ୍ୟ କହି ।୪୪।

---

୩୫ । ବଭ୍ରୁ—ବସ୍ତ୍ର ।
୪୦ । ନିଳୟ—ଘର, ସ୍ଥାନ ।
୪୧ । ତନୁଜ—ପୁତ୍ର ।
୪୩ । ଅଦୂଷିତ—ପ୍ରଶଂସ୍ୟ, ସୁଧାକର—ଚନ୍ଦ୍ର, ସୁମନାବୃନ୍ଦ—ପଣ୍ଡିତମାନେ ଦେବତାମାନେ ।
୪୪ । ନାରିକେଳ—ନଡ଼ିଆ ।

ଏ ଛାନ୍ଦରେ ଚନ୍ଦ୍ରଭାନୁ ଲାବଣ୍ୟବତୀ ଶୋଭା ଦେଖି ମୋହ ମୁଗ୍ଧ ହୋଇ ତାର ପ୍ରଶଂସାମାନ ଅଗରେ ବର୍ଣ୍ଣନା କଲେ ।

## ସପ୍ତଦଶ ଛାନ୍ଦ

( ବ୍ରହ୍ମଗୃହ ଲାବଣ୍ୟବତୀର ବାର୍ତ୍ତା ନେଇ ଚନ୍ଦ୍ରଭାନୁ ପାଶେ ପ୍ରବେଶ )

ରାଗ—ଶଙ୍କରାଭରଣ

ବହିତ୍ର ଲାଗିଲା ଯାଇ ସିଂହଳଦ୍ୱୀପରେ । ସାଧବ ଯୁବତୀମାନେ ଅତି ପ୍ରମୋଦରେ । ଗଲେ ବହିତ୍ର ବନ୍ଦାଇ । ଅର୍ଘ୍ୟସ୍ଥାଳୀମାନ କରେ ହୁଳହୁଳି ଦେଇ । ୧ । ରତ୍ନାକର ସାଧୁତ ଭଗିନୀ ମେଘମାଳା । ଦଇବେ ସେଦିନ ଭ୍ରାତୃପୁରେ ଯାଇଥିଲା । ତାକୁ ଜାୟା ସଙ୍ଗେ ଦେଖି । ହୋଇଲା ବୋଇତଅଳ ଅତିଶୟ ସୁଖୀ । ୨ । ପୁରେ ପ୍ରବେଶ ଏକାନ୍ତେ ବଲ୍ଲଭା ସଙ୍ଗତେ । ହାସ-କଉତୁକ ବେଳେ କହୁଛି ସୁରତେ । ଧନ ମୋହ ବାଣୀ ତୋତେ । ମୁଁ ଯାହା ବୋଲିବି ତାହା କରିବୁ ତ୍ୱରିତେ । ୩ । ବିପରୀତ ମାଗିବେ ପରା ଏମନ୍ତ ଯେଣୁ । ଅତିରସିକା ଚତୁରୀ ଦଣ୍ଡେ ହେଲା ତୁନି । କହ ଶୁଣିବା ସେ କଥା । ବୋଇଲା ଲଜ୍ଜିତ ହୋଇ ପୋତିଲା ସେ ମଥା । ୪ । ନାୟକ କହିଲା ତୋ ନଣନ୍ଦ ମେଘମାଳା । ପରିହାସ ତାହା ଠାରେ ତୋର ପ୍ରବର୍ତ୍ତିଲା । ସେ କୁମାରୀ ପ୍ରାଣ ପରି । ତୁ ତାହାକୁ କହିବୁ କହିବ ଯାଇକରି । ୫ । ବିଦ୍ୟାନଗ୍ର ନୃପତିନନ୍ଦନ ଚନ୍ଦ୍ରଭାନୁ । ଲାବଣ୍ୟ-ବତୀର ଶୋଭା ଶୁଣିଲାର ଦିନୁ । ହୋଇଅଛି ଝଟ ବଶ । ନ ପାଇଲେ ଜୀବନରେ ଯଣେ ନାହିଁ ଆଶ । ୬ । ସୁନ୍ଦରପଣକୁ ଆଉ ଗରେ କାହିଁ ନାହିଁ । କୁଳେ ଉଜ୍ଜ୍ୱଳ ସାମର୍ଥେ ଭୋଗ କରେ ମହୀ । ଅବଧୂତ ହେବ ବିଭା । ତକୁ ସେ ରସିକକୁଞ୍ଜରକୁ ମହୀଶୋଭା । ୭ । ସୁମନା ବୋଇଲା

---

### ସପ୍ତଦଶ ଛାନ୍ଦ

୧ । ବହିତ୍ର—ବୋଇତ, ସାଧବ—ସାହୁକାର,
ଯୁବତୀ—ସ୍ତ୍ରୀ, ପ୍ରମୋଦ—ଆନନ୍ଦ ।

୨ । ରତ୍ନାକର—ଜଣକର ନାମ, ସାଧୁତ—ବଣିକ, ଭଗିନୀ—ଭଉଣୀ,
ଭ୍ରାତୃପୁରେ-ଭାଇଘରେ, ଜାୟା—ସ୍ତ୍ରୀ, ବୋଇତଅଳ-ବଣିଜାର,ବଣିକ

୩ । ଏକାନ୍ତ—ଏକୁଟିଆ, ତ୍ୱରିତେ—ଶୀଘ୍ର ।

୪ । ବିପରୀତ—ଓଲଟା ।

୫ । ପରିହାସ—ଥଟ୍ଟା ।

୬ । ଗାରେ—ଲେଶମାତ୍ର, ମହୀ—ପୃଥିବୀ, ରସିକକୁଞ୍ଜର—ରସିକ ଶ୍ରେଷ୍ଠ,
ମହୀଶୋଭା—ପୃଥିବୀର ଭୂଷଣ ଶ୍ରେଷ୍ଠ ସୁନ୍ଦରୀ ଲାବଣ୍ୟବତୀ ।

ଦେଖି ଏ ପ୍ରାଣ ଯାହାର । ଏ କଥାକୁ କାହିଁପାଇଁ ବିସ୍ମୟ ତାହାର । ଏତେ କହି ଗଲ ଉଠି । ମେଘମାଳା ପାଶରେ ପ୍ରବେଶ ବିମ୍ବଓଷ୍ଠୀ ।୮। ବସି ପାଶେ ଘଡ଼ିଏ ମାତିଲ୍ଲ ପରିହାସେ । କ୍ରମଶେ କ୍ରମଶେ କଥା ପକାଇଲ୍ଲ ବିଶେ । କେମା ବିଭା ନୋହିବେ କି । କି ଉପାୟ ତାତ ମାତ କରନ୍ତି ଏଥିକି ।୯। ସେ ରମା ଉତ୍ତରକଥିଲା ବ୍ରହ୍ମଗୃହ ଶୁକ । ଜ୍ୟେଷ୍ଠଭ୍ରାତା ସଙ୍ଗତରେ କର ଅବଲୋକ । ଏବେ ମନରେ ବିଗ୍ଭରେ । ଭ୍ରାତା କହି ପଠିଆଇଅଛ୍ଛ ଏହା କରେ ।୧୦। ମାଳନୀ କହିବାର ଅଛୁ ସତ ହୋଇ । ମୁଁ କିପାଇଁ ଛାଡ଼ିବିଟି ସଖୀର ବଡ଼ାଇ । ପାଶ୍ଚି ଏମନ୍ତ କହିଲ୍ଲ । ସମେ ବର ମିଳିଲେ ବିବାହ ହେବ ବାଲା ।୧୧। ମାନସର ହେଲେ ସିନା ମରାଳ ରସିବ । ମେଘମାଳ ହେଲେ ସିନା ଗୃତକ ତୋଷିବ । ମନେ ମନହିଁ ମିଶିବ । ଚନ୍ଦ୍ର ହେଲେ ସିନା ଚକୋରକୁ ଉଲ୍ଲାସିବ ।୧୨। ଚୂତ ମଞ୍ଜରୀରେ ଯେବେ କୋକିଳ ରସିବ । ତେବେ ସିନା ଅତଅନ୍ତ ସୁନ୍ଦର ଦିଶିବ । ଶୁଣି ଏ କହେ ଏମନ୍ତ । ଏହି ବିଧିରେ ମିଳିଲେ ହେବ କି ସମ୍ମତ ।୧୩। ଦ୍ୱିତୀୟା ବୋଲେ ସମ୍ମତ ନୋହିବ କାହିଁକି । ବିଧାତା ଘଟାଇ ଦେଇ ଯେ ଯୋଗ୍ୟ ଯହିଁକି । ପ୍ରତିବନ୍ଧ ଅଛୁ ଏତେ । ସ୍ୱପ୍ନବଶେ ପ୍ରତ୍ୟକ୍ଷେ ଦେଖିଛୁ ଧନେ ଗ୍ଭଲେ ।୧୪। ଦୀର୍ଘନେତ୍ରୀ ସତ୍ୟ-ଜନୟିତ୍ରୀ ବୋଲି ଧେନ । ଅଙ୍ଗୀକାର କଲ୍ଲ କଥା ନ କରିବି ଆନ । ସତେ ବିଷ ଭକ୍ଷି ହର । ସତ୍ୟେ ଲଙ୍ଘି ନାହିଁଟି କୂଳକୁ ଅକୂପାର ।୧୫। ଅସୁର-ଯୁବତୀ ବୃନ୍ଦାବତୀ ପୂର୍ବେ ଥିଲ୍ଲ । ଶ୍ରୀପତି କେଡ଼େ ସୁନ୍ଦର ବର ନ ରସିଲ୍ଲ । ମାୟାଧର କଲେ ମାୟା । ସତ୍ୟ ଧେନି ଅନଳେ ଦହନ କଲ୍ଲ କାୟା ।୧୬। ତଥାପିହିଁ ଶୁଣିବା ସେ କେମନ୍ତ ସୁନ୍ଦର । ପ୍ରଥମା କହେ

୮। ସୁମନା—ସ୍ତ୍ରୀ

୯। ବିଷେ—ବିଷୟରେ ।

୧୦। ଅବଲୋକନ—ଦେଖିବା ।

୧୨। ମାନସର—ମାନସରୋବର, ମରାଳ—ହଂସ ।

୧୩। ମଞ୍ଜରୀ—କଢ଼ୀ, ବଉଳ, ସମ୍ମତ—ରାଜି ।

୧୪। ପ୍ରତିବନ୍ଧ—ବାଧା ।

୧୫। ଦୀର୍ଘନେତ୍ରୀ—ଲମ୍ବା ଆଖି ଯାହାର ଲବଣ୍ୟବତୀ, ସତ୍ୟ ଜନୟିତ୍ରୀ-ଯେ ସତକଥା କହେ ସତୀ, ଅଙ୍ଗୀକାର—ସ୍ୱୀକାର, ଅକୂପାର-ସମୁଦ୍ର।

୧୬। ଅସୁର ଯୁବତୀ—ଜଳନ୍ଧର ଦୈତ୍ୟର ସ୍ତ୍ରୀ, ଶ୍ରୀପତି—ବିଷ୍ଣୁ, ମାୟାଧର— ବିଷ୍ଣୁ, ଦହନ—ପୋଡ଼ିବା, କାୟା—ଦେହ ।

ଜାଣିଛୁ କାମାବେଶ ତାର । କାଞ୍ଚିପତି ପ୍ରିୟସୁତ । ଚନ୍ଦ୍ରଭଦ୍ର ଜେମାରେ ହୋଇଛି ଅନୁରକ୍ତ । ୧୭ । ଏତେ ବୋଲି ପ୍ରାଣପ୍ରିୟା ପାଶକୁ ଗମନ । ପୁନରପି କହିଲା ସେ ସକଳ ବିଧାନ । ଶୁଣ ଭୃଙ୍ଗଗୃହସ୍ଥ କୀର । ପୋତ-ପାଳ ବସି କରେ ଏମନ୍ତ ବିଚାର । ୧୮ । ତ୍ରିବିଧ ଦୂତ ଶାସ୍ତ୍ରରେ ଲକ୍ଷିତ ହୋଇଛି । ଦ୍ୱିବିଧ ଦୂତରୁ ଅଳ୍ପ କାର୍ଯ୍ୟ ନାହିଁ କରୁ । ପଡ଼େ ଯେଉଁ କାର୍ଯ୍ୟ ଯହିଁ । ସେ କାର୍ଯ୍ୟ ନିର୍ବାହ କଲେ ପ୍ରତ୍ୟୁତ୍ତର ଦେଇ । ୧୯ । ପ୍ରଭୁ ପଚାରିଲେ ଶଙ୍କା ନ ଥାଇ ଯାହାର । ତାହାକୁ ସଂସାରେ କହି ସୁଶ୍ଲିଷ୍ଟାର୍ଥ ଚାର । ଦୂତ ହେଲେ ମିଛ କହି । କାର୍ଯ୍ୟକାଳେ ମିଥ୍ୟା କହିବାର ଦୋଷ ନାହିଁ । ୨୧ । ନର ଅବା କୁଞ୍ଜର ବା ଅଶ୍ୱତ୍ଥାମା ହତ । କାର୍ଯ୍ୟେ କହିଲେଟି ଯୁଧିଷ୍ଠିର ସତ୍ୟବନ୍ତ । ଅମ୍ଭେ କହିବା ଏମନ୍ତ । ତନେ ସ୍ୱପ୍ନେ ଦେଖିଛୁ ବା ତାକୁ ନୃପସୁତ । ୨୧ । ଭୃଙ୍ଗଗୃହସ୍ଥ କହିଲା ଗୃହକ ଯହିଁ ଥାଇ । ସେହିସ୍ଥାନେ ନିତ ନିତ ଘନ ବରଷଇ । ସ୍ୱପ୍ନେ ଦେଖିଅଛୁ କୀର । ପରମ କରମବନ୍ତମାନଙ୍କେ ସେ ସାର । ୨୨ । ବନଦୁର୍ଗା ଉପାସନା ମୋର ସବୁଦିନେ । ସେ କହିଲେ ଅସୁ ଅସୁ ଦେଖିଲି ସ୍ୱପନେ । ଜାଣ ସାକ୍ଷାତ ପ୍ରକାର । ବେନି ତନୁ ରସିବ କରିଛୁ ପରସ୍ପର । ୨୩ । ଏତେ ବୋଲି ଶୁକ ଦେଲେ ମେଘମାଳା କରେ । ଅଦ୍ଭୁତ ପ୍ରାନ୍ତ୍ୟପାଏ କଥନ ସେ ଧୀରଚିରେ । ମୋଧାବନୀ ଘେନି ସଖୀ । ଅବରୋଧରେ ଯାଇଣ ଭେଟିଲା ସୁମୁଖୀ । ୨୪ । ପୁଂସପ୍ରତିରୂପ ଚନ୍ଦ୍ର ଲେଖା ଯେଉଁ ପୁରେ । ତହିଁ ଶୋଇଛି ନବୀନା ପଲ୍ଲବଶେଯରେ । ବାଡ଼ଚନ୍ଦ୍ର ଗୃହିଁ କୀର । ହେଲା କାର୍ଯ୍ୟ ବୋଲିଣ ଚନ୍ଦ୍ରକୁ କଲା ସ୍ଥିର । ୨୫ । ଅନାଇଲା ସେ ଶୋଭା ହୋଇଛି ଅନ ଅନ । କୈଳାସ ପର୍ବତ ପ୍ରାୟ ମେରୁପର ସ୍ତନ । ନେତ୍ରେ ପୂରିଅଛି ଜଳ । ଦୂର କରିଦେଇଅଛି କଜ୍ଜ୍ୱଳ କଜ୍ଜ୍ୱଳ । ୨୬ । ଫାଟିଫୁଟି

---

୧୮ । କୀର—ଶୁଆ, ପୋତପାଳ—ବଣିକ ବା ବୋଇତଅଳ ।

୧୯ । ତ୍ରିବିଧ—ତିନି ପ୍ରକାର ।

୨୦ । ଶଙ୍କା—ଭୟ, ସୁଶ୍ଲିଷ୍ଟାର୍ଥ—ଅତି ଉତ୍ତମ, ଚାର—ଦୂତ ।

୨୧ । କୁଞ୍ଜର—ହାତୀ, ପରମ—ଶ୍ରେଷ୍ଠ, କରମବନ୍ତ—ଭାଗ୍ୟବନ୍ତ, କପାଳିଆ ।

୨୪ । ଅବରୋଧ—ଅନ୍ତଃପୁର, ସୁମୁଖୀ—ସୁନ୍ଦରୀ ।

୨୫ । ପ୍ରତିରୂପ—ଛବି, ବାଡ଼ଚ୍ଛନ୍ଦ—କାନ୍ଥଚନ୍ଦ୍ର ।

୨୬ । ତନୁ—ଦେହ, ନଭ—ଆକାଶ, ଶଶୀ—ଚନ୍ଦ୍ର ।

ପଡ଼ୁଅଛି ମୁକୁତାମାଳିକା । ଚନ୍ଦନ ପଙ୍କ ତନୁରେ ହେଉଛି ଫୋଟିକା । ନଭେ ଦ୍ୱିତୀୟାର ଶଶୀ । ଉଦୟ ହେଲା ପରାୟେ ଶେଯେ ଶୋଭା ଦିଶି ॥ ପାକ ହୋଇ ଶାକ ପ୍ରାୟେ ହୋଇଛି ପୂର୍ଣ୍ଣ । ମୃଣାଳନାଳ ପଡ଼ିଲା ମାତ୍ରେ ଗାତ୍ରେ ଚୂର୍ଣ୍ଣ । ଉଶୀରର ଲେପ ଯହିଁ । ତପତ ଲୌହେ କମ୍ବାଳ ପରାୟେ ଶୁଖଇ ॥ ଚନ୍ଦ୍ର ଶାଣେ ବସିଲେ ନ ତୁଟେ ଶୋଭା ଯଥା । ତଥା କ୍ଷୀଣ ହେଲେ ନ ଭେ ମନମଥ ବ୍ୟଥା । ଶୋଭା ହୋଇନାହିଁ ହତ । ରତି ରତିଙ୍କ ସମାନ ନୋହିବ ଏମନ୍ତ । ୨୯ । ଦନ୍ତ-ଦନ୍ତପିତୁଳା କି ରଜତପିତୁଳା । ତୁଳା-କୋମଳାଙ୍ଗୀ ବହୁଅଛି ଏହୁ ତୁଳା । ଗଣ୍ଡେ ବହେ ଲହଧାର । ପୋଛିବାରୁ କେବଳ ଦିଶୁଛି ତେତେ ତୋର । ୩୦ । ଦେଖିବାରୁ ଲୋକେ ନୋହିବାକୁ ଭ୍ରମତତ୍ତ୍ୱ । ରମା ବହୁଛି କି ଏତେ ହେମାଙ୍ଗୀ ସଙ୍କେତ । ବାସସ୍ଥାନେ ଦଶେ ମୃଗ । ଦିନ ଥାଉଁ ଉଦୟ କି ଶଶଦମୟୂଖ । ୩୧ । ଶୁଭ ଏ ଦଶାକୁ ତବ ଅନାଇଁ ବଶ୍ରୁରେ । ଧାତାର ଦାରୁଣ ହୋଇ ନାହିଁ ତ ସଂସାରେ । ଏତେ ଦୁଃଖ ତ ଏହାର । ଏତେ ଏତେ ବଧି କଲା କେବଣ ବୁଦ୍ଧିର । ୩୨ । ଭୋଗୀଭୋଗକୁ ଯୋଖିଲା ମଳୟଅନିଳ । ଶିବ ଭାଗେ କଲା ସିନ୍ଧୁ ମନ୍ଥନେ ଗରଳ । ଦେଲା ଚନ୍ଦ୍ରକୁ ଅମୃତ । କଳାନିଧି ପରା ଦ୍ରବ୍ୟେ କଳଙ୍କ ଅଙ୍କିତ । ୩୩ । ତୀର୍ଥରାଜ ଜଳ କଲା ଲବଣ ସହିତ । ଧର୍ମେ ନୀଚ ପରାଭବ ବିଧିଲା ଯେମନ୍ତ । ତଥା କୋମଳ ପିଣ୍ଡକୁ । ବିଧିଲା ଉଦ୍ଦଣ୍ଡ ଫୁଲ-କୋଦଣ୍ଡ ଦଣ୍ଡକୁ । ୩୪ । ଧୈର୍ଯ୍ୟ ରଖି ନ ପାରି ସେ ପୁଚ୍ଛିଲା ଏସନ । ଥୋକାଏ ଧନ ହୋଇଲୁ ବୋଲି ଯାଗୁଁ ଭିନ୍ନ । କ୍ଲେଶ ସ୍ୱଭାବ ହୃଦୟେ । ନ ବହିବ କଥା ଏହୁ କହ ତ ନିଶ୍ଚୟେ । ୩୫ । ଏ ବଚନେ

---

୨୮ । ଶାକ-ଶାଗ, ପାକ-ସିଝା, ମୃଣାଳନାଳ-ପଦ୍ମନାଡ଼, ଗାତ୍ର ଦେହ, ଉଶୀର-ବେଣାଚେର, ତପତ-ତତଲା, ଲୌହ—ଲୁହା, କମ୍ବାଳ—କାଦୁଅ ।

୨୯ । ମନମଥ—କନ୍ଦର୍ପ ।

୩୦ । ଦନ୍ତଦନ୍ତ—ହାତୀଦାନ୍ତ, ପିତୁଳା—ପ୍ରତିମା, ରଜତ—ରୁପା, ତୁଳାକୋମଳାଙ୍ଗୀ—ତୁଳାଭଳି ନରମଦେହୀ, ତୁଳା—ଉପମା ।

୩୧ । ହେମାଙ୍ଗୀ—ସୁନାଦେହୀ, ଶଶଦମୟୂଖ—ଚନ୍ଦ୍ର ।

୩୩ । ଭୋଗୀ-ଭୋଗଲାଳସା, ଅନିଳ-ପବନ, ଗରଳ-ବିଷ, କଳାନିଧି-ଚନ୍ଦ୍ର ।

୩୪ । ତୀର୍ଥରାଜ—ସମୁଦ୍ର, ଧର୍ମେ—ଧର୍ମକଲରେ, ନୀଚ—ହୀନ, ପରାଭବ—ଅପମାନ, ଉଦ୍ଦଣ୍ଡ—ଦୁଷ୍ଟ, ଫୁଲକୋଦଣ୍ଡ—କନ୍ଦର୍ପଧନୁ ।

ଚଞ୍ଚଳଲୋଚନେ ବାଳା ଗୃହିଁ । ଶଙ୍କିଲା ଅପଣାର ପୋଷିଲା ଶୁକ ତହିଁ । ବାଗୁରିଲା ଶୁଭ ହେଲା । ଶିବଅଙ୍କ ଘଟିଲା ଚତୁର କହୁଥିଲା । ୩୬ । ତାଙ୍କ ନଗରକୁ ସଖୀ ନେଇଥିଲା ମାଗି । ଜାଣିଲି ସେ କୁମର ମୋହରେ ଅନୁ-ରାଗୀ । କପାଁ ନୋହିଲେ ଅଇଲା । କହ ବୋଲି ନେତ୍ରାନ୍ତରେ ସଖୀଙ୍କ ଠାରିଲା । ୩୭। କହୁଛି ହେମ ମଞ୍ଜରୀ ଫଳାଶନ ଗୃହିଁ । ଯେଉଁଦିନ ସ୍ୱପନେ ଏ ହେଲା ଭୂତସ୍ନେହୀ । ପ୍ରେତ ଅତନୁ ବାଗୁର । ପ୍ରେତପତିପାଶେ ନେବ ଜୀବନ ଏହାର । ୩୮ । ଶୀତଭାନୁ ଏହି ନାମ ଆଦ୍ୟ ଦ୍ୱିଅକ୍ଷର । ଘୁଣ୍ଡି ସନ୍ତାପିତ କରୁଅଛୁ ନିରନ୍ତର । ତେଜ ଅନଳ ପ୍ରକାର । ବହିବାରୁ ଦାହ ହେଉଅଛୁ କଳେବର । ୩୯ । ପିକ କଳ ପ୍ରଥମରେ ଅକାର ବହୁଛୁ । ଯାମହିଁ ଅକାର ବିନା ବାଳାରେ ହୋଇଛୁ । ଜଣା ନ ଯାଉ ଏ ଦଶା । ଏଣୁ ଦୀନ ବିପରୀତ ହୋଇଲା ସୁଦୃଶା ।୪୦। ଶୁକ ଏ ଉତ୍ତର ଭଲା ଭିତ୍ତିରେ ଯେ ଲେଖା । ଏ ପ୍ରତ୍ୟକ୍ଷ ବିନ୍ଦୁ ତ ଆନକୁ ନାହିଁ ଦେଖା । ଏହି ଦେଖିଛୁ ବାଳାକୁ । ଶବସ୍ୱପ୍ନେ ଚିନ୍ତା କରେ ନିରତେ ଲୀଳାକୁ । ୪୧ । ଏହା ବିରହକୁ ତା ବିରହ ଅଛୁ ବଳି । ଅନୁରାଗୀ ମଧ୍ୟେ ଏ ଦୁହିଁଙ୍କ ସାର କଲି । ଧାତା ସୁନ୍ଦର ସଂସାରେ । ଜନ୍ମ ରାଜା କରଅଛୁ ସ୍ତ୍ରୀସ ପୁରୁଷରେ । ୪୨ । ତା ହୃଦବନରେ ଜଳୁଅଛୁ କାମାନଳ । ଘନ ହୋଇ ଘନରସବଶରୁ ଶୀତଳ । କରୁ ତରକ୍ଷରଦନା । ତପତ ଲୋହ ଜମ୍ବାଳ ଏହାର ବେଦନା । ୪୩ । ନ ହରିବ କାଳ ଚନ୍ଦ୍ରଭାନୁ ସେ ବୋଲାଇ । ଉଦୟ ଲଭିଛୁ ସିନା ଏହି ତାପ ପାଇଁ । ଶୁଣି ଏ କଥା ତାହାର । ବୋଇଲେ ଲଳନାକୁ ପାଳନ ପୁନଃ କର । ୪୪ । ଦେଇ ଲେଖ ଅତ୍ୟନ୍ତ କାତର କାମ୍ପେଁ ରଖ । ଶୁକର ଏ

---

୩୬ । ଅନୁରାଗୀ—ସ୍ନେହୀ ।

୩୮ । ଅତନୁ—କନ୍ଦର୍ପ, ପ୍ରେତପତି—ଯମ ।

୩୯ । ଶୀତଭାନୁ—ଚନ୍ଦ୍ରସୂର୍ଯ୍ୟ, ନିରନ୍ତର—ସର୍ବଦା, କଳେବର—ଦେହ ।

୪୦ । ପିକ—କୋଇଲି, କଳ—ରବ, ଯାମ—ଦଣ୍ଡ ବା କ୍ଷଣ ।
ଏଠାରେ ଯାମ ଯମ ତୁଲ୍ୟ, ଦୀନ—ଦୁଃଖୀ ।

୪୧ । ଭିତ୍ତି—କାନ୍ଥ, ନିରତେ—ସର୍ବଦା ।

୪୨ । ଘନ—ମେଘ, ଘନରସ—ଜଳ, ତରକ୍ଷରଦନା—ତାଳମୂ ମଞ୍ଜୀରର ଦନ୍ତଯୁକ୍ତା ସ୍ତ୍ରୀ ।

ବାଣୀ ଶୁଣି ସର୍ବେ ଲଭ ସୁଖ । ସେ ବୋଇଲେ ଅମ୍ଭେ ନାସ୍ତି । ପ୍ରଥମରେ ଲେଖବୁଟି ପଢ଼ିବା କୁ କର । ୪୫ । ରବିକର ପରଶେ ପଦ୍ମକୁ କରେ ଦୋଷ । ପଲ୍ଲବେ ଲତା ଉପସ୍ଥିତରେ ମଧୁମାସ । ଚୂତ ମୁକୁଳ ଅଶନ । ହୋଇଲେ ସିନା କହଇ କୋକିଳ ବଚନ । ୪୬ । ଘନ ଗରଜିଲେ ସିନା ମୟୂର ଅନାଇଁ । ଅନନ୍ଦରେ ନୃତ୍ୟ କର ବାଣୀ ପ୍ରକାଶଇ । ଗୀର ବୋଇଲା ଏ ସତ । ତେବେ ପ୍ରେମପତ୍ର ଯାଇ ଅଣୁ ଅମ୍ଭ ଦୂତ । ୪୭ । ମେଘମାଳା ପଠିଅଇ ବୋଧି ବ୍ରହ୍ମଗୃହୀ । ଯେତେ କହିଲେ ତା ଅଗେ କହିବା ବିସ୍ତାରି । ଗଲା ସେ କୁମାର ପାଶ । ନାରୀମାନସ ଉଲ୍ଲାସ ଛନ୍ଦ ହେଲା ଶେଷ । ୪୮ । ମହିଷ ବିଜୟୀ ଅତି ସୁରଭି ସ୍ୱରୂପ । ସଦାଶିବ ସୁଖଦାନ କରଣେ ଲୋଲୁପ । ଗ୍ରାମ ଦୁର୍ଗା ଇଷ୍ଟଦେବୀ । ଉପଇନ୍ଦ୍ର ଗୀରବର ଦୁଃଖନାଶେ ଭାବି । ୪୯ ।

---

## ଅଷ୍ଟାଦଶ ଛାନ୍ଦ

( ବ୍ରହ୍ମଗୃହୀ ଚନ୍ଦ୍ରଭାନୁର ପତ୍ର ଘେନି ଲାବଣ୍ୟବତୀ ପାଶେ ପ୍ରବେଶ )

ରାଗ—ମାଳବ

ଶୁଣ ବିଶୁଦ୍ଧ ବୁଦ୍ଧ ଏଥୁ ଅନ୍ତେ । ଚିତ୍ରରୁ ଚିତ୍ର ଚରିତ୍ର ସୁଚିତ୍ତେ । ୧ ।

---

୪୬ । ରବିକର—ସୂର୍ଯ୍ୟକିରଣ, ମଧୁମାସ—ବସନ୍ତଋତୁ, ଅଶନ—ଭକ୍ଷ ।

୪୭ । ନୃତ୍ୟ—ନାଚ ।

୪୯ । ମହିଷ ବିଜୟୀ—ରାକ୍ଷସ ଜୟକାରୀ,ମହିଷାସୁର ନାଶକାରି, ସୁରଭି—ସୁନ୍ଦର, ଦେବତାଙ୍କଗାଈ, ଲୋଲୁପ—ଲୋଭି ।

ବଣିକ ଶୁଅକୁ ନେଇଯାଇ ଥିଲା । ଶୁଅ ସେଠାରେ ଚନ୍ଦ୍ରଭାନୁକୁ ଦେଖି ଏ ସବୁ ବୃତ୍ତାନ୍ତ ଜାଣି ଫେରିକହି ଲାବଣ୍ୟବତୀକି କହନ୍ତେ ଲାବଣ୍ୟବତୀ ଉତ୍କଣ୍ଠରେ ପତ୍ର ଦେବାକୁ କହିବାରୁ ସଖିମାନେ କହିଲେ ସ୍ତ୍ରୀର ଅଗକର ପତ୍ରଦେବା ଉଚିତ ନୁହେ । ଲାବଣ୍ୟବତୀ ବ୍ରହ୍ମଗୃହୀଙ୍କ ପଠାଇ ଚନ୍ଦ୍ରଭାନୁଙ୍କଠାରୁ ପତ୍ର ଅଣିବାର ସମସ୍ତ ବନ୍ଦୋବସ୍ତ କଲେ ।

---

## ଅଷ୍ଟାଦଶ ଛାନ୍ଦ

୧ । ବିଶୁଦ୍ଧ—ପବିତ୍ର, ଶ୍ରେଷ୍ଠ, ବୁଧ—ଜ୍ଞାନୀ, ପଣ୍ଡିତ, ଚିତ୍ର—ଅଶ୍ଚର୍ଯ୍ୟ, ଚରିତ୍ର—ବିଷୟ, ଅଚରଣ ।

କୁମର ସୁହୃଦ ମିଶ୍ର ସଙ୍ଗେ ବସି । ବୀଣାଜୀଣା ବାଣୀ ପ୍ରସଙ୍ଗେ ଭାଷି । ୨ ।
ପ୍ରେମବୀଜ ତାର ରୋପିତ ହୃଦେ । ରୋମାଞ୍ଚିତ ବ୍ୟାଜେ ଅଙ୍କୁରଜଦେ ।୩।
ତାହାକୁ ବୃଦ୍ଧି କରିବାର ପାଇଁ । ସ୍ୱେଦ ସଲିଳ ପ୍ରକାଶିତ ହୋଇ । ୪ ।
ବୋଲଇ ଅଦ୍ଭୁତସ୍ଥଳୀ ସୁନ୍ଦରୀ । ଫୁଲରୁ ଫଳ ଯେଣୁ ଜାତ କରି । ୫ ।
ଏ ଘେନା କରଇ ବିବେକ ବଣା । ଫୁଲରୁ ଫଳ ଜାତ ଥିଲା ଶୁଣା । ୬ ।
ଶଙ୍ଖ ଉପରେ ପଦ୍ମ ବିକଶିତ । ଏହୁ ନୁହଇ କି ଅତି ଅଦ୍ଭୁତ । ୭ ।
ପଦ୍ମ ମଧ୍ୟରୁ ଶଙ୍ଖ ଜାତ ଶୁଣି । ବିଷ୍ଣୁ ବହୁଛନ୍ତି ବିସ୍ମୟ ପୁଣି । ୮ ।
ନ ପୃଛି ଚିତ୍ତରୁ ହୋଏ ବିସୋର । ଭାବ ନିଧି ନାମ ଦେଲେ କୁବେର ।୯।
ସଂସାରେ ପ୍ରତିଷ୍ଠ ହେବାକୁ ଧାତା । ସଂଖ୍ୟା ଗଣନାରେ ରଖିଲା କି ତା ।୧୦।
ପୁଣି ନୟନ ଯୁଗେ ଦେଖିଅଛୁ । କେମନ୍ତ ପ୍ରକାରେ ପାରିବି ମୂର୍ଚ୍ଛି । ୧୧ ।
ଏମନ୍ତ ପ୍ରକାଶ କଥନ ବେଳେ । ବ୍ରହ୍ମଚାରୀ ଅସି ସମ୍ମୁରେ ମିଳେ । ୧୨ ।
ନମସ୍କାର କରି ଦେଇ ଅସନ । ସାଧୁତ ଶୁକ ନ ଦେଖି ଉଛନ୍ନ । ୧୩ ।
ଭାବେ ମୋର ଯେତେ ସୁକୃତ ଥିଲା । ସ୍ୱପ୍ନେ ଦର୍ଶନ ଦାନ ଭୋଗ ହେଲା ।୧୪।
ଏବେ ତ ସୁକୃତ ହୋଇଛୁ ଉଣା । କାହିଁକି କରିବ ବାଳା କରୁଣା । ୧୫ ।
ଦୁର୍ଲ୍ଲଭ ପଦାର୍ଥେ ଦେବାକୁ ମନ । ଆଜ ହୋଇଲା ମୋ ମରଣ ଦିନ । ୧୬ ।
ସେ ବାଣୀ ସଙ୍ଗେ ଜୀବନ ଯିବଟି । ରହୁ ବ୍ୟାକୁଳ ମୋତେ ନ ଦେବୁଟି ।୧୭।
ଦ୍ୱିଜ ସ୍ଥିତ ଦେଖି ବିଚାର କଲା । ନ ଭଜିଲା ଶଙ୍କା ଏହାର ହେଲା । ୧୮ ।

---

୩ । ପ୍ରେମବୀଜ—ପ୍ରେମମଞ୍ଜି, ରୋମାଞ୍ଚିତ—ରୋମଟାଙ୍କୁରିବା, ବ୍ୟାଜେ—ଛଳନାରେ, ଅଙ୍କୁର—ଗଜା ।
୪ । ସ୍ୱେଦ ସଲିଳ—ଝାଳ ।
୫ । ଅଦ୍ଭୁତସ୍ଥଳୀ—ଆଶ୍ଚର୍ଯ୍ୟ ସ୍ଥାନ ।
୬ । ବିବେକ—ବୁଦ୍ଧି ବିଚାର, ବଣା—ଭୁଲ ।
ଫୁଲ ଦେହରୁ ଫଳ ହୁଏ ମାତ୍ର ଲାବଣ୍ୟବତୀର ଫଳ ସ୍ୱରୂପ ଜାତ ହେବାରୁ ସେ ପୁଷ୍ପବତୀ ହେଲା—
୭,୮ । ବିକଶିତ—ପ୍ରକାଶିତ, ବିସ୍ମୟ—ଆଶ୍ଚର୍ଯ୍ୟ ।
୯ । ବିସୋର—ଭୁଲିବା, ନିଧି—ସମୁଦ୍ର, ଏଠାରେ ଲାବଣ୍ୟନିଧି । ...
୧୧ । ନୟନଯୁଗ—ଚକ୍ଷୁଦୁଇ, ମୂର୍ଚ୍ଛି—ଛାଡ଼ି ।
୧୩ । ଅସନ—ବସିବାଜାଗା ।
୧୪-୧୫ । ସୁକୃତ—ପୁଣ୍ୟ, କରୁଣା—ଦୟା ।
୧୭ । ଦ୍ୱିଜ—ବ୍ରହ୍ମଚାରୀ, ସ୍ଥିତ—ଢଙ୍ଗ, ଶଙ୍କା—ଭୟ ।

ଅଶଙ୍କା କାହିଁକି ନ ଥିବ ପୁଣି । ସ୍ୱର୍ଗକୁ ପକାଇଅଛୁ ନିଃଶ୍ରେଣୀ । ୧୯ ।
ପୁଣି ଚନ୍ଦ୍ରକୁ ବଢ଼ାଇଛୁ ପାଣି । ତମ ରଜନୀରେ ଦେଖିବ ପୁଣି । ୨୦ ।
କହିଲ ଏମନ୍ତ ବଚନ ଭଲ । କରୁଣା-ବୃକ୍ଷ କି ନିରାଶ ଫଳ । ୨୧ ।
ମାନସ ଦେଇ ସେବିଲେ ମହେଶ । ପ୍ରାଣୀର ବ୍ୟାଧି କି ନୁହଇ ନାଶ ।୨୨।
ଯାଚକ ଜନ ଦାନ ମାଗି କର୍ଣ୍ଣେ । ଶୂନ୍ୟେ ଅସିଛୁ କି ଶୁଣିଛ କର୍ଣ୍ଣେ । ୨୩ ।
ମେଘ କି କରେ ଅଳପ ବରଷା । ନିଷ୍ଫଳ କାହିଁ ହୋଇଛୁ ତପସ୍ୟା । ୨୪ ।
ଏ ବାଣୀ ରାଜାଙ୍କୁ ଧର ରଖିଲ । ଯମ ପାଶେ ପ୍ରାଣ ପଳାଇ ଥିଲ । ୨୫ ।
ଦୁଷ୍ଟ ସଂଶୟକୁ ପକାଇ ହାଣି । ଯାବତ ବାଧକ ପକାଇ ପୁଣି । ୨୬ ।
କନ୍ୟା ସ୍ୱପ୍ନରେ ଯେମନ୍ତ ଦେଖିଲା । ବାଡ଼ରେ ଦେବା ଶଙ୍ଖରେ ଲେଖିଲା ।୨୭।
ଦଣ୍ଡ ଦଣ୍ଡକରେ ଫୁଲକୋଦଣ୍ଡ । ସେ ଦନୁ ଯେଉଁ ରୂପେ ଦେଲା ଦଣ୍ଡ ।୨୮।
କାହିଁକି ବୋଇଲା ପୁରୁଷ ସାର । ବାଳାଠାରେ ନାହିଁ ବିନୟ ତାର । ୨୯ ।
ଏମନ୍ତରେ ଯେଉଁ ବାଳା ସୌନ୍ଦର୍ଯ୍ୟ । ଗୃହିଁ ରହିବ ନାହିଁ ପଶୁ ଧୈର୍ଯ୍ୟ ।୩୦।
ପାଷାଣ ନେବ ତରଳ ପଦବୀ । ଏଥି ଉତ୍ତରେ ଅଭ କି କହିବ । ୩୧ ।
ଧାତା ଦାରୁଣ ହେବା ନୁହେ ବଡ଼ । ନ ଜାଣେ ରସଜନ୍ତୁ ବେଦଜଡ଼ ।୩୨।
ଏଥି ଉତ୍ତରୁ ଅମ୍ବର ପ୍ରବେଶ । ସଖି ସଙ୍ଗେ ଦୂଜ ପେଷିଲେ ପାଶ । ୩୩ ।
ତୁମ୍ଭର ଭାଗ୍ୟ ଅଛୁ ବଳଅର । ଶୁଣିଲ ଝଷି ହେଲା ସୀତ୍କାର । ୩୪ ।
ଚତୁର୍ବିଗୁଣେ ନ ଦେଲ ଶଟ୍ଟଜ । ବହୁତ କହି କି ହୋଇବ ଅଜ । ୩୫ ।
ଯିବାକୁ ଜୀବ କଣ୍ଠେ ଅଛୁ ରହି । ଲେଜ୍ଞାଅ ତାକୁ ପଟିକା ଦେଇ । ୩୬।
ଏ ବାଣୀ ଶ୍ରବଣେ ମିତ୍ରକୁ ଗୃହିଁ । କୁମାର କହିଲ ଗଦ୍‌ଗଦ ହୋଇ ।୩୭।
ସୁଭଛୁ ଯେବେ ତା ସୁନ୍ଦରପଣ । ତେବେ କି ଅଛୁ ଅନୁରାଗ ପୁଣ । ୩୮ ।
ତାକୁ ଲେଖିବାକୁ ବିନୟ ଭାବେ । ବଚନେ ଅଭ କି ଜଗତେ ଥିବେ ।୩୯।
ଭଅଉଁ ଭଅଉଁ ବିନୟ ଭାଷା । ଶେଷ ହୋଇଯିବ ଜୀବନ ଅଶା । ୪୦ ।
ଗଲେ ଏ କଥାକୁ ନାହିଁ ଶୋଚନା । ଦୁଃଖ ପାଇବ ମଞ୍ଜୁଳ ଲୋଚନା ॥

---

୧୯ । ନିଃଶ୍ରେଣୀ—ନିଶୁଣି, ସିଡ଼ି ।
୨୦-୨୧ । ପାଣି—ହାତ, ତମ ରଜନୀ—ଅନ୍ଧାରରାତ, ବିମନା—ବିଫଳ ।
୨୨ । ମାନସ—ମନ, ବ୍ୟାଧି—ରୋଗ ।
୨୩ । ଯାଚକ—ମାଗିବାଲୋକ, କର୍ଣ୍ଣେ—କର୍ଣ୍ଣରାଜାକୁ ।
୨୫ । ଦୁଷ୍ଟସଂଶୟ—ମନ୍ଦବିଚାର ।
୩୧ । ପାଷାଣ—ପଥର, ତରଳପଦବୀ—ତରଳିଯିବା ।
୩୨ । ଦାରୁଣ—ନିଷ୍ଠୁର, ଜନ୍ତୁ—ଅରସିକ ।
୪୧ । ମଞ୍ଜୁଳଲୋଚନା—ସୁନ୍ଦର ଚକ୍ଷୁଯୁକ୍ତା ।

ଯଥାକଥା କର ତାକୁ ଜଣାଣ । ଲେଖିବା ତୁଳକା କାଗଜ ଅଣ । ୪୨ ।
ଅଣି ଲେଖିଲେ ବରୁର ବରୁର । ପତ୍ରିକା ଘେନ ଗଲେ ବ୍ରହ୍ମଗୁରୁ । ୪୩ ।
କହିବାକୁ ଯେତେ କହିବା ବାଣୀ । ଶେଷ ହିଁ ଶେଷ ନ କରିବେ ପୁଣି ।୪୪
ଦୂତ ସିଂହଳ ଦ୍ୱୀପରେ ପ୍ରବେଶ । ସୁମୁଖୀ ଦେଖି ହେଲା ଅତି ତୋଷ ।୪୫।
ଅବରୋଧକୁ ସଙ୍ଗେ ଘେନିଗଲା । ପୁର ପ୍ରାଙ୍ଗଣେ ନେଇ ବସାଇଲା । ୪୬ ।
କୁମାରୀ ବସିଛୁ ସଖୀଙ୍କ ସଙ୍ଗ । ଶୁକ କହୁଛୁ କୁମାର ପ୍ରସଙ୍ଗ । ୪୭ ।
ଏକାଳେ ମିଳ କହେ ଏ ଭୂପକୁ । ଯେଉଁ ଗୋସାଇଁ ତୋ ପ୍ରାଣ ପାଶକୁ ।୪୮।
ଯାଇଥିଲେ ଅଣିଛନ୍ତି ପ୍ରମୋଦେ । ମୋହନ ମନ୍ତ୍ର ପତ୍ର ମୁଦେ । ୪୯ ।
ଇଚ୍ଛନ୍ତେ ବାଳା ପଚାରିଲା କାହିଁ । ବୋଇଲା ଅଛିଛୁ ଦ୍ୱାରେ ବସାଇ ।୫୦।
କି କୃତ୍ୟ କଲୁ ମନ୍ତ୍ରୀସୁତା ବୋଲେ । ଦେଖିଥିବ ତାକୁ ଦୁଆର ପାଳେ ।୫୧।
ସେ ବୋଲେ ସେ ଜାଣେ ଚନ୍ଦ୍ରବଦନ । ସ୍ତ୍ରିୟୀ ବୋଲି ଚିହ୍ନି ଛାଡ଼ନ୍ତି ଜନ ।୫୨।
ଏଥିରେ ହରଷ ଅଧିକ ହେଲା । ଦ୍ୱାରାନ୍ତର ହୋଇ କେମା ରହିଲା । ୫୩ ।
ଦ୍ୱିଜକୁ କହିଦେଲା ମେଘମାଳା । ନମସ୍କାର କରୁଅଛନ୍ତି ବାଳା । ୫୪ ।
ମନୋରଥ ଅସ୍ତୁ ହେଉ ଏ ବାଣୀ । କଲ୍ୟାଣ କଲା ଯୋଡ଼ି ବେନି ପାଣି ।୫୫
କଣ୍ଠାରୁ ଚିଠାଟି ବାହାର କଲା । ଏଠାରୁ ଏ ଛାନ୍ଦ ଶେଷ ହୋଇଲା । ୫୬ ।
ରାମଜାତ ରାମ ରାମବନୋଦୀ । ଉପଇନ୍ଦ୍ର ବୀର ସନ୍ତାପ ଛେଦ । ୫୭ ।

---

୪୪ । ଶେଷ—ଶେଷଦେବ, ଅନନ୍ତ, ଏହାଙ୍କର ସହସ୍ର ମୁଖ, ଏ ସହସ୍ରେ ମୁଖରେ ଶେଷକରି ପାରିବେ ନାହିଁ ।

୪୯ । ପ୍ରମୋଦେ-ଆନନ୍ଦରେ, ପତ୍ରମୁଦେ-ବନ୍ଦଚିଠିରେ ।

୫୧ । ଦୁଆରପାଳେ—ଦ୍ୱାରୀମାନେ ।

୫୭ । ରାମଜାତ-ପର୍ଣ୍ଣ ରାମ ଜମ୍ବୁକାରୀ, ରମ୍ୟ—ସୁନ୍ଦର, ବନୋଦୀ-କୌତୁକୀ ।

ବ୍ରହ୍ମଗୁରୁ ଲାବଣ୍ୟବତୀ ପାଶରୁ ଯାଇ ଚନ୍ଦ୍ରଭାନୁକୁ ଦେଖିଲା ସେ ଲାବଣ୍ୟବତୀ ସକାଶେ ଉତ୍କଣ୍ଠିତ ଅଛି । ତହୁଁ ତାହାକୁ ଲାବଣ୍ୟବତୀ ପଠାଇଛି କହି ପତ୍ର ମାଗନ୍ତେ ଚନ୍ଦ୍ରଭାନୁ ଲାବଣ୍ୟବତୀ ପାଖକୁ ପତ୍ର ଯାହା କ ବ୍ରହ୍ମଗୁରୁ ସଙ୍ଗରେ ନେଇ ଲାବଣ୍ୟବତୀଙ୍କ ଦେଲା ॥

## ଊନବିଂଶ ଛାନ୍ଦ

( ଲାବଣ୍ୟବତୀର ପତ୍ର ପ୍ରାପ୍ତି ଏବଂ ପଢ଼ିବା )

ରାଗ—କଳହଂସ କେଦାର

ଗୃହି ମହୀଦେବ ହସ୍ତରେ ପଜିକା ବହୁ ପୁଲକିତ ଗାତ୍ରକୁ । କର ଜଳଜ୍ଝଳ ବେନି ନେତ୍ରକୁ । ଚଞ୍ଚଳେକ୍ଷଣୀ ଅଞ୍ଚଳେ କରି କର ପାଏଟା କଲା ପତ୍ରକୁ ସେ । ସୁନ୍ଦରୀ । ଘେନି ଶିରେ ଲଗାଇଲା ସତ୍ବରେ । ଶଶୀ ଭବଗତ ଚନ୍ଦ୍ର ଶତ୍ରୁରେ । ମୁଦରେ କୁମୁଦ ହାସକୁ ପ୍ରକାଶି ମୁଦ ଭାଙ୍ଗିଲା କି ତରେ ସେ । ସୁନ୍ଦରୀ । ୧ ।

ଯୋଖିଲା ଏମନ୍ତ ଦେଖିଲା ଅଲକ୍ତେ ଲେଖିଲା ଅକ୍ଷର ପନ୍ତିକ । କେଉଁ ପୃଷ୍ଠେ ରଙ୍ଗ ଭଲା ମୋଡକ । ବଢ଼ିଲା ଆନନ୍ଦସାଗର ପଢ଼ିଲା ରସଗର୍ଭ ଭାରତୀକି ସେ । ସୁନ୍ଦରୀ । ପଦ ପଦକେ ପଦବୀ ପ୍ରଦାନ । ମୋହ ହେଲେ ଶ୍ରୁତିମନ ନୟନ । ମାରଦର ଦୂର ହେବାକୁ ପ୍ରଥମେ ଉରଜଶମ୍ଭୁ ବନ୍ଦନ ରେ । ସୁନ୍ଦରୀ । ୨ ।

ଅତି ସଜ୍ଜନର୍ଯବତୀ ମୁନି ଧୈର୍ଯ୍ୟ ଭଗ୍ନାକାରୀ ଶମ୍ପା ଗଉରୀ । ମହୀ-ମହିଳାର ଚମ୍ପାଚଉରୀ । ଯାହା ସୁଷମା ସମାନ ନୋହି ହରଅଙ୍ଗେ ଲଭିଲା ଗଉରୀ ରେ । ସୁନ୍ଦରୀ । ଯେଣୁ ପରମାନନ୍ଦ ସମୁଦାୟ । ଦୀପ୍ତି ମଣ୍ଡିତ ସ୍ନେହ ସୁଧାମୟ । ଶୋଭାସିନ୍ଧୁ ଜାତ ରମା କି ଚନ୍ଦ୍ରମା ଛୁଇଁ ନାହିଁ ଏ ସଂଶୟ ରେ । ସୁନ୍ଦରୀ । ୩ ।

---

## ଊନବିଂଶ ଛାନ୍ଦ

୧ । ମହୀଦେବ—ବ୍ରାହ୍ମଣ, ପଜିକା—ଚିଠି, ପୁଲକିତ—ଆନନ୍ଦିତ, ଗାତ୍ର—ଦେହ, ଚଞ୍ଚଳେକ୍ଷଣୀ—ଶୀଘ୍ରଦୃଷ୍ଟିନୀ, ଶିରେ—ମୁଣ୍ଡରେ, ଶଶୀ—ଚନ୍ଦ୍ର, ଭବଗତ—ଅମୃତ, ମୁଦରେ—ଆନନ୍ଦରେ, ମୁଦ—ବନ୍ଦ ।

୨ । ଅଲକ୍ତେ—ଅଳତାରେ—[ଲାଲସିଆହି] । ଅକ୍ଷର ପନ୍ତି—ଅକ୍ଷରସବୁ, ରସଗର୍ଭ—ରସପୂର୍ଣ୍ଣ, ଭାରତୀ—କଥା, ପଦବୀ—ପୁରସ୍କାର, ସ୍ବର୍ଣ୍ଣପଦାଦି, ଶ୍ରୁତି—କାନ, ମାରଦର—କନ୍ଦର୍ପ ବାଧା, ଉରଜଶମ୍ଭୁ—ସ୍ତନ ।

୩ । ଧୈର୍ଯ୍ୟଭଗ୍ନାକାରୀ—ବିବେକ ଅସ୍ଥିରକାରୀ, ଶମ୍ପାଗଉରୀ—ବିଜୁଳି ପରି ଉଜ୍ଜ୍ୱଳଦେହା, ମହୀ - ପୃଥିବୀ, ମହିଳା—ସୁନ୍ଦରୀ ସ୍ତ୍ରୀ, ପରମାନନ୍ଦ—ଶ୍ରେଷ୍ଠସୁଖ, ରମା—ଲକ୍ଷ୍ମୀ ।

ଶୋଭା ପ୍ରଶଂସାରେ ଙ୍ଗସାରେ ଜଣେ ତୁ ନାହିଁ ତୋ ରୂପ ସମସର । ଉପମା ଏ ରହିଲେ ଅପସର । ବରବର୍ଣ୍ଣନା ବର୍ଣ୍ଣନା ମୁଁ ନ କଲି ଏହି କଥାକୁ ବିଗୃହ ରେ । ସୁନ୍ଦର । କବିଗଣେଶ ଗଣେଶ ହୋଇବ । ଶେଷ-ବଦନକୁ ପୁଣି ରହିବ । ବିଧାତା ଅଯୂଷ ପାଇଲେ ତୋ ଶୋଭା-ଲେଶ ଶେଷ ବା କହିବ ରେ । ସୁନ୍ଦର । ୪ ।

ସୁରନଗରନାଗରୀ ଶିରଭୂଷା ଯୋଷାରତନ ରସାଳସି । କେତେ ବାର ଗଙ୍ଗାରେ ଥିଲି ଙ୍ଗାସି । ଶିର ଦେଇଣ ଶିଶିରକରଶିର ମନାଇବା ପୁଣ୍ୟ ଦଶି ରେ । ସୁନ୍ଦର । ହେଲି ଜଣାଣ ଦେବା ଯୋଗ୍ୟ ମୁହିଁ । ଏ ପୁଣ୍ୟରୁ କି ଏଡ଼େ ଭାଗ୍ୟ ହୋଇ । ପ୍ରଭୁ ସେବକଙ୍କୁ ବଡ଼ କଟେ ତୋର ଅନୁଗ୍ରହ ଫଳ ଏହି ରେ । ସୁନ୍ଦର ।୫।

ରଙ୍ଗରାଜୀବଚରଣରେ ଶରଣ ପଶିଲି ଏ ଯେଣୁ ଭରସା । ଗଜ ନୋହିଲେ ତୋ ଗତିସଦୃଶା । ଶରଣେ କାରଣ କଲୁ ଅଙ୍ଗୀକାର ବାରଣ ଗତ ପ୍ରଶଂସା ରେ । ସୁନ୍ଦର । ଆଶା କେବେହେଁ ନୋହିବ ଛେଦିତ । ଶ୍ରବଣରେ ହୋଇଲଣି ମୋହିତ । ରସଜ୍ଞଦୟା ସୁହୃଦୟା ଦୟାଳୁ ନାମ ଜଗତେ ବିଦିତ ରେ । ସୁନ୍ଦର ।୬।

ମନମୀନ ହୃଦସରୋବରରେ ଥିଲା କଟାକ୍ଷ ବନଶୀ ପକାଇ । ତାର ବଦନେ ପ୍ରେମସ୍ୱାଦୁ ଦେଇ । ଅଙ୍କଷି ନେଇ ଉରଜ କଳସିରେ ମଦାଳସୀ ଅଛୁ ଥୋଇ ରେ । ସୁନ୍ଦର । ତୋର ମୁଖ ମନୋରମ ମନ୍ଦରେ । ମୋର ନୟନେ ରହିଲେ ବନ୍ଦରେ । ବନ୍ଦୀ ହୋଇଲେ ତ ଏ ଦୁହିଙ୍କ ସୁଖ କଥନ ନୁହେ ବନ୍ଦରେ ରେ । ସୁନ୍ଦର ।୭।

---

୪ । ଅପସର—ଦୂର, କବିଗଣେଶ—କବିଶ୍ରେଷ୍ଠ ।

୫ । ସୁରନଗରୀ—ଦେବପୁର, ନାଗରୀ—ସ୍ତ୍ରୀ, ଶିର—ମୁଣ୍ଡ, ଭୂଷା—ଅଳଙ୍କାର, ଦେବପୁର ନାରୀଙ୍କର ମୁଣ୍ଡଉପରେ ତୁହି । ଶିର—ଶିବଙ୍କ ପାଖରେ ଏକାଗ୍ର ଧ୍ୟାନକରି ଶୂଳରେ ମୁଣ୍ଡ ହାଣିଲେ ତାକୁ ଶିର କହନ୍ତି, ଶିଶିର କର ଶିର—ଚନ୍ଦ୍ର, ଯାହାଙ୍କ ମସ୍ତକରେ ଅର୍ଥାତ୍ ମହାଦେବ ।

୬ । ରଙ୍ଗରାଜୀବ—ରକ୍ତପଦ୍ମ, ଗଜ—ହାତୀ, ବାରଣଗତ—ଗଜଗତ ବା ହାତୀପରି ଗତି ।

୭ । ସରୋବର—ପୋଖରୀ, ବନ୍ଦୀ—ଭାଟ ।

ବିରହ ଅନଳ ପ୍ରଜ୍ୱଳିତ ଅତି ମୋତେ କରିବ ବୋଲି ଦାହ । କପାଁ ନ ଦହେ ଯେବେ ମୁଁ ସନ୍ଦେହ । ତୋ ପ୍ରେମନୀର ହୃଦସ୍ଥରେ ପଡ଼ିଣି ଯେଣୁ ଜରଜର ଦେହ ରେ । ସୁନ୍ଦରି । ଜୀବ ନେବ କାମ ଅଛି କଠାଳି । ଯତ୍ନକରି ରଖିଛି ଏହା ଭଲି । ଚଳିଗଲେ ଘଟ ଢାଳିଯିବ ସିନା ପରିପୂର୍ଣ୍ଣ ସ୍ନେହ ବାରି ରେ । ସୁନ୍ଦରି । ୮ ।

ଅବଧାନେ ଅଛି ଦେବାରେ ଦେବତା ଭୋଗ ସେ ଦାନ୍ତରେ ବିହୀନ । କରେ ନିମିଷ ହତ ଦରଶନ । କୁଚ-କାଞ୍ଚନ ଶିଖରରେ ବିହାରି ଅଧରେ ଅମୃତ ପାନ ରେ । ସୁନ୍ଦରି । ହୋଇବାରୁ ଉରୁରମ୍ଭାରେ ସ୍ନେହୀ । ମୋକ୍ଷପଦ ନାଭିରେ ଅଛି ରହି । ଅଜ ଦୁର୍ଲ୍ଲଭ ହୋଇ ତୋତେ କେ ଅଛି କେବଳ ଦୁର୍ଲ୍ଲଭ ତୁହି ରେ । ସୁନ୍ଦରି । ୯ ।

ଗୁଣସରିତ ସଂଗ୍ରହକୁ ସାଗର ବିଗ୍ରହ ନିଷ୍ଟୟ ତୋହର । ସତେ ରସ ରତନର ଆକର । ତହିଁ ମହାନ୍ତି ଯୋଗ ଏବେ ପଡ଼ିଛି ମନ୍ଥନେ କୃତାର୍ଥ କରରେ । ସୁନ୍ଦରି । ଏକେ କାମଧେନୁ ପରି ରମ୍ଭୋରୁ । ଦୁକେ ତୁ ଯେ ସୁରତ ସୁରତରୁ । କାହାକୁ କହିବି ଦୁର୍ଦ୍ଦଶା ମୋହର ନ ତୁଟିଲେ ଏ ଉତ୍ତରୁ ରେ । ୧୦ ।

ଘନେ କୁଳିଶ ଚନ୍ଦନେ ଅହି ଥିଲେ ଭୟରୁ ଗୃଢକ ପବନ । ତହିଁ ସେନେହ ଛାଡ଼ନ୍ତି କି ଯେନ । କର୍ମକୁ ଗୃହିଁ ନିର୍ଦ୍ଦୟ ହେଲେ ମୋତେ ଛାଡ଼ି ନ ପାରିବ ଧନ ରେ । ସୁନ୍ଦରି । କାମ କରୁ ପଛ କଲେ ଅଶୁଭ । ଗାହୁ ପ୍ରାୟ ମୋର ଅଶା ଅରମ୍ଭ । ହରଅଡ ଦେବେ ବିରୋଧୀ ହୋଇଲେ ଛାଡ଼ଇ କି ସୁଧାଲୋଭ ରେ । ସୁନ୍ଦରି । ୧୧ ।

---

୮ । ଦାହ—ପୋଡ଼ିବା, ଭଲି—ଚନ୍ଦ୍ରାକର, ଘଟ—ଦେହ, ପରିପୂର୍ଣ୍ଣ —ପୂରିଥିବା ।

୯ । କାଞ୍ଚନ ଶିଖରି—ସୁନା ପର୍ବତ, ମେରୁ, ଉରୁରମ୍ଭା—ଯାହାର ଜଙ୍ଘ କଦଳୀଗଛ ପରି ଗୋଲ ଓ ଗଡ଼ାଣିଆ ।

୧୦ । ଗୁଣ ସରିତ—ଗୁଣ ନଦୀ, ବିଗ୍ରହ—ପ୍ରତିମା, ଆକର—ଖଣି, ସୁରତରୁ—କଳ୍ପଦ୍ରୁମ ।

୧୧ । ଘନ—ମେଘ, କୁଳିଶ—ବଜ୍ର, ଅହି—ସର୍ପ, ହର—ମହାଦେବ, ବିରୋଧୀ—ବିପକ୍ଷ ।

ହୃଦକେଦାରରେ ଅନୁରାଗବୀଜ ଅତି ଯତ୍ନ କରି ବୁଣିଛୁ । ଭଲ କାଳ ହେଲ ଯତ୍ନେ ଜାଣିଛୁ । କମେ ସେ ଅଙ୍କୁର ଘନରସ ବୃଷ୍ଟି ବିହୀନେ ଦୁଃଖୀ ହୋଇଛୁ ରେ । ସୁନ୍ଦର । ନ କରିବ କି କରିବ ବରଷା । ପଛେ ତୁ ଯେ ମହାଜ୍ୟୋତିଷ ଯୋଷା । ନାସିକା ମୋତି ବୃହସ୍ପତି ଚଳନ ଯୋଗକୁ ଠିକକରୁ ଅଣାରେ । ସୁନ୍ଦର । ୧୨ ।

ଅଛୁ ଯେଉଁ ଜୀବ ବୀଣା କିଣା ବାଣୀ କଣା ଅଙ୍ଗଦେଶେ ତୋହର । କେଡ଼େ ଭରସା ସନ୍ତାପ ବ୍ୟାଧର । ଶମନପାଶେ ଉଚ୍ଛନ୍ନ ପାଶେ ଧରି ନେବାପାଇଁ ତତପର ରେ । ସୁନ୍ଦର । କଲି ଗୋଚର ମୋର ଦୋଷ ନାହିଁ । ହେବ କାହାକୁ ଏ ଅଯଶ ସହି । ତୋତେ ଏମନ୍ତ ବୋଲିବା ଅଧିକାର ମୁଁ ଏବେ ପାଇଲି କାହିଁରେ । ସୁନ୍ଦର । ୧୩ ।

ନବବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳଜାତି ଫୁଲ । ତଳପୃଷ୍ଠ କୁନ୍ଦ ଗୁରୁ କମଳ । କୁମୁଦ ବନ୍ଧୁଲି ପାଟଳୀ, କିଆଳୀ, ଚମ୍ପା ଶିରୀଷ ଉତ୍ପଳ ରେ । ସୁନ୍ଦର ! ଷଣକୁସୁମ, ଅଶୋକ, ମନ୍ଦାର । କେଶି ଭୃଙ୍ଗ ମୁଁ ତୁମ୍ଭେନେ ଅତୁର । କେତକୀ ବରନା ନାମ ଅଙ୍ଗୀକାର କଲେ ସରିଲାଟି ମୋର ରେ । ସୁନ୍ଦର । ୧୪ ।

ଅନଙ୍ଗ ବଧିବା ଇଚ୍ଛା କରି ତୋତେ ଛାଡ଼ି ନ ପାରୁଥିବ ବାଣ । ଶୋଭା ଅନାଇଁ ଷୀଣ ହେବ ଗୁଣ । ମୁଁ କ ଉପାୟେ ତୋ ଦରଶନ ଯାଏ ଜୀଇବି କହିବ ପୁଣରେ । ସୁନ୍ଦର । ବଞ୍ଚିଥିଲେ ଅଛୁ ଏତେ କାରଣ । ଲକ୍ଷା ଲେଖିବ ଧରି ତୋ ଚରଣ । ଶବ୍ଦ ଗୃହିଁ ତୁ ଯେ ପ୍ରଶଂସା କରିବୁ ସେବାଣୀ ହେବ ଶ୍ରବଣ ରେ । ସୁନ୍ଦର । ୧୫ ।

---

୧୨ । ହୃଦ—ମନ, କେଦାର—କିଆରି, ଅନୁରାଗ—ସ୍ନେହ, ବୀଜ—ମଞ୍ଜି, ଅଙ୍କୁର—ଗଜା, ଘନରସ—ମେଘ, ବୃହସ୍ପତି ଚଳିଲେ ବର୍ଷାହୁଏ ।

୧୩ । ବ୍ୟାଧ—ବାଣୁଆ, ଶମନ—ଯମ ।

୧୪ । ନାକ—ତଳଫୁଲ, ଦାନ୍ତ—କୁନ୍ଦ, ମୁଖ—ଧଳା ପଦ୍ମ, ଓଷ୍ଠ—ଲାଲପଦ୍ମ, ବାଳ—ନୀଳପଦ୍ମ, ଦେହଗନ୍ଧ—ଗୋଲାପିପଦ୍ମ, ହାସ—କୁମୁଦ, ଅଧର—କବା ଶ୍ରବଣ—ପାଟଳି, ନଖ—କିଅଳି, ଅଙ୍ଗୁଠି-ଚମ୍ପା, ଦେହ—ଶିରୀଷ, ଆଖି—ଉତ୍ପଳ, ଦେହରଙ୍ଗ—ଷଣ, କପାଳ—ଅଶୋକ, ହାତ ପାପୁଲି ଗୋଇଠି—ମନ୍ଦାର ।

୧୫ । ଅନଙ୍ଗ—କନ୍ଦର୍ପ, ଲକ୍ଷା—ଅଳତା ।

ଗନ୍ଧକୁ ଶୋଭା ହେବା ଭଳି କୁସୁମ ଗୁଚ୍ଛି ଦେଉଥିବ ସୁଗାନ୍ଧି । ଶିବସ୍ରାନ୍ଧି କରିବ ସବୁ ସନ୍ଧି । ଅଗ କି ମାଗିବ ସେବା ଜାଣି କୃପା କରୁ ସିନା କୃପାପାନ୍ଧି ରେ । ସୁନ୍ଦରି । ଇଚ୍ଛା ମନ ଭିତରେ ଦେହ ରହୁ । ଏ ନୋହିଲେ ବିଧାତା ପକ୍ଷ ହେଉ । ଯାଇଁ ତୋ ପାଶେ ମୋ ସେବା ଦେଖାଇବା ଯୋଗ ବେଗ ହୋଇ ହେଉ ରେ । ସୁନ୍ଦରୀ । ୧୬ ।

କ୍ଷିତି ଥିଲେ ନରପତି ଶୋଭା ପାଇ ରାତି ଥିଲେ ଚନ୍ଦ୍ର ଉଜ୍ଜ୍ୱଳ । ପଦ୍ମ ଥିଲେ ସରୋବର ମଞ୍ଜୁଳ । ଯେଣୁ ସେହିମତି ଯୁବତିକତିରେ ଥିବା ଯୁବାର ମଙ୍ଗଳ ରେ । ସୁନ୍ଦରି । ଲଭି ନାହିଁ ଯେ ବକ୍ଷୋଜସୁରସ । ମହାସମ୍ପତ୍ତି ଥାଇ ହେବ କିସ । ନୟନ ନ ଥାଇ ଦେବ ଦରଶନେ ଗଲା ପ୍ରାୟ ଉପହାସ ରେ । ସୁନ୍ଦରି । ୧୭ ।

ଯେଣୁ ରେ ଯୁବତି ପରଶ ପରଶୁ ପୁରୁଷ ଲୋହ କରେ ହେମ । ଭଙ୍ଗୀବଚନ ହିମଧାମ ସମ । ହୃଦୟସ୍ଥଳ ଚନ୍ଦ୍ରକାନ୍ତ ମଣିର ଦ୍ରବୀଭୂତକୁ ସେ କ୍ଷମ ରେ । ସୁନ୍ଦରି । ଏହା ଶୁଣିଛୁ ରସିକ ବଦନ । ଅନୁଭବ ନାହିଁ ମୋର ଏମାନ । କି କରି ଜାଣିବ କରିଜାତଗତି କରିବୁ ଏ ଅବଧାନ ରେ । ସୁନ୍ଦରି । ୧୮ ।

ଶିରଫୁଲ ଗନ୍ଧ କେତେକାଳ ଶୋଭା କି ଶୀତଳତାରେ ଚନ୍ଦନ । ଏ ବଚନ କି ତୋଠାରେ ବନ୍ଦନ । କି ବୋଲି ବୋଲିବି ମଣାସ୍ରମଣକ ପରାୟୁ ଭ୍ରମୁଛୁ ମନରେ । ସୁନ୍ଦରି । ବନ୍ଧୁ ଧନ ତୋତେ ରେ ପ୍ରେମଶୀଳା । ବୋଲିବି କି ନାହିଁ ଶତ୍ରୁ ରସିଲା । ଗଲେ ପ୍ରାଣ ରହୁ ବନ୍ଧୁ ଧନ ଦୁଇ ଥିଲେ ଅଛୁ ଏ ଶୁଣିଲା ରେ । ସୁନ୍ଦରି । ୧୯ ।

ଅତି ଦରିଦ୍ର ମୁଁ ବହନ ବଣିଜ କରିଛୁ ଉପାୟୁ ବଳରେ । ଭଲ ମନ୍ଦ ଅଛୁ କି କପାଳରେ । ଦଇବ ସେ ତୁହି ସେ ତୋତେ ଗୋଚର ଦୟାରେ ଲଗା କୂଳକୁ ରେ । ସୁନ୍ଦରି । ମାର-ତସ୍କର ଯେଣୁ ଦର ଅଛୁ । ପ୍ରାଣଧନ ଲୁଟିବାକୁ ଜଗିଛୁ । ଅଷ୍ଟସାତ୍ତ୍ୱିକ ଅଣଗୁଣ ପବନ ଛନ୍ନ ଭ୍ରମେ ପକାଉଛୁ ରେ । ସୁନ୍ଦରି । ୨୦ ।

---

୧୬ । ସୁଗାନ୍ଧୀ—ସୁନ୍ଦରଦେହୀ, କୃପାପାନ୍ଧୀ—ଦୟାବତୀ ।

୧୭ । ନରପତି—ରାଜା, କ୍ଷିତି—ପୃଥିବୀ, ଏଠାରେ ରାଜ୍ୟ ।

୧୮ । ଯୁବତୀପରଶ—ସ୍ତ୍ରୀ ଦେହ ପରଶପଥର, କରୀ—ହାତୀ ।

୨୦ । ବହନ—ବୋଇତ, ମାର—କନ୍ଦର୍ପ, ତସ୍କର—ଚୋର ଅଷ୍ଟସାତ୍ତ୍ୱିକ —ସିତ୍କାର, ଦାହ, କମ୍ପ, ସ୍ୱେଦ, ଲୋମୋଦ୍‌ଗମ, ହାଇ ଅଳସ, ମୂର୍ଚ୍ଛା ଆଠପ୍ରକାର; କାମବିକାରରେ ଏସବୁ ହୁଏ ।

ନେନେ କର୍ଣ୍ଣକୁ ଅକ୍ଷେପ କରି ଦାନ ନିବିଧେ କରୁଛୁ ବନ୍ଧନ । ହାସେ ହରଚନ୍ଦ୍ର ଦର୍ପ ଦଳନ । ଜୀମୂତବାହନପଦ ଦରଶନ ଜନେ କରୁଅଛୁ ଦାନ ରେ । ସୁନ୍ଦରି । ବଚନରେ ଅନୁସରି ଥିବା ଯେ । ଦାମାମାନଙ୍କୁ ଜିଣିଛୁ ଭାବ ଯେ । ତନୁଦାନକୁ ମୁଁ ଅର୍ଥୀ ହୋଇଅଛୁ ବୋଲକ୍ର ନାକ ନ ଦେବ ରେ । ସୁନ୍ଦରି । ୨୧ ।

ଦେବୀ ଦେଖାଇଲ ନାଶାର୍କ୍ଷେ ପଲ୍ଲବେ କରିଥିଲ୍ଲି ବାଳା ଶୟନ । ହା ହା କି ଶୋଭା ଦେଖିଲ ନୟନ । ସେହି ଫୁଟିକେ କୋଟି କୋଟି ମଘବାସମୁଣ୍ଡ କରୁଛୁ ଦାନ ରେ । ସୁନ୍ଦରି । ଯେବେ ଶର ହୁଅନ୍ତା, ସେ ମୂର୍ତ୍ତି । ଯୁବାବୃନ୍ଦେ ହୋଇ ଥାନ୍ତି ସାମନ୍ତ । ଭୀରୁ ଉରୁ ଛୁଇଁ ଫୁଲଇ ଦେବାର ନୋହେ ଇତର ସୁକୃତ ରେ । ସୁନ୍ଦରି । ୨୨ ।

ନିଦ୍ରା ବିନାଶ ଅଳସଭରି ଧେନି କଷାଇତ ନେତ୍ର ଗୃହୁରୀ । ମୋତେ ବନ୍ଧେ ଅନାଇଁଲ୍ଲି କି କରି । ଅନୁରାଗଜଳେ ବୁଡ଼ାଇ କମଳ ବେଗେ ତାଳଦେଲ ପରି ରେ । ସୁନ୍ଦରି । ଲଜ୍ଜ ବଶରୁ ରସିକାସିହାଣୀ । ଗୃହିଁ ନ ଗୃହିଁଲ କଲ୍ଲି ଗୃହାଁଣୀ । ଉଡ଼ୁ ପୂର୍ଣ୍ଣଚନ୍ଦ୍ର ମଣ୍ଡଳଁ ମନ୍ଦରେ ବସିଲ୍ଲ ପଦ୍ମ ପୁଣି ରେ । ସୁନ୍ଦରି । ୨୩ ।

ବିନୟରେ ମୋ ଲୟ ଦେଇ ଉଦୟ କଲ୍ଲି ଯେ କରୁଣାଙ୍କିତ । ପ୍ରାଣ ରଖିଲ ସେ ସୁଧା ସଞ୍ଚିତ । ମାଣିକ୍ୟ କୁହରେ ହୀରା ଫୁଟକଲ ପରି ସ୍ମିତହାସ ଜାତରେ । ସୁନ୍ଦରି । ମୋର ଜନ୍ମାନ୍ତେ ଖଣ୍ଡିତପ ଥିଲା । ସେହି ସମୟେ ନାଶି ନାଶ ହେଲ । ବଢ଼ିବାରୁ ମହାସନ୍ତାପ ନୟନ ମନେ ଅନ ନ ରୁଚିଲ ରେ । ସୁନ୍ଦରି । ୨୪ ।

ଚତୁରୀ ଗୃହୁକୁ ଗୃହୁରୀ କରି ଯେ ଯେତେ ବାଣୀ କହି ଯୁବତେ । ସେ କି ସମ ହେବ କାହିଁ ଜଗତେ । କର ଯୋଡ଼ି ମୁଁ ଜଣାଉଛୁ ସନ୍ଦେଶ ଦୋଷ ନ ଧରିବୁ ଶତ୍ତେ ରେ । ସୁନ୍ଦରି । ସବୁ ସଖୀଙ୍କି ସଙ୍ଗୋଳା ମୋହର । ତୁମ୍ଭ ସଙ୍ଗତେ ଜଣେ ମୋତେ କର । ମନ ମନାଇଁ ଅବକାଶ ଅନାଇଁ ଧେନାଇଁ କହି ଛାମୁରେ ରେ । ସୁନ୍ଦରି । ୨୫ ।

---

୨୧ । ହରି—ଚନ୍ଦ୍ର, କର୍ପୂର, ଜୀମୂତବାହନ—ଇନ୍ଦ୍ର ।

୨୨ । ନାଶାର୍କ୍ଷେ-ଶ୍ୱତଅଧରେ, ମଘବା—ଇନ୍ଦ୍ର, ଭୀରୁ—ସ୍ତ୍ରୀ, ଉରୁ—ଜଙ୍ଘ ।

୨୩ । କଷାଇତ—ଲାଲ, କମଳ—ପଦ୍ମ ।

୨୪ । ଉଦୟ—ଜାତ, ସୁଧା—ଅମୃତ, କୁହର—ଗାତ ବା ଗୁହା, ସ୍ମିତହାସ—ଦରହାସ ।

୨୫ । ଗୃହୁ-ବିନୟ, ସନ୍ଦେଶ—ଖବର, ଅବକାଶ—ଫୁରୁସତ ।

ବେଗେ ଦୂତକୁ ମେଲାଣିଦେଇ ଦେବ ଶ୍ରୀହସ୍ତ ସନ୍ତକ ଲେଖକୁ । ପାଇ ପାଇ ମୁଁ ଅଲେଖ ସୁଖକୁ । କୃଶ ହେଲେ ଅଶାଦଣ୍ଡ ଅଲମ୍ବନ କର ଘଜାଡ଼ ଦୁଃଖକୁ ରେ । ସୁନ୍ଦର । ଯିବ ଜୀବତେ ପ୍ରଭୁର ଛାମୁକୁ । ବ୍ୟଥା କହ ଦଣ୍ଡାଇବ କାମକୁ । ଏତକ କାମନା ଏ ବନା ନବୀନା ମିଳୁଛି ଯାହା କର୍ମକୁ ରେ । ସୁନ୍ଦର । ୨୬ ।

ବଳାଥର ଯେ ନିବଳୀଶୋଭମାଙ୍କ କହିବାକୁ ଅଛୁ ଅତୁର । ପ୍ରୀତ ବରୋଧୀ ଯେତେ ସହଚରୀ । ଦଇବେ ହୋଇବେ ପ୍ରବୋଧ କରବୁ ତାହାଙ୍କର କର ଧର ରେ । ସୁନ୍ଦର । ପର ଉପକାର ଯଶ ଥୋଇଲେ । ଦେବ ମହାଦେବ ବଷ ଖାଇଲେ । ଦେଖ ଭୃତ୍ୟପଦ ହୃଦେ ଧର ହର ଭାବଗ୍ରାହୀ ବୋଲଇଲେ ରେ । ସୁନ୍ଦର । ୨୭ ।

ପଢ଼ି ଏ ପତ୍ର ରୋମାଞ୍ଚିତ ଗାତ୍ର କ ହେଲା ଅନୁରାଗ ଅଙ୍କୁର । କବା ମାଗିବ ଯୁବା ସଙ୍ଗ ବର । ଅନନ୍ଦ ଅଶ୍ରୁଜଳରେ ଅଭିଷେକ କରାଇଲା କୁଚହର ସେ । ସୁନ୍ଦର । ଦେଖି ଦ୍ୱିଜକୁ ସେ ମୋତକଳାପ । ମନେ ଏ କଥା କର ସଙ୍କଳପ । ଏହାଉଠାରେ ଏ ହାର ଥିଲେ ଦେଖି କାଣନ୍ତି ସିନା ସନ୍ତାପ ସେ । ସୁନ୍ଦର । ୨୮ ।

ପ୍ରତ୍ୟୁତ୍ତର ପତର ଦେଇ ତାଙ୍କୁ କାତର ସାଗରୁ ଉଦ୍ଧର । କହେ ଏକାଳେ ବ୍ରହ୍ମଗୃହୀ କୀର । ଅନ୍ତନସ୍ୟୁ ଲେଖ ଛାନ୍ଦ ପୂର୍ଣ୍ଣ ହେଲା ରସିକ ଉଲ୍ଲାସକର ହେ । ସୁଜନେ । ରାମଲକ୍ଷ୍ମଣ ଅମ୍ବୁଜବଦନ । ବୃଷାସନଙ୍କର ଚେନ୍ଥ ବନ୍ଦନ । ଭଣେ ଉପେନ୍ଦ୍ର ଭଞ୍ଜ ବୀରବର ତାଙ୍କ ପାଦେ ଦେଇ ମନ ହେ । ସୁଜନେ । ୨୯ ।

---

୨୬ । ଅଲେଖ—ଅତ୍ୟନ୍ତ, କୃଶ—ସରୁ, ଅଶାଦଣ୍ଡ—ଅଶାବାଡ଼ି ।

୨୭ । ନିବଳଶୋଭମା—ପେଟରେ ତନୋଟିରେଖାଥିବା ସ୍ତ୍ରୀ ଲବଣ୍ୟବତୀ, ଭୃତଂ—ଗୃଙ୍କର ।

୨୮ । ରୋମାଞ୍ଚିତ—ରୋମଟାଙ୍କୁରବା, କୁଚହର—ସ୍ତନଲଗ୍ନ, ସଙ୍କଳ୍ପ—ଭାବନା ।

୨୯ । ଅମ୍ବୁଜ ବଦନ—ପଦ୍ମମୁଖ, ବୃଷାସନ—ମହାଦେବ ।

ଲବଣ୍ୟବତୀକୁ ଚନ୍ଦ୍ରଭାନୁର ପତ୍ର ଦଅନ୍ତେ ସେ ସେହି ପତ୍ର ପଢ଼ି ଅତ୍ୟନ୍ତ ଅନନ୍ଦ ହୋଇ ପୁନରସ୍ୟୁ ପ୍ରତ୍ୟୁତ୍ତର ପତ୍ର ଦେଇ ଶୁକକୁ ବ୍ରହ୍ମଗୃହୀଙ୍କ ପଠାଇବାକୁ ସ୍ଥିର କଲା ।

## ବଂଶ ଛାନ୍ଦ

(ଲାବଣ୍ୟବତୀର ପତ୍ର ଘେନି ଶୁକ ଓ ବ୍ରହ୍ମଗୃହୀ ଚନ୍ଦ୍ରଭାନୁ ନିକଟକୁ ଗମନ)

ରାଗ—ଚନ୍ଦ୍ରାଭୈରବ

ଅଣି କାଗଜକୁ ନବବାଳୀ । ଅନୁରାଗୁ ନ ଲେଖିଲା କାଳୀ । କୁଙ୍କୁମେ ଲିଖିତ ବର୍ଣ୍ଣ ନିଜବର୍ଣ୍ଣ ଭଳି ଅଳୀଙ୍କ ନାମରେ ଛଳ ସେ । ସୁନ୍ଦରୀ ॥ ବଭ୍ରେ ବୀରବର ଭୂପସୁତ । ଗଣେଶ୍ବର ସମାନେ ପଣ୍ଡିତ । ଗୁଣରେ ନାହିଁ ତ ଅବନୀ ମଣ୍ଡଳେ ଏଣୁକର ଗୁରୁ ପ୍ରଶଂସିତ ହେ । ସୁନ୍ଦର । ୨ । ମହା ମହା ମନୋହର ଧାମ । ଅମ୍ଭେ ବୋଲୁଅଛୁ ଅନୁପମ । ହେମ ତୁଲେ ଗୁଞ୍ଜ ତୁଳନା ପରାୟେ ଯାହା ଇଚ୍ଛା ବୋଲନ୍ତୁ ସେ ଭାମ ହେ । ସୁନ୍ଦର । ୩ । ଦାତାପଣ କର୍ଣ୍ଣେ ଅଛୁ ଶୁଣି । ତହିଁକି ଲକ୍ଷ୍ୟ ଦେବାକୁ ପୁଣି । ଯାଚକ ମାନସ ଏ ରୂପେ ସନ୍ତୋଷ ଏକା ଏହାର ହେଉ ଧରଣୀ ହେ । ସୁନ୍ଦର । ୪ । ପୁଣି ବଧ କରିବାରେ ଅରି । କର ଯଶକୁ ଅଛି ବିସ୍ତାରି । ଦସ୍ୟୁଙ୍କ ଗୁଣ ତ ନୁହଇ ଜାଣିବା ତୁମ୍ଭେ କେଡ଼େ ପରଉପକାରୀ ହେ । ସୁନ୍ଦର । ୫ । ଯାହା ରତନ କୋଷ ସହିତ । ସଦା ଅତୁଟ ସମୁଦ୍ରବତ । ଏହି କଥାମାନ ବାଚକ ମଣିଲ୍ଲିଁ ସେହି ରୀତିରେ କେଇ କି ଚିନ୍ତ ହେ । ସୁନ୍ଦର । ୬ । ସ୍ୱପ୍ନ ଦେଖାଦେଲ ଯେଉଁ ନିଶା । ହୋଇଥିଲା ସେଦିନ ସୁଦଶା । ଜଳକଳଶ ଚନ୍ଦ୍ରବିମ୍ବ ଧରିବା ପରି ଯେମ୍ଭ କରୁଥିଲା ଅଶା ହେ । ସୁନ୍ଦର । ୭ । ଏବେ

---

### ବଂଶ ଛାନ୍ଦ

୧ । ନବବାଳୀ—ନୂଆ ନାଗରୀ, କାଳୀ—କଳା ସ୍ୟାହି, ବର୍ଣ୍ଣ—ଅକ୍ଷର, ଅଳୀ—ସଖୀ ।

୨ । ବଭ୍ରେ—ପ୍ରଭେ, ଭୂପସୁତ—ରଜାପୁଅ, ଅବନୀ—ପୃଥିବୀ, ମଣ୍ଡଳ—ସମୁଦାୟ, ଗୁରୁ—ଅତ୍ୟନ୍ତ, ବୃହସ୍ପତି—ଦେବଗୁରୁ ।

୩ । ମନୋହର—ସୁନ୍ଦର, ହେମ—ସୁନା, ଗୁଞ୍ଜ—କାଇଚ ।

୪ । ଧରଣୀ—ପୃଥିବୀ, ଯାଚକ—ଭିକ୍ଷାରୀ ।

୫ । ଅରି—ଶତ୍ରୁ, କର—ହାତ ।

୬ । ରତନ—ସୁନା, କୋଷ—ଭଣ୍ଡାର ।

୭ । ନିଶା—ରାତି, ଚନ୍ଦ୍ରବିମ୍ବ—ଚନ୍ଦ୍ରଛାଇ, ପାଣିମାଠିଅକୁ ଅନାଇଲେ ତା ଭିତରେ ଚନ୍ଦ୍ରଛାଇ ପଡ଼ି ଚନ୍ଦ୍ର ଦେଖାଯାଏ ।

ଦାଇବେ ହେଲ ସେ ସତ । କେହୁ ନୋହୁବ ପୁଣି ଲୋଭିତ । ଜୀବନ ଯିବ ପାଖରେ ନ ପାଇଲେ ଏହୁ ବାଣୀ ହୋଇବ ବାଦତ ହେ । ସୁନ୍ଦର । ୮ । ଯାର ପହଣ୍ଡ଼ଙ୍କ ଶତେ କୋଶ । ତାର ମେରୁ ଲଙ୍ଘିବାକୁ ଅଶ । ଜଳେ ସାଗରସୁତ ପ୍ରାୟ ସଜୀବେ ତାପାନଳେ ନୋହେ କ୍ଲେଶ ନାଶ ହେ । ସୁନ୍ଦର । ୯ । ହରହର ସୁପ୍ରସନ୍ନ ଥିବ । ମାର ପୁରନ୍ଦର କରୀ ହେବ । ଭାଗ୍ୟ ଭଗୀରଥ ହୋଇ ଯେବେ ତବ ସ୍ନେହ ଗଙ୍ଗାଜଳ ମଜ୍ଜାଇବ ହେ । ସୁନ୍ଦର । ୧୦ । ଭାବେ ମହୀ ଅନାଇ ଯାହାକୁ । ଏକା ବର ବରବୀ ଏହାକୁ । ତାକୁ ସେ ଏକାନ୍ତେ ରସିବ ବୋଇଲେ ବାଳା ନ ଛାଡ଼ିବ ଉତ୍ସାହକୁ ହେ । ସୁନ୍ଦର । ୧୧ । ଛଳେ ସେ ଦାସୀ ସଲିଳସ୍ରାଣି । ନ କରବେ ମୋତେ ନିଜ ଦାସୀ । ଘେନାଇ କହୁବା କଥା ଏ ନୁହଇ ଘେନ ତୁମ୍ଭଙ୍କୁ କେମନ୍ତେ ବଶୀ ହେ । ସୁନ୍ଦର । ୧୨ । ଦୂତ ସଙ୍ଗେ ଅଇଲେ ଦେଖିବ । କଥା ଯଥାର୍ଥ କେବା ଲେଖିବ । କୃଶକଟୀ ଅଗେ ପାଞ୍ଚୋଟି ଯିବାର ବାଧି ସ୍ତ୍ରିୟ କରଛୁ ଦାଇବ ହେ । ସୁନ୍ଦର । ୧୩ । ଫୁଲ ଭୃଙ୍ଗର ଭୃଙ୍ଗ ଫୁଲର । ଫୁଲ କରଇ କି ଅଭିସାର । ପ୍ରତି ପ୍ରତିନାଧି ମନକୁ ପେଷିଛୁ ତାହା ସଙ୍ଗେ ଏବେ ବଜେଜର ହେ । ସୁନ୍ଦର । ୧୪ । ଯେବେ ନାହିଁ ଏତେ ଅନୁଗ୍ରହ । କେମା ନେହେ କିପାଁ କଲ ଗୃହ । ତୁମ୍ଭ ପୁର ତ ଅଳକାରୁ ଅଧିକ ତହୁଁ ରମ୍ୟ ହେଲ କିଏ କହ ହେ । ସୁନ୍ଦର । ୧୫ । ହୃଦବନେ ଥିଲ ମନମୃଗ । ତହିଁ ବିରହ ଅନଳ ବେଗ । ପଳାଇ ତୁମ୍ଭ ଶୋଭାବନେ ପଶିଲ ତହିଁ ନାହିଁ ପଗ ଏ ଉଦ୍‌ବେଗ ହେ । ସୁନ୍ଦର । ୧୬ ।

---

୯ । ଲଙ୍ଘିବାକୁ—ଡେଇଁବାକୁ, ଅଶା—ଇଚ୍ଛା, ସଗରସୁତ—ସଗର ରଜାଙ୍କ ପୁଅ, ସଜୀବେ—ଜୀବନରେ, କ୍ଲେଶ—କଷ୍ଟ, କପିଳ ମୁନିଙ୍କ କୋପାନଳରେ ସଗର ସୁତମାନେ ମରୁ ନ ଥିଲେ, ସ୍ୱତରେ ଜଅଁଳା ଦାନରେ ଜଳୁଥିଲେ ।

୧୦ । ହର—ବିଷ୍ଣୁ, ହର—ମହାଦେବ ମାର—କନ୍ଦର୍ପ, ପୁରନ୍ଦର—ଇନ୍ଦ୍ର, କରୀ—ହାତୀ, ପୁରନ୍ଦର କରୀ—ଇନ୍ଦ୍ରହାତୀ ଐରାବତ ।

୧୧ ମହୀ—ପୃଥିବୀ, ବାଳା—ସ୍ତ୍ରୀ, ଏଠାରେ ଲାବଣ୍ୟବତୀ ।

୧୨ ସଲିଳ—ପାଣି, କୃଶକଟି—ସରୁ ଅଣ୍ଟା ।

୧୩ । ଯଥାର୍ଥ—ପ୍ରକୃତ ।

୧୪ । ଭୃଙ୍ଗ—ଭଅଁର, ଅଭିସାର—ସଙ୍କେତ ସ୍ଥାନକୁ ବେଶ ହୋଇଯିବା

୧୫ । ପୁର—ନଅର, ଅଳକା—କୁବେର ପୁର ।

ପ୍ରଭେ ବଗୁର କରବ ମନ । ସ୍ମରଶରହିଁ ଏହି ବଧାନ । ପ୍ରକଟି କୁଜ୍‌ଝଟି ତପନକୁ କୋଟି ନାଶକରବେଇ ପଦ୍ମବନ ହେ । ସୁନ୍ଦର । ୧୭ । ପରମ୍ପରା ସେ ଜନକୁ ମାରେ । ଈଶ୍ୱରଙ୍କ ମାନ ଜ୍ୱାଳା କରେ । ତୁମ୍ଭେ ବଳବନ୍ତ ଅବଳା କୋମଳା ଅମ୍ଭ ପ୍ରାଣସଜନୀ ଦେଖିବେ ହେ । ସୁନ୍ଦର । ୧୮ । ସ୍ୱାମୀ ତୁମ୍ଭ ସ୍ନେହୀ ହେଲାଠାରେ । ବରହ ଯେ ଅଙ୍ଗ ଭୋଗ କରେ । ଏ ଦଶା କାହାକୁ ହେବ ମନେ ମନେ ବସି ଭାବନା କରବ ଥରେ ହେ । ସୁନ୍ଦର । ୧୯ । ଜାତ ପଦ୍ମନାହାସକୁ ଗ୍ରହି । ନତ ମହାବାସ କରୁଥାଇ । ଚନ୍ଦ୍ର ସେ ହିଂସାରେ ସାନ୍ଦ୍ର ହୋଇ ଏବେ ଚନ୍ଦ୍ର ତନ୍ୱକୁ ଦେଉଛୁ ଦାହ ହେ । ସୁନ୍ଦର । ୨୦ । କାଣ ପର ଇନ୍ଦ୍ରଜାଲ ମାୟା । ସବୁ ଦଗେ ଦେଖାଉଛ କାୟା । ମାୟା କର ମୋହିବାକୁ ତୁମ୍ଭଠାରେ ବାଳା ହୋଇନାହିଁ କି ବନୟା ହେ । ସୁନ୍ଦର । ୨୧ । କେତେ କୁସୁମ ଜଗତେ ନାହିଁ । ରବିକର ନ ପାରଇ ସହି । ତଳେ ଶେଫାଳିକା ଏ ନବମାଳିକା ତଥା ବେଦନା ସହି ନୁହଇ ହେ ସୁନ୍ଦର ।୨୨। ତୁମ୍ଭ କୀର୍ତ୍ତିଚନ୍ଦ୍ରମା ଉଦତ । କୁଳ କୁମୁଦକୁଳ ମୋଦତ । ତାତ ସିନ୍ଧୁ ମାତ ଚକୋର ଉଲ୍ଲାସମାରେ ମଣ୍ଡିତ କଲ ଜଗତ ହେ । ସୁନ୍ଦର । ୨୩ । ନୃପସୁତ ତାହିମଧ୍ୟେ ଶୋଭ । ପର ତସ୍କରକୁ ଭୟ ଦେଇ । ଅମ୍ଭ ସଜନୀ ରଜନୀଠାରୁ କାମତମ ନ ଖଣ୍ଡିଲ କାହିଁପାଇଁ ହେ । ସୁନ୍ଦର । ୨୪ । ଭାନୁ ଭଜିଲେ ମିହିରମଣୀ । ଯଥା

---

୧୭ । ସ୍ମରଶର—କନ୍ଦର୍ପ ବାଣ, କୁଜ୍‌ଝଟି—କୁହୁଡ଼ି, ତପନ—ସୂର୍ଯ୍ୟ ।
୧୮ । ପରମ୍ପରା—ପୂର୍ବରୁ, କ୍ରମାନ୍ୱୟେ । ଈଶ୍ୱର—ମହାଦେବ, ଅବଳା—ବଳହୀନା ସ୍ତ୍ରୀ ।
୨୦ । ମହାବାସ—ଅତ୍ୟନ୍ତ ଭୟ, ସାନ୍ଦ୍ର—ଅଗ୍ନି ।
୨୧ । କାୟା—ଦେହ, ବନୟ—ନମ୍ରତା ।
୨୨ । କୁସୁମ—ଫୁଲ, ଜଗତ—ସଂସାର, ରବିକର—ସୂର୍ଯ୍ୟକିରଣ, ଶେଫାଳିକା—ଗଙ୍ଗଶିଉଳି, ନବମାଳିକା—ନିଆଳି ଫୁଲ ।
୨୩ । କୁଳ—ବଂଶ, କୁମୁଦ—କଇଁ, କୁଳ—ସମୂହ, ତାତ ସିନ୍ଧୁ—ପିତା ହେଲେ ସମୁଦ୍ର, ମାତା ଚକୋର—ମା ହେଲେ ଚକୁଆ ।
୨୪ । ନୃପସୁତ—ରାଜପୁତ୍ର, ତାହି ମଧ୍ୟେ ଶୋଭ—ଅନ୍ୟ ରାଜପୁତ୍ର ତାହା ହେଲେ ସେମାନଙ୍କ ମଧ୍ୟରେ ତୁମ୍ଭେ ଶୋଭିତ, ପର—ଶତ୍ରୁ, ତସ୍କର—ଚୋର, ଶତ୍ରୁ, ଚୋରଙ୍କ ଭୟ ଦଅ ।

ଅଗ୍ନିଜାତ କରେ ପୁଣି । ତୁମ୍ଭ ପୀରତବଶରେ ମହାବ୍ୟଥା ତଥା ପାଉଛୁ ରମଣୀମଣି ହେ । ସୁନ୍ଦର । ୧୫ । ଅମ୍ଭ ସଖୀ ଅତ ସ୍ନେହାଧୀନ । ଘୁଡ଼ବ କି ହେଲେ ହୀନମାନ । ଅନେକ ଦହିଲେ ସୁବାସକୁ ନିକ କେବେ ଘୁଡ଼ଇ ଚନ୍ଦ୍ର ଚନ୍ଦନ ହେ ସୁନ୍ଦର । ୨୬ । ମନେ କରଅଛୁ ପଙ୍କଜାକ୍ଷୀ । ମଲ୍ଲ ପ୍ରୀତିରେ କପୋତପକ୍ଷୀ । ଧନ୍ୟ ଶବଦ ତ ସେ ରୂପେ ବହିବ ଅଗ ସ୍ନେହିରେ ତାହାକୁ ଲେଖି ହେ । ସୁନ୍ଦର । ୨୭ । ମହାଶଙ୍କା ହୋଏ ଏହା ଭାବ । ଗାରପଣେ ବର୍ଣ୍ଣିଛନ୍ତି କବ । ଅତ କଠିନ କୁଚସ୍ଥଳ ବାଜିଲେ ସବୁରୂପେ ହତ ହୁଏ ପଦ୍ମ ହେ । ସୁନ୍ଦର । ୨୮ । ନାସ୍ତି ବୋଧ ଏହା ଶୁଣିକର । ହୋଇଥିବ ନାରିକେଳ ପର । ଦସ୍ତାଶୀଳ ନାମ ନୋହିଲେ ତାହିଁକି ହୃଦେ ଅଛୁ ଘନରସ ପୂର ହେ । ସୁନ୍ଦର । ଚନ୍ଦ୍ର ମାର ଅଶ୍ୱିନୀ-କୁମାର । ଏମାନେ ଯେ ପରମ ସୁନ୍ଦର । ଏ ମୂର୍ତ୍ତି ହୋଇ କ୍ଷିତରେ ଉତ-ପତ୍ତି ବୋଲି ପ୍ରଶଂସା ଖ୍ୟାତ ତୁମ୍ଭର ହେ । ସୁନ୍ଦର । ୩୦ । ଶୋଭି ରହି ଶିଳା ଦ୍ରବୀଭୂତ । କର ଉଚ୍ଛନ୍ନ ଯୁବାର ଚିତ୍ତ । ନୃପନନ୍ଦନୀର ବ୍ୟଥି ନାଶ କଲେ ଅମ୍ଭେ ଜାଣିବୁ ଏ କଥା ସତ ହେ । ସୁନ୍ଦର । ୩୧ । ଯେହୁ ଗୁଣ ବଶ୍ରାମ ମଣ୍ଡପ । କାହିଁ ସୁତ ତାଙ୍କ ଅନୁରୂପ । ଅମ୍ଭ ସଖୀ ଯେ ତୁମ୍ଭର ବୋଲଇବ କେଉଁ ସ୍ଥାନେ କରଥିଲ ତପ ହେ । ସୁନ୍ଦର । ୩୨ । ଅତ

---

୨୫ । ମିହିରମଣି—ସୂର୍ଯ୍ୟକାନ୍ତମଣି, ଭାନୁ—ସୂର୍ଯ୍ୟ, ସୂର୍ଯ୍ୟକାନ୍ତ ମଣିରେ ସୂର୍ଯ୍ୟତେଜ ପଡ଼ିଲେ ସେଥିରୁ ନିଆଁ ବାହାରେ ।

୨୬ । ଚନ୍ଦ୍ର—କର୍ପୂର, ଅନଳ—ନିଆଁ ।

୨୭ । ପଙ୍କଜାକ୍ଷୀ—ପଦ୍ମନେତ୍ରୀ, କପୋତୀ ଶବରର ଜାଲରେ ପଡ଼ିବା ଦେଖି କପୋତ ନେତ୍ର ନ ଘୁଡ଼ିପାରି ସେହି ଜାଲରେ ଯାଇ ପଡ଼ିବାରୁ ବନ୍ଧନ ହେଲା ।

୨୮ । ପବି—ବଜ୍ର, କୁଚସ୍ଥଳ—ଛାତି

୨୯ । ନାରିକେଳ—ନଡ଼ିଆ, ନଡ଼ିଆର ବାହାରଟା ଟାଣ ମାତ୍ର ଭିତର ତାର କୋମଳ ।

୩୦ । ମାର—କନ୍ଦର୍ପ, ମୂର୍ତ୍ତି—ରୂପ, ଉତପତ୍ତି—ଜାତ ।

୩୧ । ଶିଳା—ପଥର । ଦ୍ରବୀଭୂତ—ତରଳହେବା ।

୩୨ । ଗୁଣ ବଶ୍ରାମ ମଣ୍ଡପ—ଗୁଣମାନଙ୍କର ଅଟକ୍ଷ୍ଣ ନେବା ସ୍ଥଳ, ଅତ୍ୟନ୍ତ ଗୁଣବାନ, ଅନୁରୂପ—ସମାନ ।

ଅଧିକ ଜଣାଏ କିସ । କ୍ଷମା କରିବା ଜଣାଣ ଦୋଷ । କମ୍ପ ମୋହ ସ୍ତମ୍ଭ ପ୍ରତିବନ୍ଧ ଯେଣୁ ଲେଖି ନ ପାରିଲି ରାମାଈଶ ହେ । ସୁନ୍ଦର । ୩୩ । କ୍ଷିବରାଜ୍ଞି ରାମରେ ଉଚିତ । ପରମେଶ୍ୱର ଦେବତାରେ ହେବ । ଯେବେ କରୁଣା ଅରୁଣାଧରାଠାରେ ଥିବ ସେଠାକୁ ବିଜେ କରିବ ହେ । ସୁନ୍ଦର ।୩୪। ପଡ଼େ ପତଙ୍ଗ ସେନେହ ଧାଇଁ । ଯଥା ଅନଳ ତାହାକୁ ଜାଳି । ବିଜେ ନ କଲେ ଏ ପୀରତି କାରତି ଖ୍ୟାତି ହୋଇବଟି ସେରୂପରି ହେ । ସୁନ୍ଦର ।୩୫। ଲେଖି ଏ ରୂପେ ପତ୍ରିକା ବାଳା । ମନ୍ତ୍ରୀନନ୍ଦନା ହସ୍ତକୁ ଦେଲା । ପାଠକରି ଯେଣୁ ରସଗର୍ଭ ଭାଷା ଅତି ତୃପତି ହୋଇ ମୁଦିଲା ସେ । ସୁନ୍ଦରୀ ।୩୬। କରି ବନ୍ଦନ ରୁଚିର ଚୀରେ । ଜତୁ ଦେଲା ଯତନେ ଉପରେ । ଦୁର୍ଗା ମାଧବ ସୁମରି ବ୍ରହ୍ମଗୃହିକରେ ଦେଲା ଅତି ହରଷରେ ସେ । ସୁନ୍ଦରୀ ।୩୭। ନେଇ କୀର ଦ୍ୱିଜବର ଅଗେ । ସଖୀମାନେ କହିଲେ ସରାଗେ । ବେଗେ ଆଗମନ ନ କଲେ କୁମାରୀ ରାମା ନେଲାଟି ଶମନ ଭୋଗେ ହେ । ସୁନ୍ଦର ।୩୮। ଯତ୍ନେ ଯେଜଣ ଅମୂଲ୍ୟ ମୁଦ । ଦୁଇ ଦ୍ୱିଜ ହୋଇଲେ ପ୍ରମୋଦ । ମେଲଣି ହୋଇ ସାଧୁତକୁ କହିଣ ହରିଙ୍କି ମଙ୍ଗଳପ୍ରଦ ହେ । ସୁଜନେ । ୩୯ । ଯେଣି କାଞ୍ଚିଶୋଭନୀ ଉଦନ୍ତ । କାଞ୍ଚିପୁରେ ଗମନ ତୁରିତ । ଉପଇନ୍ଦ୍ରଭଞ୍ଜ ବୀରବର ଚିତ୍ତ-ଭୃଙ୍ଗ ରାମ ପାଦପଦ୍ମେ ରତ ହେ । ସୁଜନେ । ୪୦ ।

---

୩୩ । ପ୍ରତିବନ୍ଧ—ବାଧା, ରାମା ଈଶ—ସ୍ତ୍ରୀ ଶ୍ରେଷ୍ଠ, କାମ ବିକାରରେ ଅଷ୍ଟସାତ୍ତ୍ୱିକ ହୁଏ ଯଥା—କମ୍ପ ପ୍ରଭୃତି ।

୩୪ । ଅରୁଣାଧରା (ଅରୁଣ+ଅଧରା), ଅରୁଣ—ଲାଲ ସୂର୍ଯ୍ୟ, ଅଧରା-ଓଷ୍ଠୀ

୩୫ । କୀରତି—ଯଶ, ବିଜେ—ଆସିବା ।

୩୬ । ମନ୍ତ୍ରୀନନ୍ଦନା—ମନ୍ତ୍ରୀଝିଅ, ରସଗର୍ଭ—ରସପୂର୍ଣ୍ଣ, ତୃପତି-ସନ୍ତୋଷ ।

୩୭ । ରୁଚିର ଚୀର—ସୁନ୍ଦର ପାଟକନା, ଜତୁ—ଜଉ ।

୩୮ । ସରାଗେ—ସ୍ନେହରେ, ଶମନ ଭୋଗ—ଯମପୁର ଯିବା, ମୃତ୍ୟୁ ।

୩୯ । କାଞ୍ଚି ଶୋଭନୀ—ଚନ୍ଦ୍ରହାର ଶୋଭନୀ. ଉଦନ୍ତ—ବାର୍ତ୍ତା ।
ଲାବଣ୍ୟବତୀ, ନିଜର ମନର ଭାବନାକୁ ବନପୁରେ କୁଙ୍କୁମରେ ଲେଖି ସେ ପତ୍ରକୁ ଜଉମୁଦ କରି ଶୁକ ଓ ବ୍ରହ୍ମଗୃହୀ ହାତରେ ଦେଇ ପଠାଇଲା ।

## ଏକବିଂଶ ଛାନ୍ଦ

( ଚନ୍ଦ୍ରଭାନୁର ବିରହ ଓ ବର୍ଷା ବର୍ଣ୍ଣନ, ପତ୍ର ପଢ଼ିବା ପରେ
ରାମେଶ୍ୱର ଗମନ ବିସ୍ତର )

ରାଗ—ଭୈରବ

ଏଥୁଅନ୍ତେ ଦେଖେ ବୀର ହୋଇଲା ବରଷା । ବିଗ୍ରହ କରଇ ଥିଲା ଏମନ୍ତ ଭରସା ଯେ ।୧। ରସାଳସା ସଙ୍ଗେ ହେଲା ଉତ୍ପନ୍ନ ହୋଇବ । କେତେ ବେଳେ ଏ ଋତୁକୁ କଲା ଦୁର୍ଦ୍ଦିବ ଯେ । ୨ । ବୃଦ୍ଧି ହେଲା ନଦୀମାନ ଲୋକନ କରିବେ । କୋଳ ଅବଲମ୍ବ କରି ପଥିକେ ତରିବେ ଯେ ।୩। କୋଳାବଲମ୍ବନ ନାହିଁ କାମ ନଦୀ କେହୁ । ତରିବି କୋଳସ୍ୱରୂପୀ କି ଅଛନ୍ତି ବହୁ ଯେ ।୪। ସୁମନା ଚୁମ୍ବନେ ଭୃଙ୍ଗ ହୋଇ ତୋଷମନ । ଆଜ ସୁମନା ଚୁମ୍ବନ ନାହିଁ ଦରଶନ ଯେ ।୫। ଘନରସ ଯୋଗେ ବନ ଦାବାନଳ ଲିଭେ । ଘନରସ ଯୋଗ ନାହିଁ କି କରିବି ଏବେ ଯେ ।୬। ହୃଦବନ ଦାବାନଳ କେବେ ହେବ ଶାନ୍ତ । ମୋର କର୍ମ ଯେନ ହେଲା ଅପୂରୁବ ରୀତ ଯେ ।୭। ନ ଲିଭଇ ଅଧିକେ ଏବେ ଜଳଇ ଯେନ । ଶିଖୀ ନାମ ଯେ ଦେଇଛି କେକୀଙ୍କ ସେ ଧନ୍ୟ ଯେ ।୮। କାମୀ ହୃଦ ଖାଣ୍ଡବ ଦହନେ ଏ ପାଣ୍ଡବ । କଲଣି ଶିଖା ପ୍ରକାଶ ଅରମ୍ଭ ତାଣ୍ଡବ ଯେ । ୯ । ଅରେ ଶ୍ୟାମା କି କରିବି ଛୁହ ପରହାଣ । ବୋଲି ମୋହକୁ ଭଜିଲା କୁମର ସେକ୍ଷଣ ଯେ । ୧୦ ।

---

### ଏକବିଂଶ ଛାନ୍ଦ

୧ । ଭରସା—ଆଶା ।

୨ । ରସାଳସା—ସୁନ୍ଦରୀ ଲାବଣ୍ୟ ବତୀ, ସଙ୍ଗ—ଏକତ୍ର, ମିଳନ, ଦୁର୍ଦ୍ଦିବ—ମନ୍ଦ ବିଧାତା ।

୩ । ଲୋକନ—ଦେଖିବା, କୋଳ—ଡଙ୍ଗା, ଅବଲମ୍ବନ—ଆଶ୍ରୟ ।

୬ । ଦାବାନଳ—ବନଅଗ୍ନି, ଘନରସ—ଶ୍ରେଷ୍ଠ ରସ, ରତିରସ ।

୮ । ଶିଖି—ମୟୂର, ଅଗ୍ନି । କେକୀ—ମୟୂରୀ ।

୯ । ପାଣ୍ଡବ ଅର୍ଜ୍ଜୁନ ଇନ୍ଦ୍ରଙ୍କ ଅନିଚ୍ଛାରେ ଖାଣ୍ଡବବନ, ଅଗ୍ନିଙ୍କ ଦେଇଥିଲେ ସେହିପରି କାମୁକ ଲୋକର ହୃଦୟ ରୂପ ଖାଣ୍ଡବ ବନକୁ ଭୋଗ କରିବାରେ ତୁମ୍ଭେ ପାଣ୍ଡବ ସ୍ୱରୂପୀ ।

୧୦ । ଶ୍ୟାମା—ସୁନ୍ଦରୀ ସ୍ତ୍ରୀ, ପରହାଣ—ଉଦ୍ଧାର ।

ସଖୀ ମୁଖେ ଜଳ ସିଞ୍ଚି ଅଞ୍ଚଳେ ବିଞ୍ଚିଲେ । ଚେତନ ବଶେ ପଲ୍ଲବ ଶେଯେ ଶୁଆଇଲେ ଯେ । ୧୧ । ଏ ସମୟେ ପରବେଶ ବ୍ରହ୍ମଗୃହୀ କୀର । ଏ ସ୍ଥିତି ଦେଖି ଭାଷିଲେ ଧୀର ହେବା ବୀର ଯେ ।୧୨। ଜାଠ ହେ ରସିକ ଯିବା ସୁନ୍ଦରୀ ସନ୍ନିଧି । ଅଙ୍ଗେ ସାଧୁଛୁ ସେ କାମନାଶ ଅଜଷଧି ଯେ ।୧୩। ବାଳ ଶଇବାଳ ନବପ୍ରବାଳ ଅଧର । କୋମଳ ବାହୁ କମଳ ନାଳ ମନୋହର ଯେ ॥ ପ୍ରେମଜଳେ ପୂର୍ଣ୍ଣ ନାଭି ରସକୂପ ଲେଖ । ହାସ ଘନସାର ଅଜଷଧି ଈଶ ମୁଖ ହେ । ୧୪ । ଅହ୍ନର ରୋଚକ ଦ୍ରବ୍ୟମାନ ଅଛୁ ସଖି । ମାରକ୍ଷୁର ଛୁର କେତେ ଯାଇ ସିନା ଘୁଞ୍ଚି ଯେ । ୧୬ । ଦଶନ ଡାଳିମ୍ବବୀଜ ମାତୁଳଙ୍ଗ ସ୍ତନ । ବଚନ ସୀତାରେ ଅଗ ହର ନେଇ ମନ ଯେ ।୧୭। ମୃତ ପ୍ରାୟ ହୋଇଥିଲା ମହୀପତିସୁତ । ଏ ବାଣୀ ଶ୍ରବଣ ହେଲା ସଞ୍ଜୀବନୀ ମନ୍ତ୍ର ଯେ । ୧୮ । ଉଠି ବସି ଅନାଇଁଲା ଦୂତଙ୍କ ବଦନ । ନୂତନ ଅନ୍ଧ ପ୍ରାପତ ହେଲା କି ନୟନ ଯେ । ୧୯ । ଅତି ଦରିଦ୍ର ରତନ ପାଇଲାର ପରି । ଶୁକ ଶିର ଚୁମ୍ବି ଦ୍ୱିଜେ ନମସ୍କାର କରି ଯେ ।୨୦। କୃତକୃତ୍ୟ ଦୂତ ହେଲା ଘେନିଲା ଚଟାଉ । ଶୁଣି କେତେ ରସ ଜାତ ଫିଟାଇ ଫିଟାଉ ଯେ । ୨୧ । ମୁଦ ଦେଖି ମୁଦ ହେଲା ଲଭି ଲେଖା ନେଇ । ପ୍ରେମ ଅଙ୍କୁର ରୋମାଞ୍ଚ ପୂର୍ଣ୍ଣ ହେଲା ଗାତ୍ର ଯେ । ୨୨ । ସଙ୍କେତ ଜାଣିବା ପାଇଁ ମନ ଉଦବେଗ । କରକୁ ସ୍ତୁତ କରୁଛୁ ବେଗ ଭାଙ୍ଗ ଭାଙ୍ଗ ଯେ ।୨୩। ଶ୍ରବଣକୁ ଶ୍ରବଣ ଉଚ୍ଛନ୍ନ ହେଉଅଛୁ । ରସ ଅସ୍ୱାଦନକୁ ରସନା ଏକା ଇଚ୍ଛି ଯେ । ୨୪ । ଜୀବ କଣ୍ଠେ ଅନୁକୂଳ କଲା ଏହା ଭାବି । ସୀକାରରେ ଯିବ ଅସୀକାରରେ ଥିବ ଯେ । ୨୫ । କବା ବାଳା ମୁଦେ ତାଙ୍କୁ ଶଙ୍ଖେ ସୁଗ୍ରୀବ । ତାଟଙ୍କ ଚକ୍ର ଅହ୍ଲାଦ ଭଣିବ ବୋଇଲା ଯେ । ୨୬ । ସବେ ନେନେ ସ୍ତୁତ କଲେ ହୋଇବ ତୁ ମୋହ । ମୁଦ ଫିଟୁ ଦୁଃଖ ଛୁଟୁ ବର୍ଣ୍ଣ ଦେଖ ତୁହ ଯେ ।୨୭।

---

୧୩ । ସନ୍ନିଧି—ପାଖକୁ, ଶଇବାଳ—ଶିଉଳି, ଘନସାର—କର୍ପୂର, ଅଜଷଧିଈଶ – ଚନ୍ଦ୍ର ।

୧୬ । ରୋଚକ—ରୁଚିବା, ଦଶନ-ଦାନ୍ତ, ମାତୁଳଙ୍ଗ—ଟଭା, ସିତା-ଚନ୍ଦ ।

୨୨ । ମୁଦ—ବନ୍ଧପତ୍ର, ଆନନ୍ଦ,ଗାତ୍ର-ଦେହ, ରୋମାଞ୍ଚ-ରୋମ ଟାଙ୍କୁରିବା

୨୪ । ଶ୍ରବଣ କାନ, ଶ୍ରବଣ—ଶୁଣିବା, ରସନା—ଜିଭ ।

୨୬ । ତାଟଙ୍କ—କର୍ଣ୍ଣର ଅଳଙ୍କାର ବିଶେଷ ।

ପ୍ରଥମେ ତୋହ୍ଲ ପରଚେ ଯେହ୍ନ ସିନା ରସ୍ତୁଁ । ଅମ୍ଭଙ୍କ ଘାଉଣ ସୁଖ ଭୁଞ୍ଜୁ
ଜେଣୁ ଯଶୁଁ ଯେ । ୨୮ । ମୂର୍ଖଙ୍କୁ ବୁଝାଇବାର ଅତି କଷ୍ଟ ଜାଣ ।
ଜେତେବେଳେ ବଳମ୍ବ ତାହାର ଯେହ୍ନ ପୂଣ ଯେ । ୨୯ । ନବଢ଼ ନତଙ୍କ
ଏହିରୂପେ ଏହି କର । ଯେହ୍ନ ଫେଡ଼ିବ ଜଲ୍ପିବ ଏମନ୍ତ ବଗୁର ଯେ ।୩୦।
ରଙ୍ଗ ସେ ନ ଦେଲ ଅଜ ଇନ୍ଦ୍ରସୁଙ୍କ ଦ୍ୱନ୍ଦ । ଫେର ପଜିଙ୍କାକୁ ଗୃହିଁ
ହୋଇଲ ଅନନ୍ଦ ଯେ । ୩୧ । ବଚଳ ସମବର୍ତ୍ତୁଳ ତା ଅଟର ଧାଡ଼ି ।
ନାଗେଶ୍ୱର ପୁଷ୍ପ କେଶରରେ ତନୁ ଜଡ଼ି ଯେ । ୩୨ । ଶ୍ରେଣୀ ଶ୍ରେଣୀ
ହୋଇ ଶିଶୁ ମଧୁକର କି ସେ । ଫୁଲ୍ଲ ପୁଣ୍ଡରୀକେ ବସିଛନ୍ତି ରସବଶେ ଯେ ॥
ରଜତପଟେ କି ଉଙ୍କୁଟିଛି ହେମମଲ୍ଲୀ । ଫୁଲ ପତ୍ର ପଦ ବଶୀମିତ ସ୍ଥାନ
ଫୁଲି ଯେ ।୩୪। ଗୃହିଁ ଉନ୍ମାଦ ଶୁଷନ ଦହନ ଶୋଷନ । ସମ୍ମୋହନ ଯେହ୍ନ
ପଞ୍ଚ ବାଣ ପଞ୍ଚବାଣ ଯେ ।୩୫। ଚୂତ ନବମାଳିକା ଅଶୋକ ନୀଳୋତ୍ପଳ ।
ପଦ୍ମ ଯେହ୍ନ ପାଞ୍ଚ ଜାତି ଫୁଲରେ ମଞ୍ଜୁଳ ଯେ ।୩୬। ମନ୍ଦବଳେ ସେକାଳେ
ଅଲକ୍ଷ ଲକ୍ଷ୍ୟକଲ । ଏକଶର ଯାର ମହେଶ୍ୱର ନ ସହିଲ ଯେ । ୩୭ ।
ସହିଲ କେମନ୍ତେ ଏତେ ମନୁଷ୍ୟ ଶରୀରେ । ଯେହ୍ନେ ପଡ଼ି ଭସ୍ମ ସେ
ବିରହ କୃଶାନୁରେ ଯେ ।୩୮। ମନୁ ଜାତ ମାର ମନ୍ତ୍ରେ ମନ ମାରୁ ଜାତ ।
ସାତ୍ତ୍ୱିକ ତୁଳ ସିଦ୍ଧିକି ରଖିଲ ନିଯୁତ ଯେ ।୩୯। କୁମାର ପଢ଼ିଲ ପଜ
ପୁନଃ ପୁନଃ କର । ପଦ ପଦକେ ଅଶେଷ ରସ ଅଛି ପୂର ଯେ । ୪୦ ।
ଏଥୁ ଯେହ୍ନଲ ତାହାର ରସବନ୍ତ ଗୁଣ । ଦୃଷ୍ଟାନ୍ତରୁ ଜାଣିଲ ପଣ୍ଡିତା ଗୁଣ
ପୂଣ ଯେ । ୪୧ । ସଖୀମାନେ ଲେଖିବାରୁ ଜାଣିଲ ଚତୁରୀ । ସଙ୍କେତରୁ
ଜାଣିଲ ସେ ବିରହେ ଅସ୍ଥିରା ଯେ । ୪୨ । ଶିରେ ଉରେ ଲଗାଇଲ ପୁନଃ
ପୁନଃ ପଜ । କହୁ କହୁ ସାନ୍ତ୍ୱନା ହୋଇଲ ତେଣେ ଗଜ ଯେ । ୪୩ ।

---

୩୨ । ବଚଳ—ପରସ୍ପର, ସମବର୍ତ୍ତୁଳ—ସମାନ ଗୋଲ ।
୩୩ । ଶିଶୁମଧୁକର—ଭଅଁର ଛୁଆ, ଫୁଲ୍ଲ—ଫୁଟିଲ, ପୁଣ୍ଡରୀକ—ଧଳାପଦ୍ମ ।
୩୪ । ରଜତ ପଟେ - ରୁପା ପଟରେ, ହେମମଲ୍ଲୀ—ସୁନାମଲ୍ଲୀ ।
୩୬ । ନବମାଳିକା—ନଅଳୀ, ନୀଳୋତ୍ପଳ—ନୀଳକଇଁ ।
୩୭ । ମହେଶ୍ୱର—ମହାଦେବ ।
୩୮ । କୃଶାନୁ—ଅଗ୍ନି ।
୩୯ । ସାତ୍ତ୍ୱିକ—ଉଚ୍ଚଭାବ, କାମଭାବ ଜାତହେବା ।
୪୦ । ଦୃଷ୍ଟାନ୍ତରୁ—ଉପମାରୁ, ପଣ୍ଡିତା—ବିଦ୍ୟାବତୀ ।
୪୨ । ଅସ୍ଥିରା—ଅସ୍ଥିର ।

ସମ୍ଭାବନା କଲ ଗାଜକୁହିଁ ଶାନ୍ତ କଲ । ଅଙ୍ଗେ ଅଙ୍ଗେ ଭାଗ ନେଲେ ଯେଣ୍ଟା ଭାଗ ଦେଲ ଯେ । ୪୪ । ନେକ ଦେଖି କର୍ଣ୍ଣ ଶୁଣି ମନ ଘେନି ତୋଷ । କର ଫେଇ ମୁଖପିଇ ଯିବ ଭୟ ନାଶ ଯେ । ୪୫ । କହେ ମନ୍ତ୍ରୀ ପୁରୋହିତ ସୁତ ମୁଖ ଗୁହିଁ । ଶିବଗଣି କ ଯିବାକୁ ପ୍ରିୟା ଅଛୁ ଲହି ଯେ ॥ କ ଜପାୟ କର ଯିବା ପୁଣି ଦେଶ ଦୂର । ଶୁଣି ସେ କହିଲେ ଅଛୁ ତହିଁକି ବଗୁର ଯେ । ୪୭ । ଅମ୍ଭେ ସମ୍ମତ କରାଉ ସିନା ଦଣ୍ଡଧାରୀ । ଏ କେଉଁ କଥା ସମ୍ମତ କଲ ଯେବେ ନାରୀ ଯେ ।୪୮। ପୃଚ୍ଛେ ବୀର ଦୂରେ ଅଜ କ କହୁଛୁ ଯୋଷା । ବୀର କହେ କ କହିବ ଶୁଣ ତାର ଦଶା ହେ । ୪୯ । ତର ତର ଭ୍ରମ୍ଭ ଭେଟେ କ କାତରତର । ପର ପରତରୁ ଦୁଃଖ ସରୁ ଶର ଶର ଯେ ॥ ଜର ଜର ତନୁ ବାଜ ଫୁଲଶର ଶର । ଥର ଥର ହୋଇ ବୋଲେ କଷ୍ଟ ହର ହର ଯେ । ୫୧ । ବର ବରନାକୁ ଦହେ ସୁଧାକର କର । ସାର-ସାରସପତର ଗନ୍ଧସାର ସାର ଯେ । ୫୨ । ମାର ମାରଣରୁ ପୂରାଇଛୁ ଗାର ଗ ର । ବାର ବାର ପ୍ରଳାପ ଅନାଇଁ ତାର ତାର ଯେ ।୫୩। ଶରବରହ ନାଶ ରସନାଥର ଧୀର । ନ ଜୀଇଁବ ଅଜ ହେଲେ ବିଳମ୍ବ ଯିବାର ଯେ ॥ ଏ ବଚନେ ଛଇଲ ହୋଇଲ ଛଳଛଳ । ଅଶ୍ରୁ ପୂରାଇ ନୟନ କଲ ଥନ ଥନ ଯେ । ୫୫ । ପୁଣି ଶୁଭାଇ ପଢ଼ିଲ ସୁନ୍ଦରୀ ସନ୍ଦେଶ । ପଦେ ପଦେ ଅର୍ଥକର ଘେନିଲ ସୁରସ ଯେ । ୫୬ । ସେ ପଦ୍ମ ହୋଇଲ ଜାଣ ବିକଶିତ ପଦ୍ମ । ରୋଲମ୍ବ ହୋଇ କୁମାର ମନେ କଲ ସଦ୍ମ ଯେ । ୫୭ । ପ୍ରତକ୍ଷଣେ ଶୁକ ବ୍ରହ୍ମଗ୍ରୀ ଗ୍ରମ କଥା । କହିବାରେ ଆତୁର ଅଧିକ'ଧିକ ବ୍ୟଥା ଯେ । ୫୮ । ଫାଲ୍‌ଗୁନ ଫାଲ୍‌ଗୁନ ପୁନଃପୁନଃ ଜପ କରେ । ଦୁଃଖ-ଭ୍ରଷ୍ଟ ନାଶ ହୋଇବାରେ ସେ ବଗୁରେ ଯେ । ୫୯ । ସ୍ମୃତ କରେ

---

୪୮ । ସମ୍ମତ—ସ୍ୱୀକାର ।
୪୯ । ଯୋଷା—ସ୍ତ୍ରୀ, ଦଶା—ଅବସ୍ଥା ।
୫୦ । କାତରତର—ଅତ୍ୟନ୍ତ ଅସ୍ଥିର, ଶର—ଅତ୍ୟନ୍ତ, ଶର—ବିନାଶ ।
୫୧ । ହରହର—ନାଶକର ।
୫୨ । ସୁଧାକର—ଚନ୍ଦ୍ର, କର—କିରଣ, ସାର ସାର ସପତର—ଭଲ ପଦ୍ମପତ୍ର, ଗନ୍ଧସାର—ଚନ୍ଦନ ।
୫୩ । ପ୍ରଳାପ—ଅକ୍ଷେପ, ବାଜେ ରକମ ଗପିବା ଓ ମୋହିଯିବା ପ୍ରଭୃତି ।
୫୭ । ବିକଶିତ—ଫୁଟିଲ, ରୋଲମ୍ବ—ଭ୍ରମର, ସଦ୍ମ—ଘର ।
୫୯ । ଦୁଃଖଭ୍ରଷ୍ଟନାଶ—ଭ୍ରଷ୍ଟ ନାଶ କରିବାକୁ ଶରଶଯ୍ୟା କରିଥିଲେ । ସେହିପରି ଲାବଣ୍ୟବତୀ ମଦନ ଶରରେ ବ୍ୟଥିତ ।

ଶିବସ୍ୱାମି ପଦ କର ସିଦ୍ଧି । ସେହିଠାରେ ଦର୍ଶନ କରାଇ ଭାବନାଧି ଯେ ।୬୦। କେଉଁ ମାସେ କେଉଁ ଦିନ କ୍ଷୟ ସେ ଲେଖଇ । ବୃଦ୍ଧି ନୋହିବାକୁ ଚଣ୍ଡୀକବଚ ଗୁଣାଇ ଯେ ।୬୧। ବାଳୀପ୍ରିୟ ହୋଇ କର ବାଳବିନାଶନ । ହରପ୍ରିୟ ହୋଇ କର ନୁହେ ଶିରଚ୍ଛେଦନ ଯେ । ୬୨ । ସ୍ୱୟଂ ଚକ୍ରଧର ଚକ୍ର ସୁତହତକାରୀ । ସେ ରାମଚନ୍ଦ୍ର ଚରଣ ଶରଣରେ ସୁମର ଯେ । ୬୩ । କହେ ଉପେନ୍ଦ୍ର ଭଞ୍ଜ ବୀରବର ରସ । ନୃପସୁତ ଉଚ୍ଛନ୍ନକାରକ ଛାନ୍ଦ ଶେଷ ଯେ । ୬୪ ।

---

## ଦ୍ୱାବିଂଶ ଛାନ୍ଦ

(ଲାବଣ୍ୟବତୀର ବିରହ)

ରାଗ—କାମୋଦୀ

ଦେଖି ନବକାଳିକା ବକାଳିକାମାଳିକା ଅଳୀ କାଳିକାକାନ୍ତ ସ୍ମର । ରକ୍ଷା କେମନ୍ତେ କର କରିବା ମତ୍ତକରୀ-ଗତିକି ଏମନ୍ତ ବିଚାର ସେ ।
ସହଚରୀ । ଭାବେ ବଞ୍ଚିଲେ ଏ କାଳକୁ । କଥା ଥିବ କାଳ କାଳକୁ ।
ଏବେ ତ କ୍ଷୀଣଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭୁ ବଲ୍ଲଭ ମେଳକୁ ରେ ॥

---

୬୨ । ବାଳୀପ୍ରିୟ—ସ୍ତ୍ରୀପ୍ରତି ଅସକ୍ତ, ବାଳ ବିନାଶନ—ବାଳିବାନର ନାଶକ, ହରପ୍ରିୟ—ମାଙ୍କଡ଼ ପ୍ରିୟ, ହର—ହରଣ କର, ଅସୁର ।
୬୩ । ଚକ୍ରସୁତ ହତକାରୀ—ଚକ୍ରବର୍ତ୍ତୀ ରାବଣ ପୁତ୍ରକୁ ମାରିଥିଲେ ।

---

## ଦ୍ୱାବିଂଶ ଛାନ୍ଦ

୧ । ନବକାଳିକା—କଳାମେଘ, ବକାଳିକାମାଳିକା——ବଗସମୂହ, ଅଳୀ—ସଖି, କାଳିକାକାନ୍ତ—କାଳୀଙ୍କ ସ୍ୱାମୀ, ମହାଦେବ, କେମନ୍ତ କର—କେଉଁ ଉପାୟରେ, ମତ୍ତକରୀଗତି—ହାତୀଗମନା, ଲାବଣ୍ୟବତୀ କ୍ଷୀଣ—ଅଳ୍ପ, ବଲ୍ଲଭମେଳ—ସ୍ୱାମୀସଙ୍ଗ। ସଖିମାନେ କଳାମେଘରେ ଧଳାବଗ ମାଳପରି ଉଡ଼ୁଥିବାର ଦେଖି ବିଚାର କଲେ, ଏହା ଦେଖିଲେ କାମ ଜାତ ହେବ, ଗଜଗମନା ଲାବଣ୍ୟବତୀ ବିରହରେ ଅମ୍ଭେମାନେ ଅସ୍ଥିର, ତାଙ୍କୁ କିପରି ରକ୍ଷା କରିବା । ସେ ସ୍ୱାମୀସଙ୍ଗ ନ ପାଇବାରୁ ବଡ଼ ଅସ୍ଥିର। ଏ ସମୟରେ କିଛି ଉପାୟ କଲେ, ଏ କଥା ସବୁଦିନକୁ ଥିବ । ଏବେ ଦିନ ଶ୍ରେଷ୍ଠ ପୁଣି ବର୍ଷା ।

ହତ ଅନମାନଙ୍କ ସତ କାମିଜନଙ୍କ ଅହି ପରା ଅହିତ ଏହି । ହତ କୃଶାନୁ ସାନୁମାନରୁ ଭାନୁଭାନୁ-ତାପରୁ ନିସ୍ତରିଲ ମହୀ ରେ । ସହଚରି । ବିରହାନଳ ହୃଦସ୍ଥଳେ । ଜଳେ ସେ ହତ ନୁହେ ଜଳେ । କରୁଛି ଜାତ ଜାତବେଦଙ୍କୁ ସତ ଶତହ୍ରଦା-ଛଳରେ ଘନକୋଳେ ରେ ।୨।

ଯେଉଁ ସୁନ୍ଦରୀ ଦରୀଭୂତରୁ ଗଣ୍ଡ ଧରି ଧରଣୀଶୟନ କରନ୍ତି । କଣ୍ଠେ ଜୀବନ ବନପୂର୍ଣ୍ଣ ନୟନ ଘନ ଘନ ନିଃଶ୍ୱାସକୁ ଲଭୁଛି ରେ । ସହଚରି । ପଚାରି ଆପଣା ଅଙ୍କରି । ଲୋଡ଼ିଲେ ନ ଲଗାଇ କରି । ଯେଣୁ ଏଡ଼େ ଦୁର୍ବଳ ଝଞ୍ଜାନିଳ ପ୍ରବଳ ଜଣାଯାଇଛି ଯତ୍ନ କରି ରେ ।୩।

---

୨ । କାମିଜନ—କାମୁକ ଲୋକ, ଅହି—ସାପ, ଅହିତ—ଅମଙ୍ଗଳ, ହତ—ନାଶ, କୃଶାନୁ—ଅଗ୍ନି, ସାନୁମାନ—ପର୍ବତ, ଭାନୁ—ସୂର୍ଯ୍ୟ, ଭାନୁ—କିରଣ, ତାପ—ତାତି, ବିରହାନଳ—ବିରହ ଅଗ୍ନି, ଶତହ୍ରଦା—ବିଜୁଳି, ଜାତବେଦ—ଅଗ୍ନି ।

ବର୍ଷା ସମସ୍ତ ଅନ୍ୟମାନଙ୍କ ସୁଖକର, ମାତ୍ର କାମୁକଲୋକଙ୍କ ସର୍ପପରି ଅମଙ୍ଗଳ । ପର୍ବତରେ ଯେଉଁ ନିଆଁ ଲାଗିଥାଏ ଓ ସୂର୍ଯ୍ୟଙ୍କ ପ୍ରଖର କିରଣରେ ପୃଥିବୀ ବ୍ୟସ୍ତ ହୋଇଥାଏ, ଏ ବର୍ଷାଯୋଗୁଁ ସେ ସବୁ ନିବାରଣ ହୁଏ, ମାତ୍ର ହୃଦୟକୁ ଯେଉଁ ବିରହଅଗ୍ନି ପୋଡ଼େ ସେ ତ ପାଣିରେ ଯିବ ନାହିଁ, ପୁଣି ମେଘରେ ଯେ ବିଜୁଳି ଜାତ ହୁଏ, ସେପରି ଲାବଣ୍ୟବତୀ ହୃଦୟରେ ବିଜୁଳିରୂପ କାମ ଝକ୍‌ଝକ୍ କରି ବିରହଅଗ୍ନି ଉତ୍ପାଦନ କରୁଅଛି ।

୩ । ଦରୀଭୂତରୁ—ଭୟରୁ, ଗଣ୍ଡ ଧରି—ଗାଲରେ ହାତଦେଇ, ଧରଣୀ ଶୟନ—ମାଟିରେ ଶୋଇବା, ଜୀବନ—ପ୍ରାଣ, ଜୀବନ—ପାଣି, ଲୋତକ, ଝଞ୍ଜାନିଳ—ପ୍ରଖର ପବନ ।

ଲାବଣ୍ୟବତୀ କାମାତୁରରେ ଗାଲରେ ହାତଦେଇ ମାଟିରେ ଶୋଇଛି, ତାର ପ୍ରାଣ ମଧ୍ୟ କଣ୍ଠାଗତ, ଆଖି ଲୁହରେ ପୂର୍ଣ୍ଣ, ଘନଘନ ନିଃଶ୍ୱାସ ବାହାରୁଛି, ତା ଦେହରେ ହାତ ବୁଲାଇଲେ, ଜୀବ ଅଛି କି ନାହିଁ ଜଣାଯାଉ ନାହିଁ, ସେ ଏଡ଼େ କ୍ଷୀଣା ହୋଇଛି, ଝଞ୍ଜାପବନ ବହିଲେ, କାଳେ ଅନିଷ୍ଟ ହେବ, ତେଣୁ ଯତ୍ନ କରିବା ଆବଶ୍ୟକ ।

ଘୋଟୁଁ ଘଟକୁ ମାର ତନ୍ତ୍ରେ ଘଟ କୁମାର ପିକଡାକକୁ ଶୁଣି ଯେହ୍ନ । ଏ ନାଦ ସହ୍ୟ ସହ୍ୟ ନୋହିବ ମହେ ବିରହ ବହ୍ନିବତୀ ଜୀବନେ କେହ୍ନେ ରେ । ସହଚରି । ସ୍ତନିତବେଳେ କର୍ଣ୍ଣେ କର । ଦେବା ତା ଏ ଉପାୟ କର । ପୟୋଧରକୁ ଧରି ବିଗୃହି ପୟୋଧର ଗ୍ରାସେଟି ପୁରୋଦରେ ଭରି ରେ ।୪।

କରି ପିକକୁ ମୂକ ମକମକ ଶାମୁକ କାମୁକ ଚମକକୁ ନିତ୍ୟ । ରାମା ହେବାକୁ ଶିବା ଶିବାଗଣ ପୋଷିବା ଶିବାଙ୍କୁ ମନାଇବା ବ୍ରତେ ରେ । ସହଚରି । ତୋଷି ଖଣ୍ଡପରଶୁଧର । ନିତ ଲିପାଅ ସୁଧା ପୁରି । ଧନକୁ ଉପଗୂହି ଧନକୁ କି ବିଗୃହି ପେଷ ତା ନ ପଗୃହି ଗୃହ ରେ ।୫।

ଦେଖ କେକୀକଳାପ ନାଚେ ଟେକୀ କଳାପ ବିପ୍ରାଳାପ କରୁଛି କେତେ । ଏଥର କି ଲବଧ କରି ଅବଧ ବଧ ବ୍ୟାଧକୁ କହିବା କି ହେତେ ରେ । ସହଚରି । ପର୍ଣ୍ଣବାଡ଼ ଲଗୁଡ଼ ପାଶ । ଘେନି କଟନ୍ତୁ ବେଗେ ନାଶ । କରି ଯୁଆ ପତ୍ର ଗୋତ୍ର ବ୍ୟଜନ ଆତପତ୍ର ଦେବଙ୍କୁ ଦେବାକୁ ମନାସ ରେ ।୬।

---

୪ । ଘୋଟୁ—ଘୋଟିବାରୁ, ଘଟକୁ-ଦେହକୁ, ମାର-କନ୍ଦର୍ପ, ଘଟକୁମାର—ଅଗସ୍ତି, ପିକଡାକ—କୋଇଲି ଧ୍ୱନି, ସ୍ତନିତ—ମେଘ ଗର୍ଜ୍ଜନ, ପୟୋଧର—ମେଘ, କୁଚ, ଧରି—ପର୍ବତ, ପୁରୋଦରେ—ଘର ଭିତରେ । କନ୍ଦର୍ପ ଦେହକୁ ଭେଦିବାରୁ ପିକ ଡାକକୁ ବଜ୍ର ପରି ମଣୁଅଛୁ, ତେଣୁ ବଜ୍ରପଡ଼ିଲେ ଅଗସ୍ତିଙ୍କୁ ଡାକିଲେ ନିବାରଣ ହୁଏ । ଏପରି ଶବ୍ଦ ଶୁଣି ଅତ୍ୟନ୍ତ ବିରହୀ ହେତୁ ପ୍ରାଣରେ ବହିବ କିପରି, ମେଘ ଶବ୍ଦ ବେଳେ କାନରେ ହାତ ଦିଅ, କୁଚ ପର୍ବତକୁ ଚାଳେ ଗ୍ରାସିବ ପୁର ଭିତରକୁ ନେଇ ଗୃହ୍ନ ।

୫ । ବର୍ଷା ଦିନରେ କୋଇଲି ଶବ୍ଦ କରେ ନାହିଁ ଏବଂ ଶାମୁକ କି ଶାମୁକାର ମକ୍ ମକ୍ ଶବ୍ଦରେ କାମଜାତ ହୁଏ । ରାମା-ସୁନ୍ଦରୀ, ଶିବା-ମଙ୍ଗଳଯୁକ୍ତା, ଶିବାଗଣ—ବିଲୁଅସବୁ, ଶିବା-ପାର୍ବତୀ, ଖଣ୍ଡପରଶୁଧର-ମହାଦେବ, ସୁଧା—ଚୂନ, ଧନ—ସଖୀ ।

୬ । କେକୀକଳାପ—ମୟୂରମାନେ, କଳାପ-ପୁଚ୍ଛ, ବିପ୍ରାଳାପ-ବିରୋଧ ଉକ୍ତି, ପର୍ଣ୍ଣବାଡ଼-ପତ୍ରର ବାଡ଼, ବାଣୁଆମାନେ ତାଳପତ୍ର ବାଡ଼ ଭଳି କରି ତା ପଛରେ ଲୁଚିଲୁଚି ଯାନ୍ତି, ଲଗୁଡ଼-ଠେଙ୍ଗା, ପତ୍ର ଗୋତ୍ର —ପକ୍ଷୀ ଓ ଚନ୍ଦ୍ରିକା ସବୁ, ବ୍ୟଜନ-ବିଚଣା, ଆତପତ୍ର-ଛତା, ମନାସ-ମାନସିକ କର ।

ତୁହିଁ ଏଥେଁ ଉଦାସ ଦାସ କରିବା ଦାସ ଅଣୁ ସେ ପାଶେ ପାଶେ ଧର । ତାକେ କାଳକଣ୍ଠକ ବିରହିଣୀକଣ୍ଠକ ଯାଉ ତା କଡ଼ପାଡ଼ ସର ରେ । ସହଚରି । ଉପାଡ଼ିବା ପୁଷ୍ପଲତାକୁ । ଶମନା ନ କରନ୍ତୁ ତାକୁ । ସୁମନାରେ ସୁମନାଲୋଭୀ ଭୃଙ୍ଗ ସୁମନା ହୋଇ ତାପିବେ ସୁମନାକୁ ରେ । ୭ ।

ମରାଳ ମାନସକୁ ଯାଉଛି ମାନସକୁ ଏ କଥା କେବେ ନ ଅଣିବ । ଯାର ନାହିଁ ଜୀବେଶ ତାର ଜୀବ ଜୀବେଶ ଦେଶରେ ପ୍ରବେଶ କରିବ ରେ । ସହଚରି । ପକ୍ଷୀ ପକ୍ଷରୁ ଉଡ଼ିଯାଇ । ଛାଡ଼ିଦେବା ଉପାଇ ନାହିଁ । ଅସ୍ମ ନେତ୍ରସମ୍ପତ୍ତି ପତି ସଙ୍ଗତି ଗତି ପାଇବାଯାଏ ଥାଉ ରହି ରେ । ୮ ।

ଜାତ ହୋଏ ସ୍ଫୋଟକ ଯେ ସ୍ପୃଷ୍ଟକ ହାଟକ ତନୁରେ ଲାଗିଲେ ଚନ୍ଦନ । ଏ ମହୋଜ୍ଜ୍ୱଳ ଜଳ ଜ୍ୱଳନ ଜନ୍ମସ୍ଥଳ ଛୁଇଁଲେ କରିବ ଦହନ ରେ । ସହଚରି । ଏହାକୁ ଯତ୍ନ କରଥିବା । ଭ୍ରମରେ ଚତ୍ୱରେ ନ ନେବା । ହତ ଢ଼ଶୀର ବାଟି ଜଳ ପର୍ଯ୍ୟନ୍ତ ବାଟି ଜଳାଇବା ନିଜ ନାଶିବା ରେ । ୯ ।

ଏ ଦୁରନ୍ତ ଦର୍ଦ୍ଦୁର ଚେତନା କରେ ଦୂର ଉଦୁର କାହିଁ ଅନେ ପଡ଼ି । କରିମକୁ ଏହାର ହରହାର ଆହାର ଗର୍ଜ୍ଜି ଜଳ କିବା ଲୋଡ଼ି ରେ । ସହଚରି । ଅରଜ୍ଞଅଛି ଏ ଉତ୍ସବ । ଗରଜି ଗରଜ ମରିବ । କେ ହେବ ଏ ବରଦ ହୋଇ ସିଂହ ଶରଦ-ନୀରଦ ଦ୍ୱିରଦ ଭାଙ୍ଗିବ ରେ । ୧୦ ।

---

୭ । ଉଦାସ—ଅମନ ଯୋଗୀ, ଦାସ—ଚଡ଼େଇ ଧରା, ଦାସ କରିବା—ବଶ କରିବା, କାଳକଣ୍ଠକ—ଡାହୁକ, ସୁମନା—ସ୍ତ୍ରୀ, ସର୍ପ, ସୁମନ-ଲୋଭୀ—ଫୁଲରେ ଲୋଭ ଯାହାର, ଭୃଙ୍ଗ—ଭଅଁର, ସୁମନା—ଖୁସି, ତାପିବେ—କଷ୍ଟଦେବେ, ସୁମନା—ଲାବଣ୍ୟବତୀ, ଭ୍ରମର ଶବ୍ଦରେ ମଧ୍ୟ କାମ ଜାତ ହୁଏ ।

୮ । ମରାଳ—ହଂସ, ମାନସ—ମନ (ମାନସରୋବର) ଜୀବେଶ—ଯମ, ସ୍ୱାମୀ । ହଂସ ମାନସରୋବରକୁ ଯାଏ ମାତ୍ର ଏଠାରେ ହଂସ ବିରହିଣୀଙ୍କ ମନକୁ ନେଇ ଯମପୁରକୁ ଯାଉଛି ।

୯ । ସ୍ଫୋଟକ—ଫୋଟକା, ହାଟକତନୁ—ସୁନାଦେହୀ, ଜ୍ୱଳନ—ଅଗ୍ନି, ମହୋଜ୍ଜ୍ୱଳ—ଅତ୍ୟନ୍ତ ଉଜ୍ଜ୍ୱଳ, ଜାଆଁ ସମୁଦ୍ରରୁ ଜନ୍ମ, ତେଣୁ ଏ ପାଣି ସମୁଦ୍ରରୁ ଆସିଥିବାରୁ ଏଥିରେ ଦାହିକା ଗୁଣ ଅଛି, ଚତ୍ୱର—ଅଗଣା, ଢ଼ଶୀର—କେଶାଚର, ବାଟି—ଘୋର ଓ ବାଟିବା ।

୧୦ । ଦୁରନ୍ତ—ଦୁଷ୍ଟ, ଦର୍ଦ୍ଦୁର—ବେଙ୍ଗ, ହରହାର—ସର୍ପ, ଉଦୁର—ବଜ୍ର, ବରଦ—ବରଦାତା, ସିଂହଶରଦ—ଶରଦକାଳ ସିଂହପରି ହେଲି, ମେଘରୂପ ହାତୀଙ୍କ ନାଶ କରିବ ।

ଏ କାଳ ଏକା ଏକାକୀରେ ପକାଇ ଉଡ଼ା ! ବଦ୍ଧ୍ୟଫଡ଼କା ଅଛୁ ବହି । କା କଲେ ଗିରିଟେକା ଶତ୍ରୁ ଚମକ ଟେକା କରକା ମାରୁଛୁ ତୁହାଇ ରେ । ସହଚରି । ଏହି କାମନା ପଡ଼ିରେଷେ । ଏହା ଭିଆଇଅଛୁ ରୋଷେ । ଯଥା ନୀପଜାଳକ ତଥା ପରପୃଲକ ପୂରୁ ସୁତନୁ ତନୁଦେଶେ ରେ । ୧୧ ।

ଯେମନ୍ତେ ନୀରଧାର ତେମନ୍ତେ ନିରନ୍ତର ନୀର ନୀରଜନେତ୍ର ବହୁ । ଯଥା ପଙ୍କିଲା ମହୀ ମହିଳାଗଣ୍ଡ ସେହି ପ୍ରତି ପ୍ରତିପଦନରେ ହେଉ ରେ । ସହଚରି । ପିକ ପ୍ରାୟ ବାଣୀ ନ ଫିଟୁ । ଅନ୍ଧାର ପ୍ରାୟ ଚିନ୍ତା ଘୋଟୁ । ମାର ମାର୍ଗଣ ଗଣ ପ୍ରହାରେ ପୁଣ ପୁଣ ମାଳତୀ ସଙ୍ଗେ ହୃଦ ଫୁଟୁ ରେ ।୧୨।

ହେଉ କାନ୍ତି ଗୁପତ ସପତହରି ବତ ପଟ୍ଟତବତ ହେଉ ଜ୍ଞାନ । ରହିଛୁ ସବୁଠାର ଏହି ପ୍ରକାରେ ଠାର ଧୈର୍ଯ୍ୟ କୁଠକୁଠାର ଘନ ରେ । ସହଚରୀ । ଯେତେ ଉପାୟ ଭାଳିବଇଁ । ସେ ତରିତ କାଳୁ ନୁହଇ । ବୁଡ଼ି ସରିତ ତୁରିତକୁ ଘେନ ବାରିଭ ନୃପତି ଅନ କି କରଇ ରେ । ୧୩ ।

ତେ ପୁଣି ବେଗେ ଯିବ ଜୀବଧବେ କାହିଁବ ଜୀବଧବେ ନେଉଛୁ ଜୀବ । କେଉଁ କାର୍ଯ୍ୟ ଭଜିବ ପଛେ ଯେମନ୍ତେ ଯିବ ନ ଦେଖିବ ମୁଖ-ରାଜୀବ ରେ । ସହଚରି । ତୁମ୍ଭେ ଚନ୍ଦ୍ର ସେ ଜୀବଞ୍ଜୀବ । ଶୁଣିବା ଉପାୟ ସର୍ଜିବ । ଜଡ଼ରେ ଥିଲେ ଜୀବ ଏ ଶୁଭ ଅବଜୀବ ଅସିବା ବିଳମ୍ବ ତେଜିବ ରେ । ୧୪ ।

---

୧୧ । ବଦ୍ଧ୍ୟଫଡ଼କା—ବଜ୍ରଲମ୍ପଟକ, ଗିରିଟେକା—ଶ୍ରୀକୃଷ୍ଣ, କରକା—କୁଆପଥର, ତୁହାଇ—ଘନଘନ, ନୀପଜାଳକ—କଦମ୍ବଫୁଲ ସବୁ, ପରପୃଲକ—ଦେହମ ଠାକୁରିବା, ସୁତନୁ—ସୁନ୍ଦର ।

୧୨ । ନୀର—ପାଣି, ନୀରଜ—ପଦ୍ମ, ପଙ୍କିଳା—କାଦୁଅ, ମହିଳା— ଶ୍ରେଷ୍ଠ ସ୍ତ୍ରୀ, ମାର—କନ୍ଦର୍ପ, ମାର୍ଗଣ—ଶର, ଗଣ—ସମୂହ ।

୧୩ । କାନ୍ତି—ବର୍ଣ୍ଣ, ରଙ୍ଗ, ସପତହରି—ସୂର୍ଯ୍ୟ, ପଟ୍ଟକୁ ମେଘ ଘୋଡ଼ାଏ ଏଠାରେ ସେହିପରି ମନେକର, କୁଠ—ଗଛ, ଘନ—ମେଘ, କୁଠାର କୁରାଢ଼ୀ, ସରିତ—ନଈ, ନୃପତି—ରାଜା ସମୁଦ୍ର ( ଚନ୍ଦ୍ରଭାନୁ ) ।

୧୪ । ଜୀବଧବ—କାମ, ଜୀବଧବ—ସ୍ୱାମୀ, ମୁଖରାଜୀବ—ମୁଖପଦ୍ମ, ଜୀବଞ୍ଜୀବ ଚକୋର, ଜୀବ—ବୃହସ୍ପତି ।

ପୁଣ ପୁରବଲ୍ଲି ଏହାକାଳେ ହା ସବେ ତହିଁ ନ ସହ ସୂତ୍ରୀ ଗଲେ ଧାଇଁ । ଅଚ୍ଛ କି ନାହିଁ ତୂଳାକରଣେ ପ୍ରାଣ ତୁଳା ଜାନୁବର୍ତିକ୍ଲା ନାସେ ଦେଇ ସେ । ସହଚରି । ଶବପରିତୁଳା ପ୍ରାପ୍ତ ଗୃହିଁ । ଟେକ ଫୁଙ୍କିଲେ କର୍ଣ୍ଣ ଦୁଇ । ଅର୍ଣ୍ଣ ପର୍ଣ୍ଣରେ ସିଞ୍ଚି ଶୀର୍ଣ୍ଣକଟିକ ବାନ୍ଧି ଲଗାଟେ ଚନ୍ଦ୍ର ଚୂର୍ଣ୍ଣ ଦେଇ ସେ । ୧୫ ।

ଚଣ୍ଡୀରଷ୍ଟଖଣ୍ଡନେ ଚଣ୍ଡୀ ମନାସି ମନେ ଗ୍ରହଶାନ୍ତିକ ବସ୍ତୁରଲେ । ପୀତବସନ କାର୍ତ୍ତସ୍ୱରବନ୍ଧୁତ ଅର୍ତ୍ତିସ୍ୱରେ ଭୂସୁରେ ଉତ୍ସର୍ଗିଲେ ସେ । ପ୍ରାଣସହି । ଭାଲନ୍ତ ପାଇ ଅଜ ଜୀବ । ଅମ୍ବ ଜରକୁ ଅଜଜବ । ଚେତେଚେବେଳେ ଚେତନ ପାଇ ସୁମାରତନ ଧୀରେ ବୋଇଲା ଶିବ ଶିବ ସେ । ୧୬ ।

ସଖୀ ଏମନ୍ତ ମତ୍ତକାଶିନୀଚଉହିତ ନମିତ୍ତ ବଚନ ରଚତ । ପ୍ରସ୍ଥାନ କାନ୍ତ କାନ୍ତ କଲେ ଜଦନ୍ତ ଦନ୍ତଶୋଭନୀ କହିଲେ ସାଧୁତ ରେ ସହଚରି । ରହିଛନ୍ତି କେରଳଦେଶେ । ନର୍ମଦାନଦୀ ବୃଦ୍ଧି ବଶେ । ଗୁଣମଣି କି ଗୁଣେ ସନ୍ତାପିତ ଦ୍ୱିଗୁଣେ ଫଗୁଣେ ହେବେ ପରବେଶରେ ।୧୭।

ଏହୁ ପ୍ରମାଣ ମାଣବକମୃଗାକ୍ଷୀ ପ୍ରାଣ ପ୍ରାଣକୁ ଚେତେଦନ ରଖ । ସଂପ ଅନୁରାଗରେ ନାହିଁ କେଉଁ ନଗରେ ସେହି ନାଗରେ ସାର ଲେଖ ରେ । ସହଚରି । ମହତ ଯେ ଅଟନ୍ତି ସେହି । ତୋ ହତ ଶୁଣିବାରୁ ସହି । ମରଣକୁ ବରଣ-କରବେ ରଣରଣ-ବାଣଗଣତାପକୁ ବ ହି ରେ । ୧୮ ।

---

୧୫ । ତୁଳା—ଛଳନା, ତୂଳା—କପାତୁଳା, ଜାନୁବର୍ତିକ୍ଲା-ଟୋଲ୍‌ଜଙ୍ଘ-ବଶିଷ୍ଟା, ଅର୍ଣ୍ଣ—ଜଳ, ପର୍ଣ୍ଣ—ପତ୍ର, ଶୀର୍ଣ୍ଣକଟି—ସରୁଅଣ୍ଟା, ଚନ୍ଦ୍ର-ଚୂର୍ଣ୍ଣ—କର୍ପୂରଗୁଣ୍ଡ ।

୧୬ । ଚଣ୍ଡୀରଷ୍ଟ-ଅତ୍ୟନ୍ତକଷ୍ଟ, ପୀତବସନ-ହଳଦିଆ ଲୁଗା, କାର୍ତ୍ତସ୍ୱର—ସୁନା, ଅର୍ତ୍ତିସ୍ୱର-ଦୁଃଖଶବ୍ଦ, ଭୂସୁରେ-ବ୍ରାହ୍ମଣମାନେ, ଉର-ଛାତ, ଶିବ—ଶୁଭ ଓ ମହାଦେବ ।

୧୭ । ମତ୍ତକାଶିନୀ-ସୁନ୍ଦରୀ ସ୍ତ୍ରୀ, ହିତ-ମଙ୍ଗଳ, କାନ୍ତ-ସୁନ୍ଦର, କାନ୍ତ-ପତି, ଜଦନ୍ତ-ବାର୍ତ୍ତା, ଦନ୍ତଶୋଭନୀ-ସୁଦନ୍ତୀ, ବୃଦ୍ଧି-ବଢ଼ି, ସନ୍ତାପିତ-ଦୁଃଖିତ ।

୧୮ । ପ୍ରମାଣ-ଠିକ, ମାଣବକ-ଛୋଟଶିଶୁ, ମୃଗାକ୍ଷୀ-ମୃଗପରି ଚକ୍ଷୁ, ପ୍ରାଣ—ଶ୍ରେଷ୍ଠ, ପ୍ରାଣ—ଜୀବନ, ରଣରଣ—କନ୍ଦର୍ପ ।

ଏ ବାଣୀ ତତକ୍ଷଣ ପର୍ଯ୍ୟଙ୍କୁ ରକ୍ଷଣ କ୍ଷଣକାନ୍ତି କାନ୍ତିର ହେଲା ।
ବୀଣାକ୍ୱଣାବଚନା ସୁଲୋଚନା ଶୋଚନା ରଚନା କରୁ ଶାନ୍ତ କଲା ସେ ।
ସହଚରି । ଜାଗ୍ରତ କ୍ଷଣଦା ବାସରେ । ହୋଇଣଛନ୍ତି ତା ପାଶରେ ।
ଫୁଲନାରାଚନାରାଚକୁ ହେଲା କବଚ ଦରଶନ ଲୋଭ ଯହିଁରେ ରେ ।୧୯।

ଘନଘୋଷ ଘୋଷଣ ଷଣପୁଷ୍ପଦୂଷଣ କାନ୍ତ ଶୁଣି ସେ ଦନ୍ତୁ ମଣେ ।
ଭେକ ମହୀଣସ୍ତନ ପ୍ରକାଶି ବାତାୟନ ନୟନ ନିବେଶେ ତକ୍ଷଣେ ସେ ।
ସହଚରି । ମାନଙ୍କୁ ଭାଷଇ ଏ ଭାଷ । ବାହାରେ ସୁଦୁସ୍ତଳୀ ପେଷ । ହେଲେ
କି ମାନବେଶସୁତ ଅଙ୍ଗ ପ୍ରବେଶ ଏ ଦେଶ ବୁଝାଏ ସନ୍ଦେଶ ରେ । ୨୦ ।

ହଂସ ଦୃଶ ସଦୃଶ ଦେଖି ସାରସ ରସକଳା ଚୁମ୍ବନ ଦଏ ରସି ।
କର ମୃଣାଳନାଳ ମାଳ ତମାଳମାଳମଞ୍ଜୁଳା ବସି ନାମ ଘୋଷି ସେ ।
ସୁକୁମାରୀ । କାନ୍ତିଛଳେ ପିନ୍ଧେ ଅମ୍ବର । ହାସ ଛଳେ ଘେନେ କର୍ପୂର ।
ହୋଇ ତଦ୍ଭାବମୟୀ ନେଲା ଘନସମୟୀ ରକ୍ଷା ହେଲେ ସଜନୀବାର ସେ ।୨୧।

ଶରଦକାଳେ ସୁଧାକରକର ବସୁଧାଭୂଷାକୁ ଦେଖାଇ ନ ଦେଲେ ।
ଋତୁହୀନ ତୁହିନ ନ ପୁଣି ହେତୁହୀନ ଜରବ ବୋଲି ବସୁବଲେ ସେ ।
ସହଚରୀ । ପଦ୍ମିନୀ ପଦ୍ମବାସୀ ସଖୀ । ପଦ୍ମନୟନୀ ପଦ୍ମମୁଖୀ । ପଦ୍ମକର
ପଯୂର ପଦ୍ମପଦ୍ମଜଉଦର ପଦ୍ମକୋଷ ଉରଜେ ଘୋଷି ସେ । ୨୨ ।

---

୧୯ । କ୍ଷଣକାନ୍ତି-ବିଜୁଳିବର୍ଣ୍ଣ, ଶୋଚନା-ଦୁଃଖ, କ୍ଷଣଦା-ରାତ୍ର, ବାସର—ଦିନ, ଫୁଲନାରାଚ-କନ୍ଦର୍ପଶର, ସାଞ୍ଜୁ-କବଚ ।

୨୦ । ଘନଘୋଷ-ମେଘଶବ୍ଦ, ଷଣପୁଷ୍ପ-ଛଣପଟଫୁଲ, ଦୂଷଣ-ନିନ୍ଦନୀୟ, କାନ୍ତ-ବର୍ଣ୍ଣ, ମହୀ-ପୃଥିବୀ ଏଠାରେ ଚଳ, ପ୍ରକାଶି-ଫିଟାଇ, ବାତାୟନ-ଖିଡ଼ିକି, ମାନବେଶ-ରାଜା, ସୁତ-ପୁଅ, ଏଠାରେ ରାଜସୁତ-ଚନ୍ଦ୍ରଭାନୁ ।

୨୧ । ଦୃଶ—ଆଖି, ସାରସ—ପଦ୍ମ, ତମାଳମାଳମଞ୍ଜୁଳ—ସୁନ୍ଦରୀ ସ୍ତ୍ରୀ, ଘନ ସମୟ—ବର୍ଷାଦିନ, ସଜନୀବାର—ସଖୀସମୂହ ।

୨୨ । ସୁଧାକର କର—ଚନ୍ଦ୍ରକିରଣ, ବସୁଧାଭୂଷା—ପୃଥିବୀର ଅଳଙ୍କାର (ଲାବଣ୍ୟବତୀ) ତୁହିନ—କାକର, ଉଦର-ପେଟ, ଉରଜ-କୁଚ ।

ଶୁକପୋତ କପୋତ ରତ ଶୀତମରୁତ କମ୍ପିତ କରୁଥାଇ ପୁନ ।
ଏ ଶନ୍ତା ଅବଲୁତ ଶତା ହୃଦେ ସଂଭୂତ ସଜାଡେ ସଜନୀ ଦହନ ହେ ।
ସାଧୁଜନେ । ଏ ଗ୍ରନ୍ଥ ଏବେ ହେଲା ଶେଷ । ବୁଧବୋଧକ ଏ ରହସ୍ୟ ।
ସୁମର ଉପଇନ୍ଦ୍ର କହଇ ଉପଇନ୍ଦ୍ର ଭଞ୍ଜ ବୀରବର ଏ ରସ ଯେ । ୨୩ ।

---

## ତ୍ରୟୋବିଂଶ ଛାନ୍ଦ

( ଚନ୍ଦ୍ରଭାନୁର ରାମେଶ୍ୱର ଗମନ )

ରାଗ—କଲ୍ୟାଣଅହାରୀ

ଧନେକ ଧନେଶ ଦଶଦଣ୍ଡ ଭୋଗ ମଣ୍ଡପେ ବସିଛୁ କୁମାର ।
ସଚିବନନ୍ଦନ ପ୍ରବେଶ ହୋଇଲା ପତମାଶାଢ଼ୀ ଅଛୁ ଶିର । କହିଲା ।
ପୁରୋଧାସୁତ ଜଣାଇଲା । ଶିବଉତ୍ସବ ଦେଖିବାକୁ ତୁମ୍ଭଙ୍କ ତାତ ସନମତ
ହୋଇଲା । ୧ ।

ଜରତକାମିନୀ ବାଳକ ଜାଳକ କେବଳ ରହିବେ ନଗରେ ।
ସର୍ବ ଅର୍ବ ଦନ୍ତୀ ପଦାତ ସ୍ୟନ୍ଦନ ପତ୍ତି ଯିବେ ତୁମ୍ଭ ସଙ୍ଗରେ । ଏଥକୁ ।
ଅଧୀକାରାଶାଢ଼ୀ ମୋହର । ଏ ବାଣୀ ଚନ୍ଦ୍ର ଉଦଧିରେ ଉଛୁଳିଲା ନାଗର
ଆନନ୍ଦସାଗର । ୨ ।

---

୨୩ । ଶୁକ—ଶୁଆ, ପୋତ—ଛୁଆ, ରତ—ଶବ୍ଦ, ଶୀତମରୁତ—ଥଣ୍ଡାପବନ,
ବୁଧ—ପଣ୍ଡିତ, ଉପଇନ୍ଦ୍ର—ବିଷ୍ଣୁ ।

---

## ତ୍ରୟୋବିଂଶ ଛାନ୍ଦ

୧ । ଧନେଶ—ସୂର୍ଯ୍ୟ, କୁମାର—ରାଜପୁତ୍ର, ସଚିବନନ୍ଦନ—ମନ୍ତ୍ରୀପୁଅ,
ପୁରୋଧାସୁତ—ପୁରୋହିତ ପୁଅ, ଶିବଉତ୍ସବ—ମହାଦେବଙ୍କ ଉତ୍ସବ,
ସନମତ—ସ୍ୱୀକାର, ଅଙ୍ଗୀ ।

୨ । ଜରତକାମିନୀ—ବୁଢ଼ୀମାନେ, ବାଳକ ଜାଳକ-ପିଲାମାନେ, ଅର୍ବ—
ଘୋଡ଼ା, ଦନ୍ତୀ—ହାତୀ, ସ୍ୟନ୍ଦନ—ରଥ, ପତ୍ତି—ଘୋଡ଼ାସବାର,
ଆନନ୍ଦସାଗର—ସୁଖ ସମୁଦ୍ର ।

ଏକାଳେ ଉଗର ଧଅଇ ନାଗର ଶୁଣି ନଗ୍ରଜନେ ଉଚ୍ଛନ୍ନ । ଲେଖି ନେଲେ ଅସି ମନ୍ତି ସନ୍ନିଧିରୁ ଥିଲା ଯା ବାକୀ ବରତନ । ନୂତନେ । ହଲ କର ଶସ୍ତ୍ରମାନଙ୍କୁ । କେ ଯନ୍ତ୍ରା ଧଅଇ କେହୁ ହୁଙ୍ଗୁଲାଇ କେ ବନ୍ଧାଇ ଆନ କୋଷକୁ । ୩ ।

କେ ଘୃତ ଲଗାଇ କ୍ଷଣକେ ଶୁଖାଇ କେ ସିଅଇଁ ତହିଁ ତୂଣୀର । କବଚ କରଇ ଶ୍ରଗଜର ଟୋପି ବକନ୍ତର ଏହି ପ୍ରକାର । ଶକଟ । ଭାର-ବାହ ବଳୀବର୍ଦ୍ଧକୁ । ଥିଲା ଯାହାର ସଜ କଲା ନ ଥିଲା ମୂଲ୍ୟ କର ଅଣି ତାହାକୁ । ୪ ।

ସୁବର୍ଣ୍ଣ ରୌପ୍ୟ ବର୍ଟଙ୍କ ସମ୍ବଳ କନ୍ଦଳ ଆଦ ଜରିଚେଲ । କଂସାଦ ପାତ୍ର ମଞ୍ଜୁଷ ପେଡ଼ା ପେଡ଼ୀ ଗଣ୍ଠିଗ୍ନମାନ କର ତୂଳ । କର ଯେ । ଦ୍ୱିଜରୁ ମାତଙ୍ଗ ପର୍ଯ୍ୟନ୍ତେ । ଯେ ଯାହା ବୃତ୍ତିରେ ଆଗମନ ମନ ଉଚ୍ଛନ୍ନ ହୋଇଲେ ସମସ୍ତେ । ୫ ।

କୋଷ ଅଧିକାରୀ ଅତ ତୋଷ ଭର ଅମାର ମଣାର ସଜାଡ଼ି । ତୂର୍ଣ୍ଣ କର ପୂର୍ଣ୍ଣ କଲା ସେ ସ୍ୱଭାବେ ସମ୍ଭାରରେ ଗାଡ଼ି ଶଗଡ଼ି । ଏମନ୍ତେ । ରଜନୀ ହୋଇଲା ପ୍ରବେଶ । କ୍ରମଶ କ୍ରମଶ ତାମସ ବଶରେ ଦୃଶାଦୃଶ୍ୟ ହେଲା ବିନାଶ । ୬ ।

କେତେ କାମୀ ଭୂମଣ୍ଡଳେ କେତେ ମୁହିଁ ଭ୍ରମିବ କାମ କ ପାଅିଲା । କଜ୍ଜ୍ୱଳ ମହୋଜ୍ଜ୍ୱଳ ଜନେ ପ୍ରଳୟ କ୍ଷୟ କରିବାକୁ ବାଞ୍ଛିଲା । ସ୍ୱର୍ଭାନୁ । ଡରେ କ ପଳାଇଲା ଭାନୁ । ତମ ତନୁରେ ଜଗତ ଚଳିଛି କ ଭାବ ଅନ ନାହିଁ ଏ ବନୁ । ୭ ।

---

୩ । ବରତନ—ପାଉଣା, ହୁଙ୍ଗୁଳାଇ—ରଙ୍ଗକର, କୋଷ—ଅସ୍ତ୍ର ରହିବା ଜାଗା ।

୪ । ତୂଣୀର—ଶରମୂଣା, କବଚ—ସାଞ୍ଜୁ, ଭାରବାହ—ଯେ ଭାରବୁହେ

୫ । ସୁବର୍ଣ୍ଣ—ସୁନା, ରୌପ୍ୟ—ରୁପା, ବର୍ଟଙ୍କ—କଜଡ଼ି, ସମ୍ବଳ—ଧନ୍ତୁ, ଚେଲ—ଲୁଗା, ଦ୍ୱିଜ—ବ୍ରାହ୍ମଣ, ମାତଙ୍ଗ—ହାତୀ, ବୃତ୍ତିରେ—ବ୍ୟବସାୟରେ ।

୬ । କୋଷ—ଭଣ୍ଡାର, ତୋଷ—ଆନନ୍ଦ, ତୂର୍ଣ୍ଣ—ଶୀଘ୍ର, ତମସ—ଅନ୍ଧାର, ଦୃଶ—ଦେଖାପିବା ।

୭ । ଭୂମଣ୍ଡଳେ—ପୃଥିବୀରେ, ସ୍ୱର୍ଭାନୁ—ରାହୁ, ଭାନୁ—ସୂର୍ଯ୍ୟ, ତମ—ଅନ୍ଧକାର, ତନୁ—ଦେହ ।

ପାଶେ ଥାଇ ଦେଖା ଦେଖି ନୋହି ଦୁଃଖୀ ଭୃଙ୍ଗ ଭୃଙ୍ଗୀ ଧ୍ୱନି ଘୋଷିଲେ । ସଙ୍କେତ ସ୍ଥାନେ ଯାଇଥିବା କାମିନୀ ଚମକି ହୃଦ ଅଉଁଷିଲେ । ଅସିତେ-ତରଗଣ ଏହି ଅଟ୍ଟିରେ । ଧ୍ୱନି କରିବାର ଶୁଣି ବରନାରୀ ଅଶାସ୍ତ୍ରୀ ଅନାଇଁ ଦୁଆରେ । ୮ ।

ଅଞ୍ଜନଦିଗ-ଗଜ ସଜ ଅଜ କି ଯୁଦ୍ଧ ଇଚ୍ଛି ଅମ୍ଭ ସଙ୍ଗରେ । ଏହା ବିଚାରି ଯେ ରଢ଼ି କି ପ୍ରଚାରି ମତ୍ତ ମାତଙ୍ଗ ଅତଙ୍ଗରେ । ବକୁଳ । ମୂଳେ ଥିବାର ବିରହିଣୀ । ଶ୍ରବଣେ ବୋଇଲା କାନ୍ତ ସତ୍ୟବାଦୀ କି ସେନି ବୋଲନ୍ତି ମିତଣୀ । ୯ ।

କର୍ଣ୍ଣୋଟପୁରଜନେ ଯିବା ଇଚ୍ଛନ୍ତେ ଜନ୍ଲିଦ୍ରେ ଏମନ୍ତ ବାହିରେ । କେ ଛାହା ପୀରତ ଯୁବତୀ ଜତନ୍ତ ଯିବାକୁ ଜହ୍ନୁଛୁ ଦୂତୀରେ । ଭେଟାଇ । ଅଣି ପାରିବୁ କି ଧନକୁ । ଫୁଲଧନୁସୁନୁବଲ୍ଲଭୀ-କାଳରୁ ମୁଁ ଯେ କରିବି ପ୍ରସ୍ଥାନକୁ । ୧୦ ।

କେ ଜାର ଦେଖିଲା କୁଳଟାପାଶକୁ ଅଶାକର ଧନ ଯାଉଛୁ । ଯୁଗଳ ନୋହିବାରୁ ରାମକୁମାର ଯୁଗ ସବ ମୋତେ ହେଉଛୁ । ଧନରେ । କରିଥାଅ ଏହି କୃତାର୍ଥ । ଯାଉଛୁ ବିଦେଶ ଯୋଗ ଦେବଗୁରୁ ଗଲେ ହୋଇବଟି ବ୍ୟର୍ଥ । ୧୧ ।

କେ ଜାର ଧୃଷ୍ଟି ସ୍ନେହେ ଭାବ ରାଶିଙ୍କ ରାଶି କଳ୍ପନା ତୋତେ କର । କନ୍ୟା ତୁଳାଅଙ୍ଗୀ ସିଂହକଟୀ ମୀନନୟନା କୁମ୍ଭସ୍ତନା ସାର । ଭ୍ରୂଲତା । ଧନୁରେ ପୁଣି ମନୋହର । ମକରକେତୁ ତାପେ ତୋ ପ୍ରେମଜଳେ ମନ-କର୍କଟା ମଗ୍ନ ମୋର । ୧୨ ।

---

୮ । ଅସିତ—ଅନ୍ଧାର, ବରନାରୀ—ଶ୍ରେଷ୍ଠାସ୍ତ୍ରୀ ।

୯ । ଅଞ୍ଜନଦିଗ—ପଶ୍ଚିମ, ଯୁଦ୍ଧ—ସମର, ରଢ଼ି—ଶବଦ ।

୧୦ । ଜନ୍ଲିଦ୍ରେ—ଅଳାଦ୍ରାକ୍ଷ, ସୁନୁ—ପୁତ୍ର, ବଲ୍ଲଭୀ—ସ୍ତ୍ରୀ ଫୁଲଧନୁସୁନୁବଲ୍ଲଭ—କନ୍ଦର୍ପ ଯେ ଶାମ୍ବ ତା ପୁତ୍ର ଅନିରୁଦ୍ଧ ତାର ସ୍ତ୍ରୀ ଉଷା, ଅର୍ଥାତ୍ ସକାଳ ।

୧୧ । ଜାର—ବୀଟପୁରୁଷ, କୁଳଟା—ବିଟପୀ, ଯୁଗଳ-ଯୋଡ଼ା, ରାମକୁମର-ଲବ, ( ଅଳ୍ପସମୟ ) ଦେବଗୁରୁ—ଜୀବ ( ବୃହସ୍ପତି ) ।

୧୨ । ରାଶି-ବାରରାଶି, କୁମ୍ଭ-ହାତୀରକଳସ, ମକରକେତୁ-କନ୍ଦର୍ପ ।

ଶରତ ଶଶୀ ସମାନ ଘାତ କରୁ ମେଷ ବୃଷ କରୁ ଦର୍ଶନେ । ଏହା ମିଥୁନ ହୋଇଲେ ରେ ନାସ୍ତିକା ସବୁ ହେଲ ତୋ ଅବଧାନେ । ଏ ବାଣୀ । ସେ ହରଷ ଶୁଣି ହୋଇଲ । ଅଲିଙ୍ଗନ କରି ଇଚ୍ଛାବତୀ ନାସ୍ତି ବକ୍ଷାରୁଢ଼େ ବନ୍ଧେ ତୋଷିଲ । ୧୩ ।

ପୁଷ୍ପ ସମସ୍ତ ନିକଟ ପରକଟ ରମଣୀ ଭୁଲେ ବାଟ ରମି । ସଖୀଙ୍କୁ କହେ ବଚନ ସ୍ନେହାଧୀନ ହୋଲେ କମଳା ପରଣାମି । ରତିରୁ । ବାଞ୍ଛା କରେ ସ୍ତନ କଠିନ । ବୋଲି ଜାଣିଲି ନ ଜାଣିଲି ସୁବର୍ଣ୍ଣ ସୁବର୍ଣ୍ଣ କି ଅବା ଅଞ୍ଜନ । ୧୪ ।

କାହା କକ୍ଷର କଳ୍ପିଙ୍କ କହୁଛୁ କି କଲ ଦାରୁଣ ଦଇବ । ମନେ ତ ନ ଥିଲ ତରୁଣକାଳରେ ତରୁଣୀ ବିଚ୍ଛେଦ ହୋଇବ । ଜୀବନ । ତେଜି ଯେ କାତର ବଶରେ । ଯେଣୁ ଯେଣୁ ଅରେ ପରିଏ ଦ୍ୱିତୀୟ ଏକ ଅଧିକ ଦିବସରେ । ୧୫ ।

ଧୂତସ୍ତ୍ରୀଙ୍କ କେ ଲେ ବସାଇ ଚ୍ୟୁତେ କେ ରସାଇ ପ୍ରକାଶିଣ ପ୍ରେମ । ଦଣ୍ଡଧର ଅନୁଗତ ଭଲ ନୋହେ ସେହୁ ନୋହୁବାର ଉତ୍ତମ । ଗୁଣି ତୁ । ମାଗୁଣି ଏତକ ମୋହର । ମନେ ପଡ଼ୁଥିବ ଜଳମା ଦିବସେ ଜାଣୁ ତା ଯେମନ୍ତେ ମୁଁ ତୋର । ୧୬ ।

କେ ପ୍ରିୟ ଶବ୍ଦ ଧରଣୀ ଉଲଗତ ଲୁଡ଼ି ଭ୍ରମିଲି ଏ ବନତ । ଶୀତକ-ରଜା ଶୀତେ କାମ ଛେଷିତ ନାରିଚେ ହୋଇଅଛୁ ଭ୍ରାନ୍ତ । କରିବ । କବତ ପାଞ୍ଚ ମୋ ଏସନ । ବରବର୍ଣ୍ଣିନୀ ସଖୀ ଥିଲ କରଣ ଦିଅ ମୋତେ ପିନ୍ଧା ବସନ । ୧୭ ।

କେ ପ୍ରଦୀପ ପ୍ରଦୀପକ କର ପୁରେ ପୁରତେ ପ୍ରିୟାଙ୍କୁ ବସାଇ । ଶନ୍ଦେ ଶଶନ୍ଦେ ଲେଖିଲ ସ୍ୱରୂପକୁ ପ୍ରଭାତ ଦରଶନ ପାଇଁ । ସେ ଦେଖି । ଧୀର କରି ଏହା ବୋଇଲ । ଶଦେହଜା-ପ୍ରିୟ ସଙ୍ଗେ ନେଲେ କିବା ମୋତେ ସଙ୍ଗେ ନେଲେ କି ହେଲ । ୧୮ ।

---

୧୩ । ମେଷ-ମେଣ୍ଢ, ଜ୍ଞେଟଜୀବ, ବୃଷ-ଷଣ୍ଢ ( ବଡ଼ ), ମିଥୁନ-ଯୁଗଳ

୧୪ । କମଳା-ଲକ୍ଷ୍ମୀ, ସୁବର୍ଣ୍ଣ—ଉତ୍ତମରଙ୍ଗ-ସୁନା ।

୧୫ । ଦଣ୍ଡଧର-ଯମ, ରଜା ।

୧୭ । ପ୍ରିୟାଚିବୁକକୁ-ସ୍ତ୍ରୀ ଓଠକୁ, ଶବ୍ଦତ-ଶବ୍ଦସ୍ତୁ, ଶୀତକରଜା ସୁଦଗ୍ଧ, ନାରାଚ-ଶର, ଭ୍ରାନ୍ତ—ଭସ୍ମ, ବରବର୍ଣ୍ଣିନୀ-ଚମ୍ପାବରଣୀ ।

୧୮ । ପ୍ରଦୀପକ—ଦୀପ, ଶଦେହଜା-ସୀତା, ପ୍ରିୟ, ରାମ ।

କାହାର ବାଳୀ ନବୀନା ବିଚକ୍ଷଣ କଳା ସକଳ ଭୋଗିଥିଲା । ମଣି ଦୀପିତକ ଦର୍ପଣବିତାନ ଥିଲା ପୁରେ ରତ ବିହିଲା । ସେ ଭୋଗ । ପାଇଲା ଦଇବ ବଶକୁ । ଭବେ ଅଧିକ ଦେବାକୁ ରଖିଥିଲା ଯିବାବେଳକୁ ବିଦେଶକୁ ।୧୯।

କେଉଁ ଦମ୍ପତ ରତସୁଖ ସମ୍ପତ୍ତି ବଶୁ ମତରେ ଏହା ଧାଇଁ । ସ୍ମର ଅରତ ହେବ ରାତ ନ ପାହୁଁ ତାହା ରଜନୀ କଲୁ ବିହୁ । ଯେ ପୁଣି । ବିହିଲା ବିଚ୍ଛେଦ ବିପତ୍ତି । ପୁଂଲିଙ୍ଗେ ସ୍ତ୍ରୀଲିଙ୍ଗେ ତାହା ଯେରୂପ କେବେ ନୋହିଥିବ ସମ୍ପତ ।୨୦।

- କେ ପୁଂସ ସତ୍ତ୍ୱରେ ତତ୍ତ୍ୱରେ ବେପିତ କଲା ଅଣି କାତଲତାକୁ । ପରିବାରିକାକୁ ଡାକଣ କହିଲା କୋଳେ ବସାଇ ବନିତାକୁ । ଏହା ତୁ । ଯତ୍ନ କରଥିବୁ ସନ୍ତତେ । ପ୍ରବାସ ପ୍ରୟାଣ ଦୋଷ ନ ଯେଣିବ ଯାଉଅଛୁ ଅଣିଆୟତ୍ତେ ।୨୧।

କେ ଜାୟାପତ ଯୋଗ ହୋଇ ନ ଥିଲେ ସେ ଉତ୍ସବ କଲେ ସେ ରାତ । ନାନାଗତ ରତ ପ୍ରକାଶିଲା ରତପତ-ଭୋଳରେ ରସବତୀ । ରତ୍ୟାନ୍ତେ । ରମଣ ମୁଖକୁ ଗୃହିଁଲା । ମୟୂର କଣ୍ଠକ ବୃଷପଟେ ଲେଖି କାମବ୍ୟମନକୁ ହରିଲା ।୨୨।

କେ ଦମ୍ଭ ହାର ମନୋହାରୀଙ୍କ କହେ ଏ କଥା ଶବ ଲାଗେ ମୋତେ । ଜୀବନ ତେଜ ପିଣ୍ଡକୁ ସଙ୍ଗେ ନେଇ ପୁରୁଷେ ଜୀଇଁବେ କେମନ୍ତେ । ଏ ତନୁ । ପୁଲକ ପୁଣି ନ ବହିବ । ସେ ପୁଣି ଗଦ୍‌ଗଦେ ବୋଇଲା କେ ଜାଣି କ କ ଭଅଇଲା ଦଇବ ।୨୩।

---

୧୯ । ବାଳୀ—ସ୍ତ୍ରୀ, ମଣିଦୀପିତକ—ମଣିମାଣିକ୍ୟରେ ଉଜ୍ଜ୍ୱଳ, ଦର୍ପଣ-ବିତାନ—ଆରସିଲଗା ଗୃହୁଆ, ଦର୍ପଣରେ ଓଲଟା ଦେଖାଯାଏ ।

୨୦ । ଦମ୍ପତ—ସ୍ତ୍ରୀ ପୁରୁଷ, ସ୍ମର—କନ୍ଦର୍ପ, ରଜନୀ—ରାତ, ବିହୁ—( ବ୍ରହ୍ମାଙ୍କ ରାତ ଶହ କୋଟି ବର୍ଷ ) ।

୨୧ । କାତଲତା—କାଇଁଫୁଲ ଲଟା, ପରିବାରିକା—ଦାସୀ, ବନିତା—ସ୍ତ୍ରୀ, ସନ୍ତତେ—ସର୍ବଦା ।

୨୨ । ରତପତ—ମଦନ, ରତ୍ୟାନ୍ତେ—ରତ ଶେଷରେ, ରମଣ—ପୁରୁଷ, କାମବ୍ୟମନ—କାମଦୁଃଖ ।

୨୩ । ବିଚନ—ଅସ୍ପଷ୍ଟ, ତନୁ—ଦେହ, ପୁଲକ—ଆନନ୍ଦ ।

କେଉଁ ସୁନ୍ଦରୀ କେତକୀଦଳୋଦରେ ଦୟିତ ଙ୍କୁ ଲେଖିଲା । ମୁଁ ଯେ ଜୀବଧନ ତୁମ୍ଭଙ୍କୁ ବୋଲିବା ଏହିଠାରେ ସାର୍ଥ ହୋଇଲା । ତୁମ୍ଭର । ଅଛୁ ସ୍ନେହମସୃ କବଚ । ତୁମ୍ଭେ ବିନା ମୋର ଦୂର ହେବ କେହି ସହିବ ବିଷମ ନାରାଚ ।୨୪।

କେଉଁ ନାରୀ ଶଙ୍ଖପଞ୍ଚମୀ ପରବେ କାର ନୟନରେ ଭରିଲା । କେହି କ କରିବ ବୋଲି କାନ୍ତଗଳା ଧରି ପ୍ରେମଭରେ ଥରିଲା । କେ କହେ । ଯିବା ପଛେ ଆନ ଦେଶକୁ । ନ ଗଲେ ଯେବେ ନରପତି ସରୋଷ ହୋଇବେ କରମବଶକୁ ।୨୫।

କେ କହେ ସଖୀଙ୍କି ଚନ୍ଦ୍ରଶେଖରଙ୍କୁ ପୂଜନ କର ଏଥିପାଇଁ । ପ୍ରିୟ ନ ଯାଉ ଜୀବନ ଯାଉ ମୋର ଦୁଃଖୀ ନୋହିବଟିକ ମୁହିଁ । କେ ଭାଳେ । ବିଲଗ୍ନ ହେଲେ ଜରୁଁ ଜର । ନିଦ୍ରା ନ ମାଡ଼ଇ ଏ ନିଶିକି କେହି ବଞ୍ଚିବ କି କର୍ମ ମୋହର ।୨୬।

କେହୁ ବକ୍ଷରେ ନିୟମ କରାଇଲା ଆନ ଯୁବତୀ ନ ଛୁଇଁବ । କେ ବୋଇଲା କାନ୍ତ ଶତ୍ରେ ମୁଁ ଥିବଟି ମୋପାଇଁ ଦର୍ପଣ କରିବ । କେ ହାର । ବାହାର କରି କଣ୍ଠେ ଦେଲା । ଦେଖୁଥିଲେ ମୁହିଁ ମନେ ପଡ଼ୁଥିବି ଏମନ୍ତ ଭାବନା ହୋଇଲା ।୨୭।

କେ ଜାଣି ବିରହଜ୍ୱର ଜାତଭରେ ଥୋଇ ପଙ୍କେରୁହ-ଦଳକୁ । କିଛି ନ କହି ନାୟକ କରେ ଦେଲା ମେଲାଣି ମାଗିଲା ବେଳକୁ । କେ ଭାବେ । ଅଳପ ହେଲା ମୋ ସଙ୍ଗତ । ଦରିଦ୍ର ରତନ ପାଇ ହଜାଇଲା ପରାୟେ ହୋଇଲା ବିମତ ।୨୮।

କେ ଲେଖିଲା ପଟେ ପତିଙ୍କ ବସାଇ ଅପେ ପାଦସେବା କରଇ । ଯେତେ ଦୂରେ ଥିଲେ ଏରୂପେ ଅଗ୍ରତେ ଅଛୁ ମୁଁ ଏ ଅକ୍ଷର ଲିହି । ବାନ୍ଧି ତା । ଦିନବସନେ ପେଡ଼ିପରେ । ଥୋଇଲା ଚତୁରୀ କି ସ୍ନେହ ଅତୁରୀ ମାନସ ମୋହିବା ବିଗ୍ରରେ । ୨୯ ।

---

୨୪ । କେତକୀ ଦଳୋଦରେ—କେତକୀ ପାଖୁଡ଼ା, ପେଟରେ ବା ପେଟ ଉପରେ, ଦୟିତ—ପ୍ରିୟତମ, ଜୀବଧନ—ସ୍ୱାମୀ ନାମ ।

୨୫ । ନରପତି—ରଜା, ରୋଷ—ରାଗ ।

୨୬ । ଚନ୍ଦ୍ରଶେଖର—ଶିବ, ବିଲଗ୍ନ—ଲଙ୍ଗଳା ।

୨୭ । ପଙ୍କେରୁହ—ପଦ୍ମ, ଦଳ—ପାଖୁଡ଼ା ।

ହେ ବୋଇଲ ମୋହପାଇଁ ନ ସ୍ଥଳବ ସାବବ ବେଳ କାଳେ ମାତ । ତୁମ୍ଭେ ସର୍ବଶୁଭେ ଥିଲେ ସବୁ ଅଛୁ ନ ମିଳବେ କେତେ ଯୁବତୀ । ହେ ସଖୀ । ଦ୍ୱାସ୍ୱରେ ଏମନ୍ତ କୁହାଇ । ବାହୁଡ଼ ଅସି ଯାହାକୁ ବନ୍ଧ୍ୱ ହେବ ଏରୁପେ ନୋହିବ ଅସ୍ନେହୀ ।୩୦।

ହେ ପତ ଯିବାକୁ ଭୂପତମଣ୍ଡରେ କାରେ ବୋଲିଲ ଦନେ ଥାଅ । ଅନେକ କାଳୁଁ ବାଞ୍ଛୁତ ଜଳ ସୁଖ ମୋତେହେଁ ଦଅ ତୁମ୍ଭେ ପାଅ । ହେ ଶାଶୁ । ନଣନ୍ଦ ଭସୁରେ ପିଯୂକୁ । କିଛୁ ନ କହି ତକ୍ଷଣେ କାତକର ଈଷଣେ କ୍ଷବାର ପଯୂକୁ ।୩୧।

ତାହା ସହଚରୀ ପୁରୁଷେ ପଗୃହ ଯାଳୁଛୁ ଦେଉଁ ଶିବ ଦେଖି । ବକ୍ଷରେ ସ୍ୱଚ୍ଛରେ ଶମ୍ଭୁ ଯୁଗଳକୁ ଜନମ କରୁଛୁ ମୋ ସଖି । ଏ ବଧୂ । ତରୁଣ ତରୁଣୀ ଉଛନ୍ନ । ବହୁତ ଛନ୍ଦେ କଲେ ତାହା ବର୍ଣ୍ଣନା ତେବେହେଁ ନୋହିବ ସମ୍ପୂର୍ଣ୍ଣ ।୩୨।

ଏମନ୍ତ ଙ୍କଶି ଶେଷରେ ଦରଘୋଷ ଦର ଲଭିଲେ କାର ବ୍ୟୂହ । କୁକ୍‌କୁଟବାଣୀ କୁଠାରେ ହାଣିଦେଲ ଦମ୍ପତ ସୁଖ ମହୀରୁହ । ପ୍ରତୀଚୀ । ବହିଲ ଅରୁଣ ବର୍ଣ୍ଣକୁ । ଡଗର୍‍ ନାଗର୍ କର୍‍ଇଲ ତ୍ୱର ସାଜ ସାଜ ବୋଲି ସୈନ୍ୟକୁ ।୩୩।

ବାଜଲେ ତୂର ସାଜଲେ ଚତୁରଙ୍ଗ ପ୍ରବେଶ ହେଲେ ସିଂହଦ୍ୱାର । କହେ ଜ୍ୟୋତିଷ ମଙ୍ଗଳବେଳ ହେଲ ଅନୁକୂଳ କର କୁମାର । ସାଜଲେ । ରମ୍ଭାବୃକ୍ଷ କୁମ୍ଭ ପୁରତେ । ଭୂଷଣେ ଅରମ୍ଭ ରମ୍ଭାପର ବେଶ୍ୟା ମୋହିଲେ ସୁମଙ୍ଗଳ ଗୀତେ ।୩୪।

ସ୍ନମାଭିଷେକ (ବୃଷ) ପଟ ଭୃତ୍ୟେ ଦେଖାଇ ଧଅନ୍ତ ସ୍ୱମା ହୁଳହୁଳ । ବଧାତା ବଧାନେ ପୁରୋଧା ନନ୍ଦନେ ମଙ୍ଗଳାରୋପଣେ କୁଶଳ । କାରତ । ବନ୍ଦନା ବନ୍ଦବୃନ୍ଦ କରେ । ବାହାର ହୋଇଲେ ନୃପତ ନନ୍ଦନ ବାଳାରୁପ ଚନ୍ଦ୍ର ଚନ୍ଦ୍ରରେ ।୩୫।

---

୩୧ । ଭୂପତ—ଅନଙ୍ଗତ, ପଯୂ—ଲୂହ ।

୩୨ । ଶମ୍ଭୁ ଯୁଗଳ—ଦୁଇଟି ମହାଦେବ, ତରୁଣ ତରୁଣୀ—ସ୍ତ୍ରୀ ପୁରୁଷ ।

୩୩ । ଦର—ଶଙ୍ଖ, ଘୋଷ—ଶବ୍ଦ, ଦର—ଭୟ, ମହୀରୁହ—ଗଛ, ପ୍ରତୀଚୀ—ପୂର୍ବଦଗ ।

୩୪ । ରମ୍ଭାବୃକ୍ଷ—କଦଳଗଛ, କୁମ୍ଭ—ମାଟିଅ, ପୁରତେ—ଅଗରେ, ରମ୍ଭା—ବେଶ୍ୟା, ବୃକ୍ଷ, ବେଶହେବାକୁ ଯାଉଥିବା ... ...।

୩୫ । ବନ୍ଦବନ୍ଦ—ଭାଟସବୁ, ବଧାନେ—ନିୟମରେ ।

ପଲ୍ଲବକୋଣ ଅଧର ପୟୋଧର ପୂର୍ଣ୍ଣକୁମ୍ଭ ମୀନ ନୟନ । ଗତି ହଂସ ବତ ପାରାବତ ଗଳ ମଙ୍ଗଳ ଅଙ୍କୁଶ ବଚନ । ଜଘନ । ଭଦ୍ରାସନ ଊରୁ କଦଳୀ । ଶଙ୍ଖ ମୃଦୁହାସ ଚୂଚୁକ କମ୍ବୁକ ସର୍ବ ମଙ୍ଗଳ ପ୍ରଦଶିଳ । ୩୬ ।

ସୁକୁମାରୀ ରାଜ କୁମାରୀଙ୍କ ଭାବ କର ଅମାରି ପରେ ବିଜେ । ଯହିଁ ଠାରୁ ଶୂଦ୍ର ଯାଏ ପ୍ରଣମିତ କଲ୍ୟାଣ ବାଞ୍ଛା କଲେ ଦ୍ୱିଜେ । କଲେ ଯେ । ସମ୍ଭାରରେ ସୈନ୍ୟ ଗମନ । ମହୀ କମ୍ପନ ପନ୍ନଗ ପତି ଶଙ୍କି ଧୂଳିରେ ଲୁଚିଲେ ତପନ । ୩୭ ।

ସର ପଦ୍ମ ଚକ୍ରବାକ କଲେ ପଦ ଅବଲୋକ ମଣି ଶର୍ବରୀ । ରଥାଙ୍ଗ ନାଦ କଳାପୀ ନାଚେ ମୋଦେ କୁଳଟା ହେଲେ ଈର୍ଷାଶ୍ରୀ । କାକରେ । ନିଳୟ ଗତ ଲୀଳା କରେ । କୁଳପାଳିକା ବାଳିକା ଦୀପାଳିକା ପୁରମାନ କରେ ଜାଳିଲେ । ୩୮ ।

ବାଦ୍ୟଦମକ ଖଡ୍ଗ ଫର ଢମକ ଧନୁଘୋଷ ଗଜ ହୁଙ୍କାର । ତୁରଙ୍ଗ ହ୍ରେଷା ଅଶାରେ ପୂର୍ଣ୍ଣ ହେଲ ହେଲେ ଦିଗଦନ୍ତୀ କାତର । ମଣିଲେ । ଗର୍ଜ୍ଜିକି ସେ ମହାକେଶରୀ । ମଇନାକ ଲୁଚେ ଇନ୍ଦ୍ର ଶତ କୋଟି କୋଟି କୋଟି ମାରେ ବଜ୍ରର । ୩୯ ।

---

୩୬ । ପଲ୍ଲବକୋଣ—ପଦ୍ମରଫାଟକ, ଏଠାରେ ଅଧର, ପୟୋଧର—କୁଚ,ପୂର୍ଣ୍ଣକୁମ୍ଭ, ପାରାବତ—କପୋତ, ଭଦ୍ରାସନ—ସିଂହାସନ, ଚୂଚୁକ—କୁଚରଅଗ, କମ୍ବୁକ—ଗୁଆ ।

୩୭ । ଅମାରି—ହାତୀର ହାଉଦା, ପନ୍ନଗପତି—ବାସୁକି,ତପନ—ସୂର୍ଯ୍ୟ ।

୩୮ । ସରପଦ୍ମ—ପୋଖରୀଘର, ଶର୍ବରୀ—ରାତି, ରଥାଙ୍ଗ—ବକ୍ର, କଳାପୀ—ମୟୂର, କାକରେ—କାଉ ସବୁ, ନିଳୟଗତ—ଘରକୁ ଯିବା, ଏଠାରେ ବସାକୁ ଯିବା, ଦୀପାଳିକା—ଦୀପସବୁ ।

୩୯ । ହ୍ରେଷା—ଘୋଡ଼ାର ଶବ୍ଦ, ବାଦ୍ୟଦମକ—ବାଦ୍ୟଶବ୍ଦ, ଦିଗଦନ୍ତୀ—ଦିଗ୍ ବଳୟ ବା ଦିଗ୍‌ଗଜ, କେଶରୀ-ସିଂହ, ଶତକୋଟି-ବଜ୍ର, ପୂର୍ବରେ ପର୍ବତ ଉଡ଼ି ଗ୍ରାମାଦି ନଷ୍ଟ କରନ୍ତେ ଇନ୍ଦ୍ରବଜ୍ରରେ ତାଙ୍କ ପକ୍ଷ ଛେଦିଲେ, ତହୁଁ ମୈନାକ ଲୁଚିକରି ସମୁଦ୍ରରେ ବୁଡ଼ି ରହିଲା ।

ପଥ ରାଜନ ପ୍ରଜାଳନ ସମାନ ପୁଳକ ହେଲେ ସ୍ଥାନେ ସ୍ଥାନେ । ଜଳ ହୀନ ହେଲେ ସରିତ କାସାର ଅନନ୍ଦେ କୀରା ଗୃଧ୍ରମାନେ । ଯାବତ ଯାଦମେଦ ସ୍ୱାଦ ଲଭିଲେ । ବହୁତ ଦାଗରେ ଯାଇ ସେ କଳିନ୍ଦ୍ୟାପୁର ପ୍ରଦେଶକୁ ଲଭିଲେ । ୪୦ ।

ବାସବସଦନ ପ୍ରକାରେ ସେ ବନ କଣ୍ଟକ ସମାନ ଶୋଭନ । ନିଶାର୍ଦ୍ଧେ ନିଷାଦେ ଭ୍ରମିଲେ ବିଷାଦେ ହୀନ ହୋଇ ଜନ ଶୟନ । ମନୁଜ । ରୂପ ମନୋଜ ମନୋହର । ଦନୁଜତନୁଦାରଣ ରାମ ଚନ୍ଦ୍ର ହେବଇ ଭଞ୍ଜ ବୀରବର । ୪୧ ।

---

## ଚତୁର୍ବିଂଶ ଛାନ୍ଦ

(ଲାବଣ୍ୟବତୀ ପାଶକୁ ଦୂତ ଯିବା ଓ ଚନ୍ଦ୍ରଭାନୁର ଶିକାର)

ରାଗ—ପାହାଡ଼ିଆକେଦାର

ଶୁଣ ସୁମତି ବିନାଶ ରାତି ପୂର୍ବହରିତ କୁଙ୍କୁମକାନ୍ତି ହେତି ମାଗଧ ଆରମ୍ଭେ ସ୍ତୁତି କୀର୍ତ୍ତନକର ଯେ । ହେଳେ ମୁକୁଟ ତାକେ କୁକ୍କୁଟ ସେ ବାଣୀ ଭର୍ତ୍ତାପତିଙ୍କି କୂଟ ସରମାନଙ୍କେ ସାରସ ଫୁଟ ଗର୍ଭେ ଭ୍ରମର ଯେ । ଉଠି କୁମର କାଠି ଲାଗି ଦୁଆଇ ଯେ । କରଯୋଡ଼ି ସଚିବସୁତ ଜଣାଇ ଯେ । କହୁଅଛନ୍ତି ଶିକାରୀଜନ ବହୁ ଜୀବରେ ଏ ବନ ଘନ ହେବ କି ବିବେ ଶିକାରମାନ ଆଜକ ରହି ଯେ । ୧ ।

---

୪୦ । ପୁଳକ—ପୁଳା, ସରିତ—ନଦୀ, କାସାର—ପୋଖରୀ, କୀରା—ଛଲୁଆ, ଗୃଧ୍—ଶାଗୁଣା, ଯାଦମେଦ—ମାଛ ପ୍ରଭୃତି ଜଳଚର ।

୪୧ । ବାସବ ସଦନ—ଇନ୍ଦ୍ରପୁର, ନିଶାର୍ଦ୍ଧେ—ରାତି ଅଧରେ, ନିଷାଦେ—ଶବରମାନେ, ବିଷାଦେ—ଦୁଃଖରେ, ମନୁଜ—ମନୁଷ୍ୟ, ମନୋଜ—କନ୍ଦର୍ପପର ସୁନ୍ଦର, ଦନୁଜ—ରାକ୍ଷସ, ତନୁ—ଦେହ, ଦାରଣ—ନାଶ ଚନ୍ଦ୍ରଭାନୁ ପିତାଙ୍କ ଅଜ୍ଞା ପାଇ ବଳ ସହ ରାମେଶ୍ୱର ଯାଇ ସେଠାରେ ପାରଧି କରିବା ଇଚ୍ଛା କଲେ ।

---

## ଚତୁର୍ବିଂଶ ଛାନ୍ଦ

୧ । ସୁମତି—ସନ୍ଥ, ପୂର୍ବହରିତ—ପୂର୍ବଦିଗ, କୁଙ୍କୁମକାନ୍ତି—ରକ୍ତବର୍ଣ୍ଣ ମାଗଧ—ଭାଟ, କୀର୍ତ୍ତନକର-ଯଶସବୁ, ସରମାନଙ୍କେ-ପୋଖରୀସବୁରେ ସାରସ—ପଦ୍ମ, କାଠିଲାଗି-ଦାନ୍ତଘଷିବା, ଶିକାରୀଜନ-ବାଣୁଆମାନେ

ଶୁଣି ଏମନ୍ତ ଚଟ୍ଟେ ଚତୁର ଅଗ ପେଷିଲେ ସେ ବ୍ରହ୍ମଗୃହ ରାଜ ପୁତ୍ରିକା ପାଶେ ବିନୟ ପତ୍ରିକା ଦେଇ ଯେ । ତଦନନ୍ତର ଶିକାର ସଜ ଆଣି ବୋଲନ୍ତି ନୃପ ଅଙ୍ଗଜ ଶୁଭିଲା ତାଙ୍କ ସଇନ ସାଜ ତୁରତେ ତହିଁ ଯେ । ପ୍ରଥମରେ ଏ ଦଳ ହେଲେ ବାହାର ଯେ । ଲୋଧାଗୋଧାରେ କରେ ମଣ୍ଡନ କର ଯେ । ଭ୍ରମଙ୍କ ପଶୁସ୍ତୋମରେ ସେହୁ ସୁଚର୍ମ ବର୍ମ ତୋମର ଶୋହି ବାଜ ବଇରି ହସ୍ତେ ବସାଇ ଭସ୍ମଜର୍ଜ୍ଜର ଯେ । ୨ ।

ଶବରପନ୍ତି କି ଭୟଙ୍କର ଯଥା ପରେତରାଟଙ୍କଙ୍କର ଭୁଷା ବରାଟ ଗୁଞ୍ଜି ନିକର ମଧୁରେ ମତ୍ତ ଯେ । ମନ୍ତ୍ରର ପଢ଼ି ଧୂଳି ଉଡ଼ାଇ ଗଲେ ସେ ପଶୁପଦ ଗୋଡ଼ାଇ ଧମନ ଗୁପେ କାଣ୍ଡ ଚଢ଼ାଇ ଠାଣି ଗୃହ୍ଣନ୍ତି ଯେ । ବ୍ୟାଧେ ବହନ୍ତି ନଳ ଡାଲତାଟୀଙ୍କ ଯେ । ନଳଅଳିରେ ଘେନି ଅଠା-ଛାଟିକି ଯେ । ବହୁ ବାଗୁରି କେ ତହିଁ ଥିବା ବହୁତ ମୃଗଦଂଶଙ୍କ ଧରି ଶାଖାବେଷ୍ଟନେ ବଲ୍ଲରୀ ପରି ଲଭି ଦୃଷ୍ଟିକି ଯେ । ୩ ।

କୁମର ବାଜେ ହୟ ପିଠିରେ ତାଙ୍କୁ ସମାନ ନାହିଁ ସୃଷ୍ଟିରେ ଏମନ୍ତ ହୋଏ କବି ଦୃଷ୍ଟିରେ ସାମ୍ଭବ୍ୟ ତହିଁ ଯେ । ସୁବର୍ଣ୍ଣ ଜଗୀକଣି ବାଖର ପନ୍ଥ ଡେଣାଙ୍କ ବିସ୍ତାରେ ତାର ଡେଇଁ ଯିବାକୁ ସପ୍ତସାଗର ଇଚ୍ଛା କରଇ ଯେ । ବୀର ବଳକୁ ଲଙ୍ଘି ନ ପାରି ରହୁ ଯେ । ଯେଣୁ ସୁଜାଣ ଅଛୁ କରକୁ ଗୃହିଁ ଯେ । ମେରୁ ମହୀରେ ମିଶିବ ଯେବେ ଖୁରକ ସ୍ଥାନ ନୋହିବ ତେବେ ତା ଚୂର୍ଣ୍ଣ ଭାବ ରହୁବାଠାବେ ଖୁର ମାରଇ ଯେ । ୪ ।

ସଙ୍ଗେ ଥିବାର ତୁରଙ୍ଗବଂଶ ପ୍ରଶଂସା ଅଜ କରିବା କିସ ଜବକୁ ପବମାନ ସଦୃଶ ପୂର୍ଣ୍ଣ ଲକ୍ଷଣ ଯେ । ହୋଇଲେ ବେଗବନ୍ତ ମାତଙ୍ଗ ନ ଦଶେ ସାଦ ସୁଜନ୍ତମାଙ୍ଗ କୁସୁମଶର ଏଡ଼େ ଉତ୍ତୁଙ୍ଗ ଅଟନ୍ତି ଜାଣ ଯେ । ଅଚଣୀନ୍ଦ୍ରେ ରାଜତ ମାହୁନ୍ତରୟ ଯେ । ବେଢ଼ି ବୀରଙ୍କୁ କଲେ ଶୋଭା

---

୨ । ରାଜପୁତ୍ରିକା—ରଜାଝିଅ, (ଲାବଣ୍ୟବତୀ) ତଦନନ୍ତର—ତାହାପରେ, ଅଙ୍ଗଜ—ପୁତ୍ର, ଲୋଧା ଗୋଧା—ଗୋଧିଚମର ତିଆର୍ଣ୍ଣ ଯାହାଙ୍କ ଶରମୂଳ ନ ବାଜିବ ବୋଲି ହାତରେ ପିନ୍ଧନ୍ତି, ସ୍ତୋକ—ସମୂହ ।

୩ । ପରେତରାଟ—ଯମ, ବରାଟ—କଉଡ଼ି, ଗୁଞ୍ଜ—କାଇଁଚ, ମଧୁ—ମଦ, ଧମନ—ନଳ, ଶୃଙ୍ଗା, ନଳଅଲୀ—ନଳସବୁ, ବଲ୍ଲରୀ—ଲଟା, ବାଗୁରା—ଜାଲଫାଶ ।

ଉଦୟୁ ଯେ । ପଦାତିପନ୍ତି ସଙ୍ଗେ ଧାଇଁଲେ ରମ୍ୟବିପିନ ଯାଇ ପାଇଲେ
ଅଦ୍ଭୁତ ଶୋଭମାନ ଗୃହିଲେ ତୋଷ ଉଦୟୁ ଯେ । ୫ ।

ନ ଥିଲା ହୋଇ ପାଦପ ତହିଁ ଅଜ ଉଦ୍ଭବ ଭୁବନେ ନାହିଁ ଚମର
ଅଳାଇଚ କଙ୍କୋଳ ସଘନେ ଯହିଁ ଯେ । ବୈଦ୍ୟ ଭାବନ୍ତି ଔଷଧପନ୍ତି-
ପ୍ରଭାବରେ ଅତ ଥିବେ ଯେ ପ୍ରତିରଜନୀ ଏଣି ଗୃହମୀଘତ କାନ୍ତିକି ବହୁ
ଯେ । ଫଳେ ହେଠ କମାଳୀ କୁମ୍ଭୀ ଜମ୍ଭୀର ଯେ । ଦଶୁଛନ୍ତି ପ୍ରଣାମ କଲା
ପ୍ରକାର ଯେ । ବାରମାସରେ ବିକାଶ ଜାତି ନୀପ କୁଟଜ କୁସୁମବତୀ ହୁଦ
ହରଷ ଦେଖାଉଛନ୍ତି କି ନିରନ୍ତର ଯେ । ୬ ।

ସଫଳ ତହିଁ ଗୁଆ ନାରଙ୍ଗ ଶ୍ରୀଫଳ ତୁଙ୍ଗ ସମାତୁଲଙ୍ଗ ଲଙ୍ଗଳୀ
କରମଙ୍ଗାହି ସଙ୍ଗ ଶତ୍ରୁବଳ ଭାବ ଯେ । ଶିଶୁଠାବରୁ ଜରତ ପର ସ୍ତନ
ଶୋଭନ ଥିବାରୁ ଧର ଉତ୍ଫୁଲ୍ଲ ସ୍ତମ୍ଭ ଅଛୁ ଆଦର ପୁନ୍ନାଗ ଧବ ଯେ ।
ଅଙ୍ଗବାସ ମାଧବୀ ସୁପରିମଳ ଯେ । ହୋଇ ପ୍ରସରୁ ଅଛୁ ମନ୍ଦ ଅନିଳ ଯେ ।
ବସ୍ୱହଦାଢ଼ ନବମାଳିକା ନୂତନ କରବୀରକଳିକା ଯଥା ବାଳିକା ନଖ-
ମାଳିକା ମହାଉଜ୍ଜ୍ୱଳ ଯେ । ୭ ।

କୁଞ୍ଜକୁଟିରମାନ ରୁଚିର ଯୂଥିକା ମୋତିବିତାନ ଚୀର ପତନପୁଷ୍ପ
ଶଯ୍ୟା ପ୍ରକାର ଶେଫାଳିକାର ଯେ । ଭାଷନ୍ତି ଭାଷ ସାଗ୍ର କପୋତ ସୁମନ
ରତିରସରେ ମତ୍ତ ପାନ ଖଦିର ଲବଙ୍ଗସ୍ଥିତ କି ମନୋହର ଯେ । ଦୀକ୍ଷା
ବିପ୍ରାନେ ଶିକ୍ଷା କନ୍ଦର୍ପ କେଳି ଯେ । ପଶ୍ଚି ବସନ୍ତ ପାଗ୍ବତହିଁ ଖେଳ ଯେ ।

---

୫ । ତୁରଙ୍ଗବଂଶ—ଘୋଡ଼ାମାନେ, ଜବକୁ—ଚଞ୍ଚଳରେ, ପବମାନ—ପବନ, ସାନ୍ନି—ଯୋଦ୍ଧା, ସୁତ୍ତମାଙ୍ଗ—ମୁଣ୍ଡ, ଉତୁଙ୍ଗ—ଅତିଉଚ୍ଚ, ସାଦ୍ଧେତ—ଘୋଡ଼ାସବାର, ଉଦନ୍ତପନ୍ତି—ପାଇକ ସେନାମାନେ, ବିଜନ—ବଣ ।

୬ । ପାଦପ—ବୃକ୍ଷ, ଔଷଧପନ୍ତିପ୍ରଭାବରେ—ଔଷଧ ଗଛମାନଙ୍କତେଜରେ, ହେଠ—ନଇଁପଡ଼ିବା, ଜାତି—ଜାଇଫୁଲ ନୀପ—କଦମ୍ବ, କୁଟଜ—ପିତାକୋରୁଆ ।

୭ । ଶ୍ରୀଫଳ—ବେଲ, ନଡ଼ିଆ, ତୁଙ୍ଗ-ଉଚ୍ଚ, ସମାତୁଲଙ୍ଗ—ଟଭା; ଲଙ୍ଗଳୀ—ନଡ଼ିଆ ବସ୍ୱହଦାଢ଼—ଫୁଲବିନାମ,ନବମାଳିକା—ମଲ୍ଲୀ, କରବୀର—କନିଅର, କଳିକା—କଢ଼ୀ ।

୮ । ଯୂଥିକା—ଯୁଈ, ବିତାନ—ଚାନ୍ଦୁଆ, ଶେଫାଳିକା—ଗଙ୍ଗଶିଉଳି

ପକ୍କଣବାସ ଅଶୋକଡାଳ ସ୍ତବକ ରବଦ୍ୟୋତରେ ଫଳ ଭ୍ରମ କରଣ ଶଶା ହରଣ ସମ୍ବର ମିଳ ଯେ । ୮ ।

ଚନ୍ଦ୍ରକୁ ଚେଙ୍କ ନାଚନ୍ତି କେକୀ ଊର୍ଦ୍ଧ୍ୱରୁ ଖସୁଛୁ କ ଗୃତକୀ ଯହିଁ ତମାଳ ତରୁକୁ ତର୍କି ଜଳଦ କର ଯେ । ଅମ୍ଳାନ ଗୁଳ୍ମ ବଲ୍ଲୀକମକ କୁସୁମ ପୀତ ରଙ୍ଗ ଅସିତ ଶ୍ରେଣୀଭୂତରେ ସେ ପୁରୁହୂତ କୋଦଣ୍ଡ ପର ଯେ । ମତ୍ତଦ୍ୱିରଦ ନାଦ ଜଗତରେ ଶୁଭେ ଯେ । ଚମ୍ପା ସମ୍ପାତ ଶମ୍ପାକୁ ସମ ଲଭେ ଯେ । ବକୁଳ ମକରନ୍ଦ ବରଷେ ଡାହୁକ କେକୀ ବାଣୀକି ଘୋଷେ ବଳାକୀ ଗତ ଅଗତବଶେ ସ୍ୱଭାବ ଶୋଭେ ଯେ । ୯ ।

ପ୍ରଫୁଲ୍ଲ ମଲ୍ଲୀବଲ୍ଲିକମାନ ତାସ୍ୱ ସନ୍ଧ୍ୟରେ ନୀଳ ଗଗନ ଛୁଡ଼ପଡ଼ଲା ଧରା ଶୋଭନ ପରାପ୍ତେ ତର୍କ ଯେ । ଅନାଇଁ ଛାହା ଅସିତ ନୀଳ ଦାସୀ ପ୍ରକାଶ ରଥାଙ୍ଗକୁଳ ପ୍ରବେଶ ହୋଇ ମହା ବ୍ୟାକୁଳ ପକ୍ଷ ଝଟେକ ଯେ । ଗୃହିଁ ଚକୋରପକ୍ଷୀ ଚଞ୍ଚୁ ସ୍ୱଚ୍ଛକୁ ଯେ । ଲଗେ ଚତୁରପଣେ କାନ୍ତା ଯୋଗକୁ ଯେ । ବାରୁଣୀ ପୁଷ୍ପବନ୍ତ ମଡାର ଦେଖି ଆନନ୍ଦ ଦବାନ୍ଧକାର ତରୁ ଦୋଳକା ଆଦ ବଗୃର କରେ ରଙ୍ଗକୁ ଯେ । ୧୦ ।

କିଂଶୁକ ଶୁକ ଯେ ବୃକ୍ଷେ ଥାଇ ଭ୍ରମରେ ସେହୁ ଭ୍ରମ କରାଇ ଚୂତ-ପଲ୍ଲବେ ସେ ଅଳ ହୋଇ ହେଉଁ ପତନ ଯେ । ଜମ୍ବୁ ବଗୁରେ ଜଉଣ ସେ ଯେ ବମ୍ବ ପାଶକୁ ଚାହୁଡ଼ ଲଜେ ଗଲ ରେ ବୋଲି ଜମ୍ବୁକ ଗର୍ଜ୍ଜେ କର ଲେକନ ଯେ । ଗୃହିଁ କସ୍ତୁରୀ ପଙ୍କେ ପଙ୍କିଳା ମହୀ ଯେ । ସଢ଼ ପଢ଼ ଏମନ୍ତ କୋକିଳ ଧ୍ୟାୟି ଯେ । ଅଷାଢ଼େ କର ଏ ରସ ପାନ କରଇ ମୁଁ ଯେ ପଞ୍ଚମଗାନ ଏହା ଯା ଜାଣୁ ନାହାନ୍ତି ଅନ ମୋ ଭାଗ୍ୟ ଏହୁ ଯେ ।୧୧।

---

ଖଦର—ଖଇର, ଦୀକ୍ଷା—ଉପଦେଶ, ପକ୍କଣ—ଶବରଘର, ପଳକୁଡ଼ିଅ, ସ୍ତବକ – ଫୁଲପେଣ୍ଡା, ରବଦ୍ୟୋତରେ—ଖରାରେ ।

୯ । କେକୀ—ମୟୂର, ଜଳଦ—ମେଘ, ଗୁଳ୍ମ—ଗ୍ଛୋଟବୁଦା, ବଲ୍ଲୀକ—ଜଇହୁଙ୍କା, ଅସିତ—ଧଳା, ପୁରୁହୂତ—ଇନ୍ଦ୍ର, କୋଦଣ୍ଡ—ଧନୁ, ଦ୍ୱିରଦ—ହାତୀ, ଶ୍ରେଣୀଭୂତ—ଧାଡ଼ି ଧାଡ଼ି, ଶମ୍ପା—ବିଜୁଳି ।

୧୦ । ପ୍ରଫୁଲ୍ଲ—ଫୁଟିଲା, ମଲ୍ଲୀ ବଲ୍ଲିକା—ମଲ୍ଲୀଲତା, ଧରା—ପୃଥିବୀ, ଅଶୀତ—କଳା ଦାସୀ—କେରଣ୍ଡା ଫୁଲ, ରଥାଙ୍ଗକୁଳ—ଚକ୍ରବାକମାନେ, ବାରୁଣୀ—ଅଗସ୍ତିଗଛ, ତରୁ—ବୃକ୍ଷ ।

୧୧ । କିଂଶୁକ—ପଲାଶଗଛ, ଚୂତପରାଗେ—ଅମ୍ବ ବଉଳରେ; ଜମ୍ବୁ—ଜାମୁକୋଳି, ବମ୍ବ—କଇଁଚକାକୁଣ୍ଡ, ଜମ୍ବୁକ—ବିଲୁଅ, ଲେକନ-ଗୃହିବା ।

ତାଳମୂଳ ବାଜେ ଉଳେ ଅବମୀ ଭୃଣିଲ୍ଲ ପ୍ରାୟ ମାଥିକଳୁମୀ ଖଞ୍ଜନେ ମିଳୁଛନ୍ତ ଏ ଘେନା କରବଣେ ସ୍ଥାନ ଯେ । ପଡ଼ି ଗୁଡ୍‌ଗୁଲ ଶାଲନିର୍ଯାସେ ବଂଶଅନଳେ ଧୂପ ପ୍ରକାଶେ ପୁଳିନ୍ଦ ଅଗ୍ନି ଦେବାର ଗ୍ରାସେ ସରଘାମାନ ଯେ । ଉଡ଼ୁଅଛନ୍ତ ଛାଡ଼ି ମଧୁକୋଷକୁ ଯେ । କରମଣ୍ଡଳୀ କରୁଛନ୍ତ ଘୋଷକୁ ଯେ । ଯେପଣେ ଗୁହିଁଲେ ନବ ପାଟଳୀ ଜୟନ୍ତୀ କୁରୁବକ ଶାଳ୍ମଳୀ ପୁଷ୍ପିତ ହେବାକୁ ପଲ୍ଲବେ ହଳ ସେହ୍ନ ବାସକୁ ଯେ । ୧୨ ।

କୁସ୍ତମଞ୍ଜରୀଗଣ ଚରମେ ହଂସ ସଗ୍ଲୀ କାଳନ୍ଦୀ ଭ୍ରମେ ବିହାର କରୁଛନ୍ତ ଅଗମ୍ୟ ସୁମନୋରମେ ଯେ । ବ୍ୟାଳେ ମୃଣାଳ ବୁଦ୍ଧି କରନ୍ତ କଙ୍କ ନକୁଳ ଯେ ନ ଧରନ୍ତ ପକ୍ଷୀ ସ୍ୱସ୍ତାକୁ ଜାଳେ ଧାମନ୍ତ ବଡ଼ାଳେ ଶମେ ଯେ । ଅର୍କପାଷାଣମାନେ ସେ ବନଷିଡ ଯେ । ବଡ଼ ବଡ଼ ହୋଇଣ ପଡ଼ିଅଛନ୍ତ ଯେ । ମତ୍ତଗର୍ବିତ ସିଂହସନ୍ଦୋହ ତହିଁ ଅନାଇଁ ଜାତ ସନ୍ଦେହ ଥରନ୍ତି ଅସୁଛନ୍ତ କଳହ ସ୍ୱନାଦେ ଅତ ଯେ । ୧୩ ।

ପଢନ ଜାତଫଳ ଅମୃତା ପକ୍ୱବଦରୀ ଗଜମୁକୁତା ବବେକ ନ କରଣ ମାଡ଼ ତା ଗମିଲେ ସୈନ୍ୟ ଯେ । ଏଳାଦ ଭରଦ୍ୱାଜପତ୍ରରେ ଚକିତ ପଥ କ ବାଟରେ ସବେଁ ପ୍ରଶଂସା କଲେ ଉତ୍ତରେ ଏ ବନ ଧନ୍ୟ ଯେ । ଅତ ମୃଗଚଦଳ ନଶାଣଘାତେ ଯେ । ହେଲେ ଚଳିତ ପଶୁ ପତଙ୍ଗ ଯେତେ ଯେ । ଯାହୁଁ ସେ ବନ ସେ ବନଧର ମାଡ଼ି ଅସିଲ୍ଲ ମଣି ସାଗର ଅତ୍ୟନ୍ତ ଜ୍ୱେଳ ପତାକା ଚୀର କଲ୍ଲୋଳ ପ୍ରତେ ଯେ । ୧୪ ।

---

୧୨ । ଶାଲନିର୍ଯାସ-ଝୁଣା, ବଂଶଅନଳ-ବାଉଁଶନିଆଁ, ପୁଳିନ୍ଦ-ଶବର, ସରଘା ମହୁମାଛି, କୁରୁବକ-କୁରୁମ, ଶାଳ୍ମଳୀ-ଶିମିଳ, ବାସ-ଭସ୍ମ ।

୧୩ । କୁସ୍ତମଞ୍ଜରୀ-ଫୁଲବିଶେଷ, ଚରମେ-ପିଠିରେ, ସଗ୍ଲି-ଚଢ଼େଇବିଶେଷ, ବ୍ୟାଳ-ସାପସବୁ, କଙ୍କ-ଚଢ଼େଇ ବିଶେଷ, ନକୁଳ-ନେଉଳ, ବିଡ଼ାଳ ବିଲେଇ, ଅର୍କପାଷାଣ-ସୂର୍ଯ୍ୟକାନ୍ତମଣି, ବନଷିଡ-ବଣଭୂଇଁ, ସନ୍ଦୋହ ସମସ୍ତେ ।

୧୪ । ଅମୃତା-ହରଡ଼ା, ପକ୍ୱ-ପାଚିଲା, ବଦରୀ-ବରକୋଳି, ଏଳା-ଅଳାଇଚ ଭରଦ୍ୱାଜପତ୍ର-ଭଦଭଦଳିଆ ପର, ପତଙ୍ଗ ଚଢ଼େଇ ବନଧର-ସୈନ୍ୟ, ଜ୍ୱେଳ-ଶୀଘ୍ର, ଚୀର-କନା, କଲ୍ଲୋଳ-ଲହରୀ ।

କରୀ ମଣିଲେ ମକରୀ କର ତୁରଙ୍ଗ ତହିଁ ଶଫର ପର କୂର୍ମ ସୁଚର୍ମ ସୁଷମ ଫରୀ ଉଷ୍ଣୀଷ ଫେନ ଯେ । କୃପାଣ ଝଟ ଝଟ ଝଟକ ବହଇ ଯନ୍ତ୍ର ରନ୍ତୁ ଝଟକ ଭ୍ରମପଦାତ ଭଉଁର ଠିକ ବାଦ୍ୟ ଗର୍ଜ୍ଜନ ଯେ । ପୁର ଏସନ ସୈନ୍ୟ ସେ ମହାରଣ୍ୟ ଯେ । ପଞ୍ଚକୋଶ ମଧ୍ୟରେ ରକ୍ଷିଣ ସ୍ଥାନ ଯେ । ଘଞ୍ଚରେ ଯାଇଁ ବାଡ଼ ବେଢ଼ାଇ ଉଚ୍ଚରେ ବୃକ୍ଷେ ମଞ୍ଚା ବନ୍ଧାଇ ଯନ୍ତ୍ରା ବସାଇ ଟୋପ ଖୋଳାଇ ଜଗିଲେ ଜନ ଯେ । ୧୫ ।

ପଳାଇ ଜୀବେ ଯହିଁରେ ସ୍ଥିତ ବହୁ ସେ ଦନ୍ତିଦନ୍ତ ଅକୃତ ତହିଁ ମର୍କତଶିଳାର ଜ୍ୟୋତି ଯାଇଛି ନଭେ ଯେ । ଟେକି ଅଛନ୍ତି ଏଥିକି କର ପିଇବ ଅଣି ସ୍ୱର୍ନଦୀ ନୀର କରଟଦନ୍ତ କଟକେ ତାର ଯେପରି ଶୋଭେ ଯେ । ଧାତୁ ଧର ଶବଳା ମାଳା ସଦୃଶୀ ଯେ । ଜଳପ୍ରବାହ ଦାନଜଳ ବରଷି ଯେ । ପିପ୍ପଳ ଅଶନକୁ ଗୃହୀତ କର ସିନ୍ଦୂରେ ତିଳକେ ଯୁତ ଦିବସବନ୍ଧୁ ଯହିଁ ମାହୁନ୍ତ ପରାୟ ଦିଶି ଯେ । ୧୬ ।

ସେ ଗ୍ରାବୁଁ ଜୀବ ସବୁରେ କାଳୀ ଦେଇ କୁହାଟ ଠମକ ତାଳି ଫିଙ୍ଗିଲେ ସାଦ କୁନ୍ତ ଶାବଳୀ ବନ୍ଧିଲେ ତୀର ଯେ । ପ୍ରତ ନଳିରୁ ଗୁଳି ବାହାର ଧାଡ଼ଦେବାର ବାଜ ବଇରୀ ମାଡ଼ିବସିଲେ ପକ୍ଷୀକି ଧର କି ମନୋହର ଯେ । ଜାଳେ ପଡ଼ିଲେ ଅତେଢ଼ି ପଶୁନିକର ଯେ । ଗଡ଼ି ପଡ଼ିଲେ କେତେ କେତେ କୁଞ୍ଜର ଯେ । ମାରରେ ମାର ଏ ବୀର ଗିର ପୁରିତ ହେଲା ଅମରପୁର ସାଙ୍କଳା ଅବା କେଉଁ ଅସୁର ଭାବିଲେ ସୁର ଯେ । ୧୭ ।

ଭଲ୍ଲରେ ଭଲ ଭଲ୍ଲ ଭୁଷିଲେ ମଲ୍ଲ ଯୁଝିଲେ ଶାର୍ଦ୍ଦୁଳ ତୁଲେ ଖଡ଼୍ଗ ଶ୍ରେଷ୍ଠ ପରୀକ୍ଷା କଲେ ଖଡ଼୍ଗ ପରେ ଯେ । ଶରଭ ଶରଭରେ ବିନାଶି

---

୧୫ । କରୀ-ହାତୀ, ମକରୀ-ମଗର, ତୁରଙ୍ଗ-ଘୋଡ଼ା, ସଫରୀ-ଦଣ୍ଡିକରୀ ମାଛ, କୂର୍ମ-କଇଞ୍ଛ, ସୁଚର୍ମ—ଉତ୍ତମଚମଡ଼ା, ଉଷ୍ଣୀଷ-ପଗଡ଼ି, କୃପାଣ-ଖଣ୍ଡା, ଭ୍ରମପଦାତ—ବୁଲୁଥିବା ପାଇକ, ଟୋପ—ଗାତ ।

୧୬ । ଦନ୍ତିଦନ୍ତ—ହାତୀଦାନ୍ତ, ନଭେ-ଆକାଶରେ, ସ୍ୱର୍ନଦୀ-ଗଙ୍ଗା, କରଟ—କୁଅ, ଦାନଜଳ-ମଦଜଳ, ପିପ୍ପଳ-ଅଶ୍ୱତ୍ଥ, ଦିବସବନ୍ଧୁ-ସୂର୍ଯ୍ୟ ।

୧୭ । ଗ୍ରାବୁଁ-ଶବ୍ଦରୁ-ଟେରବାରୁ, କୁଞ୍ଜର-ହାତୀ, ଅମରପୁର—ସ୍ୱର୍ଗପୁର ସୁର—ଦେବତା ।

୧୮ । ଭଲ୍ଲ—ଭାଲୁ ଓ ବର୍ଚ୍ଛା, ଶାର୍ଦ୍ଦୁଳ—ବାଘ, ଖଡ଼୍ଗ—ଖଣ୍ଡା ଓ ଗଣ୍ଡା, ଶରଭ—ଅଠଗୋଡ଼ ଯୁକ୍ତ ମୃଗ, ଶରଭ—ଶର, ଭୂଦାର—ବରାହ

ବାରଣ କଲେ ଭୂଦାର କଣି ସୁଗାଢ଼ ଯମଦାଢ଼ ପ୍ରକାଶି ଅତି କୋପରେ ଯେ । ଗୁଣ୍ଡ଼ ଶଲକିପଲ ଶ୍ୱାନହିଁ ଧ୍ୱଂସେ ଯେ । ମଧ୍ୟ କି ଲାଲ ଧଶେ କିଲାଲ ବଶେ ଯେ । ସର୍ବାଙ୍ଗ ରଙ୍ଗ କଲେ ଜନାଳି ଗଜ ବରଷ୍ଠ କୁରଙ୍ଗ ନଳି ଯୋଗରେ ଫଗୁପିଚକା ଚଳି ଅତି ହରଷେ ଯେ । ୧୮ ।

କୁମର କରୁଁ ମୃଗୟା ରସ ଲଭିଣ ତ୍ରାସ ପୁଚ୍ଛେ ମହିଷ ଅଛୁ କି ନାହିଁ ମୋର ଅପୂର୍ବ ବୃଂହ ଜୀବେଶ ହେ । ଶଙ୍କର ଶଶାଙ୍କର ଜବର ବାତ ଅଶନ ଦୁର୍ଗାପସୁର ବହିଲ ସେହି ଦଣ୍ଡକ ଥର ବର୍ଣ୍ଣିବା କିସ ଯେ । ସ୍ୱାମୀ କରଇ ତାର ସଖୀକି ସ୍ଥିର ଯେ । ଖଣ୍ଡ୍ର ଶବଦ ଅଛୁ ତୋର ନ ଡର ଯେ ସର୍ବଙ୍କ ପଣେ ବଧି ଶିଖାଇ କର କୁମର ଉଦନ୍ତ ଭ୍ରୁହ ଲାବଣ୍ୟବତୀ ଗ୍ରାମ୍ୟକୁ ଯାଇ ମରାଳବର ଯେ । ୧୯ ।

ମୃଗୟା ଶେଷେ ଯୁବନରେଶ ବାହୁଡ଼ି ହେଲେ ବସା ପ୍ରବେଶ ମେଦ ବଣ୍ଟାଇ ମୋଦ ଅଶେଷ ସଚିବସୁତ ଯେ । କୋଷେ ରହିଲ ଗନ୍ଧମାର୍ଜ୍ଜାର ବରାଙ୍ଗ ଗଜ ମୋତି ଚ୍ୟମର ଖଡ଼୍ଗପଣ ଦତ୍ତ ଭୂସୁରଗଣେ ସତ୍ୱର ଯେ । ତୋଷି ବୈଷ୍ଣବ ଦ୍ୱିପିଅଜିନ ଦେଇ ଯେ । ଶିଶୁଲାଳସୀ ଲୋକେ କରଜ ନେଇ ଯେ । ବଜ୍ରକବର ଗଣ୍ଡକ ଜାତ ଲଭେ ବାହୁତ ରାଜଭପନ୍ତ ପଦଗ ପକ୍ଷଦାନେ ତୃପତ ବିଶେଷେ ହୋଇ ଯେ । ୨୦ ।

କରି-ଦଶନ ଲଭି ତକ୍ଷକେ ଶୃଙ୍ଗ ପ୍ରଦାନ ଶୃଙ୍ଗକାରକେ ଚର୍ମ-କାରକୁ ଚର୍ମ ଜହ୍ନୁକେ ନାଅ ବୋଇଲେ ଯେ । ବରାହଲୋମ ପାଟ୍ଟରାଲୋକେ ମୃଗନାଭିକି ପାଇ ବଣିକେ ମନ୍ତ୍ରୀନନ୍ଦନଗୁଣ ଅଧିକେ ପ୍ରଶଂସା କଲେ ଯେ ।

---

ଶଲକୀ—ଝିଙ୍କ, ଶ୍ୱାନ—କୁକୁର, କିଲାଲ—ରକ୍ତ, ଜନାଳି—ଲୋକମାନେ, ଗଜ—ହାତୀ ।

୧୯ । ତ୍ରାସ-ଭୟ, ଜୀବେଶ-ଯମ, ପୁଚ୍ଛେ-ଲଜ୍ଜାରେ, ମହିଷ-ଯମ ବାହନ, ଶଙ୍କର-ମହାଦେବ, ଶଶାଙ୍କ-ଚନ୍ଦ୍ର, କର-କିରଣ, ବାତଅଶନ—ମୃଗ ଅହାରସିଂହ ଦୁର୍ଗାଙ୍କ ପସୁର କି ପଦତଳେ ରହିଲ, ଉଦନ୍ତ—ସମ୍ବାଦ, ମରାଳବର—ହଂସଶ୍ରେଷ୍ଠ ।

୨୦ । ମେଦ—ମାଂସ, ମୋଦ—ଆନନ୍ଦ, ବରାଙ୍ଗ—ମୁଣ୍ଡ, ଭୂସୁରଗଣେ—ବ୍ରାହ୍ମଣମାନଙ୍କୁ, ଖଡ଼୍ଗ ପଣ—ଗଣ୍ଡାପାଣି, ଦ୍ୱିପିଅଜିନ—ବାଘଛାଲ, ଶିଶୁ ଲାଳସୀ—ପିଲା ସୁଆଗୀ, କରଜ—ବାଘନଖ, ଗଣ୍ଡକ—ଗଣ୍ଡା ପାଦଗ—ପାଇକ, ପଦାତିକ, ପକ୍ଷ—ପର ।

୨୧ । କରିଦଶନ—ହାତୀର ଦାନ୍ତ, ତକ୍ଷକ—ବଢ଼େଇ, ଶୃଙ୍ଗ—ଶିଙ୍ଗ,

ପାଦ ଏକ ନାକର ଭରଣ ପିନ୍ଧି ଯେ । ତୋଷି ଉଦର କଲେ ଶୟନ ବାଧି ଯେ । ପ୍ରଭାତେ ସୈନ୍ୟ ସାଜ ଗମନ ଶୁଭଙ୍କ ଭଛେ ନାଗରାସ୍ତ୍ରନ ଶ୍ରୀରାମନାମ ଉପେନ୍ଦ୍ର ଭଞ୍ଜ ବ୍ୟାଧି ଔଷଧି ଯେ । ୨୧ ।

---

## ପଞ୍ଚବିଂଶ ଛାନ୍ଦ

( ଲାବଣ୍ୟବତୀ ଚିତ୍ରାଭ ପାଠ ଓ ଉତ୍ତର ଦାନ )

ରାଗ—ଘଣ୍ଟାରବ

ଫାଲ୍‌ଗୁନ ଶୋଭା ପ୍ରକାଶି । ଶିଶିରେ ବସନ୍ତ ମିଶି । ବାଲବାମାତନୁ ସୀମାକୁ ଅଶ୍ଳେଷ ଯୌବନ କଲଙ୍କ ଅସି । ୧ । କୁଜ୍‌ଝଟି ରେଣୁ ବିହାର । କ୍ରମେ କ୍ରମେ ହେଲା ଦୂର । ନୂତନ ସ୍ତବକ ସ୍ତନ ଅଙ୍କୁରିଲା ପିକବାଣୀ କି ମଧୁର । ୨ ।

କାନ୍ତି କେତକୀ ମାଧୁରୀ । ନାଆଳୀ କରଜ ପରି । ଡୋଳା ଚଞ୍ଚରୀକେ ଚଞ୍ଚଳ ଗୃଦ୍ଧରୀ ଅଣିଲା ବିଶେଷ କରି । ୩ । କାମେ ଉପୁ ଉପୁଜାଇ । ପୁନ୍ନାଗେ ଉତ୍‌ଫୁଲ୍ଲେ ଦେଇ । ଦର ବିକଶିତ ମଲ୍ଲି ମୃଦୁହାସ ପଲ୍ଲବ ଓଷ୍ଠ

---

ଚନ୍ଦ୍ରଭାନୁ ରାମେଶ୍ୱରକୁ ଯାଇ ସେଠାରେ ଥିବା ବଣକୁ ପାରିଧି କରିବାକୁ ଗଲା । ଗଣ୍ଡା,ବାଘ,ମୃଗ ସମ୍ବର ଇତ୍ୟାଦି ବହୁଜୀବ ମାରି ସମସ୍ତଙ୍କୁ ମାଂସ ବାଣ୍ଟିଦେଲା, ବ୍ୟାଘ୍ରଚର୍ମ ବୈଷ୍ଣବଙ୍କୁ, ଗଣ୍ଡାଚର୍ମ ବ୍ରାହ୍ମଣଙ୍କୁ, ପକ୍ଷୀ ପର ପାଇକଙ୍କୁ, ବାଘନଖ ପିଲାବାଲାଙ୍କୁ, ମୃଗନାଭି ବଣିଆଙ୍କୁ ଇତ୍ୟାଦି ଇତ୍ୟାଦି ପ୍ରକାରେ ବାଣ୍ଟିଦେଇ ଶୋଭିଲା । ଲାବଣ୍ୟବତୀ ପାଖକୁ ମଧ୍ୟ ଅଗରୁ ପତ୍ର ଦେଇଥିଲା ।

---

## ପଞ୍ଚବିଂଶ ଛାନ୍ଦ

୧ । ବାଲବାମା ତନୁ—ସ୍ତ୍ରୀ ପିଲାଙ୍କ ଦେହ, ଅଶ୍ଳେଷ—ଅକ୍ରମଣ ।

୨ । କୁଜ୍‌ଝଟି—କୁହୁଡ଼ି, ରେଣୁ-ଧୂଳି, ବିନ୍ଦୁ, ସ୍ତବକ-ଫୁଲ, ବଉଳପେଣ୍ଡା ଅଙ୍କୁରିଲା—ଜାତହେଲା ।

୩ । କାନ୍ତି—ବର୍ଣ୍ଣ, ମାଧୁରୀ—ମନୋହର, କରଜ—ନଖ, ଚଞ୍ଚରୀକ—ଭଅଁର ।

୪ । ଦର—ଅଳ୍ପ, ବିକଶିତ—ଫୁଟିଲା ।

ଦେଖାଇ । ୪ । ଏକାଳେ ସିଂହଳଈଶ । ମତ କର ଅତ ତୋଷ । ବହୁକେ ଗୃହଳଦେଲେ ଅନ୍ତଃପୁରସ୍ଥ ସ୍ୱମେଶ୍ୱରଦେବ ପାଶ । ୫ । ସେ ମହୀପତକୁମାରୀ । ପାରାବାର ହେଉଁ ପାରି । କ କରବ ମୁହିଁ ନ ଗଲତ ଏହୁ ଚିନ୍ତା ସଙ୍ଗସଖୀଙ୍କି ପଗୃହ । ୬ । ଏକେତ ନଗର ଦୂର । ଦୂକେ ସେ ନାଗରବର । ଯୁବାମଣି ଅବା ବଳେ ନ କରବେ ସଫଳ ସଂସାର ମୋର । ୭ । ମୁଁ ଯେ ରାଜସୁତା ହୋଇ । ଦୁର୍ଲ୍ଲଭେ ମନ ବଳାଇ । ଆକାଶ ପ୍ରକାଶ ଚନ୍ଦ୍ର ଧରିବାକୁ ନିଃଶ୍ରେଣୀ କାହିଁ ଖୋଜଇ । ୮ । ଏମନ୍ତ ବିଗୃହ ବେଳେ । କାମକଳା ଅସି ମିଳେ । ବୋଲେ ଦୀର୍ଘନେତ୍ରା ଏ ଯାତ୍ରା ଭଅଣ ତୋର ସିଦ୍ଧି ହେବା ଛଳେ । ୯ । ପୂରିଲ କାମନା ତୋର । ବରିବୁ ମନକୁ ବର । ଚନ୍ଦ୍ର ଅନନ୍ତ ଜନନୀ ଡାକ ମୋତେ କହୁଥିଲେ ଏ ବିଗୃହ । ୧୦ । ଗଲ ପ୍ରତବନ୍ଧ ସବୁ । ଆଜ କ ଚିନ୍ତାର୍ଥୀହେବୁ । ବାଳା ଗୁମ୍ଫେ ମାଳାଦେବେସ୍ୱଂସ ବାହୁ ଗଳାକୁ ମାଳା କରିବୁ । ୧୧ । ଏକାଳେ ବହନ୍ତ ବେଳା । ଲଭିଲ ଅବେହ ଡୋଳା । ଯିବା କାଳେ ବୃଦ୍ଧଗୃହ ସହଚରୀ ହସ୍ତରେ ପତ୍ରିକା ଦେଲ । ଦିବ୍ୟମନ୍ଦିରେ ଉତ୍ତୁରି । ପଲ୍ୟଙ୍କେ ବସୁ ଚତୁରୀ । ଦ୍ୱିଦନ୍ତଗମନା କହର ସେ ଉଦନ୍ତ ଦେଲ ଯେ ହେମମଞ୍ଜରୀ ।୧୩। ଦେଖିଲ ପଦ୍ମମଧ୍ୟରେ । ଲେଖିଲ କାଳଅକ୍ଷରେ । ପାରିନ୍ଦ୍ରମଧ୍ୟା ପଗୃହ ନ ପାରିଲ ନ ଅସିବା ଅସିବାରେ । ୧୪ । ଏ ପାଞ୍ଚ ଦେଲ ପକାଇ । କାତର ଅନ୍ତର ହୋଇ । ବହୁତ ଦନ ନଳିନ ହୋଇଥିଲେ ମଳିନତା ଥାନ୍ତା ପାଇ । ୧୫ । ଅବନୀ ଶିରୀ ସୁନ୍ଦରୀ । ଈଶ୍ୱରୀ ନବଳକଶୋରୀ । ଲୀଳାବିଳାସୀଭୃତ୍ୟ ଚିତ୍ତ-ଉଲ୍ଲାସୀନାଗରୀସଂସାରଶିରୀ । ୧୬ । ଅନନ୍ଦଦାୟିନୀ କାମେ । ଜ୍ଞାନହାରିଣୀ

---

୫ । ସିଂହଳେଶ-ସିଂହଳ ଦେଶ ରାଜା, ଅନ୍ତପୁରସ୍ଥ-ଅନ୍ତଃପୁର ପିଲମାନଙ୍କୁ ।

୬ । ମହୀପତ କୁମାରୀ—ରାଜାଝିଅ, ପାରାବାର—ସମୁଦ୍ର ।

୭ । ଯୁବାମଣି—ପୁରୁଷମଣି ।

୮ । ନିଃଶ୍ରେଣୀ—ନିଶୁଣୀ, ସିଢ଼ୀ ।

୯ । ଦୀର୍ଘନେତ୍ରୀ—ସୁନ୍ଦରୀ ।

୧୧ । ପ୍ରତବନ୍ଧ—ବାଧା ।

୧୨ । ଅବେହ—ଚଢ଼ି, ଦୋଳା—ଯାନ ।

୧୩ । ଦ୍ୱିଦନ୍ତ—ହାତୀ, ଉଦନ୍ତ—ବାର୍ତ୍ତା ।

୧୪ । ପାରିନ୍ଦ୍ରମଧ୍ୟା—ସିଂହକଟି ବା ଅଣ୍ଟା, ନଳିନ—ପଦ୍ମ ।

୧୫ । ଅବନୀ ଶିରୀ ସୁନ୍ଦରୀ—ପୃଥିବୀ ଶୋଭା ସୁନ୍ଦରୀମାନଙ୍କ ରାଣୀ ।

ତା ବାମେ । କୁନ୍ଦସୁନ୍ଦରରଦନାକୁ ଚଉଦ ବ୍ରହ୍ମାଣ୍ଡରେ ନାହିଁ ସମେ । ୧୭ ।
ତୋଷ ରାଜହଂସ ଚଉ । ରହିଥିଲେ ଯହିଁ ସତ । ଜାଣୁ ଜାଣୁ ମଣି
ମାନସରୋବରରେ ବରଷାବେ ନୀପଗତ । ୧୮ । ହାଟକଙ୍କଟକ ଦେହା ।
ଇନ୍ଦୁହାସୀ ଗୁରୁସ୍ନେହା । ଛାଡ଼ିବ ଗୁମାନ ମାନସ୍କୁଁ ମଦନ ତୁ ହୋଇଲାଷଣି
ସାହା । ୧୯ । ତାରକାଶୋଭି ବାଳାକୁ । ହାର ଜରିବ ଗଳାକୁ । ଜରଛୁ
ମନେ ଗୁଣବନ୍ତମାଳିକା ରଚନ ରସକଳାକୁ । ୨୦ । ରଘୁନାଥଙ୍କୁ ଜଣାଇ।
ଏତେ ପଢ଼ି ଦେଲା ଗୃହି । ଅନ୍ତରଲିପିରେ କି ମନ୍ତ୍ର ଏଥି ରସିକ ଅଛୁ
କି ଲହି । ୨୧ । "ଅଇଲି ଅଙ୍କାକୁ ତୋର । ଯାହା ଇଚ୍ଛା ତାହା କର ।"
ପାଦୁ ପାଦୁଁ ବର୍ଣ୍ଣେ ବର୍ଣ୍ଣେ ଘେନି ହେଲା ଜନକଜଘନା ଜର୍ଜ୍ଜର ।୨୨। ସଖୀଙ୍କି
ଜଣାଇ ଦେଲା । ଚାଟୁଜ ରଚନା କଲା । ଚତୁରୀ ଗୁରୁଚେଟିନୀ ଜଣେ
ଘେନି ଶିବଦେଉଳକୁ ଗଲା । ୨୩ । ଏକାଳେ କୁମର ବର । ପ୍ରବେଶ
ପ୍ରାସାଦଦ୍ୱାର । ଗୃହିଁ ବଗୁରଇ ମେରୁ ଏ ଉରକ ପରି ଧରାବନିତାର ।୨୪।
ମନ୍ଦାକିନୀଧାର ହାର । ଶୋଭିକରଛୁ ଅମ୍ବର । ବଚନ ଚନ୍ଦଚନ୍ଦ୍ରଲେପ ଉଜ୍ଜ୍ୱଳ
ଦରଶନେ ମନୋହର ।୨୫। ତହୁଁ ଭିତରକୁ ଗଲା । ହରଦରଶନକଲା । ଚମ୍ପା
ଗୋରୀ ଅନୁକମ୍ପା କରିବାକୁ କେତେ ଚମ୍ପା ଚଢ଼ାଇଲା । ୨୬ । କୁମର ତହୁଁ
ବାହାର । ଅଗେ ଅଛୁ ବ୍ରହ୍ମଗୃହୀ । ଉମାଦରଶନେ ବାଳାବାମା ଦେଲା
କେତକୀପ୍ରସାଦ କରି ।୨୭। ଘେନିଲା ହୃଦେ ଲଗାଇ । ମୁଦେ ଅକ୍ଷରକୁ ଗୃହିଁ ।
ଜଳ୍ପି ହୋଇ ଜଠିଲା ଲୋମ ତାର ଏତକ ହୋଇଲା କହି । ୨୯ । ଶ୍ରୀକଣ୍ଠ

---

୧୮ । ବର୍ଷାଦିନେ ହଂସମାନେ ମାନସରୋବରକୁ ଉଡ଼ିଯାନ୍ତି ।
୧୯ । ହାଟକ ଙ୍କଟକ—ସୁନାପରି ଚକଚକ, ଇନ୍ଦୁହାସୀ—ଚନ୍ଦ୍ରହାସୀ ।
୨୦ । ପାଦୁ ପାଦୁଁ—ପ୍ରତିପଦରୁ; ବର୍ଣ୍ଣେ ବର୍ଣ୍ଣେ-ଅକ୍ଷରେ ଅକ୍ଷରେ, ୧୫, ୧୬, ୧୭, ୧୮, ୧୯, ୨୦, ୨୧ "ଅଇଲି ଅଙ୍କାକୁ ତୋର, ଯାହା ଇଚ୍ଛା ତାହାକର, ଏହା ପ୍ରଥମ ଅକ୍ଷରରେ ବାହାରିବ ।
୨୩ । ଚେଟିନୀ—ଦାସୀ-ଗୃହକର୍ତ୍ତ୍ରୀ, ଚାଟୁଜ—ପତ୍ର ।
୨୪ । ପ୍ରାସାଦ—ମନ୍ଦିର, ଧରାବନିତା—ପୃଥିବୀ ସ୍ତ୍ରୀ ।
୨୫ । ମନ୍ଦାକିନୀ—ଗଙ୍ଗା, ଅମ୍ବର—ଆକାଶ, ଚନ୍ଦ୍ର—ଚୂନ ।
୨୬ । ଅନୁକମ୍ପା—ଦୟା ।
୨୭ । ଉମା—ପାର୍ବତୀ, ବାଳାବାମା—ଦାସୀ ।

ଅନ୍ଧକଘାତୀ । ଗଙ୍ଗାଧର ମୃକ୍ତାକାନ୍ତ । ଶଙ୍କର ଶତ୍ରୁାଙ୍ଗ ଲବ୍ଧ ଜମାରସେ ଛାନ୍ଦ୍ରେ ଶମ୍ଭୁଭୂଷାପ୍ରୀତ । ୨୯ । ଅଛୁ ପଦ କରେ ଧର । ମଣ୍ଡିଲ କରଅମାସ୍ତ । ଶିଶୁ ଅଙ୍ଗନା ସେହୁଠାରୁ ବାହୁଡ଼ି ପରବେଶ ଅନ୍ତଃପୁର । ୩୦। ଲେଖ ବାନ୍ଧି ଦେବା ତହିଁ । ସମସ୍ତସଖୀଙ୍କି କହି । ପଦ ପାଇବାରୁ ଯେମନ୍ତ ବୋଇଲ ପୁଲକାଇଦେଇ ଦେହି । ୩୧ । କେ ବୋଲେ ସୁବର୍ଣ୍ଣ ଗୃହିଁ । ମାର ଥିବ ତନୁ ଦହି । ସେ ତାପ ହରଣେ ହରନାମମାନ ବିଶେଷରେ ହେଲ କହି । ୩୨ । କେ ବୋଇଲ ଏଥେ ଅଛୁ । ଶ୍ରୀଅଙ୍ଗ ମୁଁ ସଖୋଳୁଛୁ । ସମସ୍ତେ ଘେନିଲେ ଏହି ଭାଷା ତାର ରସାନୁଭବୀ ହୋଇଛୁ । ୩୩ । ଭାଗ୍ୟେ ଆମ୍ଭ କୋମଳାଙ୍ଗୀ । ହୋଇଛୁ ତା ପ୍ରାଣ ସଙ୍ଗୀ । କୋପ କଲ ବେଳେ କୋପନା ନାମରେ କହୁଥିବ ଦେଇ ଭଙ୍ଗୀ । ୩୪ । ଏମନ୍ତେ ନୃପନନ୍ଦନ । ପ୍ରବେଶ କେଶର ବନ । ମଣ୍ଡନ କର ମଣ୍ଡପ ଘେନେ ବାଳା ପଦ ପଢ଼ି ପୁନଃ ପୁନଃ । ୩୫ । ହେ ପ୍ରଭେ ଅମ୍ଭ ସଜନୀ । ସୁନ୍ଦର ରାକା-ରଜନୀ । ଏ ପୁର ଆକାଶ ପ୍ରକାଶ ଲଭିଲ ତୁମ୍ଭେ ଚନ୍ଦ୍ର ହେବା ଘେନି ।୩୬। ହୃଦକୁମୁଦ ଏହାର । ଅଗୁଁତ ଉତ୍ଫୁଲ୍ଲକର । ଏ ନିଶା ଲୋଚନ ଚକୋର ତୃଷାକୁ ବିଲମ୍ବ ନ କର ହର । ୩୭ । ବିଧାତା ବିଧାନ ଏହି । ଶ୍ୟାମା ଭାବନା କରଇ । ସଙ୍ଗେ ରଙ୍ଗେ ତୁମ୍ଭେ ନଗରଚରମ ନଗକୁ ମଣ୍ଡିବ ଯାଇ ॥ ପଢ଼ି ଜର ଜର ହୋଇ । ବୋଇଲ ମିତ୍ରଙ୍କୁ ଗୃହିଁ । କେମନ୍ତ ସନ୍ଦର୍ଭ ରସ-ଗର୍ଭଭାଷ ବାଳାମଣିଠାରେ ଥାଇ । ୩୯ । ଚତୁରିଗୁଣରେ ଦେଖ । ସଖୀଏ ସୁନ୍ଦରୀ ଯୋଖ । ଏଥି ଭୁଙ୍ଗ ସଙ୍ଗ ଦୁର୍ଲ୍ଲଭ ବୋଲିଟି ଲେଖିଲେ କେତକୀ ଲେଖ । ୪୦ । ସଖା କହେ ଶଙ୍କା ଏତେ । କରନ୍ତୁ ଛାଡ ସମ୍ପତେ । ଶୁକ ପକ୍ଷୁରୁ ସାକ୍ଷାତ ହୋଇବାକୁ କେଉଁ ସ୍ଥାନରେ କେମନ୍ତେ । ୪୧ । ବାମେ

---

୨୯ । ଶ୍ରୀକଣ୍ଠ—ମହାଦେବ, ଅନ୍ଧକଘାତୀ—ମହାଦେବ, ଗଙ୍ଗାଧର—ମହାଦେବ, ମୃକ୍ତାକାନ୍ତ—ମହାଦେବ, ଶଙ୍କର—ମହାଦେବ, ଲବ୍ଧ-ଲେଖ୍ରୀ ।

୩୦ । ଅମାସ୍ତ—ହାତୀ ହାଉଦା, ଶିଶୁ ଅଙ୍ଗନା—ଦାସୀ ।

୩୧ । ରସାନୁଭବୀ—ରସଭୋଗୀ ।

୩୨ । କୋପନା—ସ୍ତ୍ରୀ, କୋପ—ରାଗ ।

୩୩ । ରାକା—ପୂର୍ଣ୍ଣମୀ, ରଜନୀ—ରାତ ।

୩୪ । ଉତ୍ଫୁଲ୍ଲକର-ଆନନ୍ଦକର ।

ବାମାବର ଛିତ । ଦକ୍ଷିଣେ ଲକ୍ଷ୍ମଣ ଯତ । ମଧ୍ୟେ ବାଜେ ଯେଉଁ ଶ୍ୟାମଳ ସୁନ୍ଦର ତାଙ୍କୁ ଉପରନ୍ତ୍ର ଚନ୍ଦ୍ର । ୪୨ ।

---

## ଷଡ଼୍‌ବିଂଶ ଛାନ୍ଦ

( ଚନ୍ଦ୍ରଭାନୁଙ୍କର ସ୍ତ୍ରୀ ବେଶ ସାକ୍ଷାତ ଓ ସିଂହଳ
ମନ୍ତ୍ରୀ ସହ ଉତ୍ସବ ସ୍ଥାନକୁ ଯିବା )

ରାଗ— ଚନ୍ଦ୍ରାଦେଶାକ୍ଷ

ମେଧାବତୀ ଶୁଣି ଗଲ ଅନ୍ତଃପୁରଙ୍କ । ଭେଟିଲ ରାଜକୁମାରୀ ସୁକୁମାରୀଙ୍କ । ୧ । ପଚ୍ଚାରିଲ ପ୍ରିୟ ସହଚରୀଙ୍କ ତହିଁ । ସାକ୍ଷାତ ଦର୍ଶନ ହେବ କେମନ୍ତ ହୋଇ । ୨ । ବଚ୍ଚାର ମନ୍ତ୍ରୀନନ୍ଦନା କଲ ଉତ୍ତର । ନାରୀ ବେଶ ଧରିବେ ମଦନ ସୁନ୍ଦର । ୩ । ନାରୀବେଶ ବୋଲି ଏତେ ମାନ କରିବେ । ତଳକୁ ସେ କୋମଳ ବାଳକୁ ବାନ୍ଧିବେ । ୪ । ନୀଳକନଚେଳ ଓଢ଼ିଣିଥିବେ ସର୍ବାଙ୍ଗେ । ଗୁଳିବେ ବାମଚରଣ ଗୁଳିଲେ ଅଗେ । ୫ । ମଞ୍ଜୁ ମଞ୍ଜିରେ ଖଞ୍ଜିବେ ସୁରଙ୍ଗ ପାଦେ । ଦ୍ୱାଃସ୍ଥେ ହେବ ନାରୀଭ୍ରମ ଏତେକ ଭଦେ । ୬ । ଚତ୍ତୁରବନ୍ଧୁ କାମିନୀବୃନ୍ଦରେ ମିଶି । ହେବକଥିବେ ଦ୍ୱାରେ ଯିବାବେଳକୁ ପଶି । ୭ । କେମା ଦରଶନବେଳେ ରାମା ମାତର । ପୁରିଥିବେ ସିନା ସେ

---

୩୮ । ଶ୍ୟାମା—ସୁନ୍ଦରୀ, ଭାବନା—ଚନ୍ଦ୍ରା, ନଗର ଚରମ—ନଗର ଶେଷ ନାଗପର୍ବତ ବା ହାତ ।

ଚନ୍ଦ୍ରଭାନୁର ପତ୍ର ପାଇ ଲାବଣ୍ୟବତୀ ପିତାକୁ କହି ବୋଇତରେ ରାମେଶ୍ୱର ଅସି ପତ୍ରଦେଲେ । ଚନ୍ଦ୍ରଭାନୁ ସେ ପତ୍ର ନେଇ ପଢ଼ି ସଙ୍ଗୀମାନଙ୍କୁ କହିଲ ।

---

## ଷଡ଼୍‌ବିଂଶଛାନ୍ଦ

୧ । ମେଧାବତୀ—ବୁଦ୍ଧିମତୀ ।
୨ । ନାରୀବେଶ—ସ୍ତ୍ରୀ ବେଶ ।
୩ । ନୀଳକନଚେଳ—ନେଳିଅ ଲୁଗା, ସର୍ବାଙ୍ଗେ—ଦେହଯାକ, ଗୁଳିବେ—ବଢ଼ାଇବେ ।
୪ । ଦ୍ୱାଃସ୍ଥେ—ଦ୍ୱାରୀମାନେ ।

ପ୍ରାସାଦ ଭିତର । ୮ । ସ୍ୱରୂପେ ଅନଙ୍ଗ ଦେଖାଦେଇ ତାହାରେ । ଅସିବା ବେଳକୁ ଏହି ବିଧି କହିବେ । ୯ । କୀର ଭକ୍ଷେ ଯାହା ବୋଲେ ଜୀବନ ଦେବ । ନାରୀବେଶେ କାହାଁ ଅଙ୍ଗୀକାର ନୋହିବ । ୧୦ । ତରୁଣୀମଣି ତରୁଣୀ ନୋହିବ ତେବେ । ପୁରୁଷ ହୋଇ ଶୁଣିବ ଭାବେ ସ୍ୱଭାବେ । ୧୧ । ବୀଣାଭାଷୀ କଣା ଯିନା ତରୁଣବର । ତାହା ଭଣାଅଧିକେ କରୁଣା ଏହାର ॥ ରାମ ନାମ କବଚରେ କବଚ ଦେହି । ଫୁଲବାଣ ବାଣଗଣ ସେ ପୁଣ ସହି । ୧୩ । ବାତ୍ସ୍ୟାୟନ ଋଷି ଅନୁଷ୍ଟୁପ ଛନ୍ଦରେ । ରତି ବୀଜ ମହାଦେବ ଦେବତା ଭବେ । ୧୪ । ବୋଲେ ମୁଖ ରଖ ଚନ୍ଦ୍ରକାନ୍ତବଦନା । ତରଙ୍ଗ-ନେତ୍ରୀ ମୋ ନେତ୍ର ସମ୍ପତ୍ତି ଯିନା । ୧୫ । କୋକିଳବଚନୁ ପଦେ ଶ୍ରବଣ କୁହି । ଅଧର ଧର ଅରୁଣାଧରୀ ବୋଲଇ । ୧୬ । କମ୍ବୁକଣ୍ଠୀ ମୋର କଣ୍ଠମାଳାର ତତ୍ତ୍ୱ । ବୋଲି କଣ୍ଠ ଛୁଇଁଦେଇ ଭାବ କେମନ୍ତ । ୧୭ । ନାସିକାକୁ ବୋଲେ ଅତି ତୋଷିବା ତୋର । ବଇରାଜ ପୁରବାସୀ ରସିକାବର । ୧୮ । ହୃଦପୁରେ କର ଭୂଷା ହୃଦୟ କହ । ନୀରଜକଳ୍ପି ତରଜ ରଖ ତୋହର । ୧୯ । ମଧ୍ୟେ ସିଂହମଧ୍ୟା ରମ୍ଭୋରୁ ଉରୁରେ । ଭୁଜେ ବିଷଭୁଜ ଧନ୍ୱଭୂରୁ ଭୁରୁରେ । ୨୦ । ଉଦରେ କୃଶଉଦରୀ ପଡ କହଇ । ପକ୍ଷୀଜନ୍ମୁ ଯିନା କେତେ କହିବି ମୁହିଁ । ୨୧ । ମନ୍ତ୍ରୀଜା ବୋଇଲା ସେ ପୁରୁଷ ଭ୍ରମର । ଅଧିକ ହେଲା ଏମନ୍ତ ହେବା ତାଙ୍କର ।୨୨। ମାଳତୀ ବିକାଶ ଏହା ଭ୍ରମର ପାଇଁ । ଆମ୍ଭ ସଖୀ ବେଦନା କି ହୋଇବ କହି ॥ ପଲ୍ଲବ ଶେଯରେ ଶୁଅଇବା ବେଳରେ । ସନାଳ କମଳ ଦେଉଁ ହୃଦ-ସ୍ଥଳରେ ।୨୪। ବୋଲଇ ନୃପଇ ଆନ ବାହାରୁଁ ବାହି । ମଙ୍ଗଳବହ ସର୍ବଦା ଶୁଭଦ ନୋହି । ୨୫ । ତପସ୍ୟା କି କେବେ ହୋଇଅଛି ବିଫଳ । ଉପ-ଗ୍ରହର ସୁବାହୁ ସନାଳ କମଳ । ୨୬ । ସବୁ ଉପଗ୍ରହ ଏହି ପ୍ରକାରେ ବ୍ୟର୍ଥ । ଏ ତାପନାଶନେ ଏତା ବୀର ସମର୍ଥ । ୨୭ । ଅଜ ରଜନୀରେ କରାଇବୁ ସାକ୍ଷାତ । ଏତେବେଳ ଯାଏ ଥିଲା ଅମୃତ ଅପୂର୍ବ । ୨୮ । ଏଣୀଙ୍କ ଏଣୀ-

---

୧୦ । କୀର—ଶୁଆ, ଅଙ୍ଗୀକାର—ସ୍ୱୀକାର ।

୧୧ । ତରୁଣ ବର—ପୁରୁଷ ଶ୍ରେଷ୍ଠ ।

୧୨ । ରାମା—ସ୍ତ୍ରୀ, ଫୁଲବାଣ—କନ୍ଦର୍ପ ।

୧୪ । ବାତ୍ସ୍ୟାୟନ ଋଷି—କାମଶାସ୍ତ୍ର ପ୍ରଣେତା ମୁନି ।

୧୯ । ନୀରଜକଳ୍ପି—ପଦ୍ମକଳ୍ପି ।

୨୦ । ବିଷଭୁଜ—ପଦ୍ମନାଡ଼; ଧନ୍ୱ—ଭୁରୁର ପରି ବଙ୍କା ପଡା ଉପର ।

ନସୂନା କରମେ ଯାହା । ଧାତା ଲେଖିଥିବ ଭୋଗ କରବ ତାହା । ୨୯ । ଶୁଣ ବୋଇଲ ସୁକର୍ମବନ୍ତ ଏ ବେଳ । ଦେଖ ତାତ ସନମତ ହେବ ଏ ଖେଳ । ୩୦ । ଏତେ କହ ଫଳାଶନ ମେଲଣି ହେଲ । କୁମାର ଗୃମୁରେ ଯାଇ ସବୁ କହୁଲ । ୩୧ । ଫିହଳେଶ୍ୱର ମନ୍ତ୍ରୀକୁ ପ୍ରେଷିତ ଦଲେ । ସେ ଆସି ଯୁବା ନରେଶ ଘେନିଣ ଗଲେ । ୩୨ । ରାଜା ସଙ୍ଗେ ସଙ୍ଗ ହୋଇ ସୁନ୍ଦରଶିତ । ପ୍ରାସାଦେ ଉତ୍ସବ ସ୍ଥାନେ ହେଲେ ପ୍ରବେଶ । ୩୩ । ନୃପତି ସମୂହ ପୁଣ୍ଡ୍ରିଭୂତ ସେଠାର । ଗୌଳ କୁନ୍ତଳ କେରଳ ମଘ ମହ୍ଲାର । ୩୪ । ପସ୍ୱ କଚ୍ଛ ତାହାଳ କୁଶଳ ଗୌଡ଼ଙ୍ଗ । ବଦେହ ବଦର୍ଭ ଅଙ୍ଗ ବଙ୍ଗ କଳିଙ୍ଗ । ୩୫ । ମଗଧ ନିଷେଧ ମହାରାଷ୍ଟ୍ର ଶ୍ରୀହଟ୍ଟ । ଗୁଜୁରାଟ ନାହୁତ ପାଳବ ସୌରାଷ୍ଟ୍ର । ୩୬ । କାମ୍ବୋଜ ଲହୁର ଚେଦ ଭୋଟ ଦ୍ରାବଡ଼ । ପଲୁ ନେପାଳ ଉତ୍କଳ ଲେମଶ ଗୌଡ଼ । ୩୭ । ରାଜାଏ ବୀରଙ୍କୁ ଦେଖି କଲେ ପ୍ରଶଂସା । ଛାଡ଼ିଲେ ଲାବଣ୍ୟବତୀ ଲଭିବା ଆଶା । ୩୮ । ଯେମନ୍ତ ଉତ୍ସବ ହୋଇଅଛୁ ସେ ସ୍ଥାନ । ନାହିଁ ନ ଥିବ ନୋହୁବ ଏ ଅନୁମାନ ।୩୯। ତମୋନୁଦ ପ୍ରଦୀପର ଗଣନା ନାହିଁ । ଚନ୍ଦ୍ରଉଦଅ ପ୍ରକାଶ ନିଷେଧ ତହିଁ ॥ ସେହି ଅଲେକରେ ଅବା ତାମସୀ ନାଶି । ଗୃନ୍ଧମାରୀତଙ୍କ ସବୁ ପ୍ରକାରେ ନ୍ଦସି । ୪୧ । ବାଣଗଣ କରଣରେ ଶୋଭିତ ତାର । ବଧୁଙ୍କୁ ଖୋଜନ୍ତ ପୃଛ କରବେ ପର ।୪୨। ମୁଖର ମୁଖରବରେ ଭ୍ରମେ ସାଗର । କେଉଁ ସିନ୍ଧୁ ଚଳ କ ପ୍ରଳୟ ସଂସାର । ୪୩ । ତୂରନାଦେ ଲଙ୍କାପୁରବାସୀ ଅତୁର । ଚତ୍ତେ କର ହନୁମନ୍ତ ରଢ଼ ପ୍ରକାର । ୪୪ । ରାଜସୂୟ ଯାଗ ସମ୍ଭପରି ସେଠାର । ଜନ ଗହଳରେ ହୋଇଅଛୁ ସୁନ୍ଦର । ୪୫ । ନଟକାରେ ନାଟ ନଟ ଭଟ କରାଇ । ରାଟଠାରୁ ପାଟଶାଟୀ ବରାଟ ପାଇ । ୪୬ । ଭାଟ କବତ୍ୱ ପଟଲେ କହନ୍ତ କୀର୍ତ୍ତି । ସାଧୁ ବିଧୁଶେଖରଙ୍କ କରନ୍ତ ସ୍ତୁତ । ୪୭ ।

---

୩୧ । ଫଳାଶନ—ଶୁକ ।
୩୨ । ପୁଣ୍ଡ୍ରୀଭୂତ—ଏକତ୍ରିତ ।
୪୦ । ତମୋନୁଦ—ଅନ୍ଧାରନାଶକ ।
୪୧ । ତାମସୀ—ଅନ୍ଧାର, ଗୃନ୍ଧମାରୀତ—ଜନ୍ଧାରିତ ।
୪୨ । ବିଧୁ—ଚନ୍ଦ୍ର ।
୪୩ । ମୁଖର ମୁଖରବରେ—ପାଟି ଗୋଳମାଳରେ ।
୪୬ । ରାଟ—ରାଜା, ବରାଟ—କଉଡ଼ି ।
୪୭ । ବିଧୁଶେଖର—ମହାଦେବ ।

ଥୋଣ୍ଟେ ଖଣ୍ଟେ ପରକଟ ନିକଟ ହୋଇ । କଳକଣ୍ଠି କଣ୍ଠି କରେ ନିଏ ଛଡ଼ାଇ । ୪୮ । ନଟ ବିଟପିଙ୍କି ନେଇ ଅନ୍ତରେ ଠାରନ୍ତି । ଗଣିକାଙ୍କୁ ଧନ ଏ ସୁବର୍ଣ୍ଣ ଦେଖାନ୍ତି ।୪୯। ଦୁଷ୍ଟନଷ୍ଟବ୍ୟୂହ କଳହରେ ଉନ୍ମତ୍ତ । କୁଳଟା ହଟ ବିଷାଦ କରେ ଉଦିତ । ୫୦ । ପାଟ୍ଟରିପଟଳ ନାନାବାଟେ ଭ୍ରମନ୍ତି । ପାଟ କୁହାଟରେ ଜଗ୍ଯ ବନ୍ଦେ କରନ୍ତି ।୫୧। କାନ୍ତକଟିବାସଧଟି ଦୃଢ଼ରେ ଧରି । ଖର୍ବଟକ ନାଗ୍ରିଚୟ ବିହାର କରି ।୫୨। କଟକ ନାଗ୍ରି ଛଟକ କହି ନ୍ହୁହଇ । ହାସ ଝଟକେ ନିଅନ୍ୟ ମନକୁ ମୋହି । ୫୩ । ଯଜମାନ ଦ୍ୱିଜମାନେ ଯୋଗ ଗମନ୍ତି । ହର ଦରଶନରେ ଉଚ୍ଛୁଳ ହୁଅନ୍ତି ।୫୪। ଯୁବାପୁରୁଷ ସୁନ୍ଦରୀଯୁବତୀ ଗୃହିଁ । ପଛେ ଗୋଡ଼ାଇ ମଦନେ ହୁଅନ୍ତି ମୋହି । ୫୫ । କେ କାହାକୁ ନିଷେଧ ସେ ନୁହେ ବିହ୍ୱତ । ହର ଦରଶନେ ଅସି କର ଦୁରିତ । ୫୬ । ଯେ ଯାହାକୁ କାଳାନ୍ତରେ ଦେଖି ନ ଥିଲେ । ସେହି ସମୟରେ ଚକ୍ଷୁ- ରାକ୍ଷ ହୋଇଲେ । ୫୭ । ବସନ ଭୂଷଣ ଯେ ଯାହାର ସମ୍ଭୃତ । ସେ ହିନ ହୋଇ ଅଛନ୍ତି ସର୍ବ ଭୂଷିତ । ୫୮ । ହାଟର ଝଟକ କହିବାର ନୁହଇ । ଜନନୀ ଜନକ ଛାଡ଼ି ସବୁ ମିଳଇ । ୫୯ । ଉରଜ କୁମ୍ଭକାର ତରୁଣୀ ନିବେଶୀ । ଲୁଚାଇ ଉରଜ କୁମ୍ଭ ସଂପୁଟ ବିକା । ୬୦ । ଚନ୍ଦ୍ର ଗୃମସି ସିନ୍ଦୁର ବିକନ୍ତି ଯହିଁ । ନାଗର ପୁରୁଷେ ତାଙ୍କୁ ଭଙ୍ଗିରେ କହି । ୬୧ । ହାସ କେଶ ଅଧରେ ଦେଖାଇ ଅଙ୍ଗୁଳି । ଏହା ଛାଡ଼ି ଏହା ବିକ କିପାଇଁ ବାଳି । ୬୨ ।

---

୪୮ । ଥୋଣ୍ଟେ—ଗୁପ୍ତରେ, ଖଣ୍ଟେ—ଉଚ୍ଚାଏତ, ପରକଟ—ପ୍ରକାଶ ।

୪୯ । ନଟ—ନାଚବାଲା, ବିଟପୀ—ଅସତୀ, ଗଣିକା—ବେଶ୍ୟା ।

୫୦ । ଦୁଷ୍ଟନଷ୍ଟବ୍ୟୂହ—ଦୁଷ୍ଟଲୋକମାନେ, କୁଳଟା-ଅସତୀ, ବିଷାଦ-ଦୁଃଖ

୫୧ । ପାଟରି ପଟଳ—ପାଟରି ସବୁ ।

୫୨ । କାନ୍ତକଟି ବାସଧଟି—ପୁରୁଷର କଟିଲୁଗା ଧଡ଼ିକୁ, ଖର୍ବଟକ—ଗ୍ରାମ୍ୟ, ନାଗ୍ରିଚୟ—ସ୍ତ୍ରୀସବୁ ।

୫୩ । କଟକ ନାଗ୍ରି—ସହର ସ୍ତ୍ରୀ, ଛଟକ—ଛଟା ।

୫୪ । ହର ଦରଶନେ—ଶିବ ଦେଖିବାରେ ।

୫୭ । କାଳାନ୍ତରେ—ଅନ୍ୟ ସମୟରେ, ଚକ୍ଷୁରାକ୍ଷ—ଦେଖା ।

୫୯ । ଜନନୀ ଜନକ—ବାପ ମା ।

୬୦ । ଉରଜ—କୁଚ, ସଂପୁଟ—ଫରୁଆ ।

୬୧ । ଚନ୍ଦ୍ର—କର୍ପୂର, ଗୃମସି—ଚଉଁରି ।

୬୨ । ହାସ—ହସ, କେଶ—ବାଳ, ଅଧର—ଓଷ୍ଠ ।

ଗୁଡ଼ିକାର ବାଳୀଙ୍କ ପସର ସନ୍ନିଧେ । ଶିଖାରୁ ସ୍ୱାଦୁ ଅଛି କି ପୁଚ୍ଛନ୍ତି ବୁଧେ ।୬୩। ସେ ବୋଲନ୍ତି ଅଛି ହେ ପ୍ରବାଳ ମଧ୍ୟରେ । ତେମନ୍ତ ସ୍ୱାଦୁ ପଦାର୍ଥ ନାହିଁ ବିଧୁରେ ।୬୪। ବର୍ଣ୍ଣିଲେ ତ ସରବାର ପ୍ରସଙ୍ଗ ନୋହି । ତରକମାନଙ୍କ କିଛି ଦେଲାଇଁ କହି ।୬୫। କୁମାରୀ ଦର୍ଶନକୁ ଉଚ୍ଛନ୍ନ କୁମର । ମନକୁ ମନ୍ମଥ ଢାର କରଇ ମାର ।୬୬। କେଶରବନକୁ ସେ ଗମନ କରିତ । ସିଂହଳେଶ ପାଶେ ମନ୍ତ୍ରୀସୁତ ପ୍ରେଷିତ ।୬୭। ସେ ଯାଇ କହିଲା ରାଜ୍ୟ କର୍ଣ୍ଣାଟ ପୁରେ । ଅନ୍ତଃପୁର ନାରୀ ଛନ୍ତି ବୀର ସଙ୍ଗରେ ।୬୮। ସେ ଦରଶନ କରିବେ ଶୁଣି ନୃପତି । ପରୀକ୍ଷା ହିକାର ଆଜ୍ଞା ଦେଲେ ତଡ଼ିତ ।। ଯେତେବେଳେ ଅବରୋଧ ଦର୍ଶନ ହେବ । ଏହାଙ୍କ ଅନ୍ତଃପୁରସ୍ଥାଗଣ ଛାଡ଼ିବ ।୭୦। ବୀର ପାଶେ ଆଗମନ ଘଟିବ ସୁଖ । କହିଲ ନୃପତି ସୀତକାର ଉଦନ୍ତ ।୭୧। ମାଳିକ କାମିନୀଗଣ ସଙ୍ଗ ବିସ୍ତର । ରତ୍ନମୟ ହିନ୍ଦୋଳା ଆରୋହଣ କରି ।୭୨। ପ୍ରବେଶ ହେଲେ ଦେଖିଲ ପଶ୍ଚିମଦ୍ୱାରେ । ବେଳକ ନିଷେଧ କରିଦେଲେ ସତ୍ୱରେ ।୭୩। ସେ ରହି ମିଳ ପ୍ରାକାର ଅନ୍ତରେ ରହି । ରାଜଜେମା ବିଜୟ ପଥକୁ ଅନାଇ ।୭୪। ଏକାଳେ ନୃପ ଆଜ୍ଞାରେ କୁମାରୀ ବିଜେ । ପୁରଦ୍ୱାରେ ନାନାବିଧ ବାଦ୍ୟହିଁ ବାଜେ ।୭୫। ସୁଖାସନ ବେଢ଼ି ପରିଚାରୀ ନିକର । ଚଳାନ୍ତି ମୟୂରପୁଚ୍ଛ ଖଦ୍ୟୁମର ।୭୬। ଚନ୍ଦ୍ର ସୂର୍ଯ୍ୟ ତାରାସୁତ ଜହ୍ନାଡ଼ି କଳା । ନୀଳ ଗିରିଦରୀରୁ କି ବିଜେ କମଳା ।୭୭। ଯେତେ ନିକଟେ ବାଜଇ ବାଦ୍ୟ ନିସ୍ୱନ । ତେତେ ସଜାଡ଼ି ବିନ୍ଧୁଛି ଶର ମଦନ ।୭୮। ତେତକି ମନ ଆନନ୍ଦ ବୃଦ୍ଧି ହେଉଛି । ଉଚ୍ଛନ୍ନ ସରିଷ ଜଳଠକୁ ପାଉଛି ।୭୯। ପଯ୍ୟେକାର ମୃଦୁଲ କଞ୍ଚୁକୀ ନିକର । ଅଡ଼

---

୬୩ । ଗୁଡ଼କାରବାଳୀ—ଗୁଡ଼ଅଣୀ, ଶିତା—କନ୍ଦ, ବୁଧେ—ପଣ୍ଡିତମାନେ
୬୪ । ପ୍ରବାଳ—ପୋହଳା, (ଅଧର) ବିଧୁ—ଚନ୍ଦ୍ର ।
୬୭ । କେଶର ବନ—ନାଗେଶ୍ୱର ବନ, ପ୍ରେଷିତ—ପଠାଇବା ।
୬୮ । ଦରଶନ—ଦେଖା, ପରୀକ୍ଷା—ପରଖି ।
୭୦ । ଅବରୋଧ—ଅନ୍ତଃପୁର, ଅନ୍ତଃପୁରସ୍ଥଗଣ—ଅନ୍ତପୁରବାସୀ ସ୍ତ୍ରୀମାନେ
୭୨ । ହିନ୍ଦୋଳା—ସବାରି, ଆରୋହଣ—ଚଢ଼ିବା ।
୭୩ । ନିଷେଧ—ମନା ।
୭୪ । ପ୍ରାକାର—ପାଚେରି, ଅନ୍ତରେ—ବାହାରେ ।
୭୫ । ନୀଳଗିରିରୁ—ନୀଳ ସୁନ୍ଦର ପର୍ବତ ଭିତରୁ, କମଳା—ଲକ୍ଷ୍ମୀ ।

ହୋ ଅତ୍ର ହୋ ଡାକେ କର କାତର । ୮୦ । ମଣିମା ତାକ ଅଣିମା ସୁଖ-ଦାୟିନ । ପ୍ରବେଶ ପଶ୍ଚିମ ଦ୍ୱାରେ ହାନ୍ଦୋଳାମାନ । ୮୧ । ଘଣ୍ଟି ନାଦେ କର୍ଣ୍ଣ ଟେକେ ଯେମନ୍ତ ମୃଗ । ତଦ୍ୱୃତ୍ତି ବୃଦ୍ଧି ନୃପସୁତ ଉଦ୍‌ବେଗ । ୮୨ । ମନରେ ଭାବନା କର ଧନ୍ୟ ଏ ନାରୀ । ଯେଣୁ ଏ କାଳପ୍ରବୀଣା ମୋ ମନ ଚୋରି । ୮୩ । ଚତୁରଦଶୀର ନାରୀ ହୋଇ ତରୁଣୀ । ଦୂତୀ ହୋଇ ଭେଟାଉଛୁ ନବ ତରୁଣୀ । ୮୪ । ବରହୀ ବହଳା ସବୁକାଳେ ଦରଶ । ତାଙ୍କୁ ଚନ୍ଦ୍ର ତାପେ ବୋଲ୍ କରେ ବିନାଶ । ୮୫ । ପୂର୍ଣ୍ଣ ପକ୍ଷଦନ ବୋଲି ଏ ପୂର୍ଣ୍ଣପକ୍ଷ । ମୋତେ କଲ ଦେଖି ଅତି ଦୀନ ଅରକ୍ଷ । ୮୬ । ରାମ ଜାଣେ ଯେତେ ସୁଖ ଜାତ ଏ କାଳେ । ସୀତା ମାଳ ଘେନି ବର ଅସିବାବେଳେ । ୮୭ । ଉପଇନ୍ଦ୍ର ବୀରବର ତାଙ୍କ କେୟୂର । ଏଣୁ ହେଲ ବର୍ଣ୍ଣିବାକୁ କଷ୍ଟ ଗୋଚର । ୮୮ ।

---

୮୦ । ପଯ୍ୟେକାର—ପାଇକ, ନାକର—ସମୁଦ୍ର ।

୮୧ । ଅଣିମାସୁଖ—ସ୍ୱର୍ଗସୁଖ ।

୮୫ । ବରହୀ ବହଳ—ବରହରେ ଜଳୁଛନ୍ତି ।

୮୬ । ପୂର୍ଣ୍ଣପକ୍ଷ ଦନେ—ପନ୍ଦର ଦନରେ, ଦୀନ—ଦୁଃଖୀ ।

୮୮ । କେୟୂର—ଗୃହକର ।

ଲବଣ୍ୟବତୀ ସଖିମାନଙ୍କ ସଙ୍ଗେ ପରାମର୍ଶ କଲ, କପରି ଭେଟ ହେବ । ଜଣେ ସଖୀ କହିଲ, ତାଙ୍କୁ ସମ୍ବାଦ ଦେବା ସେ ସ୍ତ୍ରୀ ବେଶରେ ଭେଟିବ । ଦେଉଳକୁ ଅସନ୍ତୁ ଦର୍ଶନ ବେଳେ ସାକ୍ଷାତ ହେବ । ଏହା ବିଚାର କର ଚନ୍ଦ୍ରଭାନୁ ପାଖକୁ ପତ୍ର ଦେଲେ । ଚନ୍ଦ୍ରଭାନୁ ଉତ୍ସବରେ ରାଜାଙ୍କ ମଧ୍ୟରେ ଯୋଗ ଦେଇ ସିଂହଳ ରାଜାଙ୍କୁ ପରଚୟ ଦେଲେ । ଅନ୍ତଃପୁର ନାରୀ ଦର୍ଶନକୁ ଯିବେ କହନ୍ତେ ସିଂହଳ ପତି ଶୁଣି ଅନୁମତି ଦଅନ୍ତେ ରାଜପୁତ୍ର ହାନ୍ଦୋଳାରେ ଚଢ଼ି ଦେବଦ୍ୱାରକୁ ଗଲେ । ଲବଣ୍ୟବତୀ ମଧ୍ୟ ସଖି ଗଣରେ ଅସିଲେ ।

# ସପ୍ତବିଂଶ ଛାନ୍ଦ

( ଲବଣ୍ୟବତୀ ଓ ଚନ୍ଦ୍ରଭାନୁର ଦେବମନ୍ଦିର ମଧ୍ୟରେ ସାକ୍ଷାତ )

ରାଗ—ବସନ୍ତବରାଡ଼ି

ବିରଞ୍ଚି ରଚିଛି ଏ ସଂସାର ସାର ସୁନ୍ଦରୀଯାକ ଏକତ୍ର । ଶ୍ରୀଧାମ ମୁଖ ସ୍ୱଭାବେ ରାଗଲତା ସୁକାନ୍ତିରେ କର ଗଉରୀ । ସର୍ବଦା । ସୁଭଦ୍ରା ସେ ଯେ ମନ୍ଦୋଦରୀ । ରମ୍ଭୋରୁରୁ ସୀତା ମଧୁରବଚନା ତାରା ତନୁ କରେ ମାଧୁରୀ । ୧ । ପଦ୍ମିନୀଙ୍କ ଅଙ୍ଗରୁ ଚତୁରୀ ହରିଲ ଏମନ୍ତ ଚତୁରୀ ରଚନ । ଭଷି ବସିବେ ସଂସାର କରିବାକୁ ଯୋଗେ ହେଲେ ନେଣ ପଠନ । ଭାଲିବେ । ଏ ଚତୁରୀ କାମଚତୁରୀ । ନାଗରୀ ନାଗରପୁମଧ୍ୟା ମଞ୍ଜୁଳନଗରୀ ସୁରସ ସାଗରୀ । ୨ । ଅବନୀବନିତା ମଘବାପଦକୁ ପଦକୁ ଗୁଳିବାରେ ଦେଇ । କିଙ୍କିଣି କଣିକଣି କି ଅଣିମାଦ୍ୟ ସୁଖ ଶ୍ରୁତିକି ଦେବାପାଇଁ । ଡାକିଲେ । ହଂସକେ ହଂସ କେ ସମାନ । କରି ଏ ଗତିକି ସମର ଦ୍ୱିରଦ ମଦ କରଇ ଯେ ମର୍ଦ୍ଦନ । ୩ । ଅତନୁସ୍ୟନ୍ଦନ ଚନ୍ଦନ ଚନ୍ଦନ ଶୀତଳ ତନୁକୁ ରଞ୍ଜାଇ । ପହଣ୍ଡ ମଣାଇ ସଙ୍ଗୀତ ପ୍ରବୀଣା ସଙ୍ଗିନୀଏ ବୀଣା ବଜାଇ । କୁମାର । ଥିବା ସ୍ଥାନକୁ ଅନୁସରି । ଶୋଭାଙ୍ଗୀକି ପାନ ଭାଙ୍ଗି ଦେଇ ମନ ତୋଷୁଅଛି ମନ୍ତ୍ରୀକୁମାରୀ । ୪ । ଅମରମୋହିନୀ ଭ୍ରମର କେଶିନୀ ମେଘମାଳା

---

## ସପ୍ତବିଂଶ ଛାନ୍ଦ

୧ । ବିରଞ୍ଚି—ବ୍ରହ୍ମା, ସାର—ଶ୍ରେଷ୍ଠ, ଶ୍ରୀଧାମ—ଲକ୍ଷ୍ମୀ ନାରାୟଣଙ୍କ ରହିବା ସ୍ଥାନ, ରାଗ—ସ୍ନେହ, ଗଉରୀ—ଗୌରବର୍ଣ୍ଣା ସ୍ତ୍ରୀ, ଦୁର୍ଗା । ସୁଭଦ୍ରା—ଶାନ୍ତା, ମନ୍ଦୋଦରୀ—ପାତଳା, ରମ୍ଭୋରୁ—କଦଳୀ ଗଛ ପରି ଜଙ୍ଘ ଯାହାର କ୍ରମେ ସରୁ ଓ ଗୋଲାକାର, ( ରମ୍ଭା—ଉର୍ବଶୀ, ଅପ୍ସରା ) ସୀତା—ଚିନି, ମଧୁର—ମିଠା, ତାରା—( ଇନ୍ଦ୍ରଙ୍କ ସ୍ତ୍ରୀ ଓ ବାଳି ସ୍ତ୍ରୀ )

୨ । ନାଗରପୁ ମଧ୍ୟା ( ନାଗ—ହାତୀ, ରପୁ—ଶତ୍ରୁ ) ହାତୀଶତ୍ରୁ ସିଂହ—ସିଂହକଟୀ, ମଞ୍ଜୁଳ—ସୁନ୍ଦର ।

୩ । ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ, ମଘବା ପଦ—ଇନ୍ଦ୍ରପଦ, ହଂସକ—ନୂପୁର, ଦ୍ୱିରଦ—ହାତୀ ।

୪ । ଅତନୁ ସ୍ୟନ୍ଦନ—କନ୍ଦର୍ପ ରଥ ।

ଗୃଚଳେ ଗୃମର । ବମ୍ବବଡ଼ମ୍ବ ତାଳମ୍ବପୃଷ୍ଠାଧରୀ ଧରିଛୁ ଧାଣୀପୃଥୀଙ୍କର । ଅଗରେ । ପଇବାଇକା ଏ ମଞ୍ଜୁଳ । ଧମ୍ମିଲ୍ଲ ଜ୍ୟୋତରେ ଘଉଡ଼ ନେଇ ସେ ଅଛନ୍ତି ଅନ୍ଧାରପଟଳ । ୫ । ସୁରସିକ ରସକାଧିର ସନ୍ଧି ଏ ଯାଧିରେ ହେଉଁ ପ୍ରବେଶ । ମହାଅନୁଭୂତ ଶୋଭା ସେ ଦେଖିଲ ସ୍ତମ୍ଭିତ ଉପମା ଅଶେଷ । ମଧୁର । ହାସ ବିରାଜିତ ଅଧରେ । କି ରତ୍ନଜିତ ହୀରକ ଉଦେ ବାଳା କରୁଛୁ ଅରୁଣ ମଧ୍ୟରେ । ୬ । ତାଙ୍କ ଗ୍ରୀବ ଟେକ ଦୀପ ପରି ଲପନ ଶୋଭାକୁ ଦେଖାଇ । ଦର୍ପକଦର୍ପଣି ଦର୍ପହର ବୋଲି ଅଳକା ଅକ୍ଷରେ ଲେଖାଇ । ବନ୍ଧୁଲ୍ଲ । ସେହି କବ କି ମୋତି ହୋଇ । ଅନନ ବନାରେ ଅନ ନବାନାରେ ଦୃଷ୍ଟି ପାତ ନୋହୁ ଧିଅଇ । ୭ । ରସିକା-ମଣିର ସେ ନାସିକାପୁଲେ ତିଳଫୁଲେ କରେ ଧିକ୍କାର । ବିରହ ଅନଳ ପ୍ରଜ୍ୱଳ ହେବାକୁ ଯନ୍ତ ତାଇଦେଲ ପ୍ରକାର । କୁଟିଳ । କୁନ୍ତଳ କି ଶୋଭା ଦଶୁଛୁ । ବାଳକା ମଲ୍ଲିକା ମାଳିକା କବରୀ ଘନ ଶର୍ବରୀକି ହସୁଛୁ । ୮ । ଦରକଣ୍ଠିମାର ଦରକମ୍ପା ଶିର ଝଲକା ଝଲକ ଥରଇ । ଜାନୁବର୍ତ୍ତୁଳା ତୁଳା ହୋଇ ଅବଳା କାହିଁ ନାହିଁ ନାହିଁ କରଇ । ସୁନ୍ଦରୀ,-ସୃଷ୍ଟିରେ ବାଳା ଚକ୍ରବର୍ତ୍ତୀ । ହୋଇଛୁ ବୋଲି କି କର୍ଣ୍ଣ ଧରିଅଛୁ ସୁଜ୍ୟୋତ ମୋତି ଫୁଲ୍-ଛଡ । ୯ । ତାମରସବାସୀ ପ୍ରେମରସବାସୀ ପୃସ୍ତକ ପର୍ଯ୍ୟନ୍ତେ ଏ ଘେନା । ଅମୂଲ୍ୟ ଗୁଣରେ ସଂଯୁକ୍ତ ହୋଇଣ ସୁମନ ସୁମନ ମୋହନା । ଲଲାଟେ । ବିନ୍ଦକ କର୍ପୂରେ କସ୍ତୁରୀ । ମାଣିକ୍ୟ ମଣ୍ଡିତ ସିନା ଫୁଟିଛୁ ସ୍ୱନାପଟାରେ କି ସୁନାରୀ । ୧୦ । କମଳଦଳେ ଚଳଚଳ ଚାଳାଘାଜଳ ପରି ଡୋଳା ଚଳୁଛୁ । କଜ୍ଜ୍ୱଳ ସୂତ୍ରରେ ଲାଗି ନୀଳମଣିସାରଣି କି ଅବା ଚଳୁଛୁ । ଭ୍ରୂଲତା, ଗୃପେ କରି ଶର ସନ୍ଧାନ । ଧୈର୍ଯ୍ୟ-କୁରଙ୍ଗଙ୍କୁ ମୃଗୟା ରଙ୍ଗରେ ବାନ୍ଧ ଅସୁଛୁ କି ମଦନ । ୧୧ । ସେକାଳେ ବଦନ ମଦନରଞ୍ଜନ ନାଟସଦନ

---

୫ । ଅମର—ଦେବତା, ମେଘମାଳା—ସଖୀ, ବିମ୍ବ—କଇଁଚ କାକୁଡ଼ି ପଟଳ—ସମୂହ ।

୭ । ଲପନ—ମୁଖ, ଦର୍ପକ—କନ୍ଦର୍ପ ।

୮ । କୁଟିଳ—କୁଞ୍ଚୁକୁଞ୍ଚିଆ, କୁନ୍ତଳ-ବାଳ, କବରୀ-ଜୁଡ଼ା, ଶର୍ବରୀ-ରାତ୍ର,

୯ । ଦର—ଶଙ୍ଖ, ନୀରଦ—ମେଘ—, ଚକ୍ରବର୍ତ୍ତି—ରାଜାଧିରାଜ ।

୧୦ । ତାମରସ—ପଦ୍ମ, ସୁମନା—ଉତ୍ତମ ମନା, ସୁମନ—ଦେବତା ।

୧୧ । ସଦନ-ଘର, ସୁରଞ୍ଜନ-ଅତ୍ୟନ୍ତ ସୁନ୍ଦର, ଯୋଷା-ନାରୀ, ଉତ୍ତଂସ—କୁଣ୍ଡଳ, ଅନଳ—ଅଗ୍ନି ।

ସୁରଞ୍ଜନ । ନୂପୁର ବାଦ୍ୟନାଦେ ବାଦେ ନାଚନ୍ତି ଯୋଷାଯୋଷା ବେଣୀ ଖଞ୍ଜନ । କାହିଁକି । ନାରଦେ କୋଣକୁ ଯାଉଛୁ । ଗୃହିଁ କି ଉତ୍ତଂସ ଅନଳ ସରାଗେ ସେହ୍ରଦରେ ମୀନ ଧରୁଁଛୁ । ୧୨ । ଏ କେଉଁ ଚହତ ଉନ୍ନତ ଉନ୍ନତ ଦୁଇଦାଗଙ୍କୁ ସେ ଯାଉଛୁ । କି ଅବା ଅମୃତ କୁଣ୍ଡରେ ମଜ୍ଜାଇ ପୁରୁଷ ମନକୁ ମୋହୁଛୁ । ନବୀନା । ଧଇର୍ଯ୍ୟ ବନ୍ଧକୁ ଭାଙ୍ଗଇ । କଳାବତୀ କଳାକମଳ ବୃଷ୍ଟି କି ଦୃଷ୍ଟି ଯୋଗରେ କରିଯାଇ । ୧୩ । ଅତହିଁ ବିସ୍ଫାରିତ ଲୋଳ ଲୋଚନବତୀ ମୁଖଶୋଭା ଗ୍ରାସିବ । ଚତୁରଳ ଗୁରୁମୁଖ ମାର ମାର ସଂସାର ରଚନା ନାଶିବ । ଏଣୁ କି । ସୀମା ବାରଣ କରି ଗାର । ଅଞ୍ଜନେ ଦେଇଛୁ ଆଜ ନ ବଢ଼ିବୁ ତେବେ କର୍ଣ୍ଣଗତ ସଂଗୁର । ୧୪ । ଈଷି ବଚନ ନ ମାନିଲ ଲୋଚନ ସହଜେ ସ୍ୱଇଚ୍ଛାବିହାରୀ । ରଖୁ ନରଖୁ ତରୁଣ ସୂକ୍ଷ୍ମ ଯାକ ଜାଣନ୍ତୁ ଅପୂତ ତାହାର । ଏଥିକି । ହୋଇଛୁ କି ନୀଳ ଲୋହିତ । ନୀଳ ଲୋହିତ ଅଗରେ ପଡ଼ିଗଲେ ସମାଧବ କାମ ମହତ । ୧୫ । ଝିନବଦନ ଫୁଟି ଉଠେ ପ୍ରସନ୍ନ ରୋମାଳୀ ପୟୋଧର ଦୁଇ । ଶୃଙ୍ଗାର ରସଲତା ଉତ୍କଣ୍ଠେ ବିଧାତା ପ୍ରେମାମୃତଫଳ ଫଳାଇ । ପଦ୍ମିନୀ । ଯେଣୁ କୋରକେ ବେନି ବନ୍ଧ । ସେ ଯେବେ ଫୁଟିବେ ଏ ତେବେ ଚୁମ୍ବିବେ ଭୃଙ୍ଗ ମନ୍ତ୍ର ଏହୁ ଅଶାପ୍ରୀ । ୧୬ । ସ୍ୱୟମ୍ଭୁ ଶମ୍ଭୁ କମ୍ବୁ ଧରସୁତଙ୍କୁ ଦପ୍ପାରୁ ସଞ୍ଜୀବନୀମନ୍ତ୍ର । ସେହିସ୍ଥାନେ ଦେଇ ମନୋଭବ କଲେ ଏମନ୍ତ ଘେନୁଅଛୁ ଚିତ୍ତ । ନାକଟେ । ରହିଛୁ ଅହି ହୋଇ ସ୍ପଚ୍ଛ । ଯୁବାବଇକୁଣ୍ଠ ବଡ଼ଭିକି କିବା ଇନ୍ଦ୍ରନୀଳମଣି ପାବଚ୍ଛ । ୧୭ । ଲାବଣ୍ୟନୀରେ ଯୌବନ କରି ଧୀରେ ମଜ୍ଜନ ହୋଇ କି ରହିଛୁ । ଜନ ଅଦମ୍ଭକର କୁମ୍ଭ କରକୁ କେବଳମାତ୍ର ଦେଖାଇଛୁ । ଏଣୁଟି । ଗଇରିକରେ ସେ ଶର୍ଦ୍ଧିତ । ଯେ ହେବ ମାହ୍ନନ୍ତ ନଖାଙ୍କୁଶ ଘଡ଼ ଜଇବ କେତେ ତା ସ୍ୱକୃତ । ୧୮ । ସୁକଣ୍ଠୀ କଣ୍ଠୀରବମଧ୍ୟା

---

୧୪ । ବିସ୍ଫାରିତ—ପ୍ରସାରିତ—(ଦୀର୍ଘ), ଲୋଳ—ଚଳଚଳ, ଗୁରୁମୁଖ-ବ୍ରହ୍ମା

୧୫ । ତରୁଣ—ଯୁବା ପୁରୁଷ, ଲୋହିତ—ଲାଲବର୍ଣ୍ଣ, ନୀଳଲୋହିତ—ନୀଳ ଓ ନାଲି ଏଠାରେ ମହାଦେବ, ସମାଧବ—ରଖିବ, ମହତ—ଇଜ୍ଜତ,

୧୬ । ପୟୋଧର—କୁଚ, ରୋମାଳି—ଲୋମସବୁ, ଶୃଙ୍ଗାର—କାମରସ, କୋରକ—କଢ଼, ଭୃଙ୍ଗମନ୍ତ୍ର—ଭଅଁରସବୁ ।

୧୭ । ଶମ୍ଭୁ—ମହାଦେବ, କମ୍ବୁଧରସୁତ—ବିଷ୍ଣୁଙ୍କ ପୁଅ କନ୍ଦର୍ପ, ଅହି-ସାପ ବଡ଼ଭି—କୋଠା, ପାବଚ୍ଛ—ପାହାଚ ।

୧୮ । ଲାବଣ୍ୟ—ସୌନ୍ଦର୍ଯ୍ୟ, ଗଇରିକ—ଗେରୁ, ନଖାଙ୍କୁଶ—ନଖରୂପଅଙ୍କୁଶ

ହୃଦରେ ରସ ରଞ୍ଜନ ଗଣି ଥୋଇ । ଜଗିଛୁ କି ଅବା ଚାମ ଅଧିକାରୀ ମର୍କତ ଦଣ୍ଡ ଢେରିଦେଇ । ଚଉର । ମନ ପଶି ଏଣୁ ନ ପାଇ । କାଶ ଧ୍ୱଜସରେ ବସିଅଛୁ କେଉଁ ପ୍ରକାରେ କରିବଟି ଚୋର । ୧୯ । ଏକେ ମନକୁ ଅଗମ୍ୟ ହେଲା ଦୁଜେ କଠିନ ସଙ୍ଗେ କର ପ୍ରୀତି । କଷ୍ଟପଣହିଁ ଅତ୍ୟନ୍ତ ଝୀଣ ହେଲା ଏଣୁ ବର୍ତ୍ତିବାରୁ ନିବର୍ତ୍ତ । କୁମର । ଗୃହିଁ ବେଳୁଁ ବେଳ ଲୋଲୁପ । ନୟନ ଅପୂନେ ପଥିକ କଲା ଯେ ଏକା ରସିକଙ୍କରରୂପ । ୨୦ । ଯାବତ ବ୍ରତଫଳ ହେଲା ସଫଳ ତୀର୍ଥଫଳହିଁ ଯେ ମିଶିଲା । ଦେବ ଦର୍ଶନ ଦାନ ପୁଣ୍ୟମାନ ସେହି ସେହିଠାଙ୍କୁ ଆସିଲା । ଭଣୀ ଯେ । ହୋଇଥିଲେ ପୁଂସବନରେ । କୋଟିଗୁଣ କରି ଲେଖିଦେଇ ଗଲେ ଅର୍ଥି-ଠାରେ ଅତି ଯତ୍ନରେ । ୨୧ । ସର୍ବାଙ୍ଗ ଉଛୁଳି ଉଠି ସ୍ୱେଦଜଳେ ଦ୍ରବଗଲା ନଷ୍ଟେ ତାହାର । ନିହାରକର ବିହାର ଗୃହିଁ କଇରବ ଚନ୍ଦ୍ରମଣି ପ୍ରକାର । ହୋଇଲେ । ଲଖ ବିଷମ ବିଶିଖକୁ । ଦୁଃଖକୁ ପଛକୁ ପକାଇ ଦେଇ ସେ ଲଭିଲେ ଅଲେଖସୁଖକୁ । ୨୨ । ପ୍ରିୟସହଚରୀ ବାଳା ଅନୁସରି ତରୁଣକେଶରୀ ଥିବାକୁ । ଧରି ପାନ ବୋଲି ତାହାଣେ ଯାଇଲା ପାଖିଲା ଦେଖ ପଡ଼ିବାକୁ । ସେ ଲଗେ । ଶୁକ ପଢ଼ି ଦେଲା ଏ ଭାଷା । ସୁମନା ରସ ତୁରି ହୋଇ ଭ୍ରମର ଏ ଦଶେ କରିଅଛୁ ଆଶା । ୨୩ । ବଙ୍କ କରି ଗ୍ରୀବା ଗୃହିଁ ଦେଲା ଯୁବା ରମଣୀ ରମା ସୁଲକ୍ଷଣୀ । ଅକ୍ଷୀଣାଙ୍କହୀନ ଚନ୍ଦ୍ରମା ଦକ୍ଷିଣାବର୍ତ୍ତିକ ହେଲା କି ସେକ୍ଷଣି । କି ଶୋଭା । ଦଶିଲା ସିହାଣୀ ଗୃହାଁଣୀ । ନେତ୍ରପାତରେ ହରଷରସ ଅନୁରାଗକୁ ଢାଳିଦେଲା ଆଣି । ୨୪ । ଅତୁଲ୍ୟ ଚତୁରୀ ଜାଣିବା ପାଇଁକି ସୁରସିକ ଏଡ଼େ ଗୁଣିତ । ଏକା ବେଳକେ କି ମୂଲ୍ୟ ବୋଲି ଦେଖାଇଲା ହୀରା ନୀଳ ମାଣିକ୍ୟ । ଅଞ୍ଜନ । ସୂତ୍ରେ ଗୁନ୍ଥି ଉନ୍ନ କମଳ । ବରଣମାଳା କରିଦେଲା ବାରଣଗମନୀ

---

୧୯ । କଣ୍ଠିରବମଧ୍ୟା—ସିଂହକଟୀ, ଚଉର—ଚୋର,
୨୦ । ଦୁଜେ—ଦ୍ୱିଗୁଣରେ, ଲୋଲୁପ—ଲୋଭୀ, ଅପୂନ—ଗୁଟ ନିବର୍ତ୍ତ—ବନ୍ଦହୋଇ ।
୨୧ । ସ୍ୱେଦଜଳେ—ଝାଳ ରୂପରେ, ଦ୍ରବଗଲା—ତରଳିଗଲା, ନିହାରକର—ଚନ୍ଦ୍ର, କଇରବ—କଇଁ, ବିଷମ ବିଶିଖ—କନ୍ଦର୍ପ ।
୨୩ । ବାଳା—ପଣ୍ଡିତା, ତରୁଣ କେଶରୀ—ପୁରୁଷସିଂହ, ସୁମନା—ସୁନ୍ଦରୀ ।
୨୪ । ବଙ୍କ—ବଙ୍କା, ଗ୍ରୀବା—ବେକ, ରମା—ଲକ୍ଷ୍ମୀ, ଅକ୍ଷୀଣାଙ୍କ—କଳଙ୍କ ।
୨୫ । ଅଞ୍ଜନସୁତ୍ରେ-କଳାସୂତାରେ, ବରଣମାଳା-ବରମାଳ୍ୟ, ବାରଣଗମନୀ-ଗଜଗମନା ।

ହୋଇ କି ଚଞ୍ଚଳ ।୨୫। ଗୃହିଁଲ ନ ଗୃହିଁଲ ହୋଇ ଲାଜରୁ ମୁଖକୁ ଥୋଇଲା ଜରଜେ । ସେ ପତି ପ୍ରାପତ ଇଚ୍ଛା କରି ନାସ୍ତି ଶମ୍ଭୁ ପୂଜିଲା କି ନୀରଜେ । ଲବଣୀ । ପିତୁଳା ପ୍ରେମଶୀଳା ସତ । ବୀର ଏହି ନାମ ବପସ୍ୱିତ ହୋଇ ତରଳିତ କଲା ତୁରିତ ।୨୬। ବଧୂ୍ୟଙ୍ଗଙ୍କ ଲୀନ ହେବା ପର୍ଯ୍ୟେ ମଞ୍ଜୁ ଗୃହିଣୀ ସହାରିଲା । ଙ୍ଗଙ୍କେ ଛଙ୍ଗଙ୍କେ ସଙ୍ଗରେ ମନାଇ ମନନେତ୍ରକୁ ଢେଙ୍କାଗଲା । ପୋଷିଲା । କ୍ଷୁଧାରୁ ସ୍ୱସ୍ୱାଦୁ ଅଶନେ । ପ୍ରେମ-ମଞ୍ଜୁସ୍ତ ସ୍ତନ ବେନି ପଞ୍ଜୁରିମଧ୍ୟେ ରଙ୍ଗ ପକ୍ଷୀ ବିଧାନେ ।୨୭। ବାଳା ମନ ନେତ୍ରକୁରଙ୍ଗ ସୁରଙ୍ଗ କରୁଥିଲେ ତନୁବନରେ । ମାରନନ୍ଦନ କୁମାର ଶୋଭାଜାଲେ ପଡ଼ିଲେ ଅତି ଉଚ୍ଛନ୍ନରେ । ଯିବାକୁ । ପିଠି ନ ଦଶିଲା ଉପାୟୁ । ଯେ ଯାହା ଅର୍ଜ୍ଜଇ ସେ ତାହା ଭୁଞ୍ଜଇ ଏଥି ଅଛୁ କେଉଁ ସଂଶୟୁ ।୨୮। ସେ ରମଣୀ ହେଲା ଚକ୍ରବାଡ଼ଗିରି ଚରଣ ଅରୁଣ ଅମ୍ବୁଜେ । ଲଭି ନ ପାରଇ ମନ୍ଥରଗମନା ଗୃହିଁ ନଗୃହିଁ ଭାବ ଲାଜେ । ଦୁହିଙ୍କ । ମୃଦୁହାସ ହେଲା ଜାହ୍ନବୀ । ଚତୁରନୟନେ ମଜ୍ଜନ ଅନ୍ତଶେ ମହାବାରୁଣୀ ଯୋଗ ଲଭି ।୨୯। ହୋଇଲେ ସେ ବେନି ଶୋଭା ରତ୍ନାକର ଦରଶନ ଲୋଭୀ ନୟନେ । ପ୍ରେମରତନ ପତନ କରି ଖୋଜୁ ଅଛନ୍ତି ସେ ଅନବଚ୍ଛିନ୍ନେ । ମଦନ । ମହାକୃପଣ ଜନ ପରି । ସେ ବେନି କାମଧେନୁ କଳ୍ପପାଦପ ଯେଣୁ ବାଞ୍ଛାକୁ ସିଦ୍ଧି କରି ।୩୦। ପ୍ରବେଶ ମୋଠାର ହୋଇଲା କୁଠାର ପ୍ରାୟୁ ଜରତା ମୃଦୁସ୍ଥଳୀ । ଅଳେଖ ସୁଖ ମହୀରୁହ ଛେଦନେ ବଦନେ ଏମନ୍ତ ଉଚ୍ଚାରି । ଶୁଣ ଗୋ । ମନ୍ତ୍ରୀନନ୍ଦନା ଗୃହୁଁଭାରୁ । ଜନନୀ ଆଜ୍ଞା ପରସନ୍ନ ଆନନୀ ସତ୍ୱର ଦରଶନ ସାରୁ ।୩୨। ପିତା ପ୍ରବ

୨୬ । ଜରଜେ-କୁଚରେ, ନୀରଜେ-ପଦ୍ମରେ, ବୀର ବପସ୍ୱିତ—ରବି, ସୂର୍ଯ୍ୟ ଉତ୍ତାପରେ ଲବଣୀବତୀ ତରଳିଲା ପରି ପୁରୁଷକୁ ଦେଖି ଦ୍ରବିଗଲା ।

୨୭ । ସହାରିଲା—ବଢ଼ାଇଲା, ସୁଧା—ଅମୃତ, ଅଶନେ—ଭକ୍ଷିବାକୁ ।

୨୮ । ଚକ୍ରବାଡ଼ଗିରି—ଅସ୍ତ ପର୍ବତ, ଚରଣ—ଗୋଡ଼, ଅରୁଣ—ଲାଲ, ଅମ୍ବୁଜେ—ପଦ୍ମ, ଜାହ୍ନବୀ—ଗଙ୍ଗା ।

୩୦ । ରତ୍ନାକର-ସମୁଦ୍ର, ଅନବଚ୍ଛିନ୍ନେ-ସର୍ବଦା, କଳ୍ପପାଦପ-କଳ୍ପବୃକ୍ଷ ।

୩୧ । କୁଠାର—କୁରାଢ଼ୀ, ଅଳେଖ—ଅସୀମ, ମହୀରୁହ—ଗଛ, ପରସନ୍ନଆନନା—ହର୍ଷମୁଖୀ ।

ପରି ମାତା ଦୁହିତାର ଏକ ସଙ୍ଗେ ଶିବଦର୍ଶନ । ଦୋଷ ହୋଇଅଛି ଅଶେଷ ପ୍ରସ୍ତବେ ଏ ବଚନ ରାହୁ ସେସନ । ଗିଳିଲା । ହରମସ୍ତକ-ଭୂଷଣକୁ । ବାହୁଡ଼ିଲା ବେଗେ ଶିବ ଦେଖି ସ୍ମର ଜଣାଇ ଦୁଦକଷଣକୁ । ୩୨ । ମଦନେ ଆବେଶ କୁମାର ପ୍ରବେଶ ହୋଇଲା କେଶର କାନନ । ଯେଣେ ଅନାଇଲେ ତେଣେ ଦିଶୁଅଛି କେବଳ ସୁନ୍ଦରୀ ଆନନ । କହଇ । ଉପେନ୍ଦ୍ର ଭଞ୍ଜ ଏ ରସ । ଶ୍ରୀରାମେମାନ। ଜାନକୀ ଦେବୀଲାଳ-ଉତ୍ସବକୁ ଦେନା ମାନସ । ୩୩ ।

---

## ଅଷ୍ଟାବିଂଶ ଛାନ୍ଦ

( ସିଂହଳଦେଶର ପୁରୋହିତ ସହିତ ଚନ୍ଦ୍ରଭାନୁର କଥୋପକଥନ )

ରାଗ—ମଙ୍ଗଳ

ଏଥୁଅନନ୍ତରେ ଯେ ଯାମିନୀ ହେଲା ଶେଷ । ବିଚ୍ଛେଦୀ ଚକ୍ର କାମିନୀ ପାଶେ ପରବେଶ ଯେ । ଶଶି ମନୋହାରୀ ନାଶି ସଙ୍ଗ କଲା ପାପ । ବଣେ ଦିବସେ ମଳିନ ହେଲା ଜ୍ୟୋତିଦୀପ ଯେ । ୧ । ଅରୁଣମଣ୍ଡଳେ ଉଦେ ତୁଟିନାହିଁ କଷ୍ଟ । କାଲି ବାରୁଣୀ ସେବିକା ରଙ୍ଗ ଅଳ ଅଛି ଯେ । କକୁଭ ପ୍ରାଙ୍ଗଣେ ନାଳପଦ୍ମ-ବନେ ରହି । ପଦ୍ମିନୀ ହସିଲା ଦରମୁକୁଳିତ ହୋଇ ଯେ । ୨ । ଉଷ୍ଣି ଭୃଙ୍ଗରାଜ କୁମୁଦିନୀ ପାଶୁଁ ଗଲେ । କୁଳଟା

---

୩୨ । ହରମସ୍ତକଭୂଷଣ-ଶିବଙ୍କ ମୁଣ୍ଡଭୂଷା ଚନ୍ଦ୍ର, ଦୁଦକଷଣ-ମନଦୁଃଖ ।
୩୩ । ଆନନ-ମୁହଁ ।

ଚନ୍ଦ୍ରଭାନୁ ଲାବଣ୍ୟବତୀର ମନ୍ଦିରରେ ଦୁହିଙ୍କ ଭେଟ ହୋଇ ନେତ୍ର ଓ ଅଙ୍ଗୁଳିରେ ସଙ୍କେତ ଦେଇ ମାଳା ଦେଲେ, ଏହାପରେ ମାଙ୍କ ଉଚ୍ଚାରୀ ହେବାରୁ ଫେରିଗଲେ ।

---

### ଅଷ୍ଟାବିଂଶ ଛାନ୍ଦ

୧ । ଯାମିନୀ—ରାତ୍ରୀ, ଚକ୍ର—ଚକ୍ରବାକ, ( ରାତ୍ରରେ ଚକୁଆ ଚକୋଈର ବିଚ୍ଛେଦ ହୁଏ ) ଶଶୀ-ଚନ୍ଦ୍ର, ମନୋହାରୀ—ସ୍ତ୍ରୀ ।
୨ । ଅରୁଣମଣ୍ଡଳ—ସୂର୍ଯ୍ୟମଣ୍ଡଳ, ବାରୁଣୀ-ପଶ୍ଚିମଦିଗ, କକୁଭ-ଦିଗ, ପ୍ରାଙ୍ଗଣ-ଅଗଣା, ଦରମୁକୁଳିତ-ଅଧାଫୁଟିଲା ।

ହାଟକୁ ତାର ପରକାଶ କଲେ ଯେ । ବାଟପ କ ଗ୍ଲଉଅଛୁ ନିର୍ଲ୍ଲଜ ସ୍ୱଭାବ । ପଟରେ ପ୍ରକଟ କଲେ ଅପଣା କଲ୍ପ ଭାବ ଯେ । ୩ । ଏ ସମୟେ ସିଂହଳ ଭୂପାଳ ନିଦ୍ରାହତ । ନିତ୍ୟକର୍ମ ତାଙ୍କ ସାରି ନିଜ ପୁରୋହିତ ଯେ । କହିଲେ କର୍ଣ୍ଣାଟ ଯୁବରାଜ ପାଶେ ଯିବ । ପାଠ ଶୁଣାଇ ତା ମନ ସନ୍ତୋଷ କରିବ ହେ । ୪ । ଅମ୍ଭ କନ୍ୟା ଯାଚିବା ନୋହିବ ସନମତ । କରିବ ଯେମନ୍ତ ତାର କୃପାସୁ ତେମନ୍ତ ଯେ । ଶୁଣି ସେ କାର୍ଯ୍ୟକୁଶଳାଗ୍ରେ ଅଗମନ । ତେଣେ ନୃପସୁତ କର ପଲ୍ଲବେ ଶୟନ ଯେ । ୫ । ବାଳା ଶୋଭା ଦରଶନେ ତନୁ ଧ୍ୟାନକର । ଏସନ ପ୍ରସଙ୍ଗମାନ ମାନସେ ବିଗୁରି ଯେ । ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ରମଣୀ ରତନ । କେହ୍ନେ ହେବ ମୁହିଁ ତାହା ସଙ୍ଗକୁ ଭାଜନ ଯେ । ୬ । ଦର୍ଶନ ପାଇଲି ସିଂଜଙ୍କ ର କରିଇଲି । ଯୁବାସୃଷ୍ଟିରେ ମୁଁ ରାଜ-ଛନ ଧରିଇଲି ଯେ । ରସିକ ସଂସାରେ ତ ଥୋଇଲି ପ୍ରଶଂସାକୁ । ବଣ କଲି ବେଳ ଅତ ଉତ୍ତମ ଯୋଷାକୁ ଯେ । ୭ । ଜନ୍ମାନ୍ତେ ବିଶୂଳୀ କରି ଶୂଳଙ୍କୁ ମନାଇ । ଗଙ୍ଗାସାଗର ସଙ୍ଗମେ ଅଙ୍ଗ ଥିଲି ଦାହି ଯେ । ସେ ସୁକୃତ ବାଳାରୂପେ ଶନେ ଲେଖାଇଲା । ବିଧାତା କି ଋଣୀ ହୋଇଥିଲା ଦେଖାଇଲା ଯେ । ୮ । ଅସମ୍ଭାବିତ ସାହସ କରିଅଛୁ ମୁହିଁ । ମନକୁ ନ ଅସେ ଏ ଫଳ ଦେବ କେହ୍ନେ ଯେ । ଅସିବ ମୁକୁର ବିମ୍ବ କେହ୍ନେ ଅଲି-ଙ୍ଗନେ । ପାରଦ ରହିବ ମୁଠା ଭିତରେ କେସନେ ଯେ । ୯ । କେତକୀ କୁସୁମେ କେହ୍ନେ ବିହରିବ ଅଳି । ପାତକୀକୁ ହେବ ପୁରନ୍ଦର ପଦ ଭଳି ଯେ । ଲେଷ୍ଟ୍ରେ ନଷ୍ଟ କରି ଯେବେ ହୋଇବ ଗିରିକ । ସାଧିବି ଜୀବନେ ଆଉଁ ହରବଇରିକ ଯେ । ୧୦ । ବିନାଶ ହୋଇବ ଯେବେ ବସ୍ତୁ ରିକ୍ତ

---

୩ । ଭୃଙ୍ଗରାଜ—ଭଅଁରସବୁ, କୁମୁଦନୀ—କଇଁ, କୁଳଟା ବାଟପୀ, ପ୍ରକଟ—ବିଖ୍ୟାତ ।

୪ । ନିଦ୍ରାହତ—ନିଦଶେଷ, କାର୍ଯ୍ୟକୁଶଳାଗ୍ରେ—କାମ କରିବାରେ ପାରଗ, ପଲ୍ଲବେ—କଅଁଳ ପତରେ ।

୫ । ତନୁ—ଦେହ, ଧ୍ୟାନକର—ଚିନ୍ତାକର, ଅଗମନ—ଯିବା ।

୮ । ଜନ୍ମାନ୍ତେ—ଅନ୍ୟ ଜନ୍ମରେ, ବିଶୂଳୀ—ଶିବ, ମହାଦେବ ।

୯ । ଅସମ୍ଭାବିତ—ଅତଶୟ, ସଫଳ—ସିଦ୍ଧି ।

୧୦ । ଲେଷ୍ଟ୍ର—ଚେଙ୍ଗା, ହରବଇରି—କନ୍ଦର୍ପ ।

ଢଳା । ଯେବେନ ବିନାଶ ହୋଇବ ମୋ ବିରହ ଜ୍ୱାଳା ଯେ । ଭେଳା ପଯିବନା ଏକ ନିଃଶ୍ୱାସେ ସାଗର । ତରିଲେ ଲଭିବ ଅବା ଶୋକସିନ୍ଧୁ ପାର ଯେ । ୧୧ । ପଶ୍ଚିମେ ଉଦୟ ଯେବେ ହୋଇବ ମିହିର । ତେବେ ବା ହୋଇବ କନ୍ୟାତାତ ସ୍ୱୀକାର ଯେ । ସ୍ୱମାମଣି ସ୍ୱୀକାର ହୋଇଲଣି ଯଦି । ତାତ ସ୍ୱୀକାରେ କମ୍ପା ଏତେ ପ୍ରତିବାଦୀ ଯେ । ୧୨ । ଯେଉଁ କର୍ମେ କର୍ପୂର ହୋଇଛି ଅଗ୍ନି ଜାତ । ସୁମନସ କରିଛି ଅଶନି ସନ୍ନିପାତ ଯେ । ସେହି କର୍ମେ ସ୍ୱପ୍ନଧନେ କରିବି ବାଣିଜ୍ୟ । ସଫଳ ହୋଇବ ତେବେ କାମନା ସମାଜ ଯେ । ୧୩ । ଇଚ୍ଛା କରୁଅଛି ଅରୁଣରୁ ସୁଧା ପାନ । ସ୍ଥିରକର ବିଜୁଳି କରିବି ଆଲିଙ୍ଗନ ଯେ । କରେ ଧରି ଚୁମ୍ବିବା ଇଚ୍ଛଇ ସୁଧାକର । ହେମଫୁଲ୍ଲ ଗନ୍ଧ ଲଭିବାକୁ ମନ ମୋର ଯେ । ୧୪ । ପିକଠାରୁ କଥା ଶୁଣିବାକୁ ସ୍ନେହ ଅତି । ମନ୍ଦରକୁ କମଳେ ଯୋଡ଼ି କି ଲୋଡ଼େ ନିତି ଯେ । ଚମ୍ପକ ଭ୍ରମର ମେଳ କରିବାକୁ ମନ । ନକ୍ଷତ୍ରମାଳା କରିବି ମହୀ ଉଦ୍ଦୀପନ ହେ । ୧୫ । ବିନାମେଘେ ଘନରସ ବରଷା ହୋଇବ । ଭସ୍ମ ହୋଇଥିବା ଜନମୂର୍ତ୍ତିକି ପାଇବ ଯେ । ଏମନ୍ତ ଭାଷନ୍ତେ ବେଳେ ଜଣାଇଲ ଦ୍ୱାସ୍ଥ । ବେଢିଚିବେ ତୋଳିଣ ଦ୍ୱିଜୋତ୍ତମେ ଉପସ୍ଥିତ ଯେ ।୧୬। ବାହିରେ ସେ ବୋଲି ମନ୍ତ୍ରୀସୁତ ବାହାରିଲା । ବେହଙ୍କର ଏହି ଦେଶ ପୁରୋଧା ବୋଇଲା ଯେ । ଅସନ୍ତୁ ଯେ ବୋଲି ଆଜ୍ଞା ଦେଲେ ସିଂହ ବେଳ । ରାଜା ସ୍ୱୀକାର ହେଲା ପରି ଶଚୀ ଯେଉଁ ନିପାତ ଯେ । ୧୭ । ବିଚକ୍ଷଣି ପରବେଶ ଦ୍ୱାରପାଳ କଲେ । କଲ୍ୟାଣ ବାଞ୍ଛିଲେ ସେ ନୃପଜ ନମସ୍କାରେ ଯେ । ଆସନ ପାଇ ବସୁଧା ଦେବ ଅତିତୋଷି । ଛନ୍ଦରେ କରିଲୁ ପାଠଶାଠ ବୋଲି ଭାଷି ଯେ । ୧୮ । ନୃପଜ ପ୍ରଶଂସା ଶ୍ଳୋକ ପ୍ରଥମ

---

୧୧ । ଢଳା—ଅଂଶ ।

୧୨ । ମିହିର—ସୂର୍ଯ୍ୟ, କନ୍ୟାତାତ—କନ୍ୟାବାପ, ପ୍ରତିବାଦୀ—ବିପକ୍ଷ ।

୧୩ । ସୁମନସ—ଫୁଲ, ଅଶନି—ବଜ୍ର, କାମନା ସମ୍ବାଦ—ଇଚ୍ଛାସମୂହ ।

୧୪ । ଅରୁଣ—ସୂର୍ଯ୍ୟ, ସୁଧା—ଅମୃତ, ସୁଧାକର—ଚନ୍ଦ୍ର ।

୧୫ । ପିକ—କୋଇଲି, କମଳ—ପଦ୍ମ, ମନ୍ଦର—ପର୍ବତ ବିଶେଷ, ନକ୍ଷତ୍ରମାଳ—ତାରାସବୁ, ଉଦ୍ଦୀପନ—ପ୍ରକାଶ, ଆଲୁଅ ।

୧୬ । ଘନରସ—ଜଳ, ଦ୍ୱାସ୍ଥ—ଦ୍ୱାରୀ ।

୧୭ । ବେହଙ୍କର—ପଡ଼ିହାରୀ, ପୁରୋଧା—ପୁରୋହିତ ।

୧୮ । ବସୁଧାଦେବ—ବ୍ରାହ୍ମଣ ।

ପଠନ । କୁମାର ବୋଲିବା ଖ୍ୟାତ ବେନି ରସେ ଘେନ ଯେ । ବିଧୁସମ ଯଶ ପରରନ୍ଧ୍ର ଦରକର । କଲି ସେ ବିବିଧ ଶ୍ଳେଷ ଘେନି ଅଙ୍ଗୀକାର ଯେ । ୧୯ । ତଦୁତ୍ତରେ କାମଶାସ୍ତ୍ର ରସ ପକାଇଲି । କାମିନୀ ବର୍ଣ୍ଣନା ଅତିଶୟ କରି କଲି ଯେ । ରମା ନ ମୋହିଲି ହୋଇ ଚଉଦ ଭୁବନ । ଅନ ନାହିଁ ଥିଲେ ଥିଲେ ନପୁଂସକ ଜନ ଯେ । ୨୦ । ବିକଳ୍ପ ନ ଥିଲେ ବ୍ୟାକୁଳତା ତାଙ୍କ ଅଛି । ଭକ୍ତଚିନ୍ତ ଅମ୍ବର ଜୀବନ ନୁହେ କିଛି ଯେ । ସ୍ୱର୍ଗ ଅପବର୍ଗରୁ ଅଧିକ ସୁଖ ନାହିଁ । ରତିସୁଖ ସଙ୍ଗେ ସେ ସମାନ ହେବ କେହି ଯେ ।୨୧। ସ୍ୱର୍ଗ ସୁଖ ଇନ୍ଦ୍ର ବଡ଼ ଯାହା ଭୁକ୍ତମାନ । ସେ ରତିଲୋଭୁ ଶାପେଟି ସହସ୍ର ଲୋଚନ ଯେ । ଅପବର୍ଗ ବ୍ରହ୍ମାର ଅୟ୍ୟାସ ବୋଲି କହି । ରତିରସେ ବ୍ରହ୍ମଲୀନ ପୁଣି ଅଛି କହି ଯେ ।୨୨। କେଉଁଠାରେ ବୋଲିବ ବା ଶୁଣ ଦୃଷ୍ଟାନ୍ତର । ଯୋଗମାୟା ଆଶ୍ରୟ ପୁରୁଷ ଗଦାଧର ଯେ । ଗୋପାଙ୍ଗନା ଲମ୍ପଟ ନିଷେଧ ଆଚରଣେ । ଶିବଅର୍ଦ୍ଧ ଅଙ୍ଗ ଗିରିସୁତା ପ୍ରତିକ୍ଷଣେ ଯେ ।୨୩। ପ୍ରତିପଦେ ଶୃଙ୍ଗାର ରତିପଦରେ ସ୍ନେହ । ବେନି ରତିରୁ ସ୍ଥୂଳ ନିତମ୍ବିନୀ ଦେହ ଯେ । ନାରୀ ପଦ୍ମିନୀ ଚିତ୍ରିଣୀ ଶଙ୍ଖିନୀ ହସ୍ତିନୀ । ଗୁରୁଜାତ ପ୍ରଧାନ ଅଜ ଶଙ୍କରୀ ଘେନି ଯେ ।୨୪। ଦେବ ଗନ୍ଧର୍ବ ଯକ୍ଷ ପ୍ରେତ ସତ୍ତ୍ୱାଦିକମେ । ଯେ ପୁଂସର ଯେତେ ଭାଗ୍ୟ ସେ ଲଭି ତା ରମେ ହେ । ହୀରା ନୀଳା ମାଣିକ୍ୟ ମୁକୁତା ବିଦ୍ରୁମର । ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତ୍ରୀରତନର ଯେ ।୨୫। ଫୁଲାଇ ନାସା ଡୋଳାକୁ ଖେଳାଇ ନେବାର । ମୁଖ ହଲାଇ ଗେହ୍ଲାଇ ଭାଷା କହିବାର ଯେ । ଚିବୁକେ ତର୍ଜନୀ ଦେଇ ହୋଇବାର ଜଭା । ନେଣ ଦେଖିଥିବ କି ଏପରି ଆନ ଶୋଭା ଯେ ।୨୬।

---

୧୯ । ବିଧୁ—ଚନ୍ଦ୍ର, ଦର—ଭୟ, ଶ୍ଳେଷ—ଆକ୍ଷେପ, ଅଙ୍ଗୀକାର—ସ୍ୱୀକାର ।

୨୦ । ରମା—ଯୌବନା ସ୍ତ୍ରୀ, ନପୁଂସକ—ପୁରୁଷପଣ ନ ଥିବା ଲୋକ ।

୨୧ । ବିକଳ୍ପ—ବିଶେଷ ଆଶା, ବ୍ୟାକୁଳତା—ଦୁଃଖର ସହିତ ଆକୁଳ ହେବା, ଅପବର୍ଗ—ଫଳସିଦ୍ଧି ।

୨୨ । ଭୁକ୍ତମାନ—ଜଣାଶୁଣା, ଅୟ୍ୟାସ—ଇଚ୍ଛା ।

୨୩ । ଦୃଷ୍ଟାନ୍ତର—ଉଦାହରଣ, ଯୋଗମାୟା—ପ୍ରକୃତି ସୁନ୍ଦରୀ, ଗଦାଧର—ଭଗବାନ, ଗୋପାଙ୍ଗନା—ଗୋପୀମାନେ, ନିଷେଧ—ମନା, ଆଚରଣ—ସ୍ୱଭାବ, ଶିବ—ମହାଦେବ, ଗିରିସୁତା—ପାର୍ବତୀ ।

୨୪ । ପତି-ସ୍ୱାମୀ, ଶୃଙ୍ଗାର-କାମକେଳି, ସ୍ଥୂଳ-ମୋଟା, ନିତମ୍ବିନୀ-ନାୟିକା

୨୫ । ବିଦ୍ରୁମ—ପୋହଳା ।

୨୬ । ଭାଷା—କଥା ।

ମାବ ଫେଡ଼ାବେଳେ କରବାର ନାହିଁ ନାହିଁ । ବଚନ ସମ ସୁସ୍ୱର ବୀଣା ପିକେ କାହିଁ ଯେ । ବିପରୀତ ମାଗୁଁ କେ ଜାଣଇ ବୋଲିବାର । ସଞ୍ଜୀବନୀ ମନ୍ତ୍ର ସମ ନିଜ ତା ଭୁଲର ଯେ । ୨୭ । ଶୟନରେ ଅଣିକର କୋପେ ଅଣିବାର । ଅଣିମାଦ ସୁଖ ନିଜ ସମ ତା ସଙ୍ଗର ଯେ । ରତିକାଳେ ମୁଦ ଫେଡ଼ିବାର ନେଣ ଦୁଇ । ଜଳ ନୀଳୋତ୍ପଳକୁ ଧିକ୍କାର କରୁଥାଇ ଯେ ।୨୮। ଏତିକ ହେଜ କୋଳଣ ଭିଡ଼ିବାର କ୍ଷଣେ । ସେ ସୁଖ ପାଇବ ଯୁବା କେଉଁ ରାଜପଣେ ଯେ । ଯାହାଠାରେ ଅଭିଳାଷ କରେ ଯାହା ମନ । ସେହି ତାର ସକଳ ସୁଗତି ବୋଲି ଘେନ ଯେ । ୨୯ । ମୁଗ୍‌ଧାରୁ ମଧ୍ୟା ପ୍ରଗଲ୍‌ଭା ଯାଏ ସୀମନ୍ତିନୀ । ପୁରୁଷର ହୁଅଇ ଅଶେଷ ସୁଖଦାୟିନୀ ଯେ । ଉଦୟରୁ ଅସ୍ତ ଯାଏ ଚନ୍ଦ୍ରିକା ମଣ୍ଡଳ । ଯଥା କରଇ ଚକୋର ସୁଖକୁ ସଫଳ ଯେ ।୩୦। ସୁରତରୁ ଜାତ ଲୋଭ ଲୋଭୁଁ ପ୍ରୀତି ଲେଖ । ପ୍ରୀତିରୁ ସୁରତ ଜାତ ପୀରତିରୁ ସୁଖ ହେ । ପ୍ରାଣ ଛାଡ଼ ହୋଏ ସ୍ତ୍ରିରି ଛାଡ଼ ନୋହେ କେବେ । ନାରଦାଦିଠାରୁ ଶୁଣିଥିବ ତ ପ୍ରସ୍ତାବେ ଯେ । ୩୧ । ପୁଣ ନେଣ ଭୃକୁଟିର ରସ ଆସ୍ୱାଦନ । ହୃଦେ ଘେନ ହେ ହୃଦ୍‌ହଂସ ହେବ ଏ ବିଧାନ ଯେ । ସୁଖୀ ହୋଇଥିବ ନୃପ-ଉପଜୀବୀ ନୋହି । ବିଦ୍ୟା ଥିବ ଦିବ୍ୟସ୍ତ୍ରିରୀ ମିଳିଥିବ ତହିଁ ଯେ । ୩୨ । କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦରେ । ସ୍ତ୍ରିରୀହୀନ ଠାରୁ ପାପୀ ନାହିଁ ଏ ସଂସାରେ ଯେ । ରସିକ ବୋଲଣ ବୋଲି ଏହି ପୁରୁଷକୁ । ଯେ ଘେନଣ ଆଦି ଏତେ ଲକ୍ଷଣ ବଂଶକୁ ଯେ ॥ ଦୋଷ କଲେ ରମା ଦ୍ୱେଷ ନ ଘେନଇ ମନେ । ଦାସ ପ୍ରାୟ ଗୃହ ବିଚରଇ ପ୍ରିୟା ମନେ ଯେ । ପଛ ନ କରଇ ତାକୁ ଶୟନେ ଗମନେ । ଜାଣିଥାଇ କାମଶାସ୍ତ୍ର ବହୁତ ବିଧାନେ ଯେ । ୩୪ । କର ନାହିଁ ଯେ ଦର୍ଶନ ବାଳା ବିବସନ । ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ଯେ । ଯୋଷା ପରିହାସ ଭାଷା ସେହୁ ନ ଶୁଣନ୍ତି । କର୍ଣ୍ଣ ନୋହେ କୁହରଯୁଗଳ ସେ ବହନ୍ତି ଯେ । ୩୫ । ଯେ କର ନାହିଁ ସୁନ୍ଦରୀ ବିମ୍ବାଧର ପାନ ।

---

୨୭ । ମାବ—କଞ୍ଚୁ ବା ଖୋପଣୀ, ସଞ୍ଜୀବନୀମନ୍ତ୍ର—ଜୀବଦାନ ମନ୍ତ୍ର ।

୨୮ । ଅଣିମାଦ—ଅଷ୍ଟ ଐଶ୍ୱର୍ଯ୍ୟ, ନୀଳୋତ୍ପଳ—ନୀଳ କଇଁ ।

୨୯ । ସୀମନ୍ତିନୀ—ସ୍ତ୍ରୀ, ମୁଗ୍‌ଧା—ମଧ୍ୟା, ପ୍ରଗଲ୍‌ଭା—ପ୍ରଧାନ ସ୍ତ୍ରୀ ।

୩୫ । ବାଳା—ସ୍ତ୍ରୀ, ବିବସନ—ଉଲଗ୍ନ, ନିର୍ମଳ ନୟନ—ପରିଷ୍କାରଚକ୍ଷୁ । ପରିହାସ—ଥଟ୍ଟା, କୁହର—ଗାତ ।

କ ସ୍ୱାଦୁ ଜାଣିଛୁ ଧିକ ତାହାର ଜୀବନ ଯେ । ମହା ମହା ଦାନ ଦେଇ
ନାହିଁ ଯେହୁ କରେ । ସେ କାହିଁ ପଢ଼ିବ ଭସବତୀ ଚରିତରେ ଯେ । ୩୬ ।
ସ୍ୱୟମ୍ଭୁ ଶମ୍ଭୁ ସେବାରେ ଯାହା ତନ ମନ । ସେ ସ୍ମରଣ କରଇ ସାରସ-
କୋଷ-ସ୍ତନ ହେ । କହୁଥିଲେ ସରବାର ନୋହେ ଏ ଚରିତ । ସ୍ମରଣାସ୍ତ୍ର
ଅଲଂକାରେ ଯେ ପ୍ରତିପାଦିତ ହେ । ୩୭ । ତୁମ୍ଭେ ରାଜପୁତ୍ର ଯୁବା ସୁନ୍ଦର-
ରସିକ । ତୁମ୍ଭଙ୍କୁ କି ଅଗୋଚର କାବ୍ୟରୀତି ଯାକ ହେ । ଏକା କାବ୍ୟରୀତି
କାମ୍ୟା ଅନୁଭବୀ ପୁଣ । ଯାହା ସେବା ନିପୁଣ ନୃପତିସୁତାଗଣ ଯେ । ୩୮ ।
ତହିଁକି ପତି ଉତ୍ତର କଲ୍ୟ ରତ୍ନଧ୍ୱଜ । ବିଭା ହୋଇ ନାହାନ୍ତି ଆମ୍ଭର
ଯୁବରାଜ ଯେ ! ସମେ କନ୍ୟା ନ ମିଳିଲା ପୃଥିବୀ ମଣ୍ଡଳେ । ଉଣା ଅଧିକ
ଦ୍ରବ୍ୟ କି ପାଇବେ ଦେଖେ ତୁଳେ ଯେ । ୩୯ । ପାରିଲେ ଲଗାଅ ତୁମ୍ଭ
ରାଜପୁତ୍ରୀ ଅଛୁ । ସୁନ୍ଦରୀ ବୋଲି ଶବଦ ଲୋକେ ପ୍ରକଟିଛୁ ହେ । ଦେଖିଲ
ଯେଉଁ ସୁନ୍ଦର ଅମ୍ଭ ନୃପାତ୍ମଜ । ଯେ ଦେଖିଲେ ସେ ହେଉ କହନ୍ତାଇଁ ବାଞ୍ଛା-
କାଙ୍କ୍ଷା ହେ । ୪୦ । ଦ୍ୱିଜ କହେ କି କହୁଛ ମରିଁ ମରିଁ । ଏତେ
ସୁକୁମାର ଦେହ ମାର ପ୍ରହାରଇ ହେ । ହେଲେ ହେଲା କି ହେଲା କି
ହୁହେଁ ବଡ଼ ରଜା । ରାଜପୁତେ ବିଭା ସିନା ଟଳାଇ ତନୁଜା ହେ । ୪୧ ।
ତଥାପି ଲାବଣ୍ୟବତୀ ନିପୁରାଲଙ୍କାର । ସୁନ୍ଦରପଟେ ତାହାର ନାହିଁ ସମ
ଗାର ହେ । ଉପୁରୁ କି ସମସ୍ତେହେଁ କରନ୍ତିକ ତପ । ବନେ ପଶିଣନ୍ତି
ଯାଇ କମଳକଳାପ ହେ । ୪୨ । ଏମନ୍ତ ମୃଗ ନୟନ ରୁଚିର ତାହାର ।
ବୁଧେ ବୋଲନ୍ତି ମଦନମନୋହରସର ଯେ । କବି ଗଣେଶ ବର୍ଣ୍ଣନ ନ
ପାରନ୍ତି କରି । ଗୁଣ ସ୍ମରଣ କରନ୍ତି ଜପାମାଳ ଧରି ହେ । ୪୩ । ଅଧିକ-

---

୩୭ । ସ୍ୱୟମ୍ଭୁ—ବ୍ରହ୍ମା, ଶମ୍ଭୁ—ମହାଦେବ, ସାରସ—ପଦ୍ମ ।
୩୮ । ଅଗୋଚର—ଅଜଣା, ନୃପତି ସୁତା—ରାଜକେମା ।
୩୯ । ପୃଥିବୀ ମଣ୍ଡଳେ—ସାରା ପୃଥିବୀରେ ।
୪୦ । ତନୁଜା—ଝିଅ ।
୪୨ । କମଳ କଳାପ—ମୃଗ ସବୁ ।
୪୩ । ବୁଧ—ପଣ୍ଡିତ, ମଦନ ମନୋହର ସର-କନ୍ଦର୍ପର ସୁନ୍ଦର ପୋଖରୀ,
କବି—ଶୁକ୍ର, ବୃଷା-ଇନ୍ଦ୍ର, ବୃଷାସନ-ମହାଦେବ, ବିଧି—ବିଧାତା,
ଅନନ୍ତ—ଶେଷଦେବ, କୁମାର—କାର୍ତ୍ତିକେଶ୍ୱର ।

ନେଣ ବନ୍ଧିଲେ ବୃଷାସନ । ଲଭିବାକୁ ଶୋଭବତୀ ଶେଖ ଦରଶନ ହେ । ବଧି କୁମାର ଅନନ୍ତ ମୃଣାଧିକ ହୋଇ । ବିଗୃହନ୍ତି ତାହା ଶୋଭା ବର୍ଣ୍ଣିବାର ପାଇଁ ଯେ ।୪୪। ଏସନ ଯେଉଁ ସୁନ୍ଦରୀ ଇତର ଉପରେ । ପରିପତି ହୁଅଇ କି ଶରୀରିଜନରେ ଯେ । ସୁନ୍ଦରୀ ମାଗୋଳ ଯେବେ ଲଭିବେ ଭୂପତି । ଏଣି ଭବ ନ ପାଇବେ ମନୋହରବତୀ ଯେ । ୪୫ । ନାକ ନାଗେ ସମ ନାହିଁ ଥାଉ ଅଉ ଧରା । ବର ଖୋଜ ମନ୍ତ୍ରୀଙ୍କ ହୋଇଲ ମହାଭ୍ରମ ହେ । ଅବଶ୍ୟରେ କୁଳୀନଗଣେ ମିଳଲେ ପୁଂସ । ନୃପେ ପ୍ରବର୍ତ୍ତିଲ ଏଣି ଲଭିବା ଅବଶ୍ୟ ହେ । ୪୬ । ତୃଷାର୍ତ୍ତ ଯିବା ସଲିଳ ପାଶେ ଉପଗତ । ପାଣି ତୃଷାର୍ତ୍ତ ପାଶକୁ ଆସେ କି ଘେନ ତ ହେ । ନଦୀସନ୍ନିଧିକୁ ଜଳପାନ କରି ଗଲେ । ତାହା ଅସନମତ ହୋଇଛନ୍ତି କେଉଁ କାଳେ ହେ । ୪୭ । ଆପଣେ ଅମ୍ଭ ସଙ୍ଗତେ ହୁଅ ଅସିବାକୁ । ନୃପେ କହି ନିର୍ବାହ କରିବା ଏ କାର୍ଯ୍ୟକୁ ଯେ । ଏ ଉତ୍ତରେ ରତ୍ନଧ୍ୱଜ ଦ୍ୱିଜସଙ୍ଗେ ଯାଇ । ସଚିବକୁ ଘେନି ନୃପ ଛାମୁରେ ପକାଇ ଯେ । ୪୮ । ସେ ବୋଇଲେ ସବୁରୂପେ ଅମ୍ଭର ସମ୍ମତ । ଜାତକ ବିରୁଦ୍ଧେ ନାହିଁ କେବଣ ଅଭୂତ ଯେ । ପାଠଯୋଷୀ ଡାକ ଭଲ ବେଳକୁ ଜାଣିଲେ । ଉତ୍ତମ ଶୁଣିଲ ବେନିଜାତକ ବୁଝିଲେ ଯେ । ୪୯ । ନୃପ ଆଜ୍ଞା ଦେଲେ ପରେ ଯିବା ହୁଅ ରଜ । ମନ୍ତ୍ରୀକ ଘେନି କୁମାରପଣେ ଗଲେ ଦ୍ୱିଜ ହେ । ନୃପତି ସମ୍ମତ ଶୁଣି ହୋଇଲେ ହରଷ । ଚିର କ୍ଷୁଧାର୍ତ୍ତି ପାଇଲ କି ପିୟୂଷରସ ହେ । ୫୦ । ତେଣେ ଅରୁଣଅଧରୀ ପୀନପୟୋଧରୀ । ଏକାନ୍ତେ ବସି କୁମାରଦର୍ଶନ ସୁମରି ଯେ । କେତେ ଅଦଭୁତ ଶୋଭା ଦେଖିଲ ନୟନ । ଉପମାକୁ ସମ ହୋଇନାହିଁ ଯେ ବଚନ ଯେ । ୫୧ । ଏ ସମୟେ ପରବେଶ ହେଲ ଚନ୍ଦ୍ରାବଳୀ । ତାପ ଧ୍ୱଂସି

---

୪୫ । ଶରୀରି—ମନୁଷ୍ୟ, ଭୂପତି—ରଜା ।

୪୬ । ନାକ—ସ୍ୱର୍ଗ,ନାଗ—ପାତାଳ, ଧରା—ପୃଥିବୀ,କୁଳୀନ—ଉତ୍ତମବଂଶ

୪୭ । ସଲିଳ—ପାଣି, ଅସନମତ—ଅରଜି ।

୪୮ । ନିର୍ବାହ—ସ୍ଥିର ।

୪୯ । ଜାତକ—ଜନ୍ମକୋଷ୍ଠି, ବିରୁଦ୍ଧେ—ଅମେଳରେ, ପାଠଯୋଷୀ—ଉତ୍କୃଷ୍ଟ ଜ୍ୟୋତିଷ ।

୫୦ । ଚିରକ୍ଷୁଧାର୍ତ୍ତ—ସର୍ବଦା ଭୋକିଲା, ପିୟୂଷ ରସ—ଅମୃତ ରସ ।

ଦେଲା ଏ ବଚନାମୃତ ଢାଳି ଯେ । କର୍ଣ୍ଣାଟ ଯୁବରାଜକୁ ତୋଷେ ଦେବା-ପାଇଁ । କଥା ହୋଇ ରାଜା ମନ୍ତ୍ରୀ ଦେଲେ ପଠାଅଇ ଯେ । ୫୨ । ସତେ କି ବୋଲି କେତକାଳବରନା ପଗୁରି । ଅନ ଅଛୁ ବୋଇଲା ସୁନ୍ଦରୀ ସହଚରୀ ଯେ । ସିନ୍ଦୂର ଗଢ ଅନନ୍ଦସିନ୍ଧୁ ଉଛୁଳିଲା । କେତେ ଦେବତାଙ୍କୁ କେତେ ଭୋଗ ମନାସିଲା ଯେ । ୫୦ । ଦରଶନ ଭାବନା ହୋଇଲା ଅନ ତାର । ବରହ ଉତ୍କଣ୍ଠିତା ହୋଇଲା ରମାବର ଯେ । ଅନୁରାଗରକୁ ଦେଇ ମନ ନୋହେ ତୋଷ । ପୁନଃ ପୁନଃ କଲା ପ୍ରିୟସଖୀଙ୍କି ଅଶ୍ଳେଷ ଯେ । ୫୪ । ଅହେ ରାମ କରୁଣାସାଗର ଚାପଧର । ଖର-ପ୍ରଖର-ଦୂଷଣ-ତିଶିର-ପ୍ରହର ହେ । ମୁନିଜନ ତୋଷ ଜନପଦସ୍ଥିର କର । ଉପଇନ୍ଦ୍ର ଭଞ୍ଜ ବୀରବର ତାପ ହର ହେ । ୫୫ ।

## ଊନତ୍ରିଂଶ ଛାନ୍ଦ

( ସଖୀମାନଙ୍କର ଅନ୍ତଃପୁରରେ କଥାବାର୍ତ୍ତା )

ରାଗ—ନଳିନୀଗୌଡ଼ା

ସିଂହଳେଶ ତୋଷଭର । ଗଲେ ଦେଇ ଅନ୍ତଃପୁର । ନାରୀ ବହୁ ତହିଁ ବସାଇ । ସୁନ୍ଦର ଶବ୍ଦେ ଭାଳଇ । ୧ । ଜୁମର ବାହୁଡ଼ ଯିବ । କାହିଁକି ଥିବ ଏ ଜୀବ । ପଡ଼ିବ ସିନ୍ଧୁ ମଧ୍ୟର । ଏ ବିଚାର ସବୁ ସାର । ୨ । ମନାସି

---

୫୨ । ବଚନାମୃତ—କଥାମୃତ ।

୫୩ । ଅନ—ଗଣ, ସିନ୍ଦୂରଗଢ—ଗଜଗମନୀ ।

୫୪ । ବିରହ ଉତ୍କଣ୍ଠିତା—ମଦନରେ ଉଚ୍ଛନ୍ନ ।

୫୫ । ଚାପ—ଧନୁ, ପ୍ରହାର—ବିନାଶ, ଜନପଦ—ଗ୍ରାମ, ଏଠାରେ ଦଣ୍ଡକାରଣ୍ୟ ସିଂହଳଦେଶ ପୁରୋହିତ ଚନ୍ଦ୍ରଭାନୁ ପାଖକୁ ଯାଇଁ ନାନାଦି ବିଦ୍ୟାପରେ କାମଶାସ୍ତ୍ର ପ୍ରସଙ୍ଗ ଉଠି ବିବାହ କଥା ପଗୁରନ୍ତେ ମନ୍ତ୍ରୀସୁତ ବିଭା ନୋହି ଥିବାର କହିଲେ ଏବଂ ତୁମ୍ଭ ରାଜକନ୍ୟା ସଙ୍ଗେ ସ୍ଥିର କର ବୋଲି କହନ୍ତେ, ରାଜାଙ୍କ ନିକଟେ ପୁରୋହିତ ଓ କାଞ୍ଚି ରାଜପୁତ୍ର ସହଚର ଅସି କଥା ଠିକ କଲେ ଜାତକମଧ୍ୟ ମୁଟିଲ, ବିଭାର ବନ୍ଦୋବସ୍ତ ହେବାର ଠିକ ହେଲା । ମନ୍ତ୍ରୀକି ନେଇ ବ୍ରାହ୍ମଣ ରାଜପୁତ୍ର ପାଖକୁ ଗଲେ ।

### ଊନତ୍ରିଂଶ ଛାନ୍ଦ

୨ । ଜୀବ—ପ୍ରାଣ, ବାହୁଡ଼—ଫେରି, ସିନ୍ଧୁ—ସମୁଦ୍ର ।

ମୁଁ ଯାଚିଥିବ । ଜନମାନ୍ତରେ ପାଇବ । ଆନ ବାଧିରେ ମରଣ । ହେଲେ ହେବ ଅକାରଣ । ୩ । ଏ ବସ୍ତୁର ମୂଳ କର । ବାକେ ବହୁଦେ ସୁନ୍ଦର । ନାକେ ତାହା ତାହା ରୂପ । ଅନାଇଁ ଲଭିଲେ ତାପ । ୪ । କହିଲେ ସଖୀଙ୍କି ଛଳ । କି ଦିଶୁଛି ନବବାଳୀ । ତାତ କର୍ଣ୍ଣାଟଦେଶସୁତ । ବର କଲେ କାଲି ସତ । ୫ । ଆସିବେ ରହିଲେ ପଛେ । ବହୁଦେ ବସାଇ ସ୍ୱଚ୍ଛେ । ଏବେ ନ କଲେ ଯତନ । ପାଇବଟି ନିନ୍ଦାମାନ । ୬ । ଏ ବାଣୀ ଶୁଣି ତକ୍ଷଣ । କେମାର ଜୀବ ରକ୍ଷଣ । ସମୁଦ୍ର ହୋଇଲେ ପାର । ଚଳିଲେ ସନ୍ତୋଷେ ଘର । ୭ । କୁମାର ଘେନି ନୃପତି । ପାର ହୋଇ ପୁରେ ସ୍ଥିତି । ଦିବ୍ୟପୁରେ ବସା ଦେଇ । ରଖିଲେ ହରଷ ହୋଇ । ୮ । ସର୍ବ ନୃପତି ନିବାଶ । ବାହୁଡ଼ିଗଲେ ସ୍ୱଦେଶ । ନିରାଶ ଅମୃତ ପାନେ । ଯେମନ୍ତ ଅସୁରମାନେ । ୯ । ସିଂହଳଦ୍ୱୀପକୁ ଦେଖି । ଯୁବରାଜ ଅତି ସୁଖୀ । ଭାଳିଲା ଲାବଣ୍ୟବତୀ । ଜନ୍ମସ୍ଥାନ ଯେଉଁ କ୍ଷିତି । ୧୦ । ତାକୁ ସ୍ୱର୍ଗ ସମ କାହିଁ । ବୋଲିବା ଆଶ୍ଚର୍ଯ୍ୟ ନୋହି । ଏଣୁକରି ଅନୁପମା । ସଂସାରେ ନାହିଁ ଉପମା । ୧୧ । ଶୁଭିଲା କାନରେ ଗୀତ । ଏଥି ବାଣୋଧ୍ୱନି ମତ । ହୋଇଥିବ ବାଳାମଣି । ଏମନ୍ତ ମନକୁ ଆଣି । ୧୨ । ଲେଖିଲା ସେ ମନେ ମନ । ଅଛି ଆଉ କେତେ ଦିନ । ମୋ ଅଙ୍କପଲ୍ୟଙ୍କ କରି । ବସିବ ଅବନୀଶିରୀ । ୧୩ । ରସିବ ଗୃହଁକୁ ଶୁଣି । ହସିବ ଅଳପ ପୁଣି । ଦଶିବ ମୁଖ ଯେସନ । ସେହି କୋଳରେ ପ୍ରସନ୍ନ । ୧୪ । ସେ ଶୋଭା ସନ୍ଦର୍ଭ ତଳେ । ନ ଥିବ ଚନ୍ଦ୍ର ମଣ୍ଡଳେ । ହୋଇବ ପଦ୍ମ ମୁକୁର । କାହିଁକି ତୁଳନା ତାର । ୧୫ । ମୋତେ ଗୃହିଁବ ଶଙ୍କାରେ । ନେଉଥିବ ନେହାନ୍ତରେ । ତୋଳା ଖେଳାଇ ଖେଳାଇ । ସେ ଯେ ଲାଜ ଲାଜ ହୋଇ । ୧୬ । ଅନନ୍ତ ତୁରଙ୍ଗ ଲୀଳା । ହେବ ଅବା କେତେ ତୁଳା । ମୂର୍ତ୍ତି ଖଞ୍ଜନ କୁରଙ୍ଗୀ । କାହିଁ ପାଇଲେ ସେ ଭଙ୍ଗୀ । ୧୭ । ଯେଉଁ ଭଙ୍ଗୀ ଅନୁସରି ।

---

୩ । ଜନମାନ୍ତରେ—ଅନ୍ୟ ଜନ୍ମରେ ।

୯ । ସ୍ୱଦେଶ—ନିଜ ଦେଶ ।

୧୧ । ଅନୁପମା—ଅତୁଳନୀୟା ।

୧୩ । ଅବନୀ—ପୃଥିବୀ, ଶିରୀ—ଶୋଭା, ଅବନୀଶିରୀ—ପୃଥିବୀମଧ୍ୟରେ ଶୋଭା ଯେ ଲାବଣ୍ୟବତୀ ।

୧୫ । ସନ୍ଦର୍ଭ—ଶୋଭା, ମୁକୁର—ଆରସି ।

୧୭ । ତୁରଙ୍ଗ—ଘୋଡ଼ା, କୁରଙ୍ଗ—ମୃଗ ।

ଭୃଙ୍ଗ ଭ୍ରମଲେ ବହୁଳ । ମାଳୋତ୍ପଳ ବାତେ ଚଳେ । ଇଚ୍ଛାରେ ଭୁଜଙ୍ଗ ଖେଳେ । ୧୮ । ଗୃହୀ ଙ୍କ ସନ୍ତୋଷ ହେବ । ସବୁ ଚୁମ୍ବନ ମୁଁ ଦେବ । ନେବ ମୁଖଅଙ୍କେ କର । ତନୁରେ ପୁଲକ ଭର । ୧୯ । ସୁବର୍ଣ୍ଣ ପନସ ସମ । ଦଶୁଥିବ ମନୋରମ । ଖେଳିବ ପକାଇ ହୃଦେ । କି କାର୍ଯ୍ୟ ଇନ୍ଦ୍ରର ପଦେ । ୨୦ । ଏମନ୍ତ ଭାବନାବେଳେ । ମାଳାକାର ନାରୀ ମିଳେ । ବହୁଛି ଫୁଲ ଚନ୍ଦନ । ପ୍ରୀତିଯୁକ୍ତ ବାଣୀମାନ । ୨୧ । ଶୁକ ଯେ ଦେଲା ଚାହାଁଇ । ଆନନ୍ଦେ ପୁଂସ ଅନାଇଁ । ଶୋଭା ସେ ଚନ୍ଦନ ଫୁଲେ । ଅଙ୍ଗକୁ ଢାଳ ଚପଳେ । ୨୨ । ବୋଇଲା ଏ ଦ୍ରବ୍ୟେ କର । ଜୀବନ ପ୍ରଭୁର ମୋର । ଲାଗି ଥିବାରୁ ଶୀତଳ । ଦହେ ସ୍ମରହାନଳ । ୨୩ । ନୋହିଲେ ଏ ଦ୍ରବ୍ୟମାନେ । ଦହୁଥିଲେ କାଷ୍ଠିଦନେ । ଚତୁରୀ ହସିଲା ହୋଇ । ମଧୁରେ ଭାଷିଲା ତହିଁ । ୨୪ । ଏହୁ ବଚନରେ ଜାଣି । ପକାଇଲା ସ୍ୱାମୀମଣି । ସୂତଶରେ ଭେଦ ମାର । ଗୁଣବନ୍ତ ମାଳାକାର । ୨୫ । ଏ ବାର୍ଦ୍ଧରେ ନିତ ନିତ । ବୃଦ୍ଧି ହେଲା ବେନି ପ୍ରୀତି । ଶୁଣିମା ଏଥି ଉତ୍ତରୁ । ମହା-ଦେବୀଙ୍କ ଅଜ୍ଞାରୁ । ୨୬ । ମାତାମହୀ ପୁରୁ ଆସି । ଥିଲା ଯେ ଜରତୀ ଦାସୀ । କଉତୁକୀ ନାମ ତାର । ପରହାସ ସ୍ୱଭାବର । ୨୭ । ବଶୀକରଣାଦ ବିଧି । ଜାଣଇ ନାନା ଔଷଧି । ଜେମାପୁରକୁ ଗମନ । କହଇ ଯତ୍ନ ବିଧାନ । ୨୮ । ସଖୀମାନଙ୍କୁ ବସାଇ । ହେଳା କଥା ଏ ନୁହଇ । ଜେମା କ୍ଷୀଣ କଳେବର । ଅତି ବଳାଥର ବର । ୨୯ । ସଙ୍ଗେ କେହି ବାହାରିବ । ଏମନ୍ତ ତୁମ୍ଭେ କହିବ । ଦେବ ଶିତା ମେଥି କ୍ଷୀରେ । ନିତ ପ୍ରଭାତ

---

୧୮ । ବାତେ—ପବନରେ, ଭୁଜଙ୍ଗ—ସର୍ପ ।

୧୯ । ପୁଲକ—ଆନନ୍ଦ ।

୨୨ । ଚପଳେ—ଶୀଘ୍ର ।

୨୩ । ସ୍ମରହାନଳ—କନ୍ଦର୍ପ ଅଗ୍ନି ।

୨୪ । ଦହୁଥିଲେ—ପୋଡୁଥିଲେ ।

୨୫ । ସୂତଶରେ—ସୂକ୍ଷ୍ମ ଶରରେ, ମାର—କନ୍ଦର୍ପ ।

୨୬ । ବୃଦ୍ଧି—ବଢ଼ିବା, ପ୍ରୀତି—ସ୍ନେହ ।

୨୭ । ମାତାମହୀ—ବୁଢ଼ୀମା, ଜରତୀ—ବୁଢ଼ୀ ।

୨୯ । କ୍ଷୀଣ—ସରୁ, କଳେବର—ଦେହ, ବଳାଥର—ବଳୁଅ ।

୩୦ । ଶିତା—ଚିନି, କ୍ଷୀରେ—ଦୁଧରେ ।

କାଳରେ । ୩୦ । ବଦର୍ଫା ଚୂର୍ଣ୍ଣ ଦବସେ । ରବ୍ବକରେ ଥୋଇ ତୋଷେ ।
ମଧୁ ନବନୀତ ଯୁକ୍ତେ । ଅଶନକୁ ଦଅ ସ୍ନେହେ । ୩୧ । ମନ୍ତ୍ରିକା ବୋଇଲା
ଶୁଣି । ଶାଣେ କ୍ଷୀଣ ହେଲେ ମଣି । ଶୋଭା କି ତୁଟଇ ତାର । ମନରେ
କର ବିଚାର । ୩୨ । ଗଜ ବଳବନ୍ତ ହୋଇ । ଅଙ୍କୁଶ କି ନ ମାନଇ ।
ଶଶୀ କ୍ଷୀଣ ଯେ ହୁଅଇ । କଳା ତା ବୃଦ୍ଧି କରଇ । ୩୩ । ପ୍ରଥମା
ବୋଇଲା ତେବେ । ଏମନ୍ତ କର ଗୋ ଏବେ । ଖଡ୍‌ଗ ସାଧନା ବଶର ।
କର୍କଶ ବଲ୍ଲଭ କର । ୩୪ । ତିଳତୈଳ ଡାଳମ୍ବର । ରସଯୁକ୍ତ ତହିଁକର ।
କାର୍ପାସ ତୂଳାରେ ଦେବ । କୁରଜ କଠିନ ହେବ । ୩୫ । ଦ୍ୱିତୀୟା
ବୋଇଲା ଶୁଣ । ଯେଉଁ ଉରଜ କଠିନ । କମଠ ପୃଷ୍ଠ ସ୍ୱଭାବ । ମେରୁଗର୍ବ
କରେ ଖର୍ବ । ୩୬ । କାହିଁକି ଏହା କରିବା । ନାୟକ କର ପୀଡ଼ିବା ।
ପ୍ରଥମା ବୋଇଲା ଶୁଣି । ଏମନ୍ତ କର ଗୋ ପୁଣି । ୩୭ । ଗନ୍ଧ ଉତ୍ପଳ
ଚିଡ଼ଙ୍ଗ । କଟୁ ତୈଳକର ସଙ୍ଗ । ଲେପନ କେଶେ କରିବ । ଅତ୍ୟନ୍ତ
କୁଟିଳ ହେବ । ୩୮ । ସୈନ୍ଧବ ପିପ୍‌ପଳୀ ନେଲି । ଚୂର୍ ବାସେ ଘୁଣି ଦେଲି ।
ଲେପନ କେଶେ କରିବ । ଅତ୍ୟନ୍ତ ପ୍ରଲମ୍ବ ହେବ । ୩୯ । ଦ୍ୱିତୀୟା
ବୋଇଲା ଭଲ । କୁଟିଳ ପ୍ରଲମ୍ବ ବାଳ । ନଦୀ ଲହରୀ ଭ୍ରମରେ ।
ବିବନ୍ଧ କାଳେ ଧୂକ୍କାରେ । ୪୦ । ବନ୍ଧନେ ଜଗତଜନ । ମନ କରଇ
ବନ୍ଧନ । କି ହୋଇବ ଅଧିକାରେ । ବିଚାର କର ମନରେ । ୪୧ ।
ପ୍ରଥମା କଲା ଉତ୍ତର । ମୁଖବାସକୁ ବିଚାର । ଜାତିଫଳ ନାଗେଶ୍ୱର ।
ଗୁଡ଼ତ୍ୱକ ଘନସାର । ୪୨ । ଅଳାଇଚ ନାଗୀ ଭରି । ପାନେ ଦଅ ବଣ୍ଡ଼ି
କରି । ଦ୍ୱିତୀୟା ବୋଲେ କି କାର୍ଯ୍ୟ । ଯେଉଁ ଲପନ ଅମ୍ବୁଜ । ୪୩ ।

---

୩୧ । ବଦର୍ଫା ଚୂର୍ଣ୍ଣ—ଅଳେଇଚ ଗୁଣ୍ଡ, ନବନୀତ—ଲହୁଣୀ, ଅଶନ—ଖାଇବା ।

୩୪ । ଖଡ୍‌ଗ ସାଧନ—ଖଣ୍ଡା ଖେଳିବା, କର୍କଶ—ଟାଣୁଆ, ବଲ୍ଲଭକର—ସ୍ୱାମୀ ହାତ ।

୩୫ । କାର୍ପାସ—କପା, ଉରଜ—କୁଚ ।

୩୬ । କମଠ—କଇଁଛ, ଖର୍ବ—ଛୋଟ ।

୩୮ । ଗନ୍ଧୋତ୍ପଳ—ସୁଗନ୍ଧ କଇଁ, କେଶେ—ବାଳରେ ।

୩୯ । ପ୍ରଲମ୍ବ—ଲମ୍ବା, ବିବନ୍ଧ—ଫିଟାଇବା ।

୪୨ । ମୁଖବାସ—ମୁହଁ ବାସିବାକୁ, ଘନସାର—କର୍ପୂର ।

୪୩ । ଲପନ—ମୁହଁ, ଅମ୍ବୁଜ—ପଦ୍ମ ।

ଶ୍ରୀକୃଷ୍ଣ ପଦ ତୁଳସୀ । ପଲ୍ଲବ ପର୍ଯ୍ୟୁ ବାସି । ଅଘ୍ରାଣେ ପରମାନନ୍ଦ । ଇଚ୍ଛିବ ଧ୍ୱଂସ ମିଳନ୍ଦ । ୪୪ । ପୁଣି ସେ ପ୍ରଥମା ଗ୍ରୀଷ୍ମେ । ଶ୍ରମେ ସ୍ୱେଦ-ଗନ୍ଧନାଶେ । କର ଏହୁ ଉପଗୃବ । ଚନ୍ଦନ ନାଗକେଶ୍ୱର । ୪୫ । ଅଭ୍ୟସ୍ତା ହରିଦ୍ରା ସଙ୍ଗେ । ଲେପନ କର ଗୋ ଅଙ୍ଗେ । ଦ୍ୱିତୀୟା ବୋଲେ କି କହ । ଯେଉଁ ତନୁ ମହୁ ମହୁ । ୪୬ । ପଦ୍ମ ପ୍ରାୟେ ବାସୁଥାଇ । ତହିଁ ଦୁର୍ବାସନା କାହିଁ । କସ୍ତୁରୀଗନ୍ଧା ବନିତା । ସ୍ୱଭାବେ ଗନ୍ଧର୍ବସତ୍ତ୍ୱା । ୪୭ । ଯା ଅଙ୍ଗ ଗଜର ଫଳ । ନ ପାଇଅଛୁ ବିଜୁଳି । ଏଣୁ ଲକ୍ଷଣ ବିଗ୍ରହ । କହୁ ଗଇବିକ ଗୋଷ୍ଠୀ । ୪୮ । କଥାରେ ନ ପାରି ଜିଣି । ପ୍ରଥମା ଏମନ୍ତ ଭଣି । ନବୀନ ଯୁବତୀ ଏହୁ । ରତିଭାବ ଜାଣି ନାହିଁ । ୪୯ । କାମଶାସ୍ତ୍ର ପୋଥି ହସ୍ତେ । ଦିଅ ବୁଝୁଥାଉ ନିତ୍ୟେ । ବନ୍ଧ ଚିହ୍ନ ଭିତ୍ତି ଯହିଁ । ବସିବା ଶୋଇବା ତହିଁ । ୫୦ । ପ୍ରତିକ୍ଷଣେ କଳୁଥାଉ । କୁସୁମସମୟେ ନେଉ । ଶୁଣି ଅପର ହସିଲା । ସଧୀରେ ବାଣୀ ଭାଷିଲା । ୫୧ । ଶିଖୀ ଚିହ୍ନ ହଂସ ଶ୍ୱେତ । କେ କରିଛୁ ଯେନ ଚିତ୍ତ । ଯାହା ପଢ଼ାଇଲା ସାରି । ସ୍ମରଶାସ୍ତ୍ର ଅର୍ଥ କରି । ୫୨ । ତା ହାତେ ପୋଥି ଦେବାକୁ । ଶୁଣିଲଇଁ ଅଭିଗଂକୁ । ଶୁଣି ସେ ହୋଇ ମଗନ । ଚଳିଲା ରାଣୀ ସଦନ । ୫୩ । ଶ୍ୟାମ କମଳ ଶ୍ୟାମଳ । କପଟ କମଳ ବାଳ । ଉପେନ୍ଦ୍ର ବୀରବର । ଚିନ୍ତେ ଚିତ୍ତେ ନିରନ୍ତର । ୫୪ ।

---

୪୪ । ଅଘ୍ରାଣେ—ସୁଙ୍ଘିବାରେ, ପରମାନନ୍ଦ-ଅତ୍ୟନ୍ତ ତୃପ୍ତି, ମିଳନ୍ଦ-ଭଅଁର ।

୪୫ । ସ୍ୱେଦ—ଝାଳ, ନାଗକେଶ୍ୱର—ନାଗେଶ୍ୱର, ଉପଗୃବ—ଚନ୍ଦ୍ରସ୍ରା ।

୪୭ । ଦୁର୍ବାସନା—ଗନ୍ଧ, ଗନ୍ଧର୍ବସତ୍ତ୍ୱା—ଗନ୍ଧର୍ବ ଜାତୀୟ ।

୫୦ । ବନ୍ଧଚିହ୍ନ ଭିତ୍ତି—ଯେଉଁ କାନ୍ଥରେ ବନ୍ଧ ସବୁ ଚିହ୍ନିତ ହୋଇଛି ।

୫୨ । ଶିଖୀ—ମୟୂର, ସ୍ମରଶାସ୍ତ୍ର—କାମଶାସ୍ତ୍ର ।

୫୪ । ଶ୍ୟାମ—ନୀଳ, କପଟ, କମଳବାଳ—ମୃଗଚଅଁର ପରି କେଶ ।

ଏ ଛାନ୍ଦରେ ଲାବଣ୍ୟବତୀର ବେଶ ହେବାଠାରୁ ସମସ୍ତ ଅଙ୍ଗର ସୌନ୍ଦର୍ଯ୍ୟ ବିଶେଷଭାବରେ ବର୍ଣ୍ଣନା କରାଯାଇଛି ।

## ତ୍ରିଂଶ ଛାନ୍ଦ

### ( ଲବଣ୍ୟବତୀର ବିବାହ )

ରାଗ—କଳସା

ଏଥୁ ଅନନ୍ତରେ ଶୁଣ ସୁବୁଦ୍ଧି କଳାପ । ଭୃତ୍ୟ ନିର୍ମିଲେ ଯୁପ୍ତାମଣ୍ଡପ ମଣ୍ଡପ ହେ । ୧ । ଯୁପ୍ତାମଣ୍ଡପ ବେଢ଼ିଲ ପର ପରିବାସ୍ତ । ମଣ୍ଡପ ଯେମନ୍ତେ ତହିଁ ପ୍ରଧାନସୁନ୍ଦରୀ ଯେ । ୨ । ସେ ତମାଳଶାଖାକେଶୀ ଏ ଗୃମରକେଶୀ । ସେ ପୃଛଗୁଛରେ ଏ ମୁକୁତାଗୁଚ୍ଛେ ବସି ଯେ । ୩ । ସେ ନାରିକେଳ

---

## ତ୍ରିଂଶ ଛାନ୍ଦ

୧ । ସୁବୁଦ୍ଧି—ପଣ୍ଡିତ, କଳାପ—ସମୂହ, ଭୃତ୍ୟେ—ଗୃକରମାନେ ।

୨ । ପରବାସ୍ତ—ଦାସୀ । ଏଠାରେ ମଣ୍ଡପ ହେଲା ଲବଣ୍ୟବତୀ ଯୁପ୍ତା ମଣ୍ଡପକୁ ଦାସୀମାନେ ବେଢ଼ି ରହିଲେ ।

୩-୭ । ସେ ମଣ୍ଡପରେ ତମାଳ ଡାଳରେ ଯୁମୁଣ୍ଡିଆ ହୋଇଛି, ନଡ଼ିଆଗୁଚ୍ଛେରି ପଡ଼ିଛି ଏଣେ ତମାଳ ଶାଖା କେଶୀ—ତମାଳ ପତ୍ରପରି ଯାହାର କେଶ ଗୃମର କେଶୀ—ନଡ଼ିଆ ଚଅଁରପରି କେଶ ଯାହାର, ନଡ଼ିଆ ରଚନ—ନଡ଼ିଆକୁ ମଝିରେ ଥୋଇଛନ୍ତି, ଏଣେ ନଡ଼ିଆ ହେଲା କୁଚ, କଳଶ ମଧ୍ୟ ଥୁଆ ହୋଇଛି, କୁଚ କଳଶ ପରି ଦନ୍ତ ଗଞ୍ଜା ହୋଇଛି ଏହାର ହୀରାପରି ଦନ୍ତ । ପଲ୍ଲବ—କଅଁଳିଆ ପତ୍ରସବୁ ଦିଆଯାଇଛି, ପଲ୍ଲବ କଅଁଳିଆ ପତ୍ରପରି ଏହାର ଓଷ୍ଠ ବିଦ୍ରୁମ—ପୋହଳା ମଧ୍ୟ ଟଙ୍ଗା ଯାଇଛି, ଅଧର ପୋହଳା ପରି, ସେଠାରେ ପତନୀ—ପାଟଖଣ୍ଡିଆ ଦିଆଯାଇଛି ଏ ପାଟଶାଢୀ ପିନ୍ଧିଛି, କସ୍ତୁରୀ ଗନ୍ଧ ପେଡ଼ିରେ ଅଛି ଏହାର ଗାଲରେ କସ୍ତୁରୀ ଅଛି । ମିଦ୍ଧା—ପାଣିପାତ୍ର ଥୁଆ ହୋଇଛି, ଏହାର ଅଳଙ୍କାରରେ ମିଦ୍ଧାକାମ ହୋଇଛି । ବ୍ୟଞ୍ଜନେ—ସେଠାରେ ଛଚଣାରେ ବିଞ୍ଚା ଯାଉଛି, ଏହାକୁ ମଧ୍ୟ ବିଚଣାରେ ବିଞ୍ଚୁଛନ୍ତି । ଦର୍ପଣ ସେଠାରେ ଅଛି ଏହାର ମୁହଁ ଦର୍ପଣପରି ତେଣୁ ଲବଣ୍ୟବତୀ ଗୋଟିଏ ମଣ୍ଡପ ହେଲା ।

ଜରଜ ଏ କଲଣସ୍ତନୀ । ସେ ଦନ୍ତକମନୀୟ ଏ ସ୍ମାରକରଦନୀ ଯେ । ୪ ।
ସେ ପଲ୍ଲବଅଧରୀ ଏ ବନ୍ଧୁର ଅଧରୀ । ସେ ପଦ୍ମିନୀ ବାସେ ଶୋଭୀ ଏହା
ବାସ କର ଯେ । ୫ । ସେ କସ୍ତୁରୀ ତିଳକେ ଏ ସିନ୍ଦୂରତିଳକେ ଶୋଭି ।
ସେ ବ୍ୟଜନେ ରଞ୍ଜନ ଦର୍ପଣମୁଖୀ ଏହି ଯେ । ୬ । ଏମନ୍ତ ଦେଖି
ସିଂହଳପତି ତୋଷଭର । କଥନୀୟ ନୃହଇ କି ଉତ୍ସବ ସମ୍ଭାର ଯେ । ୭ ।
କେତେଦିନେ ପରବେଶ ଶ୍ରୀହରିବାସର । ଉତ୍ସବ ଅତି ଉତ୍ସୁକ ହେଲେ
ନରେଶ୍ୱର ଯେ । ୮ । ପ୍ରତିଦ୍ୱାରେ ରମ୍ଭାତରୁ ଦ୍ରବ୍ୟ କୋଣ ମାନ ।
ରମ୍ଭାପର ବରନାରୀ ମଙ୍ଗଳଗାୟନ ଯେ । ୯ । ପ୍ରଦୋଷନାଶରେ କଲେ
ଗନ୍ଧଷଣବଧି । ଭୂଦେବନନ୍ଦନୀ ସାତ ପାଟବସ୍ତ୍ର ପିନ୍ଧି ହେ । ୧୦ । ନାପିତୀ
ନୂତନସୂର୍ପ ରେପି ନାରିକେଳ । ନବତନ ପ୍ରଦୀପ ବଦରୀ ଦୂର୍ବାଦଳ
ଯେ ।୧୧। ଘେନି ବାହାରିଲେ ଉଠେ ହୁଳହୁଳି ଦେଇ । ଗୀତ ଇଚ୍ଛାସୁଖେ
ବୀଣା କି ଅବା ବାଜଇ ଯେ । ୧୨ । ବାଜଇ ବିବିଧ ବାଦ୍ୟ ଦେବୀ
ଗନ୍ଧଷିଲେ । ସପତଗୃହ ବୁଲିଣ ସଲିଳ ତୋଳିଲେ ଯେ । ୧୩ ।
ବର-ନବରଙ୍କୁ ଯାଇଁ କଲେ ଗନ୍ଧଷଣ । ସେହି ସଙ୍ଗେ ବରଦାସୀ ବଜାଇ
ଘୋଷଣ ଯେ । ୧୪ । ଅସି କନ୍ୟା ମଧ୍ୟରେ ହେଇଲେ ପରବେଶ ।
ଗନ୍ଧଷିଲେ ଦେଇ ଭୂଷା ଚନ୍ଦ୍ରଷଣ ବସ ସେ । ୧୫ । ବାହୁଡ଼ି ଯାଇ ସେ
ପୁରେ କଥା ପରସ୍ପରେ । ଏମନ୍ତ ସୁନ୍ଦରୀ ଥିଲା ଜନମି ସଂସାରେ ଯେ । ୧୬ ।

---

୮ । ଶ୍ରୀହରି ବାସର—ଜନ୍ମାଷ୍ଟମୀ, ଏକାଦଶୀ, ପୂର୍ଣ୍ଣିମା ଓ ରବିବାର, ଉତ୍ସୁକ—ଆନନ୍ଦ ।

୯ । ରମ୍ଭା—କଦଳୀ, ତରୁ—ଗଛ, କୋଣ—ଖୁଣ୍ଟ, ରମ୍ଭା-ସ୍ୱର୍ଗ ବେଶ୍ୟା ବରନାରୀ—ଶ୍ରେଷ୍ଠା ସ୍ତ୍ରୀ ।

୧୦ । ପ୍ରଦୋଷ—ସନ୍ଧ୍ୟା, ଗନ୍ଧଷଣ ବିଧି—ବିବାହରେ ଗନ୍ଧାଦି ଲେପନ, ଭୂଦେବ—ବ୍ରାହ୍ମଣ, ନନ୍ଦନୀ—ଝିଅ ।

୧୧ । ନାପିତୀ—ଭଣ୍ଡାରୁଣୀ, ନୂତନ ସୂର୍ପ—ନୂଆକୁଲା, ନାରିକେଳ—ନଡ଼ିଆ, ନବତନ—ନୂଆ, ପ୍ରଦୀପ—ଦୀପ, ବଦରୀ—ବରକୋଳି ପତ୍ର, ଦୂର୍ବାଦଳ—ଦୁବ ।

୧୩ । ଦେବୀ—ଠାକୁରାଣୀ, ଗନ୍ଧଷିଲେ—ଗନ୍ଧାଦି ଘେନି ଘଷି ଗାଧୋଇ ଦେଲେ, ସପତଗୃହ—ସାତୋଟି ଘର, ସଲିଳ—ପାଣି ।

୧୪ । ଗନ୍ଧଷଣ—ବିବାହବିଧି ବିଶେଷ, ଘୋଷଣା—ବାଦ୍ୟ ।

୧୫ । ଭୂଷା—ଅଳଙ୍କାର ।

ଚନ୍ଦ୍ରମୁଖେ ନୟନଯୁଗଳ ଦେଲେ ଗୃହିଁ । ଶିଶୁକୁରଙ୍ଗ ଯେମନ୍ତେ ପରଚେ ଧୁଅଇ ଯେ । ୧୭ । ତୋଳଭୃଙ୍ଗ ଗୃଳ ଅନାଇଲେ ସେ ବଦନ । ବିକାଶ ସାରସ ପଗ୍ମ ବଦଣେ ଶୋଭିବନ ହେ । ୧୮ । ଦୁହିଙ୍କି ଏକା-ବେଳବେ ଗୃହିଁଲେ ଏମନ । ପୋହନ ପାଶରେ ପଡ଼ି ଚଞ୍ଚଳ ଖଞ୍ଜନ ଯେ । ୧୯ । ଲାବଣ୍ୟସରରେ ମୀନ ଖେଳିଲାର ପରି । ପ୍ରଧାନ ଲାବଣ୍ୟ-ବତୀ ବିଭୁବନଶିଗ୍ମ ଗୋ । ୨୦ । ଦାସୀକଥା ହେବାକୁ କୁମର ସାବ-ଧାନ । ତାକୁ ମୁଁ ପାଉଛୁ ବୋଲି ଉଲ୍ଲସାଇ ମନ ଯେ । ୨୧ । କନ୍ୟା-ପୁରେ ଦ୍ୱିଜନାଗ୍ମ କଥା ପରସ୍ପରେ । ନ ଥିଲା ତ ଫୁଲଶର କନ୍ଦର୍ପହସ୍ତରେ ଗୋ । ୨୨ । କାହାକୁ ପ୍ରହାରିଛ କି ଏତେବେ ଥାନ୍ତା ଗୃପ । ନୋହିଲେ ଦାହାନ୍ତ କି କରିଛୁ ହର କୋପ ଗୋ । ୨୩ । ଜଣେ ବୋଇଲା ସେ ଅଛୁ ନ ପାରିଲୁ ଦେଖି । ଧନୁଶର ନାମଟି ହୋଇଛୁ ଭୁରୁ ଆଖି ଗୋ । ୨୪ । ଉପମାକାର୍ଯ୍ୟେ ଯାଇ ପାଇଥିଲା ଅପଯଶ । ଏଣୁ ଗ୍ରମା ନାଶରେ କି ଅଛୁ ପଉରୁଷ ଗୋ । ନୃପସୁତା ଚତୁର୍ଗ୍ମ ଉତ୍ତରିଲା ଯୁବତେ । ମଲ୍ଲିଈଟି ଯେତେ ନବବୟୁସୀ ଜଗତେ ଗୋ । ୨୫ । ଏମନ୍ତେ କଥା ଶ୍ରବଣେ ସୁନ୍ଦଗ୍ମ ଅନନ୍ଦ । ସେ ମୋ ପ୍ରଭୁ ଭାବ ବଢ଼େ ଅନନ୍ଦ ସମୁଦ୍ର ଯେ । ୨୭ । ଏମନ୍ତେ ରଜନୀ ଶେଷ ସମୟରେ ତହିଁ । ଦୋଳକାଳମ୍ମାନ ସେ ବର କନ୍ୟାକୁ କରିଲି ଯେ ୨୮ । ଦଧିଗୁଡ଼ ଭକ୍ତ ଭୁକ୍ତ ଅନୁରକ୍ତ ବଶେ । କନ୍ୟା ଲବଣଚର୍ଡ଼ିଗ୍ମ ପୂଜିଲା ହରଷେ ଯେ । ୨୯ । ଚର୍ଡ଼ିଗ୍ମ ନୋହେ କରିଛୁ ଗଉଗ୍ମକ ସେବା । ସୁପୁରୁଷ ଈଶ୍ୱର ସଙ୍ଗମକୁ ମୋତେ ଦେବା ଗୋ । ୩୦ । ଦର୍ଣ୍ଣେ ଏ ବିଳମ୍ବ ନୋହୁ ବେଗେ ହେଉ ଇଚ୍ଛା । ବୈଦ୍ୟ ଯଥା ମନାସିଲା ବ୍ୟାଧିମନ୍ତ ବାଞ୍ଛା ଗୋ । ୩୧ । ଏ ସମୟେ ପରବେଶ ନୃପତନନ୍ଦନ । ବିବିଧ ବାଦ୍ୟନାଦରେ ଦୁଆରେ ସଘନ ଯେ । ୩୨ । ସିଂହଳେଶ ଜ୍ୟୋତିଷ କହିଲା ଏହି କାଳ । ପ୍ରବେଶ ହେଲଟି ବଧୂ ଅନୁକୂଳବେଳ ହେ । ୩୩ । ମୀନକେତୁ ନାମ କୁମରକୁ ପଟିଅଇ । ଅଣାଇଲେ ସରଣୀବରଣୀ କରି ତହିଁ ଯେ । ୩୪ । ଜ୍ୟେଷ୍ଠ

---

୧୮ । ବିକାଶ ସାରସ—ଫୁଟିଲା ପଦ୍ମ ।

୨୦ । ଲାବଣ୍ୟସର—ସୁନ୍ଦର ପୋଖରୀ ।

୨୫ । ଅପଯଶ—ନିନ୍ଦା, ପଉରୁଷ—ପ୍ରଶଂସା ।

୩୦ । ଗଉଗ୍ମ—ପାର୍ବତୀ, ସୁପୁରୁଷ ଈଶ୍ୱର—ଉତ୍ତମପୁରୁଷ ଶ୍ରେଷ୍ଠ ।

୩୪ । ମୀନକେତୁ—ସିଂହଳ ରଜାପୁଅ, ସରଣୀ ବରଣୀ—ବାଟବରଣ ।

ଶୁକ୍ଳ ଦ୍ୱାଦଶୀ ସୋମବାର ହୋଏ । ସକାନ୍ତ କଳାକୁ ଶ୍ରେଗ ଧବଳ ଭୋଗୁଏ ଯେ । ୩୪ । ସ୍ୱାତୀ ତାର ତୁଲଚନ୍ଦ୍ର ଶୁଭ ନାମେ ଯୋଗ । ସେଦନ ବେଳର ଷଡ଼ଘଣ୍ଟ ହୋଏ ଭ୍ରେଗ ଯେ । ୩୬ । ରବ ବୁଧ ଶୁକ୍ର ମିଥୁନରେ ହୋଏ ସ୍ଥିତ । କକଡ଼ା ଲଗ୍ନରେ ମଗ୍ନ କରେ ବୃହସ୍ପତ ଯେ । ୩୭ । ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଳେ ଶନୈଶ୍ଚର ମୀନେ । ମଙ୍ଗଳ ମଙ୍ଗଳ ତାର କୁମ୍ଭୀସ୍ଥରେ କନ୍ୟେ ଯେ । ୨୮ । ସ୍ୱର୍ଭାନୁ ମକରେ କରେ ବଳାସକୁ ଭୋଗେ । ଏହ୍ନ କାଳେ ବର ବଭ୍ରମଣ୍ଡପରେ ବସେ ଯେ । ୩୯ । ସ୍ୱରଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମାଧୁର୍ଯ୍ୟ । ଘଣ୍ଟ ପଟହ କଂସାଳ ତାଳ ତୂର୍ଯ୍ୟ ଭେରୀ ଯେ । ୪୦ । କର୍ଣ୍ଣାଳ କାହାଳ ବଜ୍ରଘୋଷ ବେଣୁ ଚମ୍ପା । ମୁରୁଜ ଡିଣ୍ଡିମ ଦୁନ୍ଦୁଭିରେ ମହୀ କମ୍ପା ଯେ । ୪୧ । ବୀଣା ରବା ତାଳ ତାଳ ମୃଦଙ୍ଗ ମର୍ଦ୍ଦଳ । ସ୍ୱରମଣ୍ଡଳ ଅମୃତ ବାଏ ଗୁଣିକୁଳ ଯେ । ଗଣକଗଣ ମଙ୍ଗଳାଷ୍ଟକ ପଢୁଛନ୍ତି । ମଙ୍ଗଳଗୀତ ଗାବନ୍ତି ଗଣିକାଯୁବତୀ ଯେ । ୪୩ । ବନ୍ଦବୃନ୍ଦ ବନ୍ଦନା କରନ୍ତି ଅତ କରେ । ବେଦାକୁଳ ପୁରୋହିତ ବସି କର୍ମେ ରତେ ଯେ । ୪୪ । ଏକାଳେ ମୁଖଡିଣ୍ଡିମ ଶୁଭେ ଅନ୍ତଃପୁରେ । କୁମାର ବଶ୍ୟରେ ମାର ଙ୍କ ମୋ ମରଣରେ ଯେ । ୪୦ । ଧନୁର୍ଗୁଣ ଟଙ୍କାର ସର୍ବେଷେ ଅସୁଅଛୁ । ବାଳା ସାହା ହେବାର କ ଜାଣିନାହିଁ କଛୁ ଯେ । ୪୬ । ଏ ସମୟେ ପବର୍ଗୁଣ ବାବଜଗବାକୁ । ଲ୍ବଣଚଉଁସ୍ୱ ଅର୍ଥେ ଅଣିଲେ ସେଠାକୁ ଯେ । ୧୭ । ଅନ୍ତରମାଟ ଅନ୍ତରେ ତରଳାକ୍ଷୀ ରହି । ତରଳ-ନୟନ ଅନ୍ତେ ବଲ୍ଲଭକୁ ଗ୍ୱହିଁ ଯେ । ୪୮ । ଲବଣ ତଣ୍ଡୁଳ ସହ ପୁରୁଷକୁ ମାର । ବନ୍ଧୂ୍ୟପ୍ରାପ୍ୟ ବାହୁଡ଼ଲ ଚଞ୍ଚଳ ଚତୁରୀ ଯେ । ୪୯ । ଭଗ୍ଗାଟ ମନ୍ଦଧୂଳକ ପକାଇ ସେ ଯୁବା । ଚିତ୍ତ ଧର ପଣନ୍ତରେ ବାନ୍ଧ ନେଲା କବା ଯେ । ୫୦ । 'କୃଶକଟିକ ପାଶ୍ଲେଟି ଯାଅ ବୋଲ ମନ । ପଠାଇଣଦେଲା

୩୬ । ଷଡ଼ଘଣ୍ଟ—ଛଅଘଣ୍ଟା ।
୩୯ । ବଭ୍ରମଣ୍ଡପ—ବାହାବେଦୀ ।
୪୦ । ସ୍ୱରଶଙ୍ଖ—ହୁଳହୁଳି ।
୪୩ । ମଙ୍ଗଳାଷ୍ଟକ—ଶୁଭଅଷ୍ଟକ, ଗଣିକା ଯୁବତୀ—ବେଶ୍ୟାନାରୀ ।
୪୪ । ବନ୍ଦବୃନ୍ଦ—ଭାଟମାନେ ।
୩୬ । ସର୍ବେଷେ –ଶୀଘ୍ରରେ ।
୪୭ । ଭାବଜଗବା—ପଦ୍ମଗନ୍ଧା ।
୪୯ । ବନ୍ଧୂ୍ୟ—ବନ୍ଧୁଲି, ବାହୁଡ଼ଲ—ଫେରଲା ।

କବା ରସିକରଞ୍ଜନ ଯେ । ୫୧ । ବହୁତ ବିନୟ ହୋଇ କହୁଛନ୍ତି ସେ ତାଙ୍କୁ । ବିଳମ୍ବ ନ କର ଦେଖ ଅସ ବନିତାଙ୍କୁ ଯେ । ୫୨ । ବରକଣ୍ଠ ଯଜ୍ଞୋପବୀତକୁ ଏହୁକାଳେ । କନ୍ୟାପାଶେ ନିବେଶପଣ ଦ୍ୱିଜମାନେ କଲେ ଯେ । ୫୩ । ଚତୁର୍ଗ୍ର ସେ ବର୍ତ୍ତୁଳ ଅସିଛନ୍ତି ନେଇ । ଅପଣା ବ୍ୟାଜରେ ଯଜ୍ଞୋପବୀତକୁ ଦେଇ ଯେ । ୫୪ । ସେହିକ୍ଷଣି ରଙ୍ଗେ ଯେ କୁରଙ୍ଗେକ୍ଷଣୀ ବିକେ । ବେଢ଼ିଛନ୍ତି ଚଉପାଶେ ସଜନୀ ସମାଜେ ଯେ । ୫୫ । ସୁବେଶିତ ବେଶବଧୂ ନୋହିଲଇଁ କହି । ଅଳଙ୍କାର ଅଳଙ୍କାର ଯେଣୁ ଚନ୍ଦ୍ରମୁହିଁ ଯେ । ୫୬ । ଧୀରେ ସଭାମଣ୍ଡପେ ପ୍ରବେଶ ଅସି ହେଲା । ବାମ ଦକ୍ଷିଣ ବିଗ୍ରହ ନ ବସଇ ବାଳା ଯେ । ୫୭ । ବାମଦେବ ବାମ ବାମଅଙ୍ଗୁ ଅଛୁ ହୋଇ । ସତ ନ କଳଇ କେହୁ ବାମ ହେବ ମୁହିଁ ଯେ ।୫୮। ଏ କଥାର କଲ ଭାବ ପୁରୋହିତ ସୁତ । ବିଧାତା ବିଧାନ ଶ୍ଳୋକ ପଢ଼ିଲ ଭୂସୁର ସେ । ୫୯ । ଶ୍ରବଣେ ବସିଲ ବର ସମୀପେ ବନିତା । ପୁରୁଷ ଦେଖିଲା ଏ ତ ପରମପଣ୍ଡିତା ଯେ । ୬୦ । ବେଦୋକ୍ତ ମନ୍ତ୍ରବିଧିରେ ଅରମ୍ଭିଣ କର୍ମ । କ୍ରମରେ ଉଦଦତ କଲେ କାନ୍ତା କାନ୍ତ ନାମ ଯେ । ୬୧ । ବଶିଷ୍ଠ ଅରୁନ୍ଧତୀ ଶ୍ରୀରାମ ସୀତା ପରି । ଶିବ ପାର୍ବତୀ ଏ ଲକ୍ଷ୍ୟ ସମାନକୁ କରି ଯେ । ୬୨ । ଦ୍ୱିଜେ ବିଞ୍ଚେ ନାରିକେଳ ବାରି ଯେତଣେ ସ୍ତନେ । ବିଗ୍ରହଣେ ନିବେଶିଲେ ତାହାକୁ ଦହନେ ଯେ । ୬୩ । ମଧୁଶଯ୍ୟା କାଳରେ ଯେ ଉପେକ୍ଷା କରିବାକୁ । ଲଜାହୋମ ନ କଲେଟି ଦହିବେ ଲଜ୍ଜାକୁ ଯେ ।୬୪। କାନ୍ତା କାନ୍ତ କରପଦ୍ମ କୋକନଦ ଶିରି । ସ୍ନେହ କରିଥିଲେ ବୋଲି କୁଶବନ୍ଧ କରି ଯେ । ୬୫ । ପରିଭବ ଅନ୍ତେ ଦ୍ୱିଜସୁତ ଫେଡ଼ି ଦେଲା ।

---

୫୨ । ବିଳମ୍ବ—ଡେରି, ବନିତା—ସ୍ତ୍ରୀ ।
୫୩ । ଯଜ୍ଞୋପବୀତ—ପଇତା ।
୫୪ । ବ୍ୟାଜ—ଛଳନା ।
୫୫ । କୁରଙ୍ଗେକ୍ଷଣୀ—(କୁରଙ୍ଗ + ଇକ୍ଷଣୀ) ମୃଗନେତ୍ରୀ ।
୫୬ । ଅଳଙ୍କାର—ଶ୍ରେଷ୍ଠ ।
୫୭ । ବାମଦେବ—ମହାଦେବ । ବାମ—ଶତ୍ରୁ,ବାମଦେବ ବାମ-କନ୍ଦର୍ପ ।
୬୧ । କାନ୍ତା-ସ୍ତ୍ରୀ, କାନ୍ତ—ପୁରୁଷ ।
୬୪ । ଲଜାହୋମ—ମିଳନ ପୂର୍ବରୁ ପ୍ରଥମରେ ଯେ ହୋମ ହୁଏ ସେଥିରେ ଖଇ ପକାନ୍ତି ।
୬୫ । କୋକନଦ—ରକ୍ତପଦ୍ମ, କୁଶବନ୍ଧ—କୁଶରେ ବାନ୍ଧିବା ।

ମନୋଭବ ପରାଭବ ଯାହା ହେଉଥିଲା ଯେ । ୬୬ । ଛୁଅଁଇଲେ କୁମାରକୁ କୁମାରୀଚରଣ । ମନ୍ମଥ ଭୟରୁ କଣ୍ଟେ ପଶିଲା ଶରଣ ଯେ । ୬୭ । କମ୍ବୁରେ ଅମ୍ବୁ ତୋଳିଣ ଦେଲା କନ୍ୟାତାତ । କଣ୍ଠକୁ ସମାନ ନୋହୁ କି ଅବା ଶୋଭିତ ଯେ । ୬୮ । ବିଭାବିଧି ଶେଷ ଯହୁଁ ହେଲା ଏ ବିଧିରେ । ବର କନ୍ୟା ଘେନି ଗଲେ ଅବରୋଧ ପୁରେ ଯେ । ୬୯ । ଅଜ ଯୁତ ହେବେ ବେନି ଏ ବ୍ୟାଜରେ ତହିଁ । ଯୁତ ଖେଳାଇଲେ ସ୍ୱର୍ଣ୍ଣ ବରାଟିକା ଦେଇ ଯେ । ୭୦ । ଅନ୍ତଃପୁରସ୍ଥାଙ୍କ କଲା ବ୍ୟାକୁଳ ମଦନ । ଜଗତମୋହନ ରୂପ କର ଦରଶନ ଯେ । ୭୧ । କ୍ଷିତି ଭଗ୍ନୀଲେଖା ଜେମା ସାନଭଗ୍ନୀ ଯେତେ । ଦାସୀ କହେବେ କି ବରୁର କଲେ ଚିତ୍ତେ ଯେ । ୭୨ । ସେବାବେଳେ କରପଦ୍ମ ଲାଗିଲେ ତୁରନ୍ତେ । ପରମ ଗତିକି ଆମ୍ଭେ ପାଇବା ସହଜେ ଯେ ।୭୩। ଜରତୀ ଭାଳିଲେ ଚିତ୍ତେ ଗଲଣି ବୟସ । ନ ହେଲେ ଲୁଚି ପଳାଇ ଯାଆନ୍ତୁ ଅବଶ୍ୟ ଯେ । ୭୪ । ତରୁଣୀଏ ମନାସନ୍ତି ଭୋଗ ଦେବୁଁ ଦେବେ । ହେ ପ୍ରଭୁ ଅମ୍ଭଙ୍କ ଜେମା ସଙ୍ଗତରେ ଦେବେ ଯେ । ୭୫ । ଭୋଗ ନୋହିଲେ ତ ହେଉଥିବ ଦରଶନ । ଚନ୍ଦ୍ରମା ଜଳ୍ପାସେ ଯଥା କୁମୁଦମା ବନ ଯେ । ୭୬ । ଏମନ୍ତ ଭୋଜନ ସ୍ଥାନେ ହେଲେ କନ୍ୟାବର । ଜରତୀ, ଦ୍ୱିଜବନିତା କହିଲା ସେଠାର ଯେ । ୭୭ । ପଞ୍ଚବାଣ ବାସରୁ ଉରିଲ ପଞ୍ଚଗ୍ରାସି । କର ଏବେ ହରଷରେ କାଂସ୍ୟପାତ୍ର ବସି ଯେ । ୭୮ । ସେ ବିଧି ଶେଷେ ବିଜୟ ବାହାରେ କୁମର । ବଢାଇଲା ରତ୍ନ ଦେଲେ ମନ୍ଦି ସୁତା କର ଯେ । ୭୯ । ସେତିକବେଳରୁ ସେ ଜେମାର ସହଚରୀ । ଆରମ୍ଭିଲେ ସୁବେଶକୁ ବରୁର ବରୁର ଯେ ।୮୦। କେତେ ସଖୀ ମନ୍ତ୍ରି ଗଲେ ମଧୁଶଯ୍ୟାପୁର । ଏହିକାଳ ଜୁତ୍ତବକୁ ଧାୟି ଶ୍ରୀରାମର ଯେ । ୮୧ । କହେ କବି ଭଞ୍ଜବୀରବର ଦବ୍ୟ ରସ । ଅହେ ରାମ ଅବାଧ୍ୱେ ଏ ଗୀତ

---

୬୭ । ଦ୍ୱିଜସୁତ—ବ୍ରାହ୍ମଣ ପୁଅ, ମନ୍ମଥ—କନ୍ଦର୍ପ ।

୬୮ । କମ୍ବୁ—ଶଙ୍ଖ, ଅମ୍ବୁ—ଜଳ, କନ୍ୟାତାତ—କନ୍ୟାବାପ ।

୭୦ । ଯୁତ—ଏକତ୍ରିତ, ବ୍ୟାଜ—ଛଳନା, ସ୍ୱର୍ଣ୍ଣବରାଟିକା—ସୁନାକଉଡ଼ି ।

୭୮ । ପଞ୍ଚବାଣବାସରୁ—କନ୍ଦର୍ପ ଭୟରୁ ।

୮୨ । ଅବାଧ୍ୱେ—ସହଜରେ ।

ଦର ଶେଷ ହେ । ୮୨ । ସୀତା ସହୃତ ମୋ ଶତ୍ରୁ ନୋହୁବ ଅନ୍ତର ।
ଏହୁ ଅଭ୍ରାପ୍ତକୁ କରଅଛୁ ନିରନ୍ତର ହେ । ୮୩ ।

---

## ଏକତ୍ରିଂଶ ଛାନ୍ଦ

( ପ୍ରଥମ ମିଳନ ସକାଶ ପରସ୍ପରର ଅନୁଚନ୍ତା ଓଁ ବେଳାପୁର ମଣ୍ଡନ )

ରାଗ—ଧନାଶ୍ରୀ

ଶୁଣ ସୁଜନେ କୁମାର ମାର ବଶେ ଦବସ ନାଶକୁ ଭାବ । ଚତ୍ୱରେ ଯାଇ ସତ୍ୱରେ ସୂର୍ଯ୍ୟେ ଛାଇ ଅସ୍ତ ହୋଇବାକୁ ରବ । ସେ ବୀର । ମନେ ସ୍ମୃତ କରଇ ଅପାର । କେଉଁ ପ୍ରକାରେ ନୁହଇ ସ୍ଥିର । ତନୁ ପୁଲକ ଉଠଇ ତାର ଯେ । ୧ ।

ବୋଲଇ ହେ ମିତ୍ର ପଦ କର ସାର୍ଥ ମୋଠାରେ ସୁଦୟା ବହ । ଯେନ ତୁମ୍ଭେ ମୁଁ ଦାନମଣି ସ୍ୱଭାବେ ପୁଣି ତ ପଦ୍ମନୀସ୍ନେହୀ । ହେ ଦେବ । ସବୁକାଳେ ମିତ୍ରପଣ ଥିବ । ମୋତେ ଦବସ୍ପତପଦ ଦେବ । ଯେତେ ବେଳେ ବନ୍ଧୁ ଭେଟ ହେବ । ୨ ।

---

୮୩ । ଅଭ୍ରାପ୍ତ—ବାଞ୍ଛିତ ।
ସିଂହଳ ରାଜନଗରରେ ଚନ୍ଦ୍ରଭାନୁ ରହୁଥିଲେ । ବେଦାନ୍ତସୁମରେ ଆରମ୍ଭ ହେଲା । ବର ଅସନ୍ତେ ସିଂହଳ ଯୁବରାଜ ବାଟବରଣ କଲ—ଲଜା ହୋମାଦ ହୋଇ ବେଦବଧିରେ ବବାହ କାର୍ଯ୍ୟ ହେଲା ।

---

## ଏକତ୍ରିଂଶ ଛାନ୍ଦ

୧ । କୁମାର—ରାଜପୁତ୍ର, ମାର—କନ୍ଦର୍ପ, ଚତ୍ୱର—ଅଗଣା ।

୨ । କୁମାର କହୁଲ—ମୋ ନା ଭାନୁ, ହେ ସୂର୍ଯ୍ୟ ! ତୁମ୍ଭ ନା ଭାନୁ ଦୁହେଁ ମିତ୍ର-ସୁଦୟା କ ଦୟାବହ, ତୁମ୍ଭେ ଦନମଣି, ମୁଁ ଦାନମଣି-କ ଦୁଃଖୀ ଶ୍ରେଷ୍ଠ, ତୁମକୁ ଦେଖିଲେ ପଦ୍ମଫୁଟେ ତୁମ୍ଭେ ପଦ୍ମଫୁଲସ୍ନେହୀ, ମୁଁ ମଧ୍ୟ ପଦ୍ମନୀ ଜାତୀୟା ସ୍ତ୍ରୀ । ଲବଣ୍ୟବତୀରେ ସ୍ନେହୀ, ତୁମ୍ଭେ ଦବସ୍ପତ କ ଦନପତ, କ ଦାନପତ । ମୋର ସ୍ତ୍ରୀ ମୋ ସଙ୍ଗେ ଭେଟ ନ ହେବାରୁ ମୁଁ ଦୁଃଖିତ ହୋଇଛୁ । ଦବସ୍ପତ (ଦାନପତ) ଯେ ଇନ୍ଦ୍ରପର, ମୋର ସ୍ତ୍ରୀ ମୋ ସଙ୍ଗେ ମିଳନ ହେଲେ ମୁଁ ଇନ୍ଦ୍ରସୁଖ ଭୋଗ କରବ ।

ପୁଣି ବସ୍ତୁରଇ ମୋର ଦୂତ ହୋଇ କେ ଅସନ୍ତା ଶୀତ ସେନା । ଭାନୁ ଦନ ସଙ୍ଗେ ଝୀଣକୁ ଭଜନ୍ତା ହୁଅନ୍ତା ଦୀର୍ଘ ରଜନୀ । ସେ ଏତେ । ଚନ୍ଦ୍ର ଦଅନ୍ତା ଚନ୍ଦ୍ର ମରୁତେ । ପଶି ଗବାକ୍ଷେ ବାଳା ପଶନ୍ତେ ସେ । ଅଙ୍କ ଯୁବାଙ୍କ ତୋଷ ରତାନ୍ତେ ସେ । ୩ ।

ଧାତା ବେଖିରେ ସୁରସଭା ମଧ୍ୟରେ ହରନ୍ତି ବାରରମଣୀ । ଯଥା ଦୁଷ୍ଟଲୋକ ବୃଦ୍ଧ ହେଲେ ତହେ ବାଳକେ ତଅର ବାଣୀ । ସେ ତଥା । ଧନେ ନଷେଧିଲ ରତ କଥା ସେ । ପାସୋରିଲେ କ ମଦନ ବ୍ୟଥା ସେ । ମାର ବଧି ବୋଲଇବା ବୃଥା ସେ । ୪ ।

ନବତରୁଣୀ କାମସିନ୍ଧୁ-ତରୁଣୀ ତରଣୀକି ଗୃହି ଭାବେ । ଫୁଲ କୋଦଣ୍ଡ ଦଣ୍ଡ ତ ନ ତୁଟିଲ କେତେ ଦଣ୍ଡ ପୁଣି ଥିବେ । ଏ ଭାନୁ । କେତେ ବେଦନା ସହିବ ତନୁ । ନ ତୁଟିବ ସନ୍ତାପ କୃଶାନୁ । ପ୍ରେମରସ ସେଚନ ବାଞ୍ଛାନୁ ସେ । ୫ ।

ଯେତେ ସଂସାଗ୍ର ଅଭିସାଗ୍ର ତାହାଙ୍କ ନିଶ୍ୱାସ ବତାସ ହୋଇ । ଜଳଧି ହୁତାଶେ ଉଡ଼ାଇ ତପନ ପକାଇ ଦଅନ୍ତା ନେଇ । ସେ ତେବେ । ମନ ସନ୍ତୋଷ ହୁଅନ୍ତା ଭାବେ । ନିଶି ହୋଇଥାନ୍ତା ଗ୍ରହି ଦବେ । ହୁଅନ୍ତା ଯେ ତନୁ ଉନ୍ନ ଲବେ ସେ । ୬ ।

---

୩ । ଭାନୁ—ସୂର୍ଯ୍ୟ, ଦୀର୍ଘରଜନୀ—ବଡ଼ରାତ, ଚନ୍ଦ୍ରମରୁତ—ଶୀତଳପବନ, ଗବାକ୍ଷେ—ଝରକାରେ, ବାଳା—ସ୍ତ୍ରୀ, ପଶନ୍ତେ—କାନରେ, ରତାନ୍ତେ—ରତଶେଷରେ ।

୪ । ସୁରସଭା—ଦେବସଭା, ବାରରମଣୀ—ବେଶ୍ୟା, ବ୍ରହ୍ମା ଦେବସଭା-ଭିତରେ ଉର୍ବଶୀକୁ ହରଥିଲେ, ପାସୋରିଲ—ଭୁଲିଗଲ ।

୫ । କାମସିନ୍ଧୁ—କାମସମୁଦ୍ର, ତରଣୀ—ନୌକା, ତରଣି—ସୂର୍ଯ୍ୟ, କୃଶାନୁ—ଅଗ୍ନି ।

୬ । ଅଭିସାଗ୍ର—ଯେ ସ୍ତ୍ରୀ ପୁରୁଷ ସଙ୍କେତ ଦେଇଥିବା ସ୍ଥଳକୁ ଯାଏ । ବତାସ—ପ୍ରଳୟ ପବନ, ଜଳଧି—ସମୁଦ୍ର, ହୁତାଶେ—ତେଜରେ ।

ଆରତ ନିନାଦ କଲେ କୋକ କୋକନଦ ମଧ୍ୟେ ଏ ସମୟେ ରବି । ଆକାଶ ସର କୋକନଦ ପରି ଧରି କୋକନଦ ଛବି । ସେ ଖରେ । ଶୋଭି ହେଲେ ଚରମ ଭୂଧରେ । କାମ ଜଟକଜିୟିକାମରେ । ଜବା ଦେଲି କି ବାରୁଣୀ ଶିରେ ସେ । ୭ ।

ସ୍ତ୍ରୀ ପୁରୁଷ ଅନୁରାଗୁଁ ଅଧିକ କେ ହେବ ମନରେ ଭଲ । ଦ୍ୟୁମଣି ବିଶାରେ କି ନଗ ଗୁଣିକ ଅଗ ପୁଂସରାଗ ତୁଲ । ସେ ତାଳ । ଦେଲି ତେଣୁ ବଙ୍ଗ ଘାପାବଳ । ପୁଣି ବାଳୀ ଅନୁରାଗ ତୁଲ । ସେ ତ ମଞ୍ଜିଷ୍ଠା-ରାଗରୁ ଫଳ ସେ । ୮ ।

ବାରୁଣୀ ତରୁଣୀ ସଙ୍ଗେ ଫଗୁ ଖେଳ ସିନ୍ଧୁ ମଜ୍ଜନକୁ ଗଲା । ସେହି ରାଗରଙ୍ଗ ଯୁଗତେ ଜଗତ ହୃଦରେ ପ୍ରକାଶ କଲା । ତା ଗୃହି । ନୃପନନ୍ଦନ ଆନନ୍ଦ ହୋଇ । ଗଣ୍ଡଦେଶ ଲୋମ ଜଳସାଇ । ଏହି ଭାବନାମାନ କରଇ ସେ । ୯ ।

ସଖୀ ବେଢ଼ି ଚନ୍ଦ୍ରମୁଖୀଙ୍କ ମୋହର ବେଶ କରୁଥିବେ ପରା । ରସିବାକୁ ରସେ ଆସିବାକୁ ପାଶେ କରିବନ୍ତି ଛଳ ତ୍ୱରା । ମୁଁ ଧନ୍ୟ । ଆଜ ଛୁଇଁବି ତା ଅପଘନ । ପୁଣି କହିବି ଗୂଢ଼ବଚନ । ବିଶେଷତ ଦେବି ଆଲିଙ୍ଗନ ସେ । ୧୦ ।

ତୁଚ୍ଛ ଜୀବ ରହିବାକୁ କେତେ ଦାନ କରିବ ପରାଣ ସଖୀ । ଚୁମ୍ବ ଆଲିଙ୍ଗନ ଓଷ୍ଠପାନ ଦାନ ବାସ ନ ପାରିବ ରଖି । ତା ଦେଖି । ମୁଁ ଯେ ହୋଇବି ପରମସୁଖୀ । ସେ ଯେ କରେ କର ଦେବ ଯୋଖି । ମନ ମନକୁ ହୋଇବ ସାକ୍ଷୀ । ୧୧ ।

---

୭ । ଆରତନିନାଦ-ଦୁଃଖଶବ୍ଦ, କୋକ—ଚକ୍ରଆ ପକ୍ଷୀ, ନଦମଧ୍ୟେ-ନଈ ଭିତରେ,ଖରେ-ଆକାଶରେ, ଚଞ୍ଚଳରେ,ଚରମଭୂଧର—ଶେଷଗିରି ବା ଅସ୍ତଗିରି, ଜବା—ମନ୍ଦାରଫୁଲ, ବାରୁଣୀ—ପଶ୍ଚିମଦିଗ ।

୮ । ଦ୍ୟୁମଣି-ସୂର୍ଯ୍ୟ, ଏ ବିଶା ପରି ହେଲେ, ନଗ-ଆକାଶ, ପୁଂସରାଗ-ପୁରୁଷ ସ୍ନେହ, ମଞ୍ଜିଷ୍ଠା-ମଞ୍ଜୁଆତ, ରାଗ-ରକ୍ତବର୍ଣ୍ଣ, ଗୁଣିକ—ବଣିଆ ।

୯ । ଫଗୁ—ଅବିର, ସିନ୍ଧୁମଜ୍ଜନ—ସମୁଦ୍ର ଗାଧୁଆ ।

୧୦ । ଅପଘନ—ଦେହ ।

ବାଳା ବିଗ୍ରହଇ ପଦ୍ମିଣୀପଣଙ୍କି କି କର ଦେବାଟି ରତ । ଦେଖିବେ ପଗ୍ ମୋ ସ୍ତନ କଷନଙ୍କୁ କି ହେଉଛୁ ଅଙ୍ଗରାଗ । ସେ ଭାବ । ଦେବୀମାନଙ୍କୁ ଜ୍ରପନ ଦେବ । ଜୀବ ଥିବା ଯାକ ଥିବ ସେବ । ଦୀପ ସେକାଳେ ଗିବଟି ଲବ ସେ । ୧୨ ।

ବଳଅଇଁ ବାଯ ରଖି ନ ପରବ ସ୍ୱଭାବେ ଅବଳା ମୁହିଁ । ଉଚ୍ଛତ କଥା ଏ ନବୀନ ସଙ୍ଗମେ କରିବାର ନହିଁ ନାହିଁ । ହେ ବାଧୁ । କାନ୍ତେ ନ ହେବ ବିବାସ ତୁଛି । ସବୁ ରଚନା ତୁମ୍ଭର ସିଛି । ରସଉନମନ ରସନିଧି । ୧୩ ।

ଯାମିନୀ ଯେନ ଅନ୍ତର ହେବା ଦୋଷ ଚନ୍ଦ୍ର ଛଡ଼ାଇବା ପାଇଁ । ତାରକୁମୁଦନୀ ତାଙ୍କୁ ପ୍ରଦୋଷ-ଦୂତୀ ଅଗ ପଠିଅଇ । ସେ କାଳେ । ତାର ବଚନ ମନ୍ତ୍ରର ବଳେ । କେହୁ ହସିଲ ଝଲକ ଛଳେ । କେହୁ ହସିଲ ଦରମୁକୁଳେ । ୧୪ ।

ସେ ସମୟେ ଶୁଣ ପାଞ୍ଚ ସହଚରୀ ବର୍ଣ୍ଣିର ନଗ୍ରନ୍ତ ପୁର । ରସିକ ବାଧୂ ବଧୂ ମଧୁଶଯ୍ୟାକୁ ଯେ ହେଇବ ମନୋହର । ସେ ଶୁଣୁ । କର୍ମେ ବିଶ୍ୱକର୍ମା ମୟୁ ଗୁରୁ । ଧନ୍ୟ ପୁଣ୍ୟଜନପତ ପୁରୁଁ । ଦେଖି ନେଇ ବଁଶ କରେ ଦୁରୁ । ୧୫ ।

ବାସବ ସବୁ ଦେଖିଲେ ଗଉତମ ଜ୍ରମ କଲେ ଭାଷିବେ । ଲଙ୍କା ଲୋକମାନେ ମାନେ ହନୁମାନେ ମାନସରେ ପ୍ରଶଂସିବେ । ସେ ହର । ଚିତ୍ତି

---

୧୨ । ଜ୍ରପନ—ଭୋଗ, ସେବ—ପୂଜା ।

୧୩ । ନବୀନସଙ୍ଗମ—ନୂତନ ମିଳନ ।

୧୪ । ଯାମିନୀ—ରାତ, ପ୍ରଦୋଷ—ସନ୍ଧ୍ୟା, ମୁକୁଳ—ଫୁଲକଢ଼ି ।

୧୫ । ରସିକବାଧୂ-ରସିକଚନ୍ଦ୍ର ବା ରସିକ ଶ୍ରେଷ୍ଠ, ବଧୂ ବୋଲୁ ଲାବଣ୍ୟବତୀ, ବିଶ୍ୱକର୍ମା—ଦେବଶିଳ୍ପୀ, ମୟୁ—ଅସୁରଶିଳ୍ପୀ, ଏମାନେ ମୁହୂର୍ତ୍ତିକେ ଅତ୍ୟନ୍ତ ସୁନ୍ଦର ନଗରୀ କରନ୍ତି, ପୁଣ୍ୟଜନ ପତ—କୁବେର, କୁବେରପୁର—ଅଳକା ।

୧୬ । ବାସବ-ଇନ୍ଦ୍ର, ଗୌତମ ଶାପରେ ଇନ୍ଦ୍ର ସହସ୍ରକ୍ଷତ ଅକ୍ଷିପର ହୋଇଥିଲେ । ତେଣୁ ଇନ୍ଦ୍ର ଏ ବାସ କ ଘରକୁ ଦେଖିଲେ ଗୌତମ କଲ୍ପପର ମନେ କରିବେ, ଲଙ୍କାଲୋକେ ଓ ହନୁ ଏ ପୁରକୁ ଦେଖି ଲଙ୍କାଠାରୁ

ନ ଗଲ୍ ଏ ମନୋହର । ଭ୍ରମେ ଶ୍ମଶାନେ ନ କର ଘର । ଗୃହିଁ ବଶ ନୋହିବ କେ ନର । ୧୬ ।

ସୁଧାଂଶୁ ପର ମୋଡସୁଧା ବସୁଧା ବଶୁଦ୍ଧ ରଜତ ବାଡ଼ । ପ୍ରତ କୋଠିରେ କଲା ଚଉଷଠିରେ ପ୍ରତିମାମାନ ନିବାଡ଼ । ଯେ ଝଳ । ବିହ୍ୱ- ହ୍ମଳ ହୋଇବାକୁ ଭଲ । ମିନାଲ୍ଭାରେ କରନ୍ତୁ ଝଳ । ପ୍ରତେ ବନେ କ କରନ୍ତ କେଳ । ୧୭ ।

ଶ୍ରମଘର୍ମ କ୍ଷୀଣେ ଦକ୍ଷିଣେ ଗବାକ୍ଷ ଅଗମ ପ୍ରାଣେ ରଞ୍ଜନ । ସ୍ତମ୍ଭ ଅରମ୍ଭ ରମ୍ଭୋରୁ ଭଙ୍ଗୀ ଶୋଭା କରେ ଶୃଙ୍ଗାରିତ ବ୍ୟଜନ । ସେ ଶୃଙ୍ଗ । ମହା ରମଣୀୟ ମଣିଜାଲ । ହୋଇଛନ୍ତି ଅତ ଜ୍ୟୋତିଶୀଳ । ପରେ ମନୋହର ହେମତାଳ । ୧୮ ।

ଯହିଁ କାଚବାଡ଼ ଚତ୍ୱର ଲୋକେ ସତ୍ୱର ସଲିଳ ଭ୍ରମ । ବଇଡୂର୍ଯ୍ୟ ଭଙ୍ଗ ପଙ୍କଜ ସ୍ଫଟିକ କୁମୁଦସ୍ଫୁଟରେ ରମ୍ୟ । ସେ ଧେନ । ତହିଁ ହଂସ କରେ ବ୍ୟର୍ଥସ୍ନାନ । ମଧୁପାଳି ଅଳି କରେ ସ୍ୱନ । ବଶ ନ କରିବ କାହା ମନ । ୧୯ ।

---

ବେଣୀ ପସନ୍ଦ କରବେ, ହର—ମହାଦେବ, ହର, ଏ ପୁର ଦେଖି ଶ୍ମଶାନ ଛାଡ଼ି ଏଠାରେ ବାସ କରିବାକୁ ବସିଲେ ।

୧୭ । ସୁଧାଂଶୁ—ଚନ୍ଦ୍ର, ମୋଡସୁଧା—ମୋଡପୋଡ଼ା ଚୂନ, ବସୁଧା—ପୃଥିବୀ, ରଜତ ବାଡ଼—ରୁପାକାନ୍ଥ, କୋଠି—ଘର, ଚଉଷଠି ପ୍ରତିମା—ଚଉଷଠି ବନ୍ଧର ଛବି, ସେ ସବୁ ସେଠାରେ ଦିଅଯାଇ ଥିବାରୁ ଠିକ୍ ବଣରେ ଲଡ଼ାପରି ଜଣା ଯାଉଛି ।

୧୮ । ଶ୍ରମଘର୍ମ—ଶ୍ରମଝାଳ, କ୍ଷୀଣେ—ମରିବାକୁ, ଗବାକ୍ଷ—ଝିଙ୍କା, ପବନ ଆସିବାକୁ ଦକ୍ଷିଣ ପାଖରେ ଝିଙ୍କା ଅଛି, ସ୍ତମ୍ଭ—ଖୁମ୍ବ, ରମ୍ଭୋରୁ-ସୁନ୍ଦରୀ ସ୍ତ୍ରୀ, ଖୁମ୍ବପର ସୁନ୍ଦରୀ ସ୍ତ୍ରୀମାନେ ଠିଆହୋଇ ବିଚଣା ପକାଉଛନ୍ତି, ରମଣୀୟ-ସୁନ୍ଦର, ମଣିଜାଳ-ରତ୍ନସବୁ, ଜ୍ୟୋତିଶୀଳ-ଉଜ୍ଜ୍ୱଳ,ହେମତାଳ-ସୁନାକଳସ,ଶୃଙ୍ଗରେ ସୁନାକଳସ ଥୁଆ ହୋଇଛି ।

୧୯ । କାଚବାଡ଼ ଚତ୍ୱର-କାଚ ଭିଅର ଅଗଣା, ସଲିଳ-ଜଳ, ଭଙ୍ଗ-ପ୍ରସ୍ଫୁଟିତ କୁମୁଦ—କଇଁ, ମଧୁପାଳି—ଭ୍ରମର, ଅଗଣା କାଚରେ ହୋଇଥିବାରୁ ତାକୁ ଜଳ ବୋଲି ମନେ ହେଉଛି, ବାଇଡୂର୍ଯ୍ୟାଦି ରତ୍ନ ତା ଉପରେ ପଦ୍ମ ଓ କଇଁପରି ସୁନ୍ଦର ଦେଖା ଯାଉଛନ୍ତି—ଜଣାଯାଏ ସେଠାରେ ହଂସ ବୁଲୁଛନ୍ତି,ଲାବଣ୍ୟବତୀ ପଦ୍ମିନୀ ଥିବାରୁ ଭଅଁରମାନେ ପାଖେ ପାଖେ ଉଡୁଛନ୍ତି, ଏ ଶୋଭା ଦେଖି କାହା ମନ ବଶ ନ ହେବ ?

ଯହିଁ ନୀଳମଣି ସୋପାନର ମଣି ଗଢ ସ୍ୱଶ ମଣି କେକୀ । ମଧୁର ନାଦ ଅଳାପରେ ନାଚନ୍ତି କଳାପି-କଳାପ ଟେକି । ସେ ପୁରୀ । ମହୀମଣ୍ଡ୍ରନା-ନାରୀ ସହଚରୀ । କଲେ ମଣ୍ଡନ କେମନ୍ତ କରି । କହୁଁ କହିବା ତହିଁ ମାଧୁରୀ । ୨୦ ।

ନନ୍ଦତନୟ ବିନୟ ଭାନୁଜାକୁ ଭାନୁଜା-ତଟରେ ଗୃହି । କମଳ-ଗାଙ୍ଗୀ ଜନକସୁତାକୁ ରାମଚନ୍ଦ୍ର ଗୃହୁଅଛି । ସେ ସ୍ୱଚ୍ଛ । ଶିବ ଗୋଡ଼ାଇ ମୋହିନୀ ପଛ । ଇନ୍ଦ୍ର ସ୍ପର୍ଦ୍ଧି ଧୈର୍ଯ୍ୟ କରେ ତୁଚ୍ଛ । ମାୟାନାରୀ ରୂପରେ ଶ୍ରୀବତ୍ସ । ୨୧ ।

କିନ୍ନରୀ ସଙ୍ଗରେ କୁବେର ବିହର ବାନରୀ ସାଙ୍ଗରେ ବାତ । ଶୋଭାଧନ୍ୟା ମେନା ମୀନାକ୍ଷୀକୁ ଗୃହିଁ ବିଶ୍ୱାମିତ୍ର ତପ ହତ । ଏ ବିଧି । ଚିତ୍ରମାନ ହୋଇଅଛି ସିଦ୍ଧି । ଅଣି ଚିତ୍ର ଯବନିକା ବାନ୍ଧ । କଲେ ପ୍ରାଙ୍ଗଣ ଶୋଭାକୁ ବୃଦ୍ଧି । ୨୨ ।

---

୨୦ । ସୋପାନ—ପାହାଚ, କେକୀ—ମୟୂର, କଳାପସମୂହ—ପୁଚ୍ଛସବୁ, ଅଳାପ—ଖେଳ, ମହୀମଣ୍ଡ୍ରନା—ଅତି ସୁନ୍ଦରୀ, ସେଠାରେ ନୀଳମଣିର ପାହାଚ ମେଘପରି ଦେଖାଯିବାରୁ ମୟୂରମାନେ ପୁଚ୍ଛଟେକି ନାଚୁଛନ୍ତି ।

୨୧ । ନନ୍ଦ ତନୟ—ଶ୍ରୀକୃଷ୍ଣ, ଭାନୁଜା ତଟରେ—ଯମୁନା କୂଳରେ, ଭାନୁଜା—ରାଧା, କନକଳତାଙ୍ଗୀ—କୋମଳାଙ୍ଗୀ, ଜନକସୁତା—ସୀତା, ସ୍ୱଚ୍ଛ—ପରିଷ୍କାର, ଶିବ-ମହାଦେବ, ମାୟାନାରୀ-କପଟ ସ୍ତ୍ରୀ ।
ସେ ଘରର କାନ୍ଥରେ ଯେଉଁ ସବୁ ଚିତ୍ର ଲେଖା ଯାଇଛି, ସେଥିରେ ଶ୍ରୀକୃଷ୍ଣ ଯମୁନା କୂଳରେ ରାଧା ଗୋଡ଼ ଧରୁଛନ୍ତି, ରାମଚନ୍ଦ୍ର ସୀତାଙ୍କୁ ଗୃହୁ କହୁଛନ୍ତି, ଶିବ ସୁଧା ବଣ୍ଟନବେଳେ ବିଷ୍ଣୁଙ୍କ ମୋହିନୀରୂପରେ ଭୋଳ ହୋଇ ଗୋଡ଼ାଉଛନ୍ତି ।

୨୨ । ଶୋଭାଧନ୍ୟା—ଅତି ସୁନ୍ଦରୀ, ଚିତ୍ର ଯବନିକା—ଚିତ୍ର ପରଦା, ପ୍ରାଙ୍ଗଣ—ଦୁଆର । ଅଳକାର କୁବେର ପର୍ବତରେ କିନ୍ନରୀ ସଙ୍ଗେ ରମଣ କରିବା, ହନୁମାନ ମାତା ଅଞ୍ଜନା ବାନରୀ ସଙ୍ଗେ ପବନ ମାତିବା, ବିଶ୍ୱାମିତ୍ର ମେନକାକୁ ଦେଖି ତପସ୍ୟାଛାଡ଼ି ତା ସହିତ ମାତିବା ଇତ୍ୟାଦି ଚିତ୍ର ହୋଇଛି, ସେଠାରେ ଚିତ୍ର ପରଦା ମଧ୍ୟ ଟଣା ଯାଇଛି ।

ତତ୍ର ମୋହନ୍ତ ଲୋହିତ ପୀତ ଶ୍ୱେତ ବାସେ ତେଲଙ୍ଗୀମଣ୍ଡି । ଉତ୍ତମ କରି ଗୃହର ଖମ୍ବା ଫୁଲମାଳକା ଖଞ୍ଜିଲେ ପୁଣି । ସେ ଗୁଣି । ଯାହା ପାଶକୁ ଯେ ଶୋଭା ଜାଣି । ଗୃହ ଦର୍ପଣ ଖଞ୍ଜିଲେ ଅଣି । ଯଥା ଅର୍ଦ୍ଧେନ୍ଦୁ ତାରକା ଶ୍ରେଣୀ । ୨୩ ।

ହରିବାରଣଖୁରାତଳେ ସେ ପ୍ରାବ ପ୍ରାବବାରଣକୁ ଥୋଇ । ଯତନ ରତନ ପଲ୍ୟଙ୍କ ଅଙ୍କରେ କୋମଳ ଶେଯ ଶେଯାଇ । ସେ ଅଳୀ । ବିଶେଷତ ଶଙ୍କା ଏହା ଭାଳି । ନାଗେଶ୍ୱରକେଶରେ ମୂରୁଳୀ । ଦେଇ ସିଞ୍ଚିଲେ କର୍ପୂର ଧୂଳି । ୨୪ ।

ମୁକ୍ତାତାଳର ମଣ୍ଡିତ ମୁକୁରବିତାନ ବାନ୍ଧୁ କେ ଛଳ । ବାଳୀ ଭାଳିଲେ ଅଳୀପରି ପୁରୁଷ ଥାଇଟି ମନରେ ଭାଳ । ସେ କନ୍ଧ । ସାକ୍ଷପଲ୍ୟଙ୍କ ଶୃଙ୍ଗରେ ଶୋହ୍ର । ଶିଖୀଚନ୍ଦ୍ରକ ବିଞ୍ଚଣା ନାହିଁ । ତାହା ପକାଇଥିବା ଗୋ ତହିଁ । ୨୫ ।

ସେବତୀଦଳ ବିଞ୍ଚି ସିଞ୍ଚି ଅତରେ ଶେଯାଇଲେ ଫୀନବାସ । ଏହି ବିଧାନରେ ଅବନୀଶଯ୍ୟାକୁ ବିରଚନ କଲେ ବେଶ । ସେ ନାରୀ । ବାରିପୂର୍ଣ୍ଣ କରି ଝାରଝରି । ନାନାଜାତ କୁସୁମକୁ ଭରି । ଥୋଇଗଲେ ସନ୍ନିକଟ କରି । ୨୬ ।

କୁନ୍ଦନ ପାତ୍ରରେ ଚନ୍ଦନ କର୍ପୂର ଅତର ପନିର ଗୁଆ । ଲବଙ୍ଗ ଖଦିର ପୂଗଚୂର୍ଣ୍ଣପୂର୍ଣ୍ଣ ଭଙ୍ଗାପାନ ପାଶେ ଥୁଆ । ସେ ଦୀପ । ଜରିପଞ୍ଜରୀ ମଧ୍ୟରେ ଗୋପ୍ୟ । ରଖି ଗଲେ ସେ ଭଉ ସମୀପ । ବାଳା ହରଷକୁ ଅନୁରୂପ । ୨୭ ।

---

୨୩ । ଲୋହିତ—ଲାଲ, ଶ୍ୱେତ—ଧଳା, ପୀତ—ହଳଦିଆ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର, ତାରକା ଶ୍ରେଣୀ—ତାରାସବୁ ।

୨୪ । ହରି—ସିଂହ, ବାରଣ—ହାତୀ, ପ୍ରାବପ୍ରାବକ—ପିମ୍ଫୁଙ୍ଗ, ଶଙ୍କା—ଭୟ, ନାଗେଶ୍ୱର କେଶର—ନାଗେଶ୍ୱର ଫୁଲକେଶର, ମୂରୁଳା—ଝଡ଼ିଆ ।

୨୫ । ମୁକୁର ବିତାନ—ଦର୍ପଣ ଗୃହଟିଆ, ଶିଖୀଚନ୍ଦ୍ରକ—ମୟୂର ପଙ୍ଖା ।

୨୬ । ଅବନୀ ଶଯ୍ୟା—ତଳ, ବାରି—ଜଳ ।

୨୭ । କୁନ୍ଦନ ପାତ୍ର—ସୁନାପାତ୍ର, ଖଦିର—ଖଇର, ପୂଗ—ଗୁଆ, ଭଉ ସମୀପ—କାନ୍ତ ପାଖରେ ।

ଗୃହ କପୋତ୍ତମ ପଢ଼ା ସାରୀ ସଂଘାତ ଭର ପଞ୍ଜରୀକୁ ନେଲେ । ରଜନୀ ଥିବା ଯିବାର ଜାଣିବାକୁ ପୁରପାଶେ ଲମ୍ବାଇଲେ । ସେ ପ୍ରଣି । ସୀତାପତ ରଘୁବଂଶମଣି । ଧନ୍ୱୀ କାର୍ମୁକ ସାୟକପାଣି । ଭୂପଇନ୍ଦ୍ର ବୀରବର ଭଣି ।୨୮।

---

## ଦ୍ୱାତ୍ରିଂଶ ଛାନ୍ଦ

( ଲବଣ୍ୟବତୀର ବେଶବେଶ ଓ କାନ୍ତ ପାଶକୁ ଗମନ )

ରାଗ—ମାଳବ

ରସିକ ଗୃତକ ସୁଖ ଘନରସଦାୟୀ । ଏ ଛାନ୍ଦକୁ ଶୁଣିମା ସୁଜନେ ମନ ଦେଇ ଯେ । ୧ । କାନ୍ତା କାନ୍ତ ପ୍ରମୋଦ ସଜନୀରୂପେ ଅସି । ଜଗତକୁ ଅଚ୍ଛାଦ ରଜନୀ ପରକାଶି ଯେ । ୨ । ପିକ ନାଦେ କହିଲା କନ୍ଦର୍ପ ଅନୁକୂଳ । କଲ୍ଲ ତରୁଣ ଦମ୍ପତ ବେଗେ ହୁଅ ମେଳ ଯେ । ୩ ।

---

୨୮ । ଗୃହକପୋତ—ପାରା, ପଢ଼ାସାରୀ, ସଂଘାତ—ପଢ଼ିଲା ସାରୀମାନଙ୍କୁ, କାର୍ମୁକ—ଧନୁ, ଶାୟକ—ଶର, ପାଣି—ହାତ ।
ଚନ୍ଦ୍ରଭାନୁ କପର କାମକେଳ କରିବାକୁ ହେବ, ଭାବିବାକୁ ଲାଗିଲା, ସଖୀମାନେ ହୀରାମାଳା ପାଣିଅ, ଅତର, ଫୁଲ ଚନ୍ଦନ, ପାନ, ଧୂପ, ଜର ବିଛଣା, ଚାନ୍ଦବାନ୍ଧ ଗୃହରେ ଖଟ ଉପରେ ସଜାଇ ରଖିଲେ, ଯାହା କି ଇନ୍ଦ୍ରଭୁବନ ବା କୁବେର ପୁରଠାରୁ ସୁନ୍ଦର ଦେଖାଗଲା ।

---

## ଦ୍ୱାତ୍ରିଂଶ ଛାନ୍ଦ

୧ । ଘନରସ ଯେ ବର୍ଷା, ଗୃତକ ପକ୍ଷୀ ଯେପରି ବର୍ଷାଜଳକୁ ସୁଖ ପାଏ, ରସିକମାନେ ଏ ଛାନ୍ଦକୁ ଶୁଣି ସେହିପରି ସୁଖୀ ହେବେ ।
୨ । ଅଚ୍ଛାଦ—ଢାଙ୍କି, ରାତ ହେବାରୁ ସ୍ତ୍ରୀ ପୁରୁଷର ଅମୋଦ ଯେ ସଜନୀ ରୂପରେ ଅସିଲା ।
୩ । ପିକ—କୋଇଲି, ନାଦ—ଶବ୍ଦ ।

ଏ ସମୟେ ଉଦୟ ହୋଇଲେ ସୁଧାକର । କରଣରେ ପ୍ରତପଦଶ ଦଶିଲ ସୁନ୍ଦର ଯେ । ୪ । ତ୍ରିଯାମା ଅଲଙ୍ଗନରୁ ଏହୁ ଅନୁମାନ । ଢଳାଦେହେଁ ଯେମନ୍ତ ଚନ୍ଦନ ବିଲେପନ ଯେ । ୫ । ଢାଚଭିତ୍ତ ସ୍ଫଟିକସୋପାନ ବିମ୍ବାଧରେ । କ୍ଷୀରାର୍ଣ୍ଣବ ମିଶିଲ କି ଭାନୁସୁତାମାରେ ଯେ । ୬ । ରବି ତାପ ଶାନ୍ତ ଅର୍ଥେ କିବା ପରମେଷ୍ଠୀ । ଘନସାର ଚୂର୍ଣ୍ଣରେ ପୂରତ କଲ ସୃଷ୍ଟି ଯେ । ୭ । ଖଣ୍ଡପରଶୁ ଭୂଷଣ ଖଣ୍ଡପର୍ଶୁଧର । ସୁଧାରେ ଧବଳଦେଲ କି ବସୁଧାପୁର ଯେ । ୮ । ପ୍ରଦୋଷସଙ୍ଗ ଯେ କ୍ଷଣଦାର ହୋଇଥିଲା । ଏଣୁ କି ତ୍ରିପଥ ଗଙ୍ଗାଜଳେ ସ୍ନାନ କଲ ଯେ । ୯ । ସ୍ୱୀରଙ୍କରଥପଦ କି ବିଶ୍ୱ-ଜୟ ପାଇଁ । ଚନ୍ଦ୍ର ବ୍ୟାଜେ ମନସିଜ ଫିଙ୍ଗିଛୁ ବୁଲାଇ ଯେ । ୧୦ । ପୁର୍ବରୁ ତ ପାରାବାରୁ ଦେଇଅଛୁ ପାଣି । ଅନାଇଁ ବିଯୋଗୀ ଭଲେ ମଲାଇ ଭୁଲେଣି ଯେ । ୧୧ । ଦେଖି ଧ୍ୱାରୀ-ନିଷାଦ ପଦ୍ମିନୀ ବ୍ୟଭଗ୍ରର । ଛଡ଼ାଇ ନେଇଛୁ ଏକ ତାହଙ୍କ କି ତାର ଯେ । ୧୨ । ମୋତନିର୍ମିତ ମର୍କତନାୟକ ବିରାଜ । କଳଙ୍କ ବୋଲେ ଯେ ଏହା ନ ପାରଇ ହେଜ

୪ । ସୁଧାକର—ଚନ୍ଦ୍ର, ପ୍ରତଦଶ—ପ୍ରତ୍ୟେକ ଦାଗ,

୫ । ତ୍ରିଯାମା—ରାତ୍ରି,

୬ । କାଚଭିତ୍ତ—ତାଚକାନ୍ଥ, ସୋପାନ—ପାହାଚ, କ୍ଷୀରାର୍ଣ୍ଣବ—କ୍ଷୀରସମୁଦ୍ର, ଭାନୁସୁତା-ଯମୁନା । କାଚବାଡ଼ ପାଖରେ ସ୍ଫଟିକର ପାହାଚ, କ୍ଷୀରସମୁଦ୍ର ଯମୁନା ସଙ୍ଗେ ମିଳଲ ପରି ଜଣାଗଲା ।

୭ । ରବିତାପ—ଖରା, ପରମେଷ୍ଠି-ବିଧାତା, ଘନସାର—କର୍ପୂର ।

୮ । ଖଣ୍ଡ ପରଶୁ ଭୂଷଣ-ମହାଦେବ, ଖଣ୍ଡ ପରଶୁଧର—ପରଶୁରାମ, ବସୁଧାପୁର—ପୃଥିବୀ ରୂପକ ଘର, ସୁଧାରେ-ଚୂନରେ, ଅମୃତରେ ।

୯ । ପ୍ରଦୋଷ—ସନ୍ଧ୍ୟା, କ୍ଷଣଦା—ରାତ୍ର, ତ୍ରିପଥା—ତିନି ବାଟ, ଗଙ୍ଗା ଏଠାରେ ଗଙ୍ଗା ସ୍ୱର୍ଗ,ମର୍ତ୍ତ୍ୟ,ପାତାଳ ତିନି ପୁରକୁ ଗଲା ପରି ଜଣାଗଲା ।

୧୦ । ରଥପଦ—ଚକ୍ର, ବିଶ୍ୱଜୟ—ପୃଥିବୀକୁ ଜୟ କରିବା, ଚନ୍ଦ୍ରବ୍ୟାଜେ-ଚନ୍ଦ୍ର ଛଳରେ, ମନସୀଜ—କନ୍ଦର୍ପ ।

୧୧ । ପାରାବାର—ସମୁଦ୍ର, ଚନ୍ଦ୍ରତ ସମୁଦ୍ରରୁ ଜନ୍ମ ।

୧୨ । ନିଷାଦ—ଶବର, ଡଗର, ତାହଙ୍କ—କର୍ଣ୍ଣାଳଙ୍କାର ପଦ୍ମ ସୂର୍ଯ୍ୟ ଦେଖିଲେ ଫୁଟେ, ଭ୍ରମରମାନେ ଅସନ୍ତ ତେଣୁ ପଦ୍ମ କୁଳଟା ।

୧୩ । ଯେଉଁ ତାହଙ୍କ ମୋତି ତଥର ପୁଣି ମର୍କତ ନାୟକ—ଯେ ଶ୍ରେଷ୍ଠ ମର୍କତ ସେଥିରେ ଦିଆଯାଇଛୁ, ଏହା ନ ବୁଝି ଚନ୍ଦ୍ରରେ କଳଙ୍କ ଏହା ଭୁଲକର କହନ୍ତି ।

ଯେ । ୧୩ । ଗଗନ କାନନେ ଅଙ୍କୁରିଲଅଛି ଧାତା । ରଜତଅଳବାଳରେ କି ତମାଳଲତା ଯେ । ୧୪ । ପୁଣି ନିର୍ମଳ ତାରକା ଘେନି ସେ ଗଗନ । ପ୍ରଫୁଲ୍ଲିତ ମଲ୍ଲି ବାଟୀ ପରାୟେ ରଞ୍ଜନ ଯେ । ୧୫ । ଯାମିନୀ-ନବକାମିନୀ ମୁଖ କଳାକର । ଗୁରୁ ଲୋଚନରେ ହୋଇଅଛି ମନୋହର ଯେ । ୧୬ । ଏଲବେ ପାରଦ ଗର୍ଭରୁ ଉଚ୍ଛୁଳି ଧଇଲା । ନଭେ ବାଞ୍ଛି ହୋଇ କି ତାରକା ବୋଲାଇଲା ଯେ । ୧୭ । ନଷ୍ଟେଁ କାଟିଲି ପୁଷ୍କର ଆକାଶମଣ୍ଡଳ । କି ଜଳପୃଷନ୍ତୀମାନ ପଡ଼ି ଟଳଟଳ ଯେ । ୧୮ । ବିଷଦ କେଶରେ ପୁଣି ବିଭ୍ରାଜମାନ ସେ । ମତ୍ତ ମଧୁବ୍ରତ ତହିଁ ଚଟମ୍ଭ ଲୋଭବଶେ ଯେ । ୧୯ । ନିଶାରେ ପ୍ରକଟ ବୋଲି ପ୍ରସାର ହୋଇଛି । ରତକାଳ ବୋଲି କି ହୃଦରେ ଦେଖାଉଛି ଯେ । ୨୦ । ତାରାକୁଳ ଛଳେ ଯୁବାଜଯୁଯଶ ବାଞ୍ଛି । ଜାଣିଲି ମାର ଚନ୍ଦ୍ରର ସୁମିତ୍ରତା ଅଛି ଯେ । ୨୧ । ଉଦ୍ଦୀପନ କାରକ ଗୃହଦନ୍ତନିଶି ଦେଖି । କଲେ ବେଶ ଜେମାକୁ ଚତୁରୀ ପ୍ରାଣସଖୀ ଯେ । ୨୨ । କେଶ

---

୧୪ । ଗଗନେ କାନନେ—ଆକାଶ ଓ ବଣରେ, ଅଙ୍କୁରିଲା—ଲଗାଇଛି, ରଜତ ଅଳବାଳ—ରୁପା ମଦାରେ ତମାଳ ଲତା ଲଗାଇଛି ।

୧୫ । ନିର୍ମଳ ତାରକା—ପରିଷ୍କାର ତାରାସବୁ, ପ୍ରଫୁଲ୍ଲିତ ମଲ୍ଲୀ ବାଟି—ଫୁଟିଲା ମଲ୍ଲୀଫୁଲ ବଗିଚା । ଆକାଶରେ ତାରା ପଡ଼ି ଥିବାରୁ ଯେପରି ଫୁଲ ବଗିଚା ପରି ଦେଖାଯାଉଛି ।

୧୬ । ଯାମିନୀ ନବକାମିନୀ—ରାତ୍ର ରୂପକ ନୂଆସ୍ତ୍ରୀ, କଳାକର—ଚନ୍ଦ୍ର,

୧୭ । ପାରଦ—ପାରା, ପାରା ଖଣିରେ ଥାଏ ତାହା ସ୍ତ୍ରୀ ମୁହଁଦେଖି ଉଚ୍ଛୁଳି ଆସେ ସେ ପାରା ଆକାଶରେ ଚୂର୍ଣ ହୋଇ କଣ ତାରା ବୋଲାଇଛି ।

୧୮ । ଆକାଶ ମଣ୍ଡଳ ହେଲାପଦ୍ମ—ତା ପାଖରେ ଜଳବିନ୍ଦୁ ଟଳଟଳ ହେଉଅଛି । ପୁଷ୍କର—ପଦ୍ମ । ପୃଷନ୍ତ—ବିନ୍ଦୁ ।

୧୯ । ବିଶଦ କେଶରେ—ବେଶୀ ଘନକେଶରେ, ବିରାଜମାନ-ବିଦ୍ୟମାନ, ମତ୍ତମଧୁବ୍ରତ—କାମାନ୍ଧ ଭ୍ରମର ।

୨୦ । ପଦ୍ମ ଦନରେ ଫୁଟେ—ମାତ୍ର ଏହା ରାତରେ ଫୁଟିକରି ପ୍ରକାଶ ହୋଇଛି ବୋଲି ରତ ସମୟ ବୋଲି ମନରେ ଜାଗ୍ରତ କରୁଛି ।

୨୧ । ମାର—କନ୍ଦର୍ପ ଓ ଚନ୍ଦ୍ରର ମିତ୍ରତା ଅଛି, ତେଣୁ ତାରାମାନେ ରାତରେ ଉଜ୍ଜ୍ୱଳ ଭାବରେ ପଡ଼ି ଯୁବାଦମ୍ପ କରିବାକୁ ଜ୍ୟୋତି ବିସ୍ତାର କରିଛନ୍ତି ।

୨୨ । ଗୃହଦନ୍ତ ନିଶି—ଜହ୍ନରାତ, ଉଦ୍ଦୀପନ କାରକ—କାମଭାବ ଜାଗ୍ରତ କାରକ ଜାଣି ଚତୁରୀ ସଖୀମାନେ ଜେମାକୁ ବେଶକଲେ ।

ବାନ୍ଧୁ ପଣ୍ଡୁରଲେ ରମଣୀମଣିଙ୍କ । ସଜାଡ଼ିବା ଜୁଡ଼ା କବା ବାନ୍ଧିବା ବେଣୀକି ଯେ । ୨୩ । ନାସିଭାରେ ମୋଡ ଦେଇ ଚେଡାଇଲ୍ତ ତାଙ୍କୁ । ଏ ନାଚ ଅଚମ୍ଭ କରେ କଙ୍କିଣୀ ବାଦ୍ୟକୁ ଯେ । ୨୪ । ଭଙ୍ଗି କଲେ ସଙ୍ଗିନୀ ମଣ୍ଡିବାବେଳେ ହାର । ଅଛୁ କି ନାହିଁ ଗୋ ଏଥି ସ୍ନେହ ସୁବ ପର ଗୋ ॥ କସ୍ତୁରୀ ଗୋଳୁ ସଜନୀ ଆରମ୍ଭିଲେ ଛଳ । ଉରଜ-ଚକକୁ ପର ନ ସହିବ ଭାଳ ଯେ । ୨୫ । ଅଞ୍ଜନରଞ୍ଜି ନୟନେ ବୋଇଲ୍ଲ କେ କେତେ । ଏ ଶର ବସାଇବାକୁ ଯୁବା ଧୈର୍ଯ୍ୟ କେତେ ଯେ । ୨୬ । ଅଲୁଲ୍ଲି କଚକ ମଣ୍ଡି ବୋଲନ୍ତି ବଗୁର । କେଉଁ କର ଗ୍ରହଣ ଯେ କରିବ କୁମର ଗୋ । ୨୮ । ସୁବେଶ ସମ୍ପୂର୍ଣ୍ଣ ହେବାଯାଏ ଠାବେ ଠାବେ । କେତେ କହିବା କହିଲେ ଯେତେ ହାସଭାବେ ଯେ । ୨୯ । ଦର୍ପଣ ଦେଖାଇ ସଖୀଗଣେ ପ୍ରଶଂସଇ । ଏ ବେଶକୁ ସୁନ୍ଦରୀ ଉତ୍ତମ-କାନ୍ତ ପାଇଁ ଯେ । ୩୦ । ମଣ୍ଡିଲ୍ଲ ପରସ୍ପେ ବାମ କନକ ପରସ୍ତ । ବାସ ପିନ୍ଧାଇବାକୁ ତାହାକୁ କଲେ ଭସ୍ତ

---

୨୩ । କେଶ—ବାଳ ବାନ୍ଧିବା ବେଳେ ଲବଣ୍ୟବତୀଙ୍କ ପଣ୍ଡୁରଲେ ଜୁଡ଼ା କି ବେଣୀ ପାରିବା ।

୨୪ । ନାସିକା—ନାକ, ନାକରେ ମୋଡ ଦେବାରୁ ସେ ଭାବିଲ୍ଲ, ମନେହେଲ୍ଲ ପାଦର କଙ୍କିଣୀ ନାଦରେ ନାକ ମୋଡ ନୃତ୍ୟହେଲ୍ଲ ଅର୍ଥାତ୍ ନାକ ଫୁଲିବାରୁ ତା ନାଚିଲପରି ଜଣାଗଲ୍ଲ ।

୨୫ । ହାର୍-ହାର, ସଖିମାନେ ହାର ପିନ୍ଧାଇଲବେଳେ ଛଳନା କରି କହିଲେ ଅଜ ଏ ହାରରେ ଶଙ୍କା ଅଛୁ ତ ତୁମ୍ଭେ ତ ବଡ଼ ସୁନାହାର ପାଇଛ ।

୨୬ । ସଖିମାନେ କସ୍ତୁରୀକି ଗୋଳକରି ବୋଲଦେବା ସମୟରେ କହିଲେ, —ସୁନ୍ଦର ବକ୍ଷକୁ ଚକ କଲେ ଭାଳ ସହିବଟିକି ?

୨୭ । କୌଣସି ସଖୀ ଅଖିରେ କଜାଦେବାବେଳେ କହିଲ୍ଲ, କେଉଁ ଯୁବା ପୁରୁଷ ଏ ଶର ଘାତକୁ ସହି ପାରିବ ?

୨୮ । ହାତରେ ଖଡ଼ୁ ଓ ମୁଦ ପିନ୍ଧାଇ ଦେଲେ, କହିଲେ ତୋତେ ଦେଖିଲକ୍ଷଣି ତୋର ସ୍ୱାମୀ ଏହି ହାତକୁ ଧରିନେବେ ।

୨୯ । ଏହିପରି ବେଶ କରିବା ସମୟରେ ସଖିମାନେ ଅନେକ ପ୍ରକାର ଥଟ୍ଟା ପରିହାସ କଥା କହିଲେ ।

୩୦ । ଅରସି ଦେଖାଇ ସଖିମାନେ ପ୍ରଶଂସା କଲେ ଏ ବେଶକୁ ଉପଯୁକ୍ତ ହେଲେ ହେଲ୍ଲ ।

୩୧ । ସୁନା କଣ୍ଢାଇକ ଲୁଗା ପିନ୍ଧାଇଲପରି ଲବଣ୍ୟବତୀଙ୍କ ଲୁଗା ପିନ୍ଧାଇ-ଦେବାରୁ ସେ ଲବଣ୍ୟବତୀ ବାମ ତେଜକୁ ମଳିନ କଲ୍ଲ ।

ଯେ । ୩୧ । କାଞ୍ଚଡ଼େ ନୀବି କାବାଡ଼ୁ ଭିଡ଼ି ବଦନକୁ । ଅଳୀ ପୁଚ୍ଛନ୍ତି ଏଡ଼େ କୋପ ପଣ ମଦନକୁ ଗୋ । ୩୨ । ଯେଡ଼େ ଦୃଢ଼ ଚୀର କଲେ ପାରିବି କି ରଖି । ବୃଦ୍ଧି ସରିତକୁ ବାଲିବନ୍ଧ କାହିଁ ସଖି ଗୋ । ୩୩ । ଡେଢେବେଳେ ତଥିର କହୁଛନ୍ତି କେଉଁ ସଙ୍ଖ୍ୟା । ଦେହଳି ବଳି ଚଳିବା ସମୟରେ ତହିଁ ଗୋ । ୩୪ । ନାଥ ହାତ ଧରି ଗୃହୁଁଥିବ ନେବେ ତୋତେ । ମଥା ଟେକି କଥା ନ କହିବୁ ବଡ ଚଟଟ ଗୋ । ୩୦ । କୋଳେ ଧରୁଁ ଶେଯେ ଶସି ବସୁଥିବୁ ଟାଳା । ସୀତ୍କାର କରିବୁ ଖେଳାଇ କୋଣେ ଡୋଳା ଗୋ ॥ କେ ବୋଲଇ ଅବଳା କୋମଳ ବୋଲି ତୁହି । ନୋହିବୁ କାତର କାନ୍ତ ବଳବନ୍ତ ଗୃହିଁ ଗୋ । ୩୭ । ପ୍ରଚଣ୍ଡ କିରଣେ ରବି ତୋଷଇ ନଳିନ । ଅଳି କେଳିରେ ନୁହଇ ଶିରୀଷ ମଳିନ ଯେ । ୩୮ । ଏକାଳେ କେଳି-ମନ୍ଦିରେ ବିଜୟନାଗର । ଦେଖିଲା ସେ ଶୋଭା ମହା ଉଦ୍ଦୀପନକର ଯେ । ବିଗୁରଇ ଏକ୍ଷଣି ଅସିବ ସୁଲକ୍ଷଣୀ । ନାହିଁ ତାର ଗୃହଁକୁ ଗୃତୁସି ହୋଇ

---

୩୨ । କାଞ୍ଚଡ଼େ-ଗାଢ଼ରେ, କାବାଡ଼ୁ—ପିନ୍ଧୁ, ନୀବି-କଟିବସ୍ତ୍ର, ପ୍ରକୋପ-ରାଗ କୋପ—ରାଗ । ସଖିମାନେ କହିଲେ, ମଦନକୁ ଏଡ଼େ ରାଗପଣ ।

୩୩ । ଯେତେ ଟାଣିଲୁଗା ପିନ୍ଧିଲେ ସେ କି ରହିବ । ବୃଦ୍ଧିସରିତ—ନଈ-ବଢ଼ିରେ ବାଲିବନ୍ଧ କି ସମ୍ଭାଳି ହେବ ?

୩୪-୩୫ । ଦେହଳି—ଦୁଆର ବନ୍ଧ, ଚଳି—ଡେଇଁଯିବା ସମୟରେ କେଉଁ ସଖୀ କହେ, ସ୍ୱାମୀ ତୋର ହାତ ଧରି ଗୃହୁଁଅଇ ମିଠା କଥା କହି ପାଖକୁ ନେଲାବେଳେ ତୁ ମୁଣ୍ଡଟେକି ତାଙ୍କ କଥା କହିବୁ ନାହିଁ ।

୩୬ । କୋଳରେ ଧରିଲା ବେଳେ ତୁ ଶସି ପଡ଼ୁଥିବୁ, ତୋର ଡୋଳାକୁ ବୁଲୁରେ ଖେଳାଇ ସମ୍ମତ ଜଣାଇବୁ ।

୩୭ । ତୁ ସବଳା ଓ କୋମଳାଙ୍ଗୀ ହେଲେ ସୁଦ୍ଧା ସ୍ୱାମୀର ଟାଣ ହସ୍ତକୁ ଡରିବୁ ନାହିଁ ।

୩୮ । ସୂର୍ଯ୍ୟକିରଣ ଅତି ପ୍ରଖର ହେଲେ ମଧ୍ୟ ପଦ୍ମକୁ ତୋଷ କରେ । ଭ୍ରମର ଶିରୀଷ ଫୁଲରେ ବସିଲେ ସେ ମଧ୍ୟ ମଳିନ ହୁଏ ନାହିଁ, ତୁ ସେହିପରି ।

୩୯ । ଏ ସମୟରେ ନାଗର କେଳି ମନ୍ଦିରକୁ ଗଲା, ଦେଖିଲା କେଳିଘର ଅତ୍ୟନ୍ତ ଜାକଜମକ ହୋଇଅଛି ।

୪୦। ଏବେ—ଏକ୍ଷଣି, ଲବଣ୍ୟବତୀ ଅସିବ ତାକୁ ବିନୟ କଥା କହିବାକୁ କଥା ତ ଅଜ ନାହିଁ ।

ବାଣୀ ଯେ । ୪୦ । ବୋଲନ୍ତି ଅବା ମୁଁ ପିଣ୍ଡ ତୁ ମୋର ଜୀବନ । ପିଣ୍ଡକୁ
ଯଗଣ ଛାଡ଼େ ଯେସନେ ଜୀବନ ଯେ । ୪୧ । ନୟନପ୍ରତିମା ବୋଲି ଭାଷିଲେ
ହସିବ । ଯାହାକୁ ଗୃହିଁ ସେ ଦର୍ପଣେ ତହିଁ ପ୍ରତିବିମ୍ବ ଯେ ।୪୨। ରଙ୍ଗ ଚରଣେ
ଶରଣିଜନ ମୁଁ ତୋହର । ବୋଇଲେ ସେ ସ୍ନେହାଧୀନା ହୋଇବ
କାତର ଯେ । ୪୩ । ତାକୁ କାତର କରାଇ କେଉଁ ବଡ଼ପଣ । ଏଥୁପର
ସିନା ଯେତେ ବିନୟ ଭଣିଣ ଯେ । ୪୪ । ଏ ରୂପେ ଭାବ ଭାବନା କରୁ
ନୃପସୁତ । ସଖୀଏ ଭାଷିଲ ମିଳ ସୁଦସ୍ୱପ୍ନରତ ଯେ । ୪୫ । ଜଠ ମଠ ନ
କର ମଦନମଦାଳସି । ନାଥ ପଥ ଗୃହିଁଥିବେ ପଲ୍ୟଙ୍କରେ ବସି ଯେ । ୪୬ ।
ବିଳମ୍ବର କାରଣ କି ପ୍ରଳମ୍ବକୁନ୍ତଳା । ପାହିଯିବ ରଜନୀ ନ ସରୁଁ ରତିଲୀଳା
ଯେ । ୪୭ । ଦରହାସି ହେବୁ ଦରକ୍ଷୁଧାତୁର ପର । ଏହା ଶୁଣି ବଦନ
ନୁଆଁଇ କୃଶୋଦରୀ ଯେ । ୪୮ । ଛଳିଲ ଆଳୀଏ ରମ୍ଭାସଦୃଶୀ ସଙ୍ଗୀତ ।
କାମନା ସଫଳେ ମୁଖ ପୋତିବା ଉଚିତ ଯେ । ୪୯ । କେ ବୋଇଲା
ଦାଇବ ନେଇ ତା ସନ୍ନିଧାନେ । ଯାହା ଲପନକୁ ଦେଖି ନାହିଁ ଏ ସ୍ୱପନେ

---

୪୧ । କହନ୍ତି ମୁଁ ପିଣ୍ଡ, ତୁ ଜୀବନ, ମାତ୍ର ଏହା କହୁ ହେବ ନାହିଁ; କାରଣ ପିଣ୍ଡ ଜୀବନ ତ ଅଲଗା ହୁଏ, ଏଣୁ ସେ ଦୁଃଖିତ ହେବ ।

୪୨ । ମୁଁ ତାକୁ ଆଖିର ପ୍ରତିମା କହିଲେ ସେ ହସିବ, ଯାହାକୁ ଗୃହିଁଛି ସେଠାରେ ସେ ଦେଖା ଯାଉଛି ।

୪୩ । ମୁଁ ତାକୁ କହିବି, ତୋର ଲାଲ ପାଦରେ ମୁଁ ଆଶ୍ରିତ ଜନ, ଏକଥା ଶୁଣି ସେ ସ୍ନେହବଶ ହୋଇ କାତର ହେବ ।

୪୪ । ତାକୁ କାତର କରିବାଠା ମୋର କେଉଁ ଠେଲ ପଣ ହେବ, ଏଥିପରି ସବୁ ବିନୟ କରନ୍ତି ।

୪୭ । ବିଳମ୍ବ-ଡେରିର କାରଣ କ'ଣ ହେବ, ପ୍ରଳମ୍ବ କୁନ୍ତଳା-ଲମ୍ବାବାଳ ଯୁକ୍ତା, ରତିଲୀଳା ନ ସରୁଣୁ ରାତି ଯେ ପାହିଯିବ ।

୪୮ । ଦର କ୍ଷୁଧାତୁର-ଅଧାଭୋକିଲା । ହେ ଦରହାସୀ ତୁ ଅଧାଭୋକିଲାପର ହେବୁ, ଏ କଥା ଶୁଣି ସେ ଲାବଣ୍ୟବତୀ ମୁଣ୍ଡ ନୁଆଁଇ ଦେଲା ।

୪୯ । ରମ୍ଭାପରି ଜଣେ ସଖି ଗୀତ ଛଳରେ କହିଲା, କାମନା ଫଳବତୀ ହେବାରେ ମୁହଁ ପୋତିବା ଠିକ୍ ।

୫୦ । କିଏ କହିଲା, ଯାହାର ମୁହଁକୁ ସପନେ ଦେଖି ନାହିଁ ଯେ ଅଚାନ୍ଧା, ତା ପାଖକୁ ବିଧାତା ନେଇଛି ।

ଯେ ।୫୦। କି କରିବି କି ବୋଲିବି ବିଳମ୍ବ ଏଥିକି । ଏ ବିଗ୍ରହ ଛୁଟାଇ ବାହାର ହେବାଟିକି ଯେ ।୫୧। କେ ଭୁଷଇ ନ ଅସଇ ଏ କଥା ମନକୁ । ଯାହାବୋଲେ ଗୁଡ଼ ଦେବ ପିଙ୍ଗାବସନକୁ ଯେ । ୫୨ । ତାହା ପାଶେ ଯିବାକୁ କରୁଛି କମ୍ପାଁ ଲାଜ । ନ ଜାଣେ କି ସେ ନାଶ ହୋଇବ ବୋଲି ଅଜ ଯେ । ୫୩ । ରହୁଥିଲେ କହୁ ହେଉଥିବେ ଏହୁ ବାଣୀ । ଗମନ ମନ୍ତ୍ରର ଏହା ଶୁଣି ଗୁଣମଣି ଯେ । ୫୪ । ଭେଳପୁର ଦଶୁଁ ଅତ ମନ୍ଦ ଚଲି ଗ୍ଲଲି । ହସିବ ହସିଲା ହୋଇ ସଜନୀଏ ବୋଲି ଯେ । ୫୫ । ଅମ୍ଭେ ସଙ୍ଗେ ଥିଲାକୁ କି ହେଉ ରହ ବହ । ତୁ ଗୁଡ଼ିଲୁ ବୋଲି ଅମ୍ଭେ ଗୁଡ଼ିବୁଁ କି ସ୍ନେହ ଗୋ । ୫୬ । ତୋତେ କାନ୍ତକୁ ସମର୍ପି ଦେବାଯାଏ ଥିବୁଁ । ରହ ସ୍ଥାନ ନିକଟରୁ ସହଜେ ରହିବୁଁ ଗୋ । ୫୭ । ଜଣେ ବୋଇଲାରେ ଏମାନଙ୍କ କଥା ସ୍ମର । ଭାବ ଦାନେ କୃପଣ ନୋହିବୁ କୃଶୋଦରି ଗୋ ॥ ଶିଖାଇ ଦେବାର ବୁଦ୍ଧି କେତେବେଳେ ଥାଇ । ହଂସ ଶ୍ୱେତ ଶିଖୀ ଚିତ୍ର କେ କରିଛି ସହୁ ଗୋ । ୫୯ । କଥା କଥାକେ ଏଣିକି ଭିଆଇବ ଛନ୍ଦ । ଯେତେ ମନ ଘେନିଲେ ପାଇବା ନିକି ହୃଦ ଗୋ । ୬୦ । ଏତେ ବୋଲି ଚୁଲି ବୋଲେ କେ ରସଜ୍ଞାଧିକ । ଶୁଭିଲା ନୂପୁର ନାଦ କାନ୍ତ ସନ୍ନିଧିକି ଯେ । ୬୧ । ପଥରେ ପାଞ୍ଚିଲା କାମ ଜୟତୁରୁ ବାଜି । ମୋହ ଉପରକୁ କି ଅସୁଛି ଦଣ୍ଡ ସାଜି ଯେ । ୬୨ । ଘଣ୍ଟିନାଦେ ମୃଗ ପ୍ରାୟେ ଚେଟକିଲା ଶୃଢକି । ଜାଣିଲା ଅସଇ ରସବତୀ ମୋ କତକି ଯେ । ୬୩ । ଦ୍ୱାରପାଶେ ଅସି କାନ୍ତ ଦେଖିଲା ସୁନେହା । ରତି କି ଅସଇ କରି ନାରୀ ରଥଯାହା ।

---

୫୧ । କ'ଣ କରିବି, କ'ଣ କହିବି, ଡେରିର କାରଣ ।

୫୩ । ନାଶ—ବିନାଶ ।

୫୭ । ରହ ସ୍ଥାନ—ରହିବା ଜାଗା ।

୫୮ । ଜଣେ ସଖି ଏମାନଙ୍କ କଥା ସ୍ମର ମନେ କରି କହିଲା, ଭାବଦାନେ—ପ୍ରେମଦାନେ, କୃପଣ-ଲୋଭୀ ହେବୁ ନାହିଁ ।

୫୯ । ହଂସକୁ ଶ୍ୱେତ କି ଧଳା, ଶିଖୀ—ମୟୂରକୁ ଚର୍ଚ୍ଚିତ କିଏ କରିଛି, ତାର ଏ ସବୁ କୃତ୍ୟ ଶିଖାଇ ଦେବା ବୁଦ୍ଧି କେତେବେଳ ଯାଏ ଥିବ ।

୬୦ । ଛନ୍ଦ—କପଟ ।

୬୨ । ଜୟତୁରୁ—ବିଜୟତୁରୀ, ଦଣ୍ଡ—ବଳ ।

୬୩ । ଶୃଢକୁ—କନକୁ ।

ଯେ । ୬୪ । ଲୀଳା କରୁଛନ୍ତି କିବା ହେମପୁଷ୍ପଲତା । ଏ ହେତୁଁ ପଢ଼ିବ ଶୈଳେ ଚଞ୍ଚଳତା ଯେ । ୬୫ । କାଞ୍ଚି ଅସ୍ଥିର କୁନ୍ତଳ ଆକର୍ଷଣ ହେବ । ମାଳବରେ ଛନ୍ନଭିନ୍ନ ଦଶା ପଡ଼ିବ ଯେ । ୬୬ । ଅଙ୍ଗଦେଶରେ ହୋଇବ ଅଶେଷ ସଙ୍ଗର । ପୁଣି କାମପ୍ରଭୁ ଖେଳାଇଲେ ପରକାର ଯେ । ୬୭ । ଶୈତ କରିଅଛି ବାଳା ସବୁ ଶୋଭାଶିରୀ । ଏଣୁ ଅଣୁଛନ୍ତି କି ମଦନପାଶେ ଧରି ଯେ । ୬୮ । ଦନ୍ତନଖ ବାହୁପାଶେ ଦଣ୍ଡକୁ ପାଇବ । ବିଶେଷତଃ ପ୍ରେମଧନ ଦେଇ ମୁକୁଳିବ ଯେ । ୬୯ । ହୋଇଲା ମଦରନେତ୍ରା ମନ୍ଦର ସମୀପ । ଗଲା ତ ମୋ ବଡପଣ ବିଗ୍ରହ କନ୍ଦର୍ପ ଯେ । ୭୦ । ବେନି ହୃଦସ୍ଥ ଲକ୍ଷୀକୁ କଲେ ସେ ପ୍ରକାର । ରୋମାଞ୍ଚ ବ୍ୟାଜେ କି ପୂର୍ଣ୍ଣ ଅପଘନ ଶର ଯେ । ୭୧ । ରୁଧିର ଛଳେ କି ସ୍ୱେଦ ଜଳ ପରକାଶ । ନୋହିଲେଟି ସ୍ତମ୍ଭ-ବଶେ ସେ ବେନି ଅବଶ ଯେ । ୭୨ । ଏଠାରୁ ଏ ମନୋରମ ଛାନ୍ଦ ହେଲା ଶେଷ । ସୀତା ମଧୁଶଯ୍ୟା ଅର୍ଥେ ସେ ଗ୍ରନ୍ଥ ଉଲ୍ଲାସ ଯେ । ୭୩ ।

---

୬୫ । ଲୀଳା—ଖେଳା, ହେମ ପୁଷ୍ପଲତା—ସ୍ୱର୍ଣ୍ଣଫୁଲ ଲଟା, ଜେହେତୁ—କାରଣରୁ ।

୬୬ । କାଞ୍ଚି—କାଞ୍ଚିଦେଶ, କାଞ୍ଚି—କଟିଭୂଷଣ, କୁନ୍ତଳ—କୁନ୍ତଳ ଦେଶ, କୁନ୍ତଳ-ବାଳ, ମାଳବ-ମାଳବ ଦେଶ, ମାଳବରେ-ମାଳ ସବୁରେ ।

୬୭ । ଅଙ୍ଗଦେଶ-ଅଙ୍ଗ ଦେଶ ବିଶେଷ, ଅଙ୍ଗଦେଶ-ଦେହ, କାମପ୍ରଭୁ—କାମତେଜ ।

୬୮ । ବାଳା ଯେ ସ୍ତ୍ରୀ ସମସ୍ତ ସୌନ୍ଦର୍ଯ୍ୟର ଶିରୀକୁ ଶୈତ କରି ଥିବାରୁ ମଦନ କି କନ୍ଦର୍ପ ଫାଶରେ ତାକୁ ଧରି ଅଣୁଛନ୍ତି ।

୬୯ । ଦନ୍ତ, ନଖ ଓ ବାହୁଭିଡ଼ାରେ ଏ ଦଣ୍ଡ ପାଇବ ମାତ୍ର ପ୍ରୀତିଦେଇ ଏଥିରୁ ଉଦ୍ଧାର ହେବ ।

୭୦ । ମଦର ନେତ୍ରା-ସୁନ୍ଦର ନେତ୍ରୀ, ମନ୍ଦର-କେଳିପୁର, କନ୍ଦର୍ପ-ମାର ।

୭୧ । କାମାତୁରଙ୍କ ହୃଦସ୍ଥକୁ ଲକ୍ଷ୍ୟ କରିଲା ତେଣୁ ଦୁହିଁଙ୍କ ଶରୀର ସ୍ଥଳରେ ରୋମ ଟାଙ୍କର ଉଠିଲା ।

୭୨ । ରୁଧିର-ରକ୍ତ, ଛଳେ-ଛଳନାରେ, ସ୍ୱେଦଜଳ-ଝାଳ ବାହାରୁଛି-ସମ୍ଭବ କ୍ଳାନ୍ତବଶରେ ଦୁହେଁ ଅବଶ ହୋଇଛନ୍ତି କି ?

ତାଙ୍କ ଚରଣ ପଙ୍କଜେ ମନ ଅବିରତ । ଉପେନ୍ଦ୍ରଭଞ୍ଜ ବାରବର କହେ ଗୀତ ଯେ । ୭୪ ।

---

## ତ୍ରୟୋତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର କେଳିଗୃହ ରହସ୍ୟ )

ରାଗ—ପଞ୍ଚମବରାଡ଼ି

କର୍ଣ୍ଣ ମନ ମହୋତ୍ସବ ରସ ସାବଧାନ । ହୋଇ ଶୁଣ ସୁରସିକ ତରୁଣ ସଜ୍ଜନ ହେ । ଚକ୍ରବାଳ ପର ଦେହଳୀକି ବାଳା ତହିଁ । ଅମ୍ବୁଜ ଅରୁଣ ପଦ ନ ପାରେ ବଳାଇ ଯେ । ୧ । ନଦୀ ଯାଇ ଯଥା ସିନ୍ଧୁ ସଙ୍ଗମରେ ଲଭି । ସେତୁ ଲଙ୍ଘି ନ ପାରିବା ଲକ୍ଷଣ ବଲ୍ଲଭୀ ଯେ । ଏ କଥା ଗୋ ଭୃଷି ସଙ୍ଗମାଏ ଦେଲ ପେଲି । ବଲ୍ଲଭକୁ ଶୁଣାଇ ଏମନ୍ତ ବାଣୀ

---

୭୪ । ଅବିରତ—ସର୍ବଦା ।

ସଖିମାନେ ଲାବଣ୍ୟବତୀଙ୍କ ଅନ୍ତଃପୁରରେ ବେଶ କରି ନାନାପ୍ରକାର ଥଟ୍ଟାପରିହାସ କଥା କହି ଓ ସ୍ୱାମୀ ସଙ୍ଗେ ପ୍ରଥମରେ କିପରି କରିଣ କରିବ ଶିଖାଇ କେଳିପୁରକୁ ଆଣି ଛାଡ଼ିଦେଇ ଗଲେ ।

---

## ତ୍ରୟୋତ୍ରିଂଶ ଛାନ୍ଦ

୧ । ଚକ୍ରବାଳ-ଦିଗ୍‌ଶେଷ,ଦେହଳି-ଦ୍ୱାରବନ୍ଧ,ଅମ୍ବୁଜ-ପଦ୍ମ, ଅରୁଣ-ରକ୍ତିମ, ଚନ୍ଦ୍ର ସୂର୍ଯ୍ୟ ଦିଗ ଶେଷକୁ ଟପିଯାଇ ନ ପାରିଲା ଭଳି ଲାବଣ୍ୟବତୀ ତାର ଲାଲପଦ୍ମ ପାଦକୁ ଦ୍ୱାରବନ୍ଧକୁ ଡେଇଁକରି ଦିବାକୁ ଇଚ୍ଛାକଲା ନାହିଁ । ।

୨ । ସିନ୍ଧୁ-ସମୁଦ୍ର, ସେତୁ—ପୋଲ, ବଲ୍ଲଭୀ—ସ୍ତ୍ରୀ, ନଦୀ ଯେପରି ସମୁଦ୍ରକୁ ଗଲାବେଳେ ବାଟରେ ବାଧା ପାଇଲେ ଆଗ ପଛକୁ ନ ଯାଇ ସ୍ଥିରହୁଏ ସେହିପରି ଲାବଣ୍ୟବତୀ ଦୁଆରବନ୍ଧ ପାଖରେ ଠିଆହୋଇ ରହିଲା ।





"ଲଜ୍ଜବଶେ ସେ ଯେ ଶେଯେ ଖସି ବସେ ଛନ୍ତି,
ବଲ୍ଲଭ ଗୃହେ ଆରମ୍ଭେ ଅଧୋମୁଖ ହୋଇ ଯେ ।"

ବୋଲି ଯେ । ଅମରେ ଭୋଗ କରନ୍ତୁ ରଖି ଶଶୀ ଶେଷ । ଲତାରୁ କଳିକା ଛାଡ଼ି ତୋଳି ସୁମନସ ଯେ । ଦାରୁଭେଦକ ଭ୍ରମର ପଦ୍ମ ଫୁଲେ ଶୋଇ । ପୁନଃ ପୁନଃ ରସଭୋଗ ଉପଯୋଗ ପାଇ ଯେ ।୩। ତୁମ୍ଭେ ତ ରସିକସିଂହ ହରିଣୀ ସୁକେଶୀ । ବଳବନ୍ତର କି ଯଶ ଅବଳା ଧରସି ଯେ । କେ ଛଳିଲ ହେଲୁ ଜେମାର ପ୍ରାଣସଖୀ । ତାହା ଦୁଃଖେ ଦୁଃଖୀ ଅମ୍ଭେ ତାହା ସୁଖେ ସୁଖୀ ଯେ ।୪। ଅମ୍ଭେ ଜଣାଇବାର ଅଧିକ କଥା କିନା । ଯେ ଯାହାର ତାକୁ କି ନଲଗେ ତା ବେଦନା ଯେ । ଏତେ କହି କପାଟ-ଓଟାର ଅଣି କଲି । ପୁର ପରିସରରୁ ଅନ୍ତର ହେଲେ ଅଳି ଯେ ।୫। ମୋହିନୀ ପୀୟୂଷକୁମ୍ଭ ବସନେ ଘୋଡ଼ାଇ । ଇନ୍ଦ୍ର ଅଗେ ଉଭା ହେଲି ପ୍ରାୟୁ ଶୋଭା ପାଇ ଯେ । କାନ୍ତ ଦେଖି ଏକାନ୍ତ କରକୁ ଧରି କରେ । ମନ୍ଦପବନରେ ଯଥା ପଦ୍ମ ଲତା ଥରେ ଯେ ।୬। ମାଳୀ ଚମ୍ପକ ମାଳିକା ଦେନାଲିର ପରି । ସ୍ନେହବଶରେ ତାକୁ ସେ କୋଳରେ ଧରି ଯେ । ଲାଜବଶେ ସେ ଯେ ଶେପେ ଖସି ବସେ ତହିଁ । ବଲ୍ଲଭ ଗୃହୁଁ ଥରମ୍ଭେ ଅଧୋମୁଖ ହୋଇ ଯେ ।୭। ହେଠ କଲେ ବଦନ ଚନ୍ଦ୍ରକୁ କୁଶଳଟି ।

---

୩ । ସଖିମାନେ ଶୁଣାଇ କହିଲେ ଚନ୍ଦ୍ର ଯେ ଅମୃତ ଦେବତାମାନେ ତାହା ରଖି ପାନ କରନ୍ତୁ—ଲତା ନଭାଙ୍ଗି ପତ୍ର ନ ଛୁଣ୍ଡାଇ ଫୁଲ ତୋଳନ୍ତୁ—ଭ୍ରମରମାନେ କାଠ ଫୁଟାଇଲେ ମଧ୍ୟ ପଦ୍ମଫୁଲର କିଛି କରନ୍ତି ନାହିଁ—ପଦ୍ମଫୁଲରେ ଶୁଅନ୍ତି, ତୁମ୍ଭେ ସେହିପରି ସଖି ଭୋଗ କରିବ—ଶଶୀ—ଚନ୍ଦ୍ର, ( ଚନ୍ଦ୍ରକଳା ), କଳିକା—କଢ଼ ।

୪ । ସୁକେଶୀ—ସୁନ୍ଦରୀ, ଅବଳା—ସ୍ତ୍ରୀ, ଧରସି—କଷ୍ଟଦେଇ ।

୫ । ପୁରପରିସରରୁ—କେଳିଘର ନିକଟରୁ, ଅଳୀ—ସଖି ।

୬ । ବିଷ୍ଣୁ ମୋହିନୀ ରୂପରେ ସୁଧାକୁମ୍ଭ ଧରି ଦେବ ରାକ୍ଷସଙ୍କ ଅଗରେ ଠିଆ-ହେଲାପରି ଲାବଣ୍ୟବତୀ ସୁଧା କୁମ୍ଭ କି (କୁଚ)କୁ ନେଇ ସ୍ୱାମୀଅଗରେ ଠିଆହେବାରୁ କାନ୍ତ କି ସ୍ୱାମୀ ଏହା ଦେଖି କର କି ହାତକୁ ଧରିବାରୁ ପବନରେ ପଦ୍ମଲଟା ଥରିଲାପରି ଲାବଣ୍ୟବତୀ ଥରୁଥାଏ ।

୭ । ଚମ୍ପକ ମାଳିକା—ଚମ୍ପାମାଳା, ଶେପେ—ଝଟଣାରେ, ଗୃହୁଁ—ବିନସ୍ତୁ ।

ଭାବେ ଅଙ୍ଗ ଭେଦ୍ଧ ଯିବ ମୋର କାମ ତ୍ରୁଟି ଗୋ । ତା ଶରକୁ ନ ଡରେ ନୟନ ପ୍ରତିଶର । ନିରନ୍ତର ହେଉଥିବ ଯିନା ଜର ଜର ଗୋ ।୮। ବାରଣଗତି ଚରଣ ଶରଣଜନରେ । ଉଚିତ ପ୍ରଭୁ କପଟ ରଖିବା ମନରେ ଯେ । ତୋ ବାହାରେ ନାହିଁ ଅହା କରିବାକୁ ସାହା । ଯାହା ଇଚ୍ଛା ତାହା କର ଜଣାଇବି କାହା ଗୋ ।୯। ଏ ବିନୟ ବାଣୀକି ଦ୍ୱିତୀୟା ତିଥି ତାର । କଳ୍ପି ଉଦେ କରିଲା ହାସସୁଧାକର ଯେ । ସୁରୁ ଚକୋର ଈକ୍ଷଣ ବିଳାସ ଉଲ୍ଲାସ । କ୍ଷଣକ ଭିତରେ କରି ଗଲା ପରକାଶ ଯେ ।୧୦। ମୃଦୁଅଙ୍ଗୀ ଅଙ୍ଗୀକାର ଏ ଭଙ୍ଗୀରୁ ଜାଣି । ନେଇ ଚିବୁକେ ପୁରୁଷୋ-ତ୍ତମ ନିବେଶିଲା ପାଣି ଯେ । ଭେଳ ହୋଇ କୋଳ କରି ଶ୍ରୀମୁଖ ଚୈକଲା । ଯୋଗଭଙ୍ଗୀ ଭଙ୍ଗୀସ୍ଥାନ ଥୟ ନ ରଖିଲା ଯେ ।୧୧। ଭ୍ରମରେ ଏହି ବଦନ ଭ୍ରମରେ ସାରସ । ଚୁମ୍ବକନ୍ତ ଭାବି ଚୁମ୍ବନ ଦେଇ ସେ ହରସ ଯେ । ଅଙ୍ଗହାର କରି ହାର କରି ଅଲିଙ୍ଗନ । ଧୃଷ୍ଟ କଲା ଘନସାର ଚନ୍ଦନ ଲେପନ ସେ ।୧୨। ମନ ତାର ଅଧରପାନରେ ମତ୍ତ ଲଭେ । ରସନାରେ ରସ ଅସ୍ୱାଦନ କରି ଭାବେ ଯେ । ଏ ଥାଉ ଅମୃତ ପିଇ କି ଲଭନ୍ତି ଦେବେ । ମଧୁପଦେ ମଦମତ୍ତ ପିଶୁନ ଦାନବେ

---

୮ । କାମତମ-କାମଅନ୍ଧାର, ନିରନ୍ତର-ସର୍ବଦା ।

୯ । ବାରଣଗତି—ଗଜଗମନା ।

୧୦ । ଦ୍ୱିତୀୟା ତିଥି-ଦ୍ୱିତୀୟା ତିଥିରେ ଚନ୍ଦ୍ର ଯେପରି ବଙ୍କାହୋଇ ଉଦୟ ହୁଅନ୍ତି, ସେହିପରି ବିନୟ ବାଣୀରେ ଲାବଣ୍ୟବତୀ ବଙ୍କେଇ କରି ହସିଲା, ସୁରୁ-ସୁନ୍ଦର, ଚକୋରଈକ୍ଷଣ-ଚକୋର ଅକ୍ଷି ଆନନ୍ଦରେ ଫିଟିଲା କି ଲାବଣ୍ୟବତୀର ଆନନ୍ଦର ଚିହ୍ନ ଦେଖାଗଲା ।

୧୧ । ମୃଦୁଅଙ୍ଗୀ-କୋମଳଅଙ୍ଗୀ, ଅଙ୍ଗୀକାର-ସ୍ୱୀକାର, ଭଙ୍ଗୀରୁ-ସଙ୍କେତରୁ ଚିବୁକ-ଓଷ୍ଠ, ପାଣି-ହାତ, ଯୋଗ ଭଙ୍ଗୀ—ଯୋଗଭଗ୍ନ କାରଣୀ, ଭଙ୍ଗୀସ୍ଥାନ-ମୁଖ ।

୧୨ । ଭ୍ରମରେ-ଭଅଁରମାନେ, ବଦନ-ମୁଖ, ଭ୍ରମରେ-ଭୁଲରେ ସାରସ—ପଦ୍ମ, ଅଙ୍ଗହାସ—ଅଙ୍ଗସ୍ଥଳନା ।

୧୩ । ଅଧରପାନ—ଓଷ୍ଠ ଚୁମ୍ବିବା, ରସନା—ଜିଭ, ଅସ୍ୱାଦନ—ସୁଙ୍ଘିବା, ମଧୁମଦେ—ମଦରେ, ପିଶୁନ—ମୂର୍ଖ, ଦାନବ—ଅସୁର ।

ଯେ ।୧୩। ଭାବିଲା ଏ ମେରୁ ଉରଜକୁ ଧରି କରେ । ବାଞ୍ଛା କରି ଅଛି କେଉଁ ସ୍ୱର୍ଗ ପ୍ରାପତରେ ଯେ । କରଜ ଚଳାଇ ତନୁ ଶୋଭାକୁ ଚାହିଁଲା । ଭାଲେ ଏତେବେଳେ ନୀପଫୁଲେ ନିସ୍ତାରିଲା ଯେ ।୧୪। ରତିବଶେ ଦେଖି ତା ଚଞ୍ଚଳ ଛଟକକୁ । ମନେ ମନେ ନିନ୍ଦା କଲା ବିଦ୍ୟୁ-ଚ୍ଛଟକକୁ ଯେ । ବେଳୁଁ ବେଳ ମଦନେ ଆତୁର ସେ ଚତୁର । ନିବିଡ଼ ନୀବି-ବନ୍ଧରେ ପକାଇଲା କର ଯେ ।୧୫। ନିଷେଧିଲା କରଭୋରୁ କରି କରେ କର । କମ୍ପି ଧରି ହୋଏ ନିକି ମୃଣାଳସୂତ୍ରର ଯେ । ପୁଂସ କକ୍ଷମୂଳେ ଚିପି ଦେଇ ନଖ ମୁନ । କୁଚାଗ୍ରେ ସମଗ୍ରେ କଲା ରସନା ଚାଳନ ଯେ ।୧୬। ଦଶନେ ଦଂଶନ କରି ଗଣ୍ଡମଣ୍ଡଳକୁ । ଚାଳିଦେଲା ଚନ୍ଦ୍ର ଥିଲା ଶରୀର ସ୍ଥଳକୁ ଯେ । ଶୀତ୍କାର ଭଙ୍ଗି ରସିକା ହୋଇଲା ଅଜ୍ଞାନ । ବିଶେଷତଃ ମାଦକ ପାନରେ ଯଥା ଜନ ଯେ ।୧୭। ଗୋପିଦେଲା ଲଲାଟପଟରେ ନେତ୍ର ଦୁଇ । ବିବସନ ହେଲା କାନ୍ତ ଏ ସମସ୍ତ ଚାହିଁ ଯେ । ତନୁ ତନୁଭିନ୍ନ ହେବ କରି ଏ ବିଚାର । ଆପଣା ପିନ୍ଧିଲା ବସନହିଁ କଲା ଦୂର ଯେ ।୧୮। ସେ ଶୋଭାରେ ଲୋଭା ହୋଇ ମନେ କଲା ପୁଣି । ସୁବର୍ଣ୍ଣ ବର୍ଣ୍ଣକୁ ନିଷ୍ଟେ ଏକାଳେ ରସାଣ ଯେ । ବନ୍ଧଯୋଗେ ଧରି ଉରେ ଉର ଲଗାଇଲା । ଜିହ୍ୱା ଚାଳି କଣ୍ଠ ଧୀର କରି ଫୁଙ୍କିଦେଲା ଯେ ।୧୯। ଉରଜ ମଧ୍ୟୁ କରଜ ଅଣିଲା ଚଳାଇ । ନାଭିରେ ଦେଲେ କନିଷ୍ଠାଙ୍ଗୁଳିକି ବୁଲାଇ ଯେ । ନିତମ୍ବେ ହାମ୍ଭୋଳି ଠୁକ୍ର ଚେତନା ବସିଲା । ଭଡ଼ି ମହାମତ୍ତେ ରାମା ସୁରତେ ରସିଲା

---

୧୪ । କରଜ-ନଖ, ତନୁ-ଦେହ, ନୀପଫୁଲ-କଦମ୍ବଫୁଲ, ନଖରେ କୁଚକୁ ପୀଡ଼ା ଦଅନ୍ତେ ରୋମ ଟାଙ୍କୁରିଲାରୁ କଦମ୍ବଫୁଲର ଲକ୍ଷଣ ଜଣାଗଲା ।

୧୬ । ନିଷେଧିଲା-ମନାକଲା, କରଭୋରୁ—ସୁନ୍ଦରୀର ଜଙ୍ଘ, କର—ହାତ, ମୃଣାଳ ସୂତ୍ର-ପଦ୍ମନାଡ଼ର ସୁତା, କକ୍ଷମୂଳେ-କାଖମୂଳରେ, କୁଚାଗ୍ରେ—ସ୍ତନ ଅଗରେ, ରସନା—ଜିଭ ।

୧୭ । ଦଶନ-ଦାନ୍ତ, ଦଂଶନ-କାମୁଡ଼ିବା, ଗଣ୍ଡମଣ୍ଡଳ-ଗାଲ, ମାଦକ—ନିଶାଦ୍ରବ୍ୟ, ଅଜ୍ଞାନ-ମୋହ ।

୧୮ । ଲଲାଟପଟ-କପାଳ, ନେତ୍ର-ଆଖି, ବିବସନ-ଉଲଗ୍ନ, ତନୁ-ଦେହ, ଭିନ୍ନ-ଅଲଗା, ବସନ-ଲୁଗା ।

୧୯ । ରସାଣ—ପାଲିସ କରିବା, ଉର-ଛାତି ।

୨୦ । ଉରଜ-କୁଚ, କରଜ-ନଖ, ନାଭି-ନାହି, କନିଷ୍ଠାଙ୍ଗୁଳି-କାଣୀ-ଅଙ୍ଗୁଠି, ନିତମ୍ବ-ପିଚ୍ଛ, ରାମା-ସ୍ତ୍ରୀ, ହାମ୍ଭୋଳି-ମାଢ଼ବଧି ।

ଯେ ।। ରତିପତି ଛଳେ ରତି ପତି ବିବଶତି । କଙ୍କଣ ନୂପୁର ନାଦେ ପୁର ଉଚ୍ଛୁଳତ ଯେ । ପରସ୍ପରେ ହୋଇଲେ ଅଧିକ ପିଆପିଇ । ଏଣୁ ତେଣୁ ଘର୍ଷିରେ ଚୁମ୍ବନ ଦିଅଦେଇ ଯେ । ୨୧ । ହାର ଜିଣି ମୁକୁଳ ପଣ୍ଡୁଛି ବାସ ବେଳ । ସେହୁ ଯାଇଛନ୍ତି ସଙ୍ଗେ ସଙ୍ଗେ ଲଜ୍ଜା ବେଳ ଯେ । କେଳିତଜନନୀ ଜରାଭୀରୁ ଗୃହ ବାଦ । ସାକ୍ଷୀ କରି ରଖିଛନ୍ତି ପ୍ରଦୀପ ପ୍ରସିଦ୍ଧ ଯେ । ୨୨ । ରାଜସୁତ ରାଜା ହେଲ ବୋଲି ହୋଏ ଡୋଷି । ସୁତନ୍ତୁ ବିଶାଳ ଜାନୁସିଂହାସନେ ବସି ଯେ । କେ ନଖରେ କ୍ଷତ କରେ କେ ପୀଡ଼ଇ ଦନ୍ତେ । କଲେ ଜଘ୍ନାନ ପାର୍ଶ୍ୱଶୟନ ବନ୍ଧ ଯେତେ ଯେ । ୨୩ । ରମଣୀ ଇଷିବଚନେ ପୁରୁଷ ହୁଂକୃତ । ବାଳାନଖକ୍ଷତକୁ ପୁରୁଷ ମୁଷ୍ଟିଘାତ ଯେ । କି କରନ୍ତି କି ବୋଲନ୍ତି ନ ପାରନ୍ତି ଜାଣି । ପିତ୍ତବେଗ ହୋଇଲେ ଅଧିକ ଯଥା ପ୍ରାଣୀ ଯେ । ୨୪ । ସନ୍ନିପାତୀ ପ୍ରାୟେ କ୍ଷଣେ କ୍ଷଣେ ଚନ୍ଦ୍ର ନାଡ଼ୀ । ବାତକା ପରାୟେ ବେପଥୁରେ ଛନ୍ତି ଜଡ଼ି ଯେ । ଇଚ୍ଛା ହୁଏ ମନ୍ଦ ଶୀତଗନ୍ଧବହ ବହୁ । ଏ ବଡ଼ କାମନା ଏକା ରଜନୀ ନ ପାହୁ ଯେ । ୨୫ । ଏମନ୍ତ ଯେ ଦର୍ପଣ ଗୃହୁଅ ପୁରେ ଥିଲା । ନାଗରୀ ଗୃହିଲ ଯୋଗେ ଓଲଟି ଦିଶିଲା ଯେ । କକେ ବୃଜ ନେଜ ମହାବ୍ୟାକୁଳ ତା ମତି । ସତେହେଁ ଆରମ୍ଭ କଲେ ବିପରୀତ ରତି ଯେ । ୨୬ । ପୁଣି ବସ୍ତୁ ଫେଡ଼ି ଦେଇ ଅରତ ହୋଇଲା । ଖସିବାବେଳକୁ କାନ୍ତ ମୋ ଅନ ବୋଇଲା ଯେ । ରହିଲା ଅଣଅୟୁତ୍ତେ ସେ ସେହୁ ଠାଣିରେ । ନୃତ୍ୟ ଅଧିକାର ଦେଲା ନାସିକାମଣିରେ ଯେ ।୨୭। ସେ ରତିମଧୁକୁ ଏ ଯେ ବରଷା ପ୍ରାୟିକ । କିଙ୍କିଣୀ କେକିନାଦରେ ମୁକ୍ତ ବାଳପିକ ଯେ । ଯୋଷାମୁଖେ ସ୍ୱେଦବିନ୍ଦୁ ଗୃହି ପୁଂସ ଲେଖା । ଇନ୍ଦ୍ର ଅମୃତ-

---

୨୧ । ହାରଜିଣ—ହାରିବା ଜିଣିବା ।

୨୨ । ମୁକୁଳ—ଫିଟିବା, ବାସ—ଲୁଗା, ଜନନୀ-ମାତା, ଜରାଭୀରୁ-କନ୍ଦର୍ପ । କାମ ଯୁଦ୍ଧରେ ସ୍ତ୍ରୀ ପୁରୁଷ ଦୁହେଁ କିଏ ହାରିବ କିଏ ଜିଣିବ ବାଜି ରଖି ଲୁଗାକୁ ଛାଡ଼ି ଲାଗିଥିବାରୁ ଲଜ୍ଜା ଲୁଗା ସଙ୍ଗେ ଯାଇଛି, ରତି ଓ କନ୍ଦର୍ପର-ଯୁଦ୍ଧପର ଏ ଲଟିଥିବାରୁ, ହାରଜିଣ ଦେଖିବାକୁ ଦୀପକୁ ସାକ୍ଷୀ ରଖି ଜାଳୁଛନ୍ତି ।

୨୩ । ସୁତନ୍ତୁ—ସୁନ୍ଦରୀ, ବିଶାଳ-ବଡ଼, ଜାନୁ-ଜଙ୍ଘ ।

୨୪ । ବେପଥୁ-ଥରିବା, ଶୀତଳ ବହ-ଥଣ୍ଡା ପବନ । ହୁଂକୃତ-ହୁଙ୍କାର କର ।

୨୭ । ଅରତ-ଅସ୍ଥିର, ଅନ-ରଣ, ଅଣଅୟୁତ୍ତ-ସହଜ ।

ବିନ୍ଦୁ ବହିଲା ପ୍ରାୟ ଶୋଭା ସେ । ୨୮ । କୁଚଗିରି ମାଡ଼ି ପଡ଼ିବାକୁ ଭର ଭୟ । ଚିହ୍ନାରିଭ କରିଛୁ ଛଇଲ ଭର ଦ୍ୱୟ ଯେ । ଗାଢ଼ରତେ ଯଥା ଭୀତ ଥିଲ ଯୁବତୀର । ଭଜ୍ଜ ଯାଇ ଥାଇ ନକ୍ଷ ସରୁ କଟି ମୋର ଯେ । ୨୯ । ଏମନ୍ତ ସମୟେ ଗୃହି ବାଳା ଅବଶକୁ । ପୂର୍ଣ୍ଣ ପୁରୁଷ ଅରମ୍ଭେ ପ୍ରକୃତ ରସକୁ ଯେ । ବିଗୁଣିଲ ମୋତେ ଏଥି ଯଶ ନାହିଁ ଅଜ । ଧନୁଶର ପକାଇ ପଳାଇ ମନସିଜ ଯେ । ୩୦ । ବଲ୍ଲଭ ନେତ୍ର ବଣ୍ଠାଇ ଯୁବତୀ ରତନ । ତରତରେ ବେଢ଼ ଦେଇ ପିନ୍ଧିଲା ବସନ ଯେ । ପୁରୁଷ ଚଳେ ଆଦର କରି ତତପରେ । ପ୍ରିୟକୁ ଘେନି ଶୟନ ପଲ୍ୟଙ୍କ ଉପରେ ଯେ ।୩୧। ଶ୍ରମଧର୍ମଯୋଗେ କରି ନଖକ୍ଷତ ଜ୍ୱାଳା । ଶ୍ରମ ହେଲ ଏ ଘେନି ନ ଲଭେ ନିଦ୍ରା ବାଳା ଯେ । ଗୃହି କହେ ପ୍ରିୟ କଥା ଶୁଣିବାକୁ ପ୍ରିୟ । ଏ ସକାଶୁଁ ନିଦ୍ରା ତାକୁ ନ କଲ ଆଶ୍ରୟ ଯେ ॥ ନିର୍ଲ୍ଲଜ୍ଜ କାମ ମଗଧରାଜା ପ୍ରାୟ ହୋଇ । ପୁଣି ଧାଡ଼ି ଦେଇ ଚାଉ ଉଛନ୍ନ କରାଇ ଯେ । ଏଣୁ ପ୍ରକାଶିଲେ ରତି ପୁଣି ସେ ଦମ୍ପତି । ସେ ରତିଯାକ ଲଭିଲେ ଅଶେଷ ସମ୍ପତ୍ତି ଯେ । ୩୩ । ରମାକୁ କୋଳେ ବସାଇ ଫେଡ଼ି ବାତାୟନ । ରତାନ୍ତେ କରୁଅଛନ୍ତି ବ୍ୟଞ୍ଜନ ଚାଳନ ଯେ । କାହାର କରରେ ସ୍ନେହ କେ ନ ଦେଲେ ରଙ୍ଗ । ବେନି ତନୁ ଜଡ଼ିତ ଶୟନେ ମହାସୁଖୀ ଯେ । ୩୦ । ଏ ସମୟେ ନିଷ୍ଠ ନାଶ କଲେ ମନ୍ଦ ଘୋଷ । ଦରଶବଦେ ଲଭିଲେ କଟପୀ ଭରସ ଯେ । ନିଃଶ୍ୱାସ ବାର ଗଣିକା କଟପାଶୁଁ ଗଲେ । ଦୀପ ମଳିନ ଅନାଇଁ ବଧୂଏ ଉଠିଲେ ଯେ । ୩୫ । ବାସରଶଯ୍ୟା ନାଶିଶ ନିଶ୍ୱାସ ପକାଇ । ଅଚାଶକୁ

---

୨୮ । ମଧୁ—ବସନ୍ତ ସମୟ । କେକାନାଦ—ମୟୂର ଶବ୍ଦ । ପିକ-କୋକିଳ ।
ଯୋଷା—ସ୍ତ୍ରୀ । ସ୍ୱେଦ—ଝାଳ । ବିଧୁ—ଚନ୍ଦ୍ର ।

୨୯ । କୁଚଗିରି—କୁଚପର୍ବତ, ଛଇଳ—ନାଗର, ଭୀତ-ଭୟ, ଭଜ୍ଜ-ଭାଙ୍ଗି,

୩୦ । ଅବଶ—କ୍ଳାନ୍ତ, ମନସିଜ—କନ୍ଦର୍ପ ।

୩୧ । ବଲ୍ଲଭ—ପୁରୁଷ, ନେତ୍ର—ଅର୍ଣ୍ଣ, ବଣ୍ଠାଇ ଜହାଡ କରି ।

୩୨ । ଶ୍ରମଧର୍ମ—ଶ୍ରମଝାଳ, ଜ୍ୱାଳା—ପୋଡ଼ିବା, ଶ୍ରମ—କଷ୍ଟ ।

୩୩ । ନିର୍ଲ୍ଲଜ୍ଜ କାମ—ନିଲଠାମଦନ, ମଗଧରାଜା—ଜରାସନ୍ଧ ।
ଜରାସନ୍ଧ କୃଷ୍ଣଙ୍କ ସଙ୍ଗରେ ଯୁଦ୍ଧକୁ ଯାଇ ଥରକୁ ଥର ହାରି ପୁଣି ନିର୍ଲ୍ଲଜ୍ଜ ପଣରେ ଧାଡ଼ିଦଏ; ସେହିପରି ମଦନଶରେ ହାରି ସୁଦ୍ଧା ପୁଣି କାମଯୁଦ୍ଧ ଅରମ୍ଭ କରନ୍ତି ।

୩୪ । ରମା—ସ୍ତ୍ରୀ, ବାତାୟନ—ଝରକା, ବ୍ୟଞ୍ଜନ—ବିଚଣା ।

୩୫ । ମନ୍ଦଘୋଷ-କାଳ, ଦର—ଶଙ୍କା, କଟପୀ—ଅସତୀ, ଗଣିକା—
ବେଶ୍ୟା, କଟ—କମଟ ।

ଶୁଣି ତାସ୍ ମଳନ ଅନାଇଁ ଯେ । ହାର ଶିଥିଳ ତାମ୍ବୁଳ ଡକ୍ତ ଜାଣି ସ୍ୱମା ।
ମନେ ମନେ ବସୁରଲ ବିନାଶ ନିଯାମା ଯେ । ୩୬ । କେମନ୍ତେ ଶୁହିଁବ
ଯାଇଁ ସଜନ୍ମାଙ୍କ ମୁଖ । ସୁଖରୁ ତ ଅଧିକ ହୋଇବ ଲଜ ଦୁଃଖ ଯେ ।
ତାହାଙ୍କ ନ ଛଡ଼ୁଁ ଯିବ ବସୁର ଭୃଙ୍ଗିଲି । ଇଷି ଭ୍ରଷି ଅଙ୍ଗ ମୋଡ଼ ହୋଇ
ବାହାରଲ ଯେ । ୩୭ । ବାଳା ପଛେ ପଛେ ଧବ ଶୋଭା ଦେଖିବାକୁ ।
ଅସିବା ବେଳକୁ ସେହି ଦ୍ୱାର ନିକଟକୁ ଯେ । ଜାଣି ସିହାଣୀ ରହିଲ
ପଛ ହେଲ ବୋଲି । କେ କାହାକୁ ନ ଯାନ୍ତି ସେନେହବଳେ ବଳି
ଯେ ।୩୮। ଜ୍ୱରେ ଜ୍ୱରେ ପୁଂସ କଲ ଅଲଙ୍ଗନ । ବୋଇଲ ପାଶୁଁ ଯିବାକୁ
ନ ଚଳଇ ମନ ଗୋ । ଛାଡ଼ି ଗଲେ ଜୀବ ଯିବ ଛାଡ଼ ଏ ପରତେ । ଶୁଭିଲ
ସଖୀମାନଙ୍କ ଚହଳ ଏମନ୍ତେ ଯେ । ୩୯ । ତରୁଣୀ ଚଞ୍ଚଳ ଯଥା ଯୂଥବଣା
ଏଣୀ । ମୁଖେ ଚୁମ୍ବ ଦେଇ ପୁଂସ ହୋଇଲ ମେଲଣି ଯେ । ମିତ୍ରଙ୍କ ସଙ୍ଗତେ
ଯାଇ ହେଲ ପରବେଶ । ହାସ୍ୟ ନ କଲେ କରେ ଦେଖାଇ ଅଦରଶ
ଯେ ।୪୦। ତଦୁତ୍ତରେ କେଳପୂରୁଁ ବାହାର ସୁନ୍ଦରୀ । ମନ୍ଦେ ମନ୍ଦେ ଅସେ
ଭର୍ତ୍ତ ଅବଲମ୍ବ କର ଯେ । ଅଳସ ଗୃହୁରୀ ପ୍ରିୟସଖୀ ପ୍ରତିଭ୍ରଷ । ଥର ଛାନ୍ଦେ
ଶୁଣିବ ଏ ଛାନ୍ଦ ହେଲ ଶେଷ ଯେ । ଜାନକୀକୁଚ କୁଙ୍କୁମ ଅଙ୍କିତ ହୃଦୟ ।
ମୃନିଜନ ଚଉ୍ଡ କାମ ବକାର ଉଦୟ ଯେ । ତାରକ ତାରକ ମନ୍ତ୍ର ଯାହା
ନାମ ଶୁଣି । ଉପଇନ୍ଦ୍ର ବୀରବର ସେହି ସ୍ୱମ ଗୁଣି ଯେ । ୪୨ ।

---

୩୬ । ବାସରଶଯ୍ୟା—ବିବାହଦିନ ସ୍ତିତର ଶୋଇବା ଘର, ନାସ୍ୱଶ—ନାସ୍ୱ ଶ୍ରେଷ୍ଠ, ତାମ୍ବୁଳ—ପାନ, ଡକ୍ତ—ପିତ୍ତା, ଶିଥିଳ—ଢୁଗୁଳା, ନିଯାମା—ରାତି ।
୩୮ । ଧବ—ସ୍ୱାମୀ ।
୩୯ । ଜ୍ୱରେ ଜ୍ୱରେ—ଠିଆ ଠିଆରେ, ଅଲଙ୍ଗନ—କୋଳ ।
୪୦ । ଚଞ୍ଚଳ—ଶୀଘ୍ର, ଅସ୍ଥିର, ଯୂଥବଣା—ଦଳଛଡ଼ା, ପଲ ଛାଡ଼ିଥିବା, ଏଣୀ—ମୃଗୀ, ଅଦରଶ—ଅରସି ।
୪୧ । ଭର୍ତ୍ତ—କାନ୍ତ, ଅବଲମ୍ବନ—ଆଶ୍ରୟ ।
୪୨ । ସ୍ୱମତାରକ ମନ୍ତ୍ର—ତାରକ ମନ୍ତ୍ର, ତାରକ—ତାଣକର୍ତ୍ତା ।

ଲବଣ୍ୟବତୀକୁ ଚନ୍ଦ୍ରଭାନୁ ନାନାଦି ଗୃହୁ କଢ଼ି କୋଳକୁ ନେଲ-ବେଳେ ଲବଣ୍ୟବତୀ ଅନେକପ୍ରକାର ଛଟା କଲ; କିନ୍ତୁ ସ୍ନେହବଶରେ କମେ ଅଲଙ୍ଗନ—ଚୁମ୍ବନ ନଖକ୍ଷତ ଇତ୍ୟାଦିରେ ଉନ୍ମତ୍ତ ହୋଇ ଦୁହେଁଯାକ ମିଳନ ସୁଖ ଅନୁଭବ କଲେ । ଥରକୁ ଥର ଏହିପର ମିଳନରେ ମତ୍ତହୋଇ ସକାଳ ହେବାକୁ ଦୁହେଁଯାକ କେଳିଗୃହରୁ ତାହାରକୁ ବାହାର ଅସିଲେ ।

# ଚତୁସ୍ତ୍ରିଂଶ ଛାନ୍ଦ

( ଲବଣ୍ୟବତୀ କେଳିପୁରରୁ ଅସନ୍ତେ ସଖୀମାନଙ୍କ ନାନାପ୍ରକାର ଥଟ୍ଟା )

ରାଗ—କଲ୍ୟାଣ ଅହାରୀ

କେଳିସଦନ୍ତୁ ବାହୁଡ଼ି ପଥ ଦୁଣ୍ଡି ଅସିବା ବେଳେ ସୁକେଶୀ ଯେ । କୋକିଳଭାଷୀଙ୍କ ଭାଷିଲ ଏମନ୍ତ କେଉଁ ପରିହାସୀ ହସି ଯେ । ସୁନ୍ଦର । ଭଦ୍ର ଭଦ୍ର ମହୀଶୋଭି ରେ । କରୁଛୁ ବଗୁର କେଉଁ ସୁକୃତରୁ ଭ୍ରମର କେତକୀ ଲଭି ଚର । ୧ । କ୍ଷିତିପତି ରଣପରାଜୟ ତୁର ପରାୟ ନୂପୁର ବାଜେ ରେ । ଖସିପଡ଼ିବାରୁ ନିତମ୍ବ ଉପରୁ ଭଲ ଏ ବସନ ରାଜେ ରେ । ସୁନ୍ଦର । ଖେଦ ପାଇ ଯୁଦ୍ଧବଶେ ରେ । ଖସିଯାଉଛୁ କ ଯୋଦ୍ଧାମସ୍ତକରୁ ଉଷ୍ଣୀଷ ଏମନ୍ତ ଦିଶେ ରେ । ୨ । ଗୃରୁ ଚଞ୍ଚଳ ଈକ୍ଷଣ କ୍ଷଣେ କ୍ଷଣେ ଭଜୁଅଛୁ ସୁଲକ୍ଷଣା ରେ । ଗଜରିପୁ ଅଗେ ପଡ଼ିଥିଲ ଏଣୀ ହୋଇଛୁ କି ଗଣବଣା ରେ । ସୁନ୍ଦର । ଗତ କଥା ଦେଖି ମାର ରେ । ଗୁଣି ପୁଣି ପରାଭବ ସ୍ମୃତି ଶତ୍ରେ ତରତରେ ବନ୍ଧେ ଶର ରେ । ୩ । ଦେଖନ୍ତୁଛୁ

---

## ଚତୁସ୍ତ୍ରିଂଶ ଛାନ୍ଦ

୧ । କେଳିସଦନ୍ତୁ—କେଳୀଗୃହରୁ, ଦୁଣ୍ଡି-ଭୁଲି, ସୁକେଶୀ—ସୁନ୍ଦରୀ, କୋକିଳଭାଷୀଙ୍କ—କୋଇଲିପରି ଯେ କଥା କହେ ସେ ଲବଣ୍ୟବତୀ, ପରିହାସୀ—ସଖୀ,ଭାଷିଲ—କହିଲ, ମହୀଶୋଭି—ପୃଥିବୀ ଶୋଭନୀ ।

୨ । କ୍ଷିତିପତି—ରାଜା, ଏଠାରେ ରାଜପୁତ୍ର, ରଣପରାଜୟ-ଯୁଦ୍ଧରେ ହାରିବା ଏଠାରେ କାମ ଯୁଦ୍ଧରେ ହାରିଯିବା, ନିତମ୍ବ—ପିଚ୍ଛ, ରାଜେ—ଶୋଭାପାଏ, ଖେଦ—ଦୁଃଖ, ଯୋଦ୍ଧା ମସ୍ତକରୁ—ବୀର ମୁଣ୍ଡରୁ ଉଷ୍ଣୀଷ—ପଗଡ଼ି ।

୩ । ଗୃରୁ—ସୁନ୍ଦର, ଈକ୍ଷଣ—ଅକ୍ଷି, ବନରିପୁ—ସିଂହ, ଏଣୀ—ମୃଗୀ ଗଣବଣା—ପଲଛଡ଼ା, ପରାଭବ—ହାରିବା ।

ମୃଗ ଯେପରି ସିଂହକୁ ଦେଖିଲେ ଏଣୀକି ତେଣିକି ଗୃହିଁ ଗୃହିଁ ପଳାଏ ସେହିପରି ଲବଣ୍ୟବତୀ କେଳିପୁରରୁ ବାହାରି ଏଣିକି ତେଣିକି ଅନାଇ ଯାଉଛନ୍ତି ।

ଭୋକନଦମଦମର୍ଦ୍ଦନେ କରଛୁ ରଙ୍ଗ ଅସ୍ପୃଦ ରେ । ଘନେ ଦଣ୍ଡିବ ମଦ-ଜଳମଦର ବ୍ୟକ୍ତ କ ନଦନମଦ ରେ । ସୁନ୍ଦର । ଦେନାସେନ ତୋର ଭଲ ରେ । ଘୋର ବିଭାବରୀ ବନଦ୍ର କର ପଦ୍ମମୁଦ୍ର ନ କଲ ରେ । ୪ । ଜାଠିଲେ ମୃଗମଦ ବନ୍ଧୁ ରହୁଛୁ ଜାତହୋଇ ସ୍ୱେଦପନ୍ତ ରେ । ଜାଣ୍ଟେ ଅଲକା ଅହୁବର ଡରଳଗରଳ କରଛୁ ବାନ୍ତ ରେ । ସୁନ୍ଦର । ନୋହୁଲେ ହେବ ଏମନ୍ତ ରେ । ଜାଶୀଶ କଲଙ୍କ ନାଶ କରୁଥିଲ ପ୍ରକାଶ ବୁଧିରେ ଭୀତ ରେ । ୫ । ଚଟୁଳନୀରବନ୍ଦୁ ଧାଡ଼ି ହୋଇ ଯେ ରହୁଛୁ ଅଳକାତଳରେ । ଚନ୍ଦ୍ରଅର୍ଦ୍ଧକୁ ଗ୍ରାସ କର ରାହୁ କ ଖଣ୍ଡଣ ଗଲ ଚପଳରେ । ସୁନ୍ଦର । ଶ୍ରୈଣଦନ୍ତଯୋଗେ ତାର ରେ । ଚିନ୍ତନ କରୁଛୁ ସ୍ଫୋଟକନକର ଦଶେ ମନୋହରତର ରେ । ୬ । ଛୁଡ଼ପଙ୍କଲ ସୁଜ୍ୟୋତ

---

୪ । କୋକନଦ—ରକ୍ତବର୍ଣ୍ଣ, ମଦ—ଗର୍ବ, ମର୍ଦ୍ଦନ—ନାଶକରବା, ଘନେ—ଜାଣ୍ଟପ୍ଣ, ଜଳମଦର—ଖଞ୍ଜନପକ୍ଷୀର ଅକ୍ଷି, ଦଣ୍ଡିବ—ପରାସ୍ତ କରବ, ବିଭାବରୀ—ରାତ୍ରି, ବନଦ୍ର-ଅନଦ୍ରା, ମୁଦ୍ର—ବୁଜିଦେବା ।

**ଲାବଣ୍ୟବତୀର ଅକ୍ଷି ଅନଦ୍ରାରୁ ଲାଲ ହୋଇଥିବାରୁ ଲାଲପଦ୍ମର ଗର୍ବକୁ ଖର୍ବ କରୁଛୁ । ଖଞ୍ଜନପକ୍ଷୀର ଅକ୍ଷିକ ମଧ୍ୟ ପରାସ୍ତ କର ପୁଣି କନ୍ଦର୍ପର ମାଦକତା ଉପରକୁ ଉଠି ଯାଉଛୁ କ, ରାତିରେ ତ ପଦ୍ମ ବୁଜି ହୋଇ-ଯାଏ । ମାତ୍ର ତାର ରାତରେ ତୋର ନେତ୍ର ପଦ୍ମ ବୁଜି ହୋଇନାହିଁ ।**

**୫ । ଜାଠିଳ—କପାଳ, ମୃଗମଦ—ମୃଗନାଭି କସ୍ତୁରୀ, ଅଳକା—ଚୂର୍ଣ୍ଣ କୁନ୍ତଳ, ଅହୁବର—ସାପ, ଗରଳ—ବିଷ, ଜାଶୀଶ—ଚନ୍ଦ୍ର ।**

ଝାଳ ହେତୁ କପାଳରୁ କସ୍ତୁରୀ ଟୋପା ଝାଳରେ ବୋହୁବାରୁ ବାଳ ଏପାଖ ସେପାଖ ହେବାରୁ ସାପ ଗରଳ ବାନ୍ତ କଲାପର ଜଣାଯାଉଅଛୁ । କବା ଚନ୍ଦ୍ର ନିଜ ଦେହରୁ କଳଙ୍କ ଛଡ଼ାଇବାକୁ ବସିଲା ବେଳେ ଭୟ କର ରହୁ ଯାଉଛୁ ।

୬ । ଚଟୁଳ—ଗୋଲ, ନୀର ବନ୍ଦୁ—ଝାଳବନ୍ଦୁ, ଚପଳ—ଚଞ୍ଚଳ, ଶ୍ରୈଣ-ଶ୍ରୈଣ—ସୁନ୍ଦର, ସରୁ ସରୁ, ସ୍ଫୋଟକ—ଫୋଟକା, ମନୋହର—ସୁନ୍ଦର ।

**ଲାବଣ୍ୟବତୀର ମୁହଁରୁ ଝାଳ ଟୋପି ଟୋପି ହୋଇ ରହୁଥିବାରୁ ଏପର ଜଣାଯାଉଛୁ—ରାହୁ ଅର୍ଦ୍ଧଚନ୍ଦ୍ରକୁ ଗ୍ରାସ କରୁଥିଲ; ମାତ୍ର ଶୀଘ୍ର ଖଣ୍ଡ ପଳାଇ ଯାଇଛୁ, ଦନ୍ତକ୍ଷତ ସରୁ ସରୁ ହୋଇଥିବାରୁ ଏହପର ଜଣାଯାଉଛୁ ।**

ମୋତିମାଳ ବାଳି ନ ଜାଣିଲ୍ ତହିଁରେ । ଛଇଲ ମାତ ତାହା ପତ ସୁରତ ଶିକ୍ଷା ଯେତେବେଳେ ଦେଇ ରେ । ସୁନ୍ଦରି । ଛଟକାକ୍ଷି ଗୁଣଶାଳି ରେ । ଛଦ୍ମେ ନ ଜାଣିବ ବାସ ପ୍ରକାରରେ କରଥିବ ନାରିଂଗିଲା ରେ ।୭। ଜାହ୍ନବୀ ଲଭିଲା ମାନ ଶାମ୍ଭବାରେ କସ୍ତୁରୀ କାଳନ୍ଦୀ ଗୃହିଁ ରେ । ଜଣା-ଯିବାକୁ ନଖପଦ୍ମ ବିଶଦମୟୂଖ ନାୟକ ବହି ରେ । ସୁନ୍ଦରି । ଜବାଧର ଚନ୍ଦ୍ରମୁହିଁ ରେ । ଜଳଜ ପାଣିରେ ପୂଜା କରଥିବ କାମ ବ୍ୟାଧି ହତ ପାଇଁ ରେ ।୮। ଝଲକ ଅଙ୍କୁଶ ପ୍ରାସ ଲଭିଛୁ କ ଯଉବନ କରି କୁମ୍ଭ ରେ । ଝଷନିବାସ ସୁତରେ ମର୍ଦ୍ଦି ହେଲା ମହା ମହୀଧର ଦମ୍ଭ ରେ । ସୁନ୍ଦରି । ଝଲଚ୍ଛ ଶର୍ମେ ଏ ଶବ ରେ । ଝଟକାହାସିନୀ ଘର୍ମେ ଲଭିଗଲା ମର୍ମେ ଲେଖିଥିଲା ଶବରେ ।୯। ନୀଳ କୁନ୍ତଳ ଫିଟି ଲୋଟେ ଚରମେ ବିରହାଗ୍ନି ପ୍ରେମନୀର ରେ । ନାଷ୍ଟ୍ରା କଲ୍ ଶାନ୍ତ କ ସେ ଧୂମପନ୍ତ ଊର୍ଦ୍ଧ୍ୱେ ଅଧୋଗତ ଭାର ରେ । ସୁନ୍ଦରି । ନୟନ କରଇ ବଶ ରେ । ନବ ବିକଚ ନଳିନ ମଧୁ ପିଇ ଉଡ଼ିଲେ କ ଅଳିବଂଶରେ ।୧୦। ଟେକ କରୁଣା ହେବାପାଇଁ

---

୭। ସୁଜ୍ୟୋତ—ଅତ୍ୟନ୍ତ ଉଜ୍ଜ୍ୱଳ, ଛଦ୍ମେ—କପଟରେ, ତାହା ପତ ସୁରତ—ବିପରୀତ ରତ ।

୮। ଜାହ୍ନବୀ—ଗଙ୍ଗା, ନାୟକ—ପୁରୁଷ, ଜଳଜ ପାଣି—ପଦ୍ମକର ।

୯। ଯୌବନ ରୂପକ ହାତୀର ମୁଣ୍ଡରେ ଅଙ୍କୁଶ ପ୍ରହାର ଭଳି କୁଚରେ ନଖକ୍ଷତ ହୋଇଛୁ । ଝଷ-ମତ୍ସ୍ୟ, ନିବାସ-ଘର, ସୁତ-ପୁତ୍ର, ଝଷ-ନିବାସ ସୁତ-ପଦ୍ମ, ମହା-ପ୍ରଧାନ, ମହୀଧର-ପର୍ବତ (ମେରୁ ପର୍ବତ) ପୁରୁଷର ହସ୍ତ ପଦ୍ମରେ ସ୍ତ୍ରୀର ମେରୁତୁଲ୍ୟ ସ୍ତନ ମର୍ଦ୍ଦି ହେଲା । ଘର୍ମ—ଝାଳ ।

୧୦। କୁନ୍ତଳ-ଘନକଳା ବାଳ, ଚରମ-ପିଠି, ନାଷ୍ଟ୍ରା-ଲୁଣ୍ଠନ, ଧୂମପନ୍ତ—ଧୂଆଁ ସବୁ, ଊର୍ଦ୍ଧ୍ୱ-ଉପର, ଅଧୋ-ତଳ, ଲାବଣ୍ୟବତୀର ବାଳ ରତ ସମୟେ ଫିଟି ପିଠିରେ ପଡ଼ିବାରୁ ତାହା ଉଡ଼ା ଭିତରେ ତଳୁ ଉପରୁ ଓ ଉପରୁ ତଳକୁ ଯାଉଥିବାରୁ ସେଥିରୁ ଫୁଲ ଝଡ଼ି ପଡୁଥିବାରୁ ଭ୍ରମରମାନେ ଘେରି ବୁଲିଲା ପରି ମଧୁ ଅଣା କରି ପୁରୁଷ ମଧୁପାନ କରୁଛୁ ।

ଅରୁଣାଧରୁ ଫୁରୁଣାରେ କବା ରେ । ଟିକାଏ ଗଳ୍ପ ରଚରେ କି ପତିଙ୍କ
କଲ୍ଲ ଏ ଗୁମରେ ସେବା ରେ । ସୁନ୍ଦର । ଚାହିଁ ନୁହଇ ଏ ଗିର ରେ ।
ଚହକ ହାସ କୁଟିଳ ଲୋକେ ନିକି ବନ୍ଧନ ମୁକ୍ତ ବେଭାର ରେ । ୧୧ ।
ଟିକେ ପତନ ହୋଏ ବାଲା ରତନ ଯତନ ଫୁଲ ମାଳିକା ରେ ।
ଠାଠିକ ଦଶେ ଅମ୍ବୁଜରୁ କି ଖସେ ଅବନୀକି ବଳାଳିକା ରେ । ସୁନ୍ଦର ।
ଠଣି ହେ ପୁଣି ଏ ପରି ରେ । ତୁଳେ ଗଙ୍ଗାରୁ ଜଳ ଅଣି ଘନ କି ପତନ
କରଇ ଧରି ରେ । ୧୨ । ଜମ୍ବୁରୁ ମଧ୍ୟ ମହୋଜ୍ଜ୍ୱଳ ତାମ୍ବୁଳ ବୋଳ ତୋ
ନିର୍ମଳ ଗଣ୍ଡରେ । ଡାଳିମ୍ବ କୁସୁମ ବିମ୍ବ ମନୋହର କି ଅବା ମୁକୁର ଖଣ୍ଡ
ରେ । ସୁନ୍ଦର । ଡୋଳା ବଣଜରେ ପୁଣି ରେ । ଡାହା ଉତ୍ତୀର୍ଣ୍ଣ ରସାଣ
ହେମ ପାତ୍ରେ ସ୍ଥିତ କି ମାଣିକ୍ୟ ମାଣିରେ । ୧୩ । ଚଳି ଗୃହଁ ରଙ୍ଗଅଧରୁ
ଝରୁଛି ଦନ୍ତ କ୍ଷତ ବଶେ ରକ୍ତ ରେ । ଚାଳେ ହୃଦୟ ସୁଖେ
ମୁଖେ କରେ କି ଜାଣି ଅନୁରାଗ ବ୍ୟକ୍ତ ରେ । ସୁନ୍ଦର । ତମାଳି
ନୋହେ ଏ ସତ ରେ । ଚଳଦଳ ଚୂତପଲ୍ଲବେ ଯେମନ୍ତ ମତ୍ତ

---

୧୧ । ଫୁରୁଣା-ଆନନ୍ଦ, ଗୀର-କଥା । ହେ ସୁନ୍ଦର, ତୁ ବାଲ ମୁକୁଳା କରି ତୋର ସ୍ୱାମୀଙ୍କ ଏ ବାଳରୂପ ଚଅଁରରେ ସନ୍ତୋଷ କରିବାକୁ ଇଚ୍ଛା କରୁଥିଲୁ କି, ତୋ ବାଳ ତ କୁଞ୍ଚିକୁଞ୍ଚିଆ ବା କୁଟିଳ, କୁଟିଳ ଲୋକଙ୍କୁ ବନ୍ଧନ ମୁକ୍ତ କରିବା ଭଲ ନୁହେଁ, ତୋର ବାଳ ଫିଟାଇବା ସେହିପରି ।

୧୨ । ଅମ୍ବୁଜ-ମେଘ, ବଳାଳିକା-ବଗସବୁ, ଧରି-ପୃଥିବୀ । ମେଘରେ ବଗ ଉଡ଼ିଲା ପରି ତୋ ମୁଣ୍ଡର ଫୁଲମାଳ ଖସିବା ଦେଖା ଯାଉଛି, ପୁଣି ମନେ ହୁଏ ଗଙ୍ଗାଜଳ ସ୍ୱଚ୍ଛ, ମେଘ ଗଙ୍ଗାଜଳ ଉଠାଇ ପୃଥିବୀରେ ପକାଉଛି କି ?

୧୩ । ଜମ୍ବୁରୁ ମଧ୍ୟ-ସରୁ ଅଣ୍ଟା, ତାମ୍ବୁଳବୋଳ-ପାନପିକ, ଡାଳିମ୍ବ କୁସୁମ-ବିମ୍ବ-ଡାଳିମ୍ବ ଫୁଲ ଗୁଚ୍ଛ, ଡାହା-ପୋଡ଼ା, ରସାଣ-ପାଲିସ, ହେମ-ପାତ୍ର-ସୁନା ପାତ୍ରରେ ସରୁ ସରୁ ପାନ ବୋଳ ତୋ ଗାଲରେ ଲାଗି ଥିବାରୁ ଏପରି ମନେ ହୁଏ । ଆରସିରେ ଡାଳିମ୍ବ ଫୁଲ ପାଖୁଡ଼ା ଲାଗିଛି କି, କିବା ପାଲିସ ସୁନା ପାତ୍ରରେ ମାଣିକ୍ୟ ଅଛି କି ?

୧୪ । ଦନ୍ତକ୍ଷତ-ଦାନ୍ତରେ ଖଣ୍ଡିଆ, ଅନୁରାଗ-ସ୍ନେହ, ତମାଳି-ଗପ, ଚୂତ ପଲ୍ଲବେ-ଆମ୍ବ ପତ୍ରରେ, ରାତିରେ କାମ ମଦରେ ତୋର ପତି ତୋ ଗାଲରେ ଚୋକ ଦେଲାବେଳେ ଦାନ୍ତସବୁ ବସିଯାଇ ଖଣ୍ଡିଆ ହୋଇଛି । କୋଇଲି ଆମ୍ବପତ୍ରକୁ ଖଣ୍ଡିଆ କଲାପରି ଜଣାଯାଉଛି ।

ପିକ ଚଞ୍ଚୁ ଘାତ ରେ ।୧୪। ଅମୂଲ୍ୟ କୁନ୍ଦ ସୁନ୍ଦର କାଶ ମନ୍ଦହାସ ଲେଶମାତ୍ର ନାହିଁ ରେ । ଅନନ୍ତଚନ୍ଦ୍ରମା କେବଣ କାରଣେ କରଣ ହେଲା କୁନ୍ଦାଇ ରେ । ସୁନ୍ଦର । ଅତ୍ୟନ୍ତ ରସିକ ସେହୁ ରେ । ଅମୃତ ଭାବ ଓଷ୍ଠମଧୁ ସହିତ ପିଇଗଲା ପର ଡାହୁ ରେ ।୧୫। ତନୁରେ ଠାବେ ଠାବେ ଲାଗି ଚନ୍ଦନ ଏହୁ ପ୍ରତୀତ କରାଇ ରେ । ତୋତେ ସେ ଏ ଶୋଭା ଦେଇଗଲା ସ୍ତନକୁଙ୍କୁମ ପାଲଟ ନେଇ ରେ । ସୁନ୍ଦର । ତଥା ତୋ ଅଙ୍ଗ ଶୋଭନ ରେ । ତରୁଣକୁଞ୍ଜର କରମର୍ଦ୍ଦନରେ ଯେମନ୍ତ ପଦ୍ମିନୀ ବନ ରେ ।୧୬। ସ୍ଥୂଳଜାନୁରେ ଧୀପ୍ୟମାନ ଅନେକ ପ୍ରଖର ନଖର ଗିରି ରେ । ଅସ୍ତୁ ଏ ଇଙ୍ଗିତ ସଙ୍ଗୀତ ଜାଣେ ସେ କଳାପ୍ରସାରକ ପରିରେ । ସୁନ୍ଦର । ଅଚ୍ଛୁଅଚ୍ଛୁ କପାଁ ଡର ରେ । ଥିରେ କହୁଥା କରଛୁ କା ବଲ୍ଲଭ ଚିତ୍ତରତନକୁ ଚୋରି ରେ ।୧୭। ଦେହେଁ ଦଶୁଛୁ କଙ୍କଣ ଚିହ୍ନମାନ ଭଞ୍ଜନଖଞ୍ଜନଦୃଶୀ ରେ । ଦବ୍ୟ ଦାହ ହେମ ପିତ୍ତଳାକୁ କାମ ସୂଚକମ କଲା ବସି ରେ । ସୁନ୍ଦର । ଦେଖି ମୁଁ

---

୧୫ । କୁନ୍ଦ-କୁନ୍ଦଫୁଲ, କାଶ-କାଶତଣ୍ଡୀ ଫୁଲ, କୁନ୍ଦଫୁଲ ଓ କାଶତଣ୍ଡୀ ଫୁଲପରି ଧଳା ହାସ ତୋର ତ ଦେଖାଯାଉ ନାହିଁ, ଚନ୍ଦ୍ରର କରଣ ନ ଥିଲେ ଯେପରି ଦେଖାଯାଏ ମୁଖ ସେହିପରି ଦେଖାଯାଉଛି, ଜଣାଯାଏ ତୋ ସ୍ୱାମୀ ଭାରି ରସିକ, ଅମୃତ ମନେ କରି ତୋର ଓଠ ମଧୁ ପିଇବାରୁ ଏପରି ଜ୍ୟୋତିହୀନ ହୋଇଛି ।

୧୬ । ତନୁ-ଦେହ, ଠାବେ ଠାବେ-ଜାଗା ଏ ଜାଗାଏ, ପାଲଟ-ଲେଉଟ, ଅଙ୍କ-କୋଳ, କୁଞ୍ଜର-ହାତୀ, କର-ଶୁଣ୍ଢ, ପଦ୍ମବନ । ତୋ ଦେହରେ ଜାଗାଏ ଜାଗାଏ ଚନ୍ଦନ ଲାଗିଥିବାରୁ ଏହା ମନେ ହୁଏ, ତୋର ସ୍ତନରେ ଥିବା କୁଙ୍କୁମକୁ ନେଇ ତା ବଦଳରେ ତାଙ୍କ ଦେହରେ ଥିବା ଚନ୍ଦନ ତୋତେ ଦେଇଗଲା, ଅର୍ଥାତ୍ କୁଣ୍ଢାଇଲା ବେଳେ ଚନ୍ଦନ ତୋ ଦେହରେ ଲାଗିଲା, ଯୁବାହାତୀ ଶୁଣ୍ଢରେ ପଦ୍ମବନକୁ ମନ୍ଥିଲେ ଯେପରି ଏପାଖ ସେପାଖ ହୁଏ ତୋର ସ୍ୱାମୀ ହାତରେ ତୋତେ ମନ୍ଥିବାରୁ ତୋର ସବୁଅଙ୍ଗ ସେହିପରି ଛିନ୍ନଭିନ୍ନ ହୋଇଛି ।

୧୭ । ସ୍ଥୂଳ-ମୋଟ, ତୋର ମୋଟା ଜଙ୍ଘରେ ଅନେକ ନଖ ଗିରି ଦେଖା ଯାଉଛି ସଙ୍ଗୀତ ବୋଲିଲାବେଳେ କଳା ବାହାର କଲାପରି ଏ ଜଣା ଯାଉଛି ଅଚ୍ଛୁଛ କାହିଁକି, ଅସ୍ତେ ଅସ୍ତେ କଥା କହି ତ ସ୍ୱାମୀ ମନକୁ ହରଣ କରିଛ ।

୧୮ । ଖଞ୍ଜନଦୃଶୀ—ଚଞ୍ଚଳ ନୟନା, ଦବ୍ୟଦାହ-ଭଲରୂପେ ପୋଡ଼ି ହୋଇଥିବା, ହେମ-ସୁନା, ପ୍ରୀତିବାନ-ପ୍ରେମସୁନା ।

ହେଲଣି ତୋଷି ରେ । ବଲ୍ଲଭ ହୃଦକଷଟିରେ ଥିବ ସେ ପ୍ରୀତବାନମାନ କଷି ରେ । ୧୮ । ଧର ମଧ୍ୟ ଧୀରେ ଅଶକତଭରେ ଅସିବାରୁ ମୁଁ ଯେ ହେଜ ରେ । ଧୂର୍ଜ୍ଜଟି ଡମ୍ବରୁ ସର ସରୁକଟି ଅହା ସେ ଗଲା କ ଭଜ ରେ । ସୁନ୍ଦର । ଧରାଧର ଯେହ୍ନୁ ଟେକ୍କ ରେ । ଧବ ଭାର ନକ ସହି ନ ପାରଲା ଘେନୁଛୁ ଅଛୁ ଏଥିକ ରେ । ୧୯ । ନବଡ଼ ମୀବ ତ ମହା ଅସ୍ତବ୍ୟସ୍ତ ଖୋଷିଲେ ଖସି ପଡ଼ଇ ରେ । ନାଗର ଶ୍ରୀକର ଦର ଏତେଦୂର କର ସ୍ଥାନେ ନ ରଖଇ ରେ । ସୁନ୍ଦର । ନରହେ ଏହା ଶୁଣି କ ରେ । ନ କଲ୍ପ ମୋତେ ବନ୍ଧନ ଅବକାଶ ନୋହୁବ ଅଜ ଏଣିକ ରେ । ୨୦ । ପୁଣିତ ପଣନ୍ତ ମଧ୍ୟରେ ଲେଟିଛୁ ଭାଲେ ଅସମ୍ଭାଳ ଦେଖି ରେ । ପାଦେ ପଣ୍ଡୀ ଶାଢ଼ୀ କହେ ପତି ସଙ୍ଗବେଳେ ପାରବୃ କ ରଖି ରେ । ସୁନ୍ଦର । ପଗୁରୁଛୁ ଏବେ ମୁହିଁ ରେ । ପାଇ ନାହାନ୍ତ ସ୍ଥାନ ଯହିଁ ଏମାନେ ଲଜ୍ଜା ରଖିଥିବ କାହିଁ ରେ । ୨୧ । ଫୁଲ୍ଲାରବନ୍ଦମୁଖେ ନାହିଁ ପ୍ରସନ୍ନ କାନ୍ତେ ପରାଜୟ ଇଚ୍ଛି ରେ । ଫୁରୁଣା ହୁଏ ଫୁଲଧନୁ ଜିଣିଲୁ ଏଥେ ପୁଣି ଯଶ ଅଛୁ ରେ । ସୁନ୍ଦର । ଫେଡ଼ କହୁଅଛୁ ଜାଣି ରେ । ସ୍ଫୁଟେ ରହୁଥିଲା ବଳା ଫୁଲଧନୁ

---

ହେ ଖଞ୍ଜନନେତ୍ରୀ ତୋ ଦେହରେ କଙ୍କଣ ଚିହ୍ନମାନ ଦେଖା-ଯାଉଛି, ଭଲରକମ ପୋଡ଼ା ହୋଇଥିବା ସୁନା ପ୍ରତିମାକୁ ଛୁଇଁରେ ଚିହ୍ନକଲ ଭଳି ଜଣାଯାଉଛି, ତୋର ସ୍ୱାମୀ ତ ହୃଦୟରୂପ କଷଟି ପଥରରେ ପ୍ରେମରୂପ ସୁନାକୁ କଷି ଅଛି କ ?

୧୯ । ମଧ୍ୟ-ଅଣ୍ଟା, ଧୂର୍ଜ୍ଜଟି ଡମ୍ବରୁ-ଶିବଡମ୍ବରୁ, ଧରାଧର-ପର୍ବତ । ଅଣ୍ଟାକୁ ଧର ଅଶକତରେ ଅସ୍ତେ ଅସ୍ତେ ଅସିବାରୁ ମୁଁ ମନେ କରୁଛି, ଶିବଙ୍କ ଡମ୍ବରୁ ପର ଯେ ତୋର ସରୁକଟି କଣ ଭାଙ୍ଗିଗଲା ଯେ (କୁଚ) ପର୍ବତ ଧରିବାରୁ କଣ ସେ ସ୍ୱାମୀର ଭାର ସହିପାରଲା ନାହିଁ ।

୨୦ । ଦର-ଭୟ, ବନ୍ଧନ-ବାନ୍ଧିବା, ଅବକାଶ-ଫୁରସତ । ତୋର ଭଲରୂପେ ଭିଡ଼ା ହୋଇଥିବା ନୀବ ସମ୍ଭାଳ ନୋହି ଖସି ପଡ଼ୁଛି, ତୋର ସ୍ୱାମୀର ହାତରେ ଭୟରେ ସେ କ'ଣ ରହୁନାହିଁ, ବାନ୍ଧିବାକୁ କ'ଣ ଫୁରସତ ନାହିଁ ।

୨୧ । ଅସମ୍ଭାଳ—ଅତ୍ୟନ୍ତ ।

୨୨ । ଫୁଲ୍ଲାରବନ୍ଦମୁଖେ-ଫୁଟିଲା ପଦ୍ମରୂପ ମୁହଁରେ, ଫୁରୁଣା-ଅନନ୍ଦ, ସ୍ଫୁଟେ-ପ୍ରକାଶ୍ୟରେ କାନ୍ତକୁ ହରାଇବାକୁ ଇଚ୍ଛା କର କ'ଣ ମୁଖ-ପଦ୍ମରେ ଅନନ୍ଦ ନାହିଁ, ଛଡ଼ ସେ କଥା କନ୍ଦର୍ପକୁ ଜିଣିଲୁ ଏଥିରେ ତ ଯଶ ଅଛି, ପ୍ରକାଶ୍ୟରେ କହୁଥିଲା ରେ ଫୁଲଧନୁ ଏବେ ତୁ ପଳା ।

ଫଳା ଫଳା ପୁଣି ପୁଣି ରେ ।୨୨। ବିଧୁ ବିଧୁନ୍ତୁଦ ମୁଖୁଁ ଏହୁଷଣି ବାହାରନ୍ତି
ପର ମୁଖ ରେ । ବିଧିରେ ଚିକୁରଶୋଭି ମିଛ ହେଲେ ମୁକୁର ଅଣାଇ
ଦେଖ ରେ । ସୁନ୍ଦର । ବିଶ୍ବରେ ଏଥି କି ଗୋଳ ରେ । ବୋଲନ୍ତି ତୋତେ
ସୁକୁମାରୀ ଏ ଦୁଃଖ ସୁହାଇଲା ଭାବ ଭୋଳ ରେ ।୨୩। ଭତ୍ତି ଧରି କରୁ
ଗମନ ମଣ୍ଡୁଛୁ ପଞ୍ଚଣ୍ଡ୍ରକ ଶତକୋଶ ରେ । ଭର ଦେଇ ଅପସରେ ଅବସର
ପାଇଲୁ ଏବେ ତ୍ରି ବସ ରେ । ସୁନ୍ଦର । ଭାବ କି ସେ ତାର ଅବ ରେ ।
ଭାଙ୍ଗ ଦରବିକଶିତ କୋକନଦ ମଦ ଜୃମ୍ଭାକୁ ଆଦରି ରେ । ୨୪ । ମହା
ଅଳସଭରେ କୁଚକଳସ ଲୋଡ଼େ ମେରୁଦର୍ପ ହରି ରେ । ମର୍ଦ୍ଦନ ତାଡ଼ନ
କରଜ-ପୀଡ଼ନ କେତେ ବେଗରେ ପାସୋରି ରେ । ସୁନ୍ଦର । ମୁହିଁ
ଶିଖାଇଛୁ ତୋତେ ରେ । ମନ୍ଦ କରିବା ପରେ ନୁହେ ଉଚିତ କରିଥିବୁ
ଦିବ୍ୟଚିତ୍ତେ ରେ ।୨୫। ଯଶ ଅଯଶ ବିଶ୍ବର ଅନୁଗ୍ରହ ବିଗ୍ରହ ନିଗ୍ରହ କର
ରେ । ଯୁବତୀ ରତିରଣ ଭାବ ନିତମ୍ବ ଉରଜ ପିଣ୍ଡିଲ କରରେ । ସୁନ୍ଦର ।
ଯୁକ୍ତ ଏ ପାଇବେ ଶାନ୍ତିରେ । ଯୋଗ ବେଗେ ଅଟଗ କର ବହୁ କଳ୍ପ
ତାକୁ ଦଅ ମଣି ଚୂଡ଼ୀ ରେ । ୨୬ । ରଙ୍ଗବେଶ ହୋଇ ଅଭଙ୍ଗ ନୟନ
ଭୃଙ୍ଗ ହେଲା ଅତିସୁଖରେ । ରମଣୀ ଚତୁରୀ ଶିରୋମଣି ଅଣି କାଳ ଦେବା
ତାର ମୁଖ ରେ । ସୁନ୍ଦର । ରତେ କେଶ ଅସମ୍ଭାଳ ରେ । ରମ୍ୟ ଚରମେ
ପଳାଇ ଲୁଚିଥିଲା ବାନ୍ଧିବା ତାହାକୁ ଭଲ ରେ । ୨୭ । ଲାବଣ୍ୟ ବିମ୍ବ
ବିଡ଼ମ୍ବ ଅଧର ତୋ ଘାତକ ହୋଇଛି ଅତି ରେ । କଲସେ ଏତେ ତାମ୍ବୂଳ
ଅଜସ୍ରି ଦେଇଣ କର ତୃପତ ରେ । ସୁନ୍ଦର । ଲଖପ୍ରାପ୍ତ ଆଦ୍ୟ ପ୍ରାନ୍ତ ରେ ।
ଲଳିତ ଅଙ୍ଗ ଯେ ରଚିଥିଲା ଯାକୁ ଚନ୍ଦନେ କର ଲେପିତ ରେ । ୨୮ ।

---

୨୩ । ବିଧୁ—ଚନ୍ଦ୍ର, ବିଧୁନ୍ତୁଦ—ରାହୁ, ମୁକୁର—ଆରସି, ଚିକୁର—ବାଳ ।

୨୪ । ଭତ୍ତି—କାନ୍ତୁ, ଅପସର—ତକିଆ, ଦର ବିକଶିତ—ଅଳ୍ପ ଫୁଟିଥିବା, କୋକନଦ—ଲାଲକଇଁ, ଜୃମ୍ଭା—ହାଇ ।

୨୫ । କରଜ—ନଖ, ପୀଡ଼ନ—ପୀଡ଼ାଦେବା, କରଜ ପୀଡ଼ନ—ନଖକ୍ଷତ ।

୨୬ । ବିଗ୍ରହ—କଜିଆ, ନିଗ୍ରହ—ଦଣ୍ଡଦେବା, ନିତମ୍ବ—ପିଚ୍ଛ, ଉରଜ—ସ୍ତନ, କର—ହାତ ।

୨୮ । ଲାବଣ୍ୟ—ସୁନ୍ଦର, ବିମ୍ବ—ପ୍ରତିମା, କଇଁଚ କାକୁଡ଼ି, ବିଡ଼ମ୍ବ—ଖରାପ, ଅଧର—ଓଷ୍ଠ, ତୃପତ—ସନ୍ତୋଷ, ଲଖ—ଜାଣ ।

ତୋର ପାଚିଲା କଇଁଚ କାକୁଡ଼ି ଓଷ୍ଠ ଲାଲ, ପାନ ଖାଇ ତାକୁ ନିବାରଣ କର । ତୋର ଦେହ ଜଜପରି ପୁରୁଷ ଦେହରେ ଲାଗିଥିଲା, ତାକୁ ଚନ୍ଦନ ବୋଳି ହୋଇ ଶୀତଳ କର ।

ବସନ୍ତରେ ପବନ ଘନସାର ଅଗ୍ନି ସମେ ଦେଉଥିଲେ ପୀଡ଼ା ରେ । ବ୍ୟାଜ କି ଆଜ ସେ ସୁଖଦ ହେଲକୁ ସିନା କରୁଅଛୁ ଲୋଡ଼ା ରେ । ସୁନ୍ଦର । ହେବେକି ସେ ଶୋଭାନିଧି ରେ । ବିଧୁ ଅସ୍ତବ୍ୟସ୍ତ କରିଥିବ ସାଧୁ ସବୁ ଶଙ୍କୁ ହେଲ ସାଧି ରେ । ୨୯ । ଶୟନ କର ନୟନରୁ ନାଶିଲୁଁ ରାଜ କଲୁ ଶିବରାତିରେ । ଶ୍ରୀଅଙ୍ଗକୁ ତେବେ କାନ୍ତ ଶାନ୍ତ ହେବ ଅଶେଷ ସୁରସପାନି ରେ । ସୁନ୍ଦର । ଶ୍ରଦ୍ଧା ଏକାଅଛୁ ତହିଁରେ । ଶଶିହାସି ସେ ବିଧି ସ୍ୱପ୍ନେ ଦେଖିବୁ ପାଟସୋରିବା କଥା ନୋହୁ ରେ । ୩୦ । ଷଡ଼ାନନ ତାତଅର୍ଦ୍ଧ ଦେବତାଙ୍କୁ ଏ ପୁରୁଷ ସଙ୍ଗ ଅଶେ ରେ । ଷୋଡ଼ଶୀ ଯେତେ ଦ୍ରବ୍ୟ ଥିଲୁ ମନାସି ଦେବୁଟି ଏହୁ ଦିବସେ ରେ । ସୁନ୍ଦର । ଷଣକୁସୁମ ସୁକାନ୍ତିରେ । ଷଡ଼ାର୍ଦ୍ଧପୁରେ ପ୍ରମଦା ମାନେ ନାହିଁ ତୋ ସମାନ ଭାଗ୍ୟବତୀ ରେ ॥ ସାରସଗଡ ସଖୀଙ୍କ ବଶରେ ମଜ୍ଜିଲ ହୀରା-ସରିତେ ଯେ । ସତେ ଜରଜ କଲା ଚନ୍ଦ୍ରଶେଖର ମୁଖ ନିବେଶ ତୁରିତେ ସେ । ସୁନ୍ଦର । ସଧୀରେ ସଖୀରେ ଯାଇ ଯେ । ସମୀର ବହିଲା ସ୍ଥାନରେ ବସିଲ ଆଶ୍ୱାସନା କଲେ ସହି ଯେ । ୩୨ । ହାଟକକଂଠକ ଗୋଷ୍ଠିର ଦେଲେ ସେ ଛଟକେ ମୀତ ବଢ଼ାଇ ଯେ । ହସ୍ତୀ ଦଶନପଲ୍ଲୀଙ୍କ ଅଙ୍କରେ ସେ ନିଃଶଙ୍କେ ଦେଲେ ଶୁଆଇ ଯେ । ସୁନ୍ଦର । ହେଲ ପୂର୍ଣ୍ଣ ମନୋରଥ ଯେ । ହେଲା ନ କଲ ପୁଂସଲୀଳା ଭାବନା ଲବମାନ ହୃଦପଥ ଯେ । ୩୩ । ଷିତମଣ୍ଡଳମଣ୍ଡନ ଷୀଣୋଦରୀ ଭାବନା ବଶରେ ପୁଂସ ଯେ । ଷଣଦା ଷଣ ପ୍ରାୟ ଗଲା ବସନ୍ତରେ କାହିଁ ଥିଲା ଏ ଦିବସ ହେ । ସୁଜନେ । ଷିପ୍ରେ ଶାନ୍ତ ରାମଚନ୍ଦ୍ର ଯେ । ଷମେ ଉପଇନ୍ଦ୍ର ଭଞ୍ଜ ବୀର କହେ ଅଘ କରୀନ୍ଦ୍ର ପାରିନ୍ଦ୍ର ହେ । ୩୪ ।

---

୨୯ । ଘନସାର—କର୍ପୂର, ବ୍ୟାଜ—ଛଳନା, ବିଧୁ—ଚନ୍ଦ୍ର, ସାଧୁ—ପଣ୍ଡିତ, ପୁଂସ । ସ୍ୱାମୀ ସଙ୍ଗରେ ଭେଟ ନ ହେବା ଆଗରୁ ପବନ ଓ କର୍ପୂର ନିଆଁ ପରି ଜଣା ଯାଉଥିଲା । ଏ ଛଳନା କଥା ବୁଝେ, ଚନ୍ଦ୍ର ମଧ୍ୟ କଷ୍ଟ ଦେଉଥିବ, ତେଣୁ ପୁରୁଷ ଚନ୍ଦ୍ରମୌଳିକ କରି ଚନ୍ଦ୍ରକୁ ଅସ୍ତବ୍ୟସ୍ତ କରିଛି ।

୩୦ । ଅଶେଷ—ବେଶୀ, ସୁରସପାନୀ—ରସିକାସ୍ତ୍ରୀ ।

୩୧ । ଷଡ଼ାନନ—କାର୍ତ୍ତିକେଶ୍ୱର, ତାତ—ପିତା, ଷଡ଼ାନନ ତାତ—ମହାଦେବ, ଷଣକୁସୁମ—ଛଣପଟ ଫୁଲ, ଷଡ଼ାର୍ଦ୍ଧ—ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର, ପ୍ରମଦା—ସୁନ୍ଦରୀ ସ୍ତ୍ରୀ ।

୩୨ । ସାରସ ଗଡ—ହଂସଗଡ ।

ଲାବଣ୍ୟବତୀ ଦେଳାପୁରରେ କାନ୍ତ ସଙ୍ଗ ଲଭକରି ବିକୃତ ଅବସ୍ଥା ହେବାରୁ ସେହି ଅବସ୍ଥାର ବର୍ଣ୍ଣନା କରା ଯାଇଛି ।

# ପଞ୍ଚତ୍ରିଂଶ ଛାନ୍ଦ

( ଦେବ ଅଭିଶାପ ଓ ବରକନ୍ୟା ସ୍ୱଦେଶ ପ୍ରବେଶ )

ରାଗ—କଳଶା

ଏଥୁ ଅନନ୍ତରେ ଜନେ ଶୁଣ ଦବ୍ୟରସ । ପୁରେ ସପତମଙ୍ଗଳା ହେଲ ତହିଁ ଶେଷ ଯେ । ୧ । ପଣ୍ଡିଲ ପରମ କଷ୍ଟ ଅଷ୍ଟମଙ୍ଗଳାରେ । ନୋହିଲ ସେ ଧନ ଭେଟ ପୁରୁଷ ବାଲାରେ ଯେ । ୨ । ବସି ବାସ୍ତୁର କରଇ ରସିକ ରତନ । ଜସ୍ତ୍ରବେ କାହିଁକି ହେଲ ଏଡ଼େ ହ୍ଲାନଧନ ଯେ ।୩। ମୋତେ ହରତାଲଗୋସ୍ୱା ହରତାଳ କର । ପର ବର ଦେବ ଦୁଃଖ ଏ ଘୋର ଶର୍ବସ୍ୱ ଯେ ।୪। କୁହୁ ନୋହି ଜଗତରେ ମୋଠାରେ ହୋଇଲ । ବଦନଇନ୍ଦୁ ଦର୍ଶନ ଏଣୁ ବରୋଧିଲ ଯେ । ୫ । ଏକାଳେ କ୍ଷୋତ୍ୟଷସୁତ ପାଶେ ପରବେଶ । ବୋଇଲ ମନ୍ତ୍ରୀସୁତକୁ ମନ୍ତ୍ରୀ କର ବେଶ ଯେ । ୬ । ସୁତା ବାଞ୍ଛକର ଦେବ ନେଇଅଛୁ ବର । ଶତ୍ରୁଶତ୍ରା ଅନ ଏ ସନ୍ଦେଶ ଶୁଣିକର ଯେ । ୭ । ଉତ୍ତୁଧିକ ବସ୍ତ୍ର ପୁଣି ପୂର୍ବୋହିତ ସୁତା । ମୋତେ ଅଗୁଁ ଏ ଦେଶେ କରଛୁ ଯୋଗଧାତା ଯେ । ୮ । ରତ୍ନାକର ସାଧୁ ତ ଅମ୍ବର ଅତସ୍ନେହା । ତାହାର ଭଗ୍ନୀକୁ ମାଗ ପୁରନ୍ଦର ପାଇଁ ଯେ । ୯ । ଶୁଣି ତୋଷ ହୋଇ ଧସ୍ରପତ ପ୍ରିୟସୁତ । ସେ କାର୍ଯ୍ୟ ନିବାହ କଲ

---

## ପଞ୍ଚତ୍ରିଂଶ ଛାନ୍ଦ

୨ । ପରମ—ଶ୍ରେଷ୍ଠ, ଅତ୍ୟନ୍ତ, ବାଲା—ସ୍ତ୍ରୀ ।

୩ । ଜସ୍ତ୍ରବେ—ଆନନ୍ଦରେ, ହ୍ଲାନମାନ—ଦୁଃଖ ଅବସ୍ଥା ।

୪ । ହରତାଳୀ ଗୋସ୍ୱା-ହଲଦଆବର୍ଣ୍ଣ ସ୍ତ୍ରୀ, ହରତାଳ-ଗଣେଶ ଚତୁର୍ଥୀ, ହର—ଚନ୍ଦ୍ର, ଘୋର—ଭୟଙ୍କର, ଶର୍ବସ୍ୱ—ସତ, ( ହରତାଳିକା ଦିନ ଚନ୍ଦ୍ର ଦେଖନ୍ତି ନାହିଁ ) ସେହିପରି ସ୍ତ୍ରୀ ଅଷ୍ଟମଙ୍ଗଳା ଦିନ ସ୍ୱାମୀକୁ ଦେଖେ ନାହିଁ ।

୫ । କୁହୁ-ଅମାବାସ୍ୟା, ବଦନଇନ୍ଦୁ-ମୁଖଚନ୍ଦ୍ର, 'ବରୋଧିଲ—ନିଷେଧ କଲା ।

୭ । ସୁତା—ଝିଅ, ସନ୍ଦେଶ—ଖବର ।

୯ । ଭଗ୍ନୀ—ଭଉଣୀ, ସାଧୁ—ସାହୁକାର, ବ୍ୟବସାୟୀ ।

୧୦ । ଧସ୍ରପତ—ରାଜା ।

ପାଶୁ ପେଶୀ ଦୂତ ଯେ । ୧୦ । ତନ୍ନ ମିଳ ବାଲ୍ୟାବଧି ଶୁଭେ ହେଲା ସିଦ୍ଧି । ପୁଣି ଅତ ହରଷ ହୋଇଲା ରସନିଧି ସେ । ୧୧ । କାମ କଲା ମେଘମାଳା ଦାସ୍ୟବଳୀ ନାମ । ସପତ୍ର ହେବାରୁ ସେ ହୋଇଲେ ପୂର୍ଣ୍ଣକାମ ଯେ । ୧୨ । ଅଙ୍ଗମାନେ ଦାସୀମୁଖୁଁ ପାଇଲେ ବାରତା । ଦେବେ ଯଜ୍ଞଭୂକେ ଘରେ ଏଣୁ ଦୂର ଚିନ୍ତା ଯେ । ୧୩ । ଏମନ୍ତ କେତେକ ଦିବସ ଶେଷ କଲେ ତହିଁ । ସିଂହଳଭୂପାଳେ ପୁତ୍ରବ୍ରତ ସୁତ କହି ଯେ । ୧୪ । ବୋଇଲା ସେ କର୍ଣ୍ଣାଟ ସେ ସିଂହଳ ପ୍ରଦେଶ । ଏମନ୍ତ ଅବଧାନରେ କର ନରଈଶ ଯେ । ୧୫ । ଶଶିଶେଖର ରାଜାର ଏକମାତ୍ର ପୁତ୍ର । ଅଛୁ ପ୍ରତମାକୁ ପଟିଥାଇ ରଖି ନେତ୍ର ଯେ । ୧୬ । ଅବଧାନ କଲେ ଏବେ ହୋଇବୁଁ ମେଲାଣି । ଦଣ୍ଡଧର ହରଷ ହୋଇଲେ ଚତ୍ତେ ଶୁଣି ଯେ ।୧୭। ଯଜ୍ଞଭୂକ ସମ୍ଭାର ଘେନାଇ ସଚିବକୁ । ପ୍ରେଷିତ କଲେ ଭୂବନ କୁମାର ପାଶକୁ ଯେ । ୧୮ । ଗୃହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ । ଦେଇଛୁ ଧନଦକୋଷ ପର ରତ୍ନକୋଷ ଯେ । ୧୯ । ଦନ୍ତୀ ହୟ ହରିରଥୁ ଯାନ ସମାନରେ । ଲକ୍ଷ ସଂଖ୍ୟକ ଦେଇଛୁ ସହଜ ଚତ୍ତରେ ଯେ । ୨୦ । କାମଧେନୁ ପର ଧେନୁ ସବତ୍ସା କରଣ । କୋଟି ପରମିତ ଘେନାଇଛନ୍ତି ବ୍ରଜଗଣ ଯେ । ୨୧ । କଥା କୁହା ପିକ ଶୁକ ସାରିକା ଅନେକ । ଅଶେଷ ମଞ୍ଜୁଷ ଚର୍ମ ଆଡ଼େଣୀ ସାୟକ ଯେ । ୨୨ । ବସନ ଡେଣାମାନଙ୍କ ସଂଖ୍ୟା ହେବ କାହିଁ । ଦାଣ୍ଡୋଳା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ । ୨୩ । ଏ ବାଧିରେ ପଦାର୍ଥ ସମର୍ପି

---

୧୧ । ରସନିଧି—ଲବଣ୍ୟବତୀ,କାରଣ ଏ ତନ୍ନହେଁ ତାହାର ସଙ୍ଗୀ ଥିଲେ ।

୧୨ । ସପତ୍ର—ପତ୍ରଯୁକ୍ତା ।

୧୪ । ସିଂହଳ ଭୂପାଳ—ସିଂହଳ ଦେଶ ରାଜା ।

୧୫ । ଅବଧାନ—ବଶ୍ଚର ।

୧୭ । ମେଲାଣି—ବିଦାୟ, ଦଣ୍ଡଧର—ରାଜା ।

୧୮ । ସଚିବ-ମନ୍ତ୍ରୀ,କୁମାର-ରାଜପୁତ୍ର, ସମ୍ଭାର-ସାମଗ୍ରୀ, ପ୍ରେଷିତ-ପ୍ରେରିତ ।

୧୯ । ଧନଦ—କୁବେର, କୋଷ—ଭଣ୍ଡାର ।

୨୦ । ଦନ୍ତୀ—ହାତୀ, ହୟ—ଘୋଡ଼ା, ହରିରଥୁ—ସିଂହ, ଯାନ—ରଥ ।

୨୧ । କାମଧେନୁ—କାମନା ପୂର୍ଣ୍ଣ କାରଣୀ ଗାଈ, ସବତ୍ସା—ବାଛୁରସହିତ, ବ୍ରଜଗଣ—ଗଉଡ଼ମାନେ ।

୨୨ । ସାରିକା—ସାରୀ, ମଞ୍ଜୁଷ—ସାଞ୍ଜୁ, ସାୟକ—ଶର । ଚର୍ମଆଡ଼େଣୀ—ଗଣ୍ଡା ଚମର ଟାଲ ।

୨୩ । ଦାଣ୍ଡୋଳା—ପାଲିଙ୍କି, ସବାରି, ସ୍ୟନ୍ଦନ—ରଥ ।

ଜଣାଇଲ । ସଭୂଷଣ କର ଦାସୀ ସହସ୍ରେକ ଦେଲ ଯେ । ୨୪ । ଯାଉଛନ୍ତି ଏ ବାହାରେ ପ୍ରିୟସଖୀଗଣ । ଯାହାକୁ ଲବଣ୍ୟଲକ୍ଷ୍ମୀ କଲି ସମର୍ପଣ ହେ । ୨୫ । ତାହାଙ୍କୁ ପଦାର୍ଥ ଦେଇ ନାହିଁ ତୋଷିବାକୁ । ଶିବର ଅଙ୍କ ଇଚ୍ଛା ଲଭିଲେ ଶିବାକୁ ଯେ । ୨୬ । ଯାହା ଅଙ୍କରେ ହୋଇଛୁ ଦେଇ ଇନ୍ଦ୍ରପଦ । ଶୁଣାନେ ଭୂମି ସେ ଇଚ୍ଛା ନ କଲେ ସମ୍ପଦ ଯେ । ୨୭ । ଏ ବଧିରେ ଘେନାଘେନି ଅନେକ ରତନ । ସଜ କରଦେଲ ସେ ବହୁତ ପୋତମାନ ଯେ । ୨୮ । ମାତା କୋଳକର ପ୍ରିୟସୁତାକୁ ତଥର । ଛଦୁଗ୍ରୀରେ ରତ୍ନହାଦୋଳାରେ ବଜେ କର ଯେ । ୨୯ । ବୋଇତରେ ବଜେ କଲ ଯୁବରାଜ ସଙ୍ଗେ । ଅଛନ୍ତି ପରଗୃହକା ସଖୀ ସଙ୍ଗେ ରଙ୍ଗେ ଯେ ।୩୦। ଜେମାବ୍ରାତ ଅଦ ମନ୍ତ୍ରୀ ଘେନି ବାହାରିଲେ । ସେ ଦନ ସବଳ ହୋଇ ସିନ୍ଧୁ ପାରହେଲେ ଯେ । ୩୧ । ନାରଦ ମୁଖୁଁ ଶୁଣିଲେ ଅମର ନକର । ଅତୁଲ୍ୟ ଶୋଭା ନାଗ୍ରଏ ଥିଲ ମର୍ତ୍ତ୍ୟପୁର ଯେ । ୩୨ । କାଞ୍ଚିପତିସୁତ ଚନ୍ଦ୍ରଭାନୁ ହେଲ ବଶ । ଦେବେ ପଗ୍ଭରିଲେ କହ ସେ ସୁନ୍ଦର ଶୋଭା ଯେ । ୩୩ । ଋଷି କହେ କ କହିବ କହୁମାନ ଶୁଣ ।

---

୨୪ । ସୁଭୂଷଣ—ଭଲ ଗହଣା ପିନ୍ଧାଇ ।

୨୬ । ଶିବ—ମହାଦେବ, ଶିବା—ପାର୍ବତୀ ।

୨୮ । ପୋତ—ଜାହାଜ ।

୨୯ । ପ୍ରିୟସୁତା—ସ୍ନେହର ଝିଅ, ତଥର—ବୁଝାଇ ।

୩୦ । ବୋଇତ—ଜାହାଜ ବା ଡଙ୍ଗା ।

୩୧ । ଜେମାବ୍ରାତ—ରଜାଝିଅ, ମନ୍ତ୍ରୀଝିଅ,ପୁରୋହିତ ଝିଅ, ସାଧୁ ଭଉଣୀ । ସିନ୍ଧୁ—ସମୁଦ୍ର ।

୩୨ । ଅମର—ଦେବତା, ନକର-ସମୂହ, ଅତୁଲ୍ୟ-ଅତୁଳନୀୟ, ମର୍ତ୍ତ୍ୟପୁର—ପୃଥିବୀ ।

୩୩ । କାଞ୍ଚିପତି ସୁତ—କାଞ୍ଚିରାଜ ପୁଅ ।

୩୪ । ନୀଳ—ନେଳିଆ, ଧବଳ-ଧଳା, ବୃଷାଳ-ସୁନ୍ଦର ।

୩୫ । ଗହଳ-ଘନ, ପକ୍ଷ୍ମଳ-ପତା, ରଙ୍ଗପୁର-ସୌନ୍ଦର୍ଯ୍ୟପୂର୍ଣ୍ଣ ।

୩୬ । ଇନ୍ଦୀବର-ନୀଳକଇଁ, ପୁଣ୍ଡରୀକ-ଧଳାପଦ୍ମ, ଖଞ୍ଜରୀଟ ଖଞ୍ଜନପକ୍ଷୀ, ମୀନ-ମାଛ, ମଦର-ମଧୁ, ଅଳସନେଇ ।

ସେ ଲବଣ୍ୟବତୀର ଅଖି ନୀଳକଇଁ ପରି ନେଳିଆ, ଧଳା ପଦ୍ମପରି ଧଳା, ଖଞ୍ଜନ ପକ୍ଷୀପରି ଚଞ୍ଚଳ, ମାଛପରି ସୁନ୍ଦର, ଭୁଲୁପତା ଗହଳ ହେତୁ ଧନୁପରି ଅତ୍ୟନ୍ତ ସୁନ୍ଦର ଦେଖା ଯାଉଅଛି ।

ନୀଳ ଧବଳ ଚଞ୍ଚଳ ବୃଷାଳ ତା ଗୁଣ ଯେ । ୩୪ । ଅଭ ରଙ୍ଗ ଗହଳ ପକ୍ଷ୍ମଳ ପୁର ନେତ୍ର । ଗୁଣେ ଗୁଣେ ଲଭି ହେଲେ ଏମାନେ ପବିତ୍ର ଯେ ।୩୫ । ଇନ୍ଦୀବର ପୁଣ୍ଡରୀକ ଖଞ୍ଜରୀଟ ମୀନ । ମଦର ଅନ୍ୟ ନେତ୍ରକୁ ହୁଅନ୍ତି ସମାନ ହେ ।୩୬। ସିହାଣୀ ଗୃହାଣୀ ଶର ବାନ୍ଧବା ଛଟକ । ଗୃହିଁ ନ ଗୃହିଁବ କି ସେ ବିଜୁଳି ଝଟକ ଯେ । ୩୭ । ଡୋଳା ଚଞ୍ଚଳ ରସିକା ନାସିକାକୁ ଗୃହିଁ । ଅନ୍ତପଳାୟିତ ଶ୍ରୁତ ଗୃହିଁ ଲେଉଟଇ ଯେ । ୩୮ । ଏତେମାତ୍ର ନେତ୍ର ପ୍ରଶଂସାକୁ ଶୁଣି ସୁରେ । ଲବଣ୍ୟବତୀ କି ବୋଲି କଥା ପରସ୍ପରେ ଯେ । ୩୯ । ସେହୁ ବୋଲି ବାହାରିବାବେଳେ ମୁନିବର । ଶରପରେ ମାର ତହିଁ ପ୍ରହରିଲ ଶର ଯେ । ୪୦ । ନିଶ୍ୱାସ ପକାଇ କର ସିଞ୍ଚାନ୍ତି ବିସ୍ମୟ । ନରେ ନିକ ଭୋଗ ହେଲ ଏତେ ଶୋଭମୟ ଯେ । ୪୧ । ଅମ୍ଭ ଅଶା ବିଫଳକୁ ନେଲ ତ ଦଇବ । ଅବଶ୍ୟ ତାହା ତାହାର ବିଚ୍ଛେଦ ହୋଇବ ଯେ । ୪୨ । ସୁରରମଣୀଙ୍କ ମହାଶଙ୍କା ହେଲ ଦୂର । ଭାବିଲେ ବିଚ୍ଛେଦ ଶାପ ନୁହଇ ବେଭାର ଯେ । ୪୩ । ନଳ ଦମୟନ୍ତୀ ପ୍ରାୟ କଚ୍ଛୁଦନ ଭନ୍ନ । ହୋଇ ପୁଣି ଲଭନ୍ତି ବିପୁଳ ଭୋଗମାନ ଯେ ।୪୪।

---

୩୭ । ସିହାଣୀ-ଚତୁରୀ, ଗୃହାଣୀ-ଅନାଇବା, ବିଜୁଳି ଝଟକ-ବିଜୁଳି ତେଜ ।

୩୮ । ଡୋଳା-ଅକ୍ଷିଡୋଳା, ନାସିକା-ନାକ, ଶ୍ରୁତ-କାନ, ଅନ୍ତପଳାୟିତ —ଶେଷଯାଏ ଲମ୍ବିତ ।

୩୯ । ସୁର—ଦେବତା ।

୪୦ । ଶରପରେ ଶର—ବାଣପରେ ବାଣ, ମାର—କନ୍ଦର୍ପ ।

୪୧ । କର-ହାତ, ବିସ୍ମୟ-ଅଶ୍ଚର୍ଯ୍ୟ, ଶୋଭମୟ-ସୁନ୍ଦର ।

୪୨ । ବିଚ୍ଛେଦ-ପୃଥକ୍ ।

୪୩ । ସୁର ରମଣୀ-ଦେବସ୍ତ୍ରୀ, ମହାଶଙ୍କା-ବେଶି ଭୟ ।
ଦେବସ୍ତ୍ରୀମାନେ ଲବଣ୍ୟବତୀ ଶୋଭା ଦେଖି ଭାବିଲେ ସେ ଦେବଙ୍କୁ ବରିଲେ ଅମ୍ଭ ସୁଖ ଯିବ । ବିଭା ହେବାରୁ ସେମାନେ ସୁଖୀ ହେଲେ ।

୪୪ । ବିପୁଳ ବେଶି, ଭୋଗ-ସୁଖ ।
ଦମୟନ୍ତୀ ଦେବଙ୍କୁ ଛାଡ଼ି ନଳକୁ ବରିବାରୁ ନାନାଦି କଷ୍ଟ ପାଇ ମଧ୍ୟ ନିଜର ସତୀତ୍ୱ ବଳରେ ପୁନର୍ବାର ରାଜ୍ୟ ଓ ସ୍ୱାମୀସୁଖ ପାଇଲେ ।

ନିଃଶ୍ୱାସଜଉ୍ଭବା ଚଣ୍ଡୀ ସିନ୍ଧୁ ଦେଶେ ଯାଇ । ଉପକାରେ ରହିଲା ରାଜାରେ ପୂଜା ପାଇ ଯେ ।୪୫। ଏଥୁଅନନ୍ତରେ ତହିଁ ନୃପତି କୁମାର । ଢେଢେଦନେ ପରବେଶ ଆପଣା ନଗର ଯେ । ୪୬ । କର୍ଣ୍ଣାଟଜନକ ଶୁଣି ଅତିତୋଷ ହେଲେ । ସଚିବଙ୍କୁ ହକରାଇ ପୁର ମଣ୍ଡାଇଲେ ଯେ । ୪୭ । ମହୋତ୍ସବେ ଅନ୍ତଃପୁରେ ନେଲେ କନ୍ୟା ବର । ଏଥୁବଧି ମନ୍ତ୍ରୀ ପୁରୋହିତ ସାଧୁତର ଯେ ।୪୮। ନନନ୍ଦା ନିକଟେଧେ ପୁର ସ୍ୱୟଂ ସୁକୁମାରୀ । ଯନ୍ତ୍ର ରତ୍ନଭୂଷଣ ବସନେ ବୋଧକର ଯେ । ୪୯ । ଶାଶୁଙ୍କ ଓଳଗି ବାସ ନିଜସ୍ଥଳ କଲା । ପୁରସିନ୍ଧୁ ହୁଲହୁଲ ନାଦେ ଉଚ୍ଛୁଳିଲା ଯେ । ୫୦ । ନାରୀଏ ପ୍ରଶଂସା କଲେ ଏ ସଂସାର ସାର । ଜଗଜ୍ଜୟୀଜୟମୂର୍ତ୍ତି କି ଏ ମଦନର ଯେ । ୫୧ । କୁନ୍ତଳ କାଳିନ୍ଦୀଜଳ ଜଳଦ କଜ୍ଜ୍ୱଳ । କି ଏ ତମ ତାମସ ତମାଳ ଗେତମାଳ ଯେ । ୫୨ । କି ଭ୍ରମର ଭ୍ରମର ଅମରବର ମଣି । ଶୁଚି ସୁରୁଚି କସ୍ତୁରୀ ଶିଖିପୁଚ୍ଛ ଜିଣି ଯେ । ୫୩ । ଚକୋର ପାଳିକା କିବା ଅଳିକା ଅଳକ । ଲଲାଟପଟ ଅର୍ଦ୍ଧେନ୍ଦୁ ଅନଙ୍ଗ ଫଳକ ଯେ । ୫୪ । କର୍ଣ୍ଣ ଚୂତଫଳଫାଳ କିଂଶୁକ ପାଟଳୀ । କିବା ବସ୍କର ଢିକାର ପାଶ ଖଟଦୋଳୀ ଯେ । ୫୫ ।

---

୪୫ । ନିଶ୍ୱାସଜଭ୍ବା-ନିଶ୍ୱାସରୁ ଜନ୍ମ ହୋଇଥିବା, ଚଣ୍ଡୀ-ଯୋଗ୍ନୀ ।

୪୭ । କର୍ଣ୍ଣାଟ ଜନକ-କର୍ଣ୍ଣାଟ ରାଜା, ସଚିବ-ମନ୍ତ୍ରୀ ।

୪୮ । ମହୋତ୍ସବେ-ଅତ୍ୟନ୍ତ ଉତ୍ସବରେ, ଅନ୍ତଃପୁରେ-ଭିତର ପୁରକୁ ।

୪୯ । ନନନ୍ଦା—ନଣନ୍ଦ ।

୫୦ । ନାରୀଏ-ସ୍ତ୍ରୀମାନେ, ସଂସାର ସାର-ଜଗତରେ ପ୍ରଧାନ, ଜଗଜ୍ଜୟୀ-ସଂସାର ଜୟକାରୀ ରୂପ, ଏ କ'ଣ ମଦନକୁ ଅର୍ଥାତ୍ କାମ ସଂସାର ଜୟ କରିବାକୁ ଏ ରୂପ ଧାରଣ କରିଛି ।

୫୧ । କୁନ୍ତଳ-ବାଳ, କାଳିନ୍ଦୀ ଜଳ-ଯମୁନାପାଣି, ଜଳଦ-ମେଘ, କଜ୍ଜ୍ୱଳ-କଳା, ତମ-ରାହୁ, ତାମସ-ଅନ୍ଧାର, ତମାଳ-କଳା, ଖେତମାଳ-ମେଘ ।

୫୩ । ଭ୍ରମର-ଭଅଁର, ଅମର ବରମଣି-ଇନ୍ଦ୍ର ନୀଳମଣି, ଶିଖିପୁଚ୍ଛ-ମୟୂରପୁଚ୍ଛ, ଶୁଚି-ପବିତ୍ର ।

୫୪ । ଚକୋର-ଚକୁଆ ପକ୍ଷୀ, ପାଳିକା-ପର, ଅଳକ-ଚୂନାବାଳ, ଅଳିକା—ଇତସ୍ତତଃ, ଲଲାଟପଟ-କପାଳ, ଅର୍ଦ୍ଧେନ୍ଦୁ-ଅଧାଚନ୍ଦ୍ର, ଅନଙ୍ଗ ଫଳକ—କନ୍ଦର୍ପର ଶର ଫାଳ ।

୫୫ । ଚୂତଫଳ ଫାଳ—ଅମ୍ବଫାଳ, କିଂଶୁକ—ପଳାଶ ଫୁଲ, ପାଟଳୀ—ପାଟଳଫୁଲ, ଭଲ, ବସ୍କର—କୁଶବନ୍ଧୁ, ଢିକାର—ଢ ଅକ୍ଷରପରି କାନ ।

ଗଣ୍ଡ ଖଣ୍ଡଚନ୍ଦ୍ର ଅଧରଣ ପାଳି ଧଣି । ଭୃକୁ ଭୂରୁ କମାଣ ପରଶୁ ଶିଶୁଶଶୀ ଯେ ।୫୬। ନାସିକା କୀର ତୂଣୀର ତିଳଫୁଲ ତୁଲ । ଚିବୁକ ଚତୁର୍ଥୀ ଚନ୍ଦ୍ର ନାଗରଙ୍ଗ ଫଳ ଯେ ।୫୭। ନେତ୍ର କୁରଙ୍ଗ ତୁରଙ୍ଗ ନୀଳଇନ୍ଦୀବର । ମୀନ ଖଞ୍ଜନ ନଳିନ ମାର୍ଗଣ ମଦର ଗୋ ।୫୮। କଳାଡୋଳା ଖେଳା ଇନ୍ଦୀବର ଲୀଳା ନିନ୍ଦ । ଅନ୍ତ କୁନ୍ତ ଶାଣିତ ତରୁଣମର୍ମଭେଦୀ ଯେ ।୫୯। ଭ୍ରୂଲୁ ଝଲକ ପଲକ ପତନ ଗୃତୁଙ୍ଗ । ସଂଯତନରେ ଦର୍ପକ ଦର୍ପକତ୍ତୁରୀ ଗୋ ।୬୦। ଅଧର ବାଳ ଅରୁଣ ପ୍ରବାଳ ପ୍ରବାଳ । କି ବିମ୍ବ ତାଳମ୍ବପୁଷ୍ପ ମାଣିକ୍ୟ ହିଙ୍ଗୁଳ ଯେ ।୬୧। ବନ୍ଧୁକ ସନ୍ଧ୍ୟାମିହିର ମନ୍ଦାର ସିନ୍ଦୂର । ପୁଣି ଅନୁରାଗ ଜନ୍ମସ୍ଥଳ ପରକାର ଗୋ ।୬୨। ହାସ କାଶ ପୀୟୂଷ କର୍ପୂର ଚନ୍ଦ୍ରକର । କିଏ କୁମୁଦ ଡିଣ୍ଡୀର ଦର ହରଧର ଗୋ ।୬୩। ଦଶନ କୁନ୍ଦକୋରକ କରକ ହୀରକ । ମୋତିପନ୍ତି ସୁଧାବିନ୍ଦୁ ତଣ୍ଡୁଳ ତୁଳକ ଗୋ ।୬୪। ମୁଖବାସ ଝଳ ଅହ୍ଲାଦ ମନୋହର । ଏକତନ୍ତ୍ର କମଳ ଦର୍ପଣ ନିଶାକର ଗୋ ।୬୫। କମ୍ବୁ କପୋତ

---

୫୬ । ଗଣ୍ଡ—ଗାଲ, ଖଣ୍ଡଚନ୍ଦ୍ର-ଅର୍ଦ୍ଧଚନ୍ଦ୍ର, ପାଳି—ଫାଳ, ଭୂରୁ—ଭ୍ରୂଲତା, କମାଣ—ଧନୁ, ପରଶୁ—ଫାରସୀ, ଶିଶୁଶଶୀ—ଦ୍ୱିତୀୟା ଚନ୍ଦ୍ର ।

୫୭ । ନାସିକା—ନାକ, କୀର—ଶୁଆ, ତୂଣୀର ଶରମୁଣା, ଶୁଆଥଣ୍ଟ ଓ ତିଳଫୁଲ ସଙ୍ଗେ ନାକ ସମାନ, ଚିବୁକ—ଓଠ, ନାଗରଙ୍ଗ-ନାରଙ୍ଗ ।

୫୮ । କୁରଙ୍ଗ—ହରିଣ, ତୁରଙ୍ଗ—ଘୋଡ଼ା, ନୀଳଇନ୍ଦୀବର—ନୀଳକଇଁ, ନଳିନ—ପଦ୍ମ, ମାର୍ଗଣ—ଶର, ମଦର—ଗୁହାଣୀ ।

୬୦ । ପଲକପତନ—ପତା ପକାଇବା, ସଂଯତନରେ—ସାବଧାନରେ, ଦର୍ପକର-କନ୍ଦର୍ପର, ଦର୍ପକ କତୁରୀ-ଦମ୍ଭ ନାଶ କାରୀ ।

୬୧ । ବାଳଅରୁଣ—ସକାଳ ସୂର୍ଯ୍ୟ, ପ୍ରବାଳ—ପୋହଳା, ପ୍ରବଳ-ଅଧିକ, ବିମ୍ବ—କଇଁଚି କାକୁଡ଼ି, ହିଙ୍ଗୁଳ—ଲାଲ ।

୬୨ । ବନ୍ଧୁକ—ବଧୁଲିଫୁଲ, ସନ୍ଧ୍ୟାମିହିର—ଅସ୍ତବେଳର ସୂର୍ଯ୍ୟ ।

୬୩ । କାଶ—କାଇଁଶଫୁଲ, କର—କିରଣ, କୁମୁଦ—କଇଁ, ଡିଣ୍ଡିର—ଫେଣ, ଦର—ଶଙ୍ଖ, ହରଧର—କୈଳାସ ପର୍ବତ ।

୬୪ । କୁନ୍ଦ—କୁନ୍ଦଫୁଲ, କୋରକ—କଢ଼, କରକ—ଡାଳିମ୍ବମଞ୍ଜି, ପନ୍ତି—ସମସ୍ତ, ତଣ୍ଡୁଳ—ଚାଉଳ ।

୬୫ । ଝଳ—ଝଟକ, ନିଶାକର—ଚନ୍ଦ୍ର, ପଦ୍ମ, ଦର୍ପଣ, ଚନ୍ଦ୍ର—ଏକତନ୍ତ୍ରରେ ତା ମୁହଁରେ ଅଛି ।

ମଙ୍ଗଳକୁମ୍ଭ ଗ୍ରୀବାଗଳ । ଚରମପ୍ରଭା ନିର୍ଜ୍ଜଳ ନଦୀ ରମ୍ଭାଦଳ ଗେ ।୬୬।
କମ୍ବୁ ଚମ୍ପାମାଳରେଖି ମୃଣାଳବଲ୍ଲରୀ । କର କୋକନଦ କେନ୍ଦୁ ପଲ୍ଲବକୁ
ସରି ଯେ ।୬୭। ଗନ୍ଧଫଳୀ ଅଙ୍ଗୁଳି କରଜ ଜାତିକଳୀ । ବାଣୀ ବେଣୁ
ବୀଣା ପିକ ଶୁକ ଥିବ ଦଳି ଯେ ।୬୮। ଉରଜ କନ୍ଦୁକ ଚକ୍ରବାକ ସମ୍ପୁଟକ ।
କି ସ୍ୱୟଂଭୂ ଶମ୍ଭୁ ଡମ୍ଭୁ ଅମ୍ବୁଜ କୋରକ ଯେ ।୬୯। ସାତକୁମ୍ଭ କୁମ୍ଭ କୁମ୍ଭୀ
କୁମ୍ଭ ରମ୍ଭାକୋଷ । ମୃଦ୍ର ଛତ୍ର ବୋଇଲେ ସ୍ୟନ୍ଦନକଳଶ ଗୋ ।୭୦। କାମ
ନୃପର ଚୌପର ଉଲଟ ନିଶାଣ । କି ମଲ୍ଲସାଧନଚକ୍ରା ପ୍ରସ୍ତର ଘଟଣ
ଗୋ ।୭୧। କି ନାରକେଳ ଶ୍ରୀଫଳ ତାଳ ମାତୁଳଙ୍ଗ । ପୀଯୂଷକୋଷ କି ମେରୁ
ସରି ଗୁରୁ ତୁଙ୍ଗ ଯେ ।୭୨। ଉଦର ଲବଣ୍ୟସର ସାରସପତର । ତ୍ରିବଳୀ
ସୋପାନ କିବା ତ୍ରିବେଣୀ ଲହର ଗୋ ।୭୩। ରୋମଲତା ଧୂମଲତା, ଶଇ-
ବାଳ ଲତା । ନୀଳପିପିଲିକା ଅଳିଅଳକା ଶୋଭିତା ଯେ ।୭୪। ନୀଳମଣିମାଳା
ଭେଳା ମରକତଦଣ୍ଡ । ପଞ୍ଚିଶ ଡେଉର ଥୋଇଛନ୍ତି କି ଫୁଲକୋଦଣ୍ଡ ଗୋ ।୭୫।

---

୬୬ । କମ୍ବୁ—ଶଙ୍ଖ, ଗ୍ରୀବା—ବେକ, ଚରମପ୍ରଭା—ପିଠିର ଶୋଭା, ନିର୍ଜ୍ଜଳ ନଦୀ—ଶୁଖିଲା ନଈ, ରମ୍ଭାଦଳ—କଦଳୀ ପତ୍ର ।

୬୭ । ମୃଣାଳ ବଲ୍ଲରୀ—ପଦ୍ମନାଡ଼, କୋକନଦ—ଲାଲକଇଁ, ପଲ୍ଲବ—କଅଁଳ ପତ୍ର ।

୬୮ । ଗନ୍ଧଫଳୀ-ଚମ୍ପାକଢ଼ି, ଜାତିକଳୀ-ଜାଇଫୁଲକଢ଼ି, ବେଣୁ-ବାଂଶ ।

୬୯ । କନ୍ଦୁକ—ପେଣ୍ଡୁ, ସଂପୁଟକ-ଫରୁଆ, ସ୍ୱୟମ୍ଭୂ ଶମ୍ଭୁ—ମାଟି ତଳୁ ବାହାରିଥିବା ଶିବଲିଙ୍ଗ, ଅମ୍ବୁଜ କୋରକ—ପଦ୍ମକଢ଼ି ।

୭୦ । ସାତକୁମ୍ଭକୁମ୍ଭ—ସୁନାମାଠିଆ, କୁମ୍ଭିକୁମ୍ଭ—ହାତୀ ଉପରେ ଥିବା ମାଂସ ବା କଳଶ, ରମ୍ଭାକୋଷ—କଦଳୀ ଭଣ୍ଡା, ମୃଦ୍ର—ମୁଦ୍ରା, ଛତ୍ର—ଛତା, ସ୍ୟନ୍ଦନ—ରଥ ।

୭୧ । କାମନୃପ—କନ୍ଦର୍ପରାଜା, ନିଶାଣ—ନାଗରା, ମଲ୍ଲସାଧନ—ମାଲକୁସ୍ତି, ପ୍ରସ୍ତର—ପଥର, ଚୌପର—ବନ୍ଦୀଘର ।

୭୨ । ନାରକେଳ—ନଡ଼ିଆ, ଶ୍ରୀଫଳ—ବେଲ, ମାତୁଳଙ୍ଗ-ଟଭା, ପୀଯୂଷ-କୋଷ—ଅମୃତଭଣ୍ଡା, ଗୁରୁତୁଙ୍ଗ—ଅତି ଉଚ୍ଚ ।

୭୩ । ଲବଣ୍ୟସର-ଶୋଭାପୁଷ୍କରିଣୀ, ତ୍ରିବେଣୀ-ଗଙ୍ଗାଯମୁନା ସରସ୍ୱତୀ ସଙ୍ଗମ;

୭୪ । ରୋମଲତା-ପେଟର ଲୋମ, ଶଇବାଳ-ଶିଉଳି, ପିପିଲିକା-ପିମ୍ପୁଡ଼ି, ଅଳି ଅଳକା—ଭ୍ରମର ସବୁ, ସାରସ ପତର—ପଦ୍ମପତ୍ର ।

୭୫ । ପଞ୍ଚିଶ—ଖଣ୍ଡା, ଫୁଲକୋଦଣ୍ଡ—କନ୍ଦର୍ପ ।

ମଧ୍ୟ ସିଂହ ଉପରୁ ଠବର୍ଣ୍ଣ ଅଶୁ ଦବ । ଗୃରଅଙ୍କ କୁଶମୁଦ୍ରା ବିସର୍ଗର
ଛବି ଗୋ ।୭୬। ନାଭି ଛୋପ କୂପଗୁଣ ଢୋଟି ଜଳଭ୍ରମ । ନିତମ୍ବ
ସୁଧାଂଶୁ ବିମ୍ବ ରଥାଙ୍ଗକୁ ସମ ଗୋ । ୭୭ । ରତି ଯଜ୍ଞଅର୍ଘ୍ୟସ୍ଥାଳୀ କିବା
ପାନପତ୍ର । ସୁସଞ୍ଚ ସ୍ଫିଚ ଲକ୍ଷଣ ଯନ୍ତ୍ରତୁମ୍ବି ମାତ୍ର ଯେ । ୭୮ । ମଣ୍ଡପ
କଚ୍ଛପ ଯଜ୍ଞବେଦୀ ଭଦ୍ରାସନ । ହେମପାତ୍ରୀ କାମପୁର ଚତ୍ୱର ଜଘନ ଯେ ।୭୯।
ଗୁରୁ ଉରୁ ରମ୍ଭାତରୁ ଅର୍ଗଳ ପୁଳନ । କରଭ ଉଡ଼ୁପ ଜାନୁ ଗୁଳ୍ଫ
ବନ୍ଧନ ଗୋ ।୮୦। ଅଙ୍ଗୁଳି ଅଶୋକଦଳ ନଖ ଭାନୁମଣି । ପଦ୍ମ ସ୍ଥଳପଦ୍ମ
ତଳ ମନ୍ଦାରକୁ ଜିଣି ଗୋ । ୮୧ । ଗଉରୀ ଗଉରକାନ୍ତ ଦେଉଅଛୁ ଦଳ ।
ଶମ୍ପା ଚମ୍ପା ସମ୍ପାକ କୁସୁମ ହେମଫଳ ଗୋ ।୮୨। ଗଉରୀ ହରିଦ୍ରା ହରିତାଳ
ଷଣଫୁଲ । କେତକୀ କିଞ୍ଜକେଶର କେହୁ ହେବ ତୁଳ ଗୋ । ୮୩ ।
କୋମଳେ ତୁଳା ଲବଣୀ ଶିରୀଷ ଧିକ୍‌କାରୀ । ଧରଣୀରେ ପଦ ଦେବ
କରୀଗତି କରି ଗୋ ।୮୪। ବାସେ ଉତ୍ପଳ କସ୍ତୁରୀ ଅନ୍ୟ ମନୋରମା । କାହା
ଆଖି ଦେଖି ନାହିଁ ଏମନ୍ତ ସୁଷମା ଯେ । ୮୫ । ଏ ବିଧି ପ୍ରଶଂସିପୁରେ ରଖି
ଶୋଭାନିଧି । ଦମ୍ପତି କରନ୍ତି କେଳି ତହିଁ ନାନାବିଧି ଯେ । ୮୬ ।
ସିଂହଳ ଦ୍ୱୀପ ନୃପଜ ମନ୍ତ୍ରୀଙ୍କ ମେଲାଣି । କେତେଦିନ ଅନ୍ତେ ଯହିଁ
କଲେ ନପମଣି ଯେ । ୮୭ । ଗଉତମନାରୀର ଉତ୍ତମ ଗତିଦାୟୀ । ଉପଇନ୍ଦ୍ର
ବୀରବର ସେ ଶ୍ରୀରାମ ଧ୍ୟାୟୀ ଯେ । ୮୮ ।

---

୭୬ । ମଧ୍ୟ—ମଝି ବା ଅଣ୍ଟା । ନାଭିଛୋପ—ନାଭିଗାଳ ।
୭୭ । ଜଳଭ୍ରମ-ପାଣି ଭଉଁରୀ, ସୁଧାଂଶୁ-ଚନ୍ଦ୍ର, ରଥାଙ୍ଗ-ଚକ୍ର ବା ଚକ ।
୭୮ । ସୁସଞ୍ଚ—ସୁନ୍ଦର, ସ୍ଫିଚ—ପିଚୁ, ଯନ୍ତ୍ର ତୁମ୍ବୀ—ବୀଣାର ଲାଉ ତୁମ୍ବୀ ।
୭୯ । କଚ୍ଛପ—କଇଁଛ ।
୮୦ । ଅର୍ଗଳ—କାଠଖମ୍ବ, କରଭ—ହାତୀଛୁଆ, ଉଡ଼ୁପ—ଭେଳା ।
୮୧ । ଭାନୁମଣି—ସୂର୍ଯ୍ୟକାନ୍ତ ମଣି ।
୮୨ । ଗଉରୀ—ଗୋରୀ, ଗଉରକାନ୍ତ-ଗୋରା ତେଜ ବା ଜାଫ୍ରାନ କେଶର ତେଜ, ଶମ୍ପା-ବିଜୁଳି, ସମ୍ପାକକୁସୁମ-ସୁନାରୀ ଫୁଲ, ହେମ-ସୁନା ।
୮୩ । କିଞ୍ଜକେଶର—ପଦ୍ମକେଶର ।
୮୪ । କରୀ—ହାତୀ ।
୮୫ । ଉତ୍ପଳ-କଇଁ, ଏଠାରେ ନୀଳକଇଁ, ସୁଷମା-ସୁନ୍ଦର, ନୃପଜ-ରଜାପୁଅ ।
୮୮ । ଗଉତମ ନାରୀ—ଅହଲ୍ୟା । ଚନ୍ଦ୍ରଭାନୁ ବିବାହ ଶେଷରେ ଲବଣ୍ୟ-ବତୀଙ୍କ ସଙ୍ଗରେ ନେଇ ଆଡ଼ମ୍ବର ସହକାରେ ନିଜ ଦେଶକୁ ଆସିବା ସମୟରେ ସେ ସମୟର ସୌନ୍ଦର୍ଯ୍ୟ ବର୍ଣ୍ଣନା ଏ ଛାନ୍ଦରେ କରାଯାଇଛି ।

## ଷଟ୍‌ତ୍ରିଂଶ ଛାନ୍ଦ

( ନବଦମ୍ପତିଙ୍କର ଆନନ୍ଦ ବିହାର ବର୍ଣ୍ଣନ )

ରାଗ—ରାଜବିଜେ, ତାଳ ରୂପକ

ପ୍ରବେଶ ସୁରଭି ଘନରସମୟ ଜଡ଼ବର ସୁରଞ୍ଜନ । ସୁଖଦାତା ଘନସାର ପ୍ରକାଶରେ ହରିତାପପ୍ରଭଞ୍ଜନ ହେ ସାଧୁ ।୧। କମଳତୋଷଦାନକର ହୋଇଲା ଦିନକୁ ଦୁର୍ବହ କର । ସୁବାସସୁମନାରେ ସ୍ନେହ ଅଧିକ

---

## ଷଟ୍‌ତ୍ରିଂଶ ଛାନ୍ଦ

୧ । ସୁରଭି-ସୁବାସଯୁକ୍ତ, ଘନରସମୟ-ମେଘ ଅବା ରସପୂର୍ଣ୍ଣ, ଜଡ଼ବର—ବୃକ୍ଷମାନେ, ପର୍ବତମାନେ, ବେଶିଶୀତ । ସୁରଞ୍ଜନ-ରଞ୍ଜିତ, ଦାବାଗ୍ନି । ଘନସାର—କର୍ପୂର, ମେଘ । ହରିତାପ—(ହରିତ-ଆପ) ହରିତ—ଦିଗ, ଆପ—ଜଳ, ହରି—ବେଙ୍ଗ, ସୂର୍ଯ୍ୟ, ପ୍ରଭଞ୍ଜନ—ପବନ ଓ୍ଣା, ସାଧୁ—ପଣ୍ଡିତ ।

(କ) ଅବିରସର ( ବସନ୍ତ ) ଆନନ୍ଦ ଦାୟକ ସମୟ ଆସିଲା । କାରଣ, ଗଛମାନେ ନୂଆପତ୍ର ଫୁଲରେ ଶୋଭିତ ହେଲେ, କର୍ପୂର ଦେହକୁ ଭଲ ଲାଗିଲା, ଦିଗମାନେ ସୁନ୍ଦର ଦିଶିଲେ, ଜଳ ହେବାରୁ ପଦ୍ମ ଫୁଟିଲା, ପବନ ମଧ୍ୟ ବହିଲା ।

(ଖ) ଖରା ସମୟ ହେଲାପରି ଜଣାଗଲା, କାରଣ ବଉଳ ଗଛ ପତ୍ର ଫୁଲରେ ଶୋଭିତ ହେଲା, ପର୍ବତରେ ନିଆଁ ଲାଗିଲା, କର୍ପୂର ମଧ୍ୟ ଥଣ୍ଡା ଲାଗିଲା, ପବନ ଅରାମ ହେଲା ।

(ଗ) ବର୍ଷା ସମୟ ହେଲାପରି ଜଣାଗଲା, ମେଘ ବର୍ଷିଲା, ଗଛମାନେ ସତେଜ ହେଲେ, ବେଙ୍ଗଙ୍କର କଷ୍ଟଗଲା ।

(ଘ) ଶୀତ କାଳପରି ମଧ୍ୟ ଜଣାଗଲା, ବେଶି ଶୀତ ହେଲା, ଘୋଡ଼ି ହେବାକୁ ସୁଖ ଲାଗିଲା, କର୍ପୂର ମୁଖକୁ ପିତା ହେଲା ଓ ଅସୁଖ ଲାଗିଲା, ସୂର୍ଯ୍ୟଙ୍କର ତେଜ ମଧ୍ୟ କମିଲା ।

୨ । କମଳ—ପଦ୍ମ, ଜଳ, ସାରସପକ୍ଷୀ, ଅଗ୍ନି । ଦିନ—ଦିବସ, ଦୀନ—ଦୁଃଖୀ । (ଏଠାରେ ବକ୍ରୋକ୍ତି) ସୁବାସ ସୁମନା—ମାଳତୀ ଫୁଲ, ସୁନ୍ଦରୀ ସ୍ତ୍ରୀ, ସୁବାସ—ଉତ୍ତମ ଲୁଗା ।

(କ) ଏହି ବସନ୍ତ କାଳରେ ପଦ୍ମ ଆନନ୍ଦ ଦେବାରୁ ଦିନରେ ସାକ୍ଷାତ ହେବା ଯୋଗୁଁ ଦିନଯାକ ଦୁର୍ବହ କି କଷ୍ଟକର ହେଲା । ସମସ୍ତେ ବାସନା ଫୁଲକୁ ସ୍ନେହ କଲେ ।

ସଜ୍ଜଳଜନ ଆଦର । ୨ । କଳକଣ୍ଠ ରବ ଧ୍ୱନେ ଶୁଭଇ ଅନଙ୍ଗ ପ୍ରବଳ-
ଯହିଁ । ହେଲା ଶୋଭା ବନବିହାର ଯହିଁରେ ଅନେ ମନ ନ ରସଇ । ୩ ।
ପୁଷ୍କରେ ସାରଙ୍ଗ ଲୀଳା ପ୍ରକାଶିଲେ ନାୟିକା ବିଚ୍ଛେଦୀ ଛନ୍ତି । ଅଶାରେ

(ଖ) ଖରାଦିନ ହେତୁ (ଜଳକୁ ସମସ୍ତେ ଆଦର କଲେ । ଖରାହେତୁ ଦିନଯାକ
ବଡ଼ କଷ୍ଟ ହେଲା, ସମସ୍ତେ ସୁଗନ୍ଧ ଫୁଲମାଳ ପକାଇଲେ) ।

(ଗ) ବର୍ଷାହେତୁ-ସାରସ ପକ୍ଷୀ ଆନନ୍ଦ ହେଲା, ବିଚ୍ଛେଦୀମାନେ ବର୍ଷାଯୋଗୁ
ଦୁଃଖ ଅନୁଭବ କଲେ, ମାଳତୀ ଫୁଲକୁ ସମସ୍ତେ ଆଦର କଲେ ।

(ଘ) ଶୀତକାଳ ହେତୁ ଲୋକେ ନିଆଁକୁ ଭଲ ପାଇଲେ, ସୁନ୍ଦରୀ ସ୍ତ୍ରୀମାନଙ୍କୁ
ସମସ୍ତେ ନବାକୁ ଇଚ୍ଛା କଲେ ।

୩ । କଳକଣ୍ଠ-କୋଇଲି ଶବ୍ଦ; ହଂସ ପାରାବତ, ବନବିହାର-ବଣରେ କ୍ରୀଡ଼ା
କରିବା, ପାଣିରେ କ୍ରୀଡ଼ା କରିବା, ଘରେ ଘରେ କ୍ରୀଡ଼ା ହେଲା ।

(କ) ବସନ୍ତକାଳ ହେତୁ କୋଇଲି ବୋବାଇଲା, ତାହା ଗୃହଅଙ୍ଗେ
ଶୁଣି ଲୋକେ କାମରେ ଆତୁର ହୋଇ ଫୁଲ ବଗିଚାରେ ବିହାର କଲେ ।

(ଖ) ଖରାଦିନରେ ପାରାବତର ଶବ୍ଦ ଶୁଭିଲା, ଲୋକେ ଖରା ହେତୁ ଜଳ-
କେଳି କରି ସନ୍ତୋଷ ହେଲେ ।

(ଗ) ବର୍ଷାଦିନରେ ଗାୟକମାନେ ଗୀତ ବୋଲିବାକୁ ସମସ୍ତେ ଆନନ୍ଦ
ହେଲେ, ପାଣି ସବୁ ନଈରେ ପ୍ରବଳ ବେଗରେ ଯିବାକୁ ଲାଗିଲା ।

(ଘ) ଶୀତ ଦିନରେ ହଂସମାନେ ଶବ୍ଦ କରି ଆନନ୍ଦରେ ଜଳକ୍ରୀଡ଼ା କଲେ ।
ଏହା ଦେଖି ଲୋକମାନେ ଆନନ୍ଦ ହୋଇ ଘରେ ରହି କ୍ରୀଡ଼ାରେ
ମାତିଲେ ।

୪ । ପୁଷ୍କର—ମେଘ, ପଦ୍ମଫୁଲ, ପାଣି, ଆକାଶ । ସାରଙ୍ଗ—କୋଇଲି,
କର୍ପୂର, ଚାତକ ପକ୍ଷୀ, ହଂସ ।

(କ) ବସନ୍ତରେ ପଦ୍ମଫୁଲ ଫୁଟିବାରୁ ଶୋଭା ଦିଶିଲା, କୋଇଲି ବୋବାଇବାରୁ
ଆନନ୍ଦ ଜାତ ହେଲା, ସ୍ୱାମୀ ପାଖରେ ନ ଥିବା ସ୍ତ୍ରୀମାନେ ସ୍ୱାମୀ ଅସିବା
ଦିନକୁ ଗଣି କାନ୍ଥରେ ଗାର ପକାଇଲେ ।

(ଖ) ଗ୍ରୀଷ୍ମରେ ଲୋକସବୁ କର୍ପୂର ନାଇ ପାଣିରେ ପଡ଼ି ଗ୍ରୀଷ୍ମତାପ ହରିଲେ,
ବିଚ୍ଛେଦୀ ସ୍ତ୍ରୀମାନେ କାମ ଭୟରେ ନିଶିଦିନ ଗଣିଲେ ।

(ଗ) ବର୍ଷାହେତୁ ଆକାଶରେ ଚାତକ ପକ୍ଷୀ ଉଡ଼ି ଆନନ୍ଦ ହେଲେ, ମେଘମାନେ
ଆକାଶରେ କୁଟି ଖେଳିଲାପରି ବର୍ଷା କଲେ, ବିଚ୍ଛେଦୀମାନେ ସ୍ୱାମୀ ନ
ଥିବାରୁ ବସି ଦୁଃଖିତ ହୋଇ ଦିନ ଗଣିଲେ ।

ଦୃଷ୍ଟି ପକାଇ ସେ ଭିତରେ ଲେଖି ବସେ କଣ୍ଠ ଧନ । ୪ । ନଗରେ ବରହ୍ମୀ ଦୀପ୍ତମାନ ହେଲେ ସଂଯୋଗ ଜ୍ୱାଳାପ୍ରକାଶ । ଜନନସ୍ୱନଙ୍କୁ କଦାଶତ ଅଜ ଜୀମୂତ ନୋହିଲା ଦୃଶ୍ୟ । ୫ । ଏମନ୍ତ କାଳମାନଙ୍କେ ନୃପସୁତ ନୃପନନ୍ଦନୀର ସଙ୍ଗେ । ଗୃହନୀ ମଣୀର ଜଗତୀଅଙ୍କରେ ବିହାର କରଇ ରଙ୍ଗେ । ୬ । ଏକ ଲବ ନବପଲ୍ଲବଅଧରା ପାଶରୁ ତୁହାଇ ଭଲ । ଅଙ୍ଗ ସୁବାସ ଶୀତଳ ନିନ୍ଦା କରୁଥାଇ କର୍ପୂର ଚନ୍ଦନ । ୭ । ଅଧରପାନେ ଅମୃତ ଅଛି ଜାଣେ ସକଳ ମଧୁର ଯେଣ । ଭାବଇ ସ୍ୱୟମ୍ଭୁ ଶମ୍ଭୁ କମ୍ବୁକଣ୍ଠୀ ଉରଜ

---

(ଘ) ଶୀତରେ ପାଣିରେ ହଂସମାନେ ଆନନ୍ଦରେ ଖେଳିଲେ, ଏହା ଦେଖି ବିଚ୍ଛେଦୀ ସ୍ତ୍ରୀମାନେ ଏକାକୀ ଶୀତକଷ୍ଟ ଓ ସ୍ୱାମୀ କଷ୍ଟରେ ବଡ଼ ଦୁଃଖିତ ହୋଇ ଧନ ଗଣିଲେ ।

୫ । ନଗରେ—ପର୍ବତମାନଙ୍କରେ,ବୃକ୍ଷମାନଙ୍କରେ,ଲୋକ ବସତନଗରରେ । ବରହ୍ମୀ—ଗଛସବୁ, ବନଅଗ୍ନି, ମୟୂର, ଅଗ୍ନି । ସଂଯୋଗ—ଏକତ୍ର, ଜୀମୂତ—ମେଘ, ଜଂତ—ଚଳଦ ।

(କ) ବସନ୍ତରେ—ପର୍ବତମାନଙ୍କରେ ଥିବା ବୃକ୍ଷସବୁ ନୂଆଫୁଲ ପତ୍ରରେ ଭୂଷିତ ହେବାରୁ ସୁନ୍ଦର ଦିଶିଲେ, ସ୍ତ୍ରୀ ପୁରୁଷ ଏକତ୍ରରେ ଆନନ୍ଦରେ କ୍ରୀଡ଼ାକଲେ, ମେଘ ମଧ୍ୟ ଦେଖା ନ ଯିବାରୁ ଆକାଶ ନିର୍ମଳ ଦେଖାଗଲା ।

(ଖ) ଖରାରେ ପର୍ବତମାନଙ୍କର ଗଛକୁ ଗଛ ଘରସ ହୋଇ ଘଷି ହେବାରୁ ନିଆଁ ଚାହାରିଲା,ସେ ନିଆଁ ଏ ବଣରୁ ସେ ବଣକୁ ମାଡ଼ିବାର ଦେଖାଗଲା, ସୂର୍ଯ୍ୟଙ୍କ ତେଜହେତୁ ମେଘ ଆକାଶରେ ଦେଖାଗଲା ନାହିଁ ।

(ଗ) ବର୍ଷାରେ ବର୍ଷା ହେବାରୁ ପର୍ବତରେ ବା ଗ୍ରାମମାନଙ୍କରେ କଳାମେଘକୁ ଦେଖି ମୟୂରମାନେ ପୁଚ୍ଛଟେକି ନାଚିବାରୁ ଶୋଭା ଦିଶିଲା, ପର୍ବତ ସବୁ ମେଘରେ ଘୋଡ଼ାଇ ହୋଇଗଲେ ।

(ଘ) ଶୀତରେ ଲୋକମାନେ ଘରେ ଘରେ ନିଆଁ ଜାଳି ଶୀତକଷ୍ଟ ନିବାରଣ କଲେ, ଆକାଶ ନିର୍ମଳ ଦେଖାଗଲା,ସଂଯୋଗଜ୍ୱାଳା ମଧ୍ୟ ଅଧିକ ହେଲା ।

୬ । ଗୃହନୀ—ରଜତରତ୍ନ, ଚନ୍ଦ୍ରକାନ୍ତ, ଜଗତ ଅଙ୍କରେ—କୋଠାଘର ଭିତରେ ବା ସିଂହାସନ ଉପରେ ।

୭ । ନବପଲ୍ଲବ—ନୂଆ କଅଁଳ ପତ୍ର (ଲାଲ), ଅଧର—ଓଷ୍ଠ, ଅଙ୍ଗ—ଦେହ, ସୁବାସ-ବାସନା, ଶୀତଳତା-ଥଣ୍ଡା । ଏକଲବ—ଅଳକ୍ଷଣ ।

୮ । ସକଳ ମଧୁର—ସମସ୍ତପ୍ରକାର ମିଠା ଜିନିସ । ସ୍ୱୟମ୍ଭୁ—ନିଜ ଇଚ୍ଛାରେ ଉଠିଥିବା, ଶମ୍ଭୁ—ମହାଦେବ, କମ୍ବୁ—ଶଙ୍ଖ ।

ଅଭସ୍ତ ଦାମୀ ।୮। ସକଳ ଶୃଙ୍ଗରୀ ଉପରେ ଶୃଙ୍ଗରୀ କହଇ ଚତୁରୀ ବାଣୀ । ଅଣିମାଦ ସୁଖୁ ବଢ଼ ଭିବ ଗଣି ଚୁମ୍ବନ ଦେବାର ଅଣି ।୯। ଲେଖଇ ନୀବିମୋକ୍ଷକୁ ମୋକ୍ଷ ଭିବ ନାରଡେ ମନରେ ତାର । ଭାବେ ଦମ୍ପତ୍ତରୁ ବଡ଼ ସମ୍ପତ୍ତି କି ଭୋଗ କରେ ପୁରନ୍ଦର ।୧୦। ନୀରଦକୁନ୍ତଳ ପରାୟେ ଗୃମର ଗଢ଼ ପରାୟେ ଦ୍ୱିରଦ । ନୟନ ପରାୟ କୁରଙ୍ଗ କାହିଁକି ଭିବ ତରଙ୍ଗ ବିନୋଦ ।୧୧। ଜଘନ ପରାୟେ ସିଂହାସନ, ସ୍ତନ ପ୍ରାୟେ ପୂର୍ଣ୍ଣକୁମ୍ଭ କାହିଁ । ଚକ୍ରବର୍ତ୍ତୀଏ ସମାନେ ସୁଖ ଅଭିଷେକ କଲେ ପାଇ ନାହିଁ ।୧୨। ଏମନ୍ତ ସ୍ନେହୀ ଜାନୁ ବିନା ଅସନ କର ଜନ୍ତୁ ଅନ ଶଯ୍ୟା । ନ ଦେଇ ହରଲ ଦବା ରଜନୀକି ବଶ ଭିବ ଦୁଷ୍କରଜା ।୧୩। ଚକ୍ଷୁଲେଷଣୀ ଯେ ଅଞ୍ଚଳେ ବାନ୍ଧିଲ ତା ମନ ପ୍ରଭାଣି ପ୍ରେମ । ଥାଇ ଶୟନେ ନୟନେ ନ ଦେଖଇ ଅୟନେ ଅତି ଚରମ ।୧୪। ସୋପାନେ ଅବେହଣେ କରପଲ୍ଲବ ଯାଚି ଭାଙ୍ଗି ଦେଇ ପାନ । ରତାନ୍ତେ ବ୍ୟଜନେ ବିନ୍ଦୁ ଛଡ଼ାଇଲେ କରେ ଚନ୍ଦନ ଲେପନ ।୧୫। ପ୍ରାତରୁ ଉଠି ସୁମରଣ ଭିବନ୍ତି ଦୁହେଁ ଦୁହିଁଙ୍କର ନାମ । ମୁଖ ନିରେଖିଲ ଉତ୍ତାରୁ ଦେଖନ୍ତି ଦେବପଣ୍ଡ ଏଡ଼େ ପ୍ରେମ ।୧୬। ବାରନ୍ତି ନେତ୍ରକୁ ପଲକ ଥିବାକୁ ପୁଲକ ହେବାକୁ ଅଙ୍ଗେ । ରଙ୍ଗି ଦେବେ ନାହିଁ ତାର ବସନକୁ ଅଲିଙ୍ଗନ ଅନୁରାଗେ ।୧୭। ଶୟନ କାଳେ ବେନି ହୃଦ ମଧ୍ୟରେ ନ ଗଲେ ମୃଣାଳସୂତା । କୁସୁମକାଳେ ଏକପୁରେ ଥିଲେହେଁ ତନୁଅନ୍ତ-

୯ । ଅଣି—ଢଙ୍ଗ ଓ ଭଙ୍ଗୀ, ଅଣିମାଦ—ଅଷ୍ଟଐଶ୍ୱର୍ଯ୍ୟ ।
୧୦ । ନୀବିମୋକ୍ଷ—କଚ୍ଛ ଫିଟାଇବା, ପୁରନ୍ଦର—ଇନ୍ଦ୍ର ।
୧୧ । ନୀରଦ—ମେଘ, କୁନ୍ତଳ—ବାଳ, ଗୃମର—ଚଅଁର, ଦ୍ୱିରଦ-ହାତୀ ତରଙ୍ଗବିନୋଦ-ଡୋଳାଖୋଲାଇବା ଭଙ୍ଗୀ ।
୧୨ । ଜଘନ—ଜଙ୍ଘ, ଚକ୍ରବର୍ତ୍ତୀ—ଳକ୍ଷେରାଜାର ମଉଡ଼ମଣି ।
୧୩ । ଅସନ—ବସାଇବା, ଦୁଷ୍କରଜା-ନବଯୁବତୀ ।
୧୪ । ଚକ୍ଷୁଲେଷଣୀ—ଶୀଘ୍ର ଅଖି ଫେରାଇବା, ଶୋଇଲାବେଳେତ ପିଠି କରିବା ଦୂରେଥାଉ-ପରସ୍ପର ବିଦାୟ ବେଳେ ପିଠିକରି କେହି ଯାଆନ୍ତି ନାହିଁ ।
୧୫ । ସୋପାନ—ପାହାଚ, କରପଲ୍ଲବ—ହାତଭରା ।
୧୭ । ନେତ୍ର-ଅଖି,ପଲକ-ପତା,ପକାଇବା, ପୁଲକ-ଆନନ୍ଦ,ରୋମଟାଙ୍କୁରିବା
୧୮ । ମୃଣାଳସୂତା—ପଦ୍ମନାଡ଼ ଭିତରୁ ଯେଉଁ ସରୁସୂତା ବାହାରେ, କୁସୁମକାଳ—ଋତୁ ସମୟ, ତନୁ—ଦେହ ।

ବଳୁ ଶନ୍ତା ।୧୮। ନନ୍ଦନ୍ତ ଧାତାଙ୍କୁ ବଡ଼ ଦାରୁଣ ସେ ଏ କଥା କାହୁଁ ବିଗୁଣ । ତାହା ଚନ୍ଦ୍ରପରି ଭୋଗ ତ କରଇ କୁମୁଦ ଚନ୍ଦ୍ରମା ପରି । ୧୯ । ନିଶାପତି ଦୀପକେଶାତ ଯହିଁ ଦୂତୀ ହୋଇ ଛଡ଼ାଇ ସଙ୍କୋଚ । ପଞ୍ଚନାରାଚ ପାଞ୍ଚ ତାଙ୍କ ନ ପାଇ ଦୁହେଁ ଦୁହିଁଙ୍କ କବଚ । ୨୦ । କ୍ଷୀର ନୀର ପରି ଅଭେଦ ପୀରତି ବେନି ତନୁ ଏକ ପ୍ରାଣ । ଦର୍ପଣ କର ହୃଦରେ ପ୍ରତିବିମ୍ବେ ମନେ କହ କଥା ପୁଣ । ୨୧ । ନାଗବଲ୍ଲୀଦଳ ବେନିଭାଗ କରି ଭୁଞ୍ଜନ୍ତି ରଞ୍ଜନ୍ତି ଚିତ୍ତ । ବଚନ ପ୍ରତିପଦରେ ରସଗର୍ଭ ହୋଇଥାଇ ଯେ ଇଙ୍ଗିତ ।୨୨। ମଧୁ ମାଧବରେ ଜଳଯନ୍ତ୍ରପୁରେ ନଳଦବାଡ଼ ରଚନ । ଅତର ଚନ୍ଦନ ଚୁଆରେ ପିଚକା କରନ୍ତି ଭାବେ ସେଚନ । ୨୩ । କୁସୁମଶେଯେ ତୈତ୍ରକରେ ଶୟନ ଏଣୁ ନିଦ୍ରା ନ ଅସଇ । ଯେଣୁ ମନ ଶଙ୍କା ବିବସନ ପାଇଁ ବେନି ଜନଙ୍କର ଥାଇ ।୨୪। ବରଷାରେ ବିଦ୍ୟୁ ଟିଟି ଟିଟି କେକାନାଟକୁ ଗୃହାନ୍ତି ସୁଖେ । ଅତି ତାମସ ଦିବସ ନିଶାମଣି ଋତୁକୁ ପ୍ରଶଂସି ମୁଖେ । ୨୫ । ରଖି ନ ପାରନ୍ତି ବିଧିନିଷେଧକୁ ଭେକ ଡାକୁଙ୍କ ଶବଦ । ଶୁଣନ୍ତି ମଣନ୍ତି କାହୁଁ ଭିଆଇଲା ଅନଙ୍ଗ ଡେଙ୍ଗୀ ବାଦ୍ୟ । ୨୬ । ଶରଦ ଋତୁରେ ଚତ୍ୱରେ ଭ୍ରମନ୍ତି କର ଧରାଧରି ହୋଇ । ମାଳତୀ ମଧୁପ ପ୍ରୀତିକି ଲଭନ୍ତି ଏହି ନାମ ଛଳ ଦେଇ । ୨୭ । ନିଜ ଅନୁରାଗ ଅଧିକେ ଦେଖାଇ ସେ

---

୧୯ । ତାରି ଚନ୍ଦ୍ର ଏକତ ଥାନ୍ତି ସ୍ନେହଥାଏ କିନ୍ତୁ ଚନ୍ଦ୍ର ଦୂରରେ ଥାଇ ପରସ୍ପର ଦେଖା ହେତୁ ସ୍ନେହଥାଏ ସେହିପରି—

୨୦ । ଦୂତୀ—ଯେ ସ୍ତ୍ରୀ ପୁରୁଷ ମିଳାଇ ନାନାଧ କଥା କହି ଭୟ ଛଡ଼ାଇ ଆନନ୍ଦ ଦିଅନ୍ତି ସେହିପରି ଦୈତ୍ର ଦୂତୀପରି ଆଲୁଅ ଦେବାରୁ ଆନନ୍ଦରେ କ୍ରୀଡ଼ା କରନ୍ତି, ପଞ୍ଚନାରାଚ କନ୍ଦର୍ପ, କବଚ-ସାଞ୍ଜୁ ।

୨୧ । ଆରସିରେତ ମୁହଁ ଦେଖାଯାଏ, ମାତ୍ର ଏ ଦୁହେଁ ପରସ୍ପର ମନକୁ ଦେଖନ୍ତି

୨୨ । ନାଗବଲ୍ଲୀଦଳ-ପାନପତ୍ର, ରସଗର୍ଭ ରସପୂର୍ଣ୍ଣ ।

୨୩ । ମଧୁ—ବସନ୍ତ ସମୟ, ମାଧବ—ଗ୍ରୀଷ୍ମକାଳ, ନଳଦ—ବେଣାଚେର ବାଡ଼-ପରଦା, ଜଳଯନ୍ତ୍ରପୁରେ-ପାଣି ସିଞ୍ଚିତ ଘରେ ।

୨୪ । କୁସୁମ-ଫୁଲ, କରେ—କରଣରେ, ବିବସନ-ଲଙ୍ଗଳା, ଶଙ୍କା-ଭୟ ।

୨୫ । ବିଦ୍ୟୁ—ବିଜୁଳି, ଟିଟିକ-ଟିଟିକବା, କେକୀ—ମୟୂର, ଦିବସ-ଦିନ । ତମସ—ଅନ୍ଧାର, ନିଶା—ରାତି ।

୨୬ । ବିଧି ନିଷେଧ—ନିୟମ ନଥିବା, ଭେକ—ବେଙ୍ଗ, ଅନଙ୍ଗ-କନ୍ଦର୍ପ ।

୨୭ । ସ୍ତ୍ରୀ ପୁରୁଷକୁ ଭ୍ରମର ଓ ପୁରୁଷ ସ୍ତ୍ରୀ କୁ ମାଳତୀ ବୋଲି ଡାକନ୍ତି—

ତା'ଳେ ସମାରତନ । ସବୁଠାରେ ଜୀବଧବ ପାଇଁ ପ୍ରିୟା ତେଜଇ ସିନା ଜୀବନ । ୨୮ । ବଡ଼ୁବ ତରୁଣ ବୋଲଇ ଦାରୁଣ ଜୀଅଁଇ ସିନା ରେ ସଖି । ତାମ ବିନା ରତ ଚନ୍ଦ୍ରବନ୍ତ ସୁତ ନ ପାଇଲେ ଜୀବ ରଖି । ୨୯ । ହେମ ଶିଖିରେ ଅଗୁରୁଧୂପ ଧୂଏରେ କର ହସନ୍ତୀ ଜ୍ୱଳାତ । ନାଶାରେ ନାଶାରେ ଅଦର ତେଜନ୍ତ ଚନ୍ଦ୍ର ଜ୍ୟୋତ୍ସ୍ନାରୁ ସତ । ୩୦ । ଭାବନ୍ତ କେଣ ଯେ ଧନ୍ୟ ଦମ୍ପତିଙ୍କ ବିପତ୍ତି ନାହିଁ ଏ କାଳେ । ବହୁତ ବାସ ବାରଣର ସମ୍ପତ୍ତି ତରୁ ତରୁଣୀର ବଳେ । ୩୧ । ଭାବୁଥିବେ ଦିନ ବିରହୀ ଅମ୍ଭଙ୍କ ଜଳ ସ୍ଥଳେ ଗତି ନାହିଁ । ବସ୍ତ୍ର ମକର ବିଷମ ଘାତ ସହି ଜୀଇବା କେମନ୍ତ ହୋଇ । ୩୨ । ଏ ବିଧି ଭାବ ଜନ୍ତୁ ନାନା ବିବିଧ ବିଳାସ ପ୍ରକାଶ ଯେତେ । ପଛେ ତ ପଞ୍ଚମ୍ଭେ ବ୍ୟକ୍ତ ହୋଇବ ଶୁଣିବ ପୁଣି ପଣ୍ଡିତେ । ୩୩ । କହିବା ଦିନଙ୍କ ରସ ରହସ୍ୟକୁ ଶୁଣ ଦେଇଣ ମନ । ପଶା ଖେଳିବା କି ବାଳୀ ବୋଲ୍‌ବାକୁ ଛଳିଲ ପୁଂସ ରତନ । ୩୪ । କର ଚରଣ ପାଲ ଛକ ଚଉକ ସ୍ତନ ସାରେ ଶୋଭା ପାଇ । ବହୁ୍ୟବିଜିତ କାନ୍ତ ଦାନ ଯହିଁରେ କି ଖେଳ ଖେଳିବା ଅଜ । ୩୫ । କେଣ ଜନରୁ ଜଣେହେଁ ନ ହାରିବା ହାରିବ କୁସୁମଶର । ମନେ ବିଗୁର ତ ଏତେକେ ସୁଖ ସ୍ଥିତି ଆନ କାଳ କହିବାର । ୩୬ । ଶୁଣି ରସିକା ରମଣୀ ଯେ ବୋଇଲ ଏ ଭଙ୍ଗିକି କେ ପାରିବ । ତାହିଁ କଥା ନେଇ ତାହିଁ ଲଗାଇବ ତହିଁ କି ଜିତିଲ ଥିବ । ୩୭ । ଏ ସମୟରେ ବୀରମାତା ବଧୂକୁ ଦେଖିବା ପାଇଁ ଗଲାଇ । ପ୍ରିୟାପ୍ରତିପଟ୍ଟ ପେଡ଼ିରେ ଥିଲା ତା ଫେଡ଼ି ପ୍ରତ୍ୟକ୍ଷ ଦେଖଇ । ୩୮ । ଏହି ସମୟରେ ଚରମେ ଭରମବରନା ପ୍ରବେଶ ହେଲା । ପୁଣି କେ ସଦୃଶା ହେଲଣି ସପତ୍ନୀ ହେବା ଶଙ୍କାକୁ ଘେନିଲା । ୩୯ । ସ୍ୱଭାବେ

୩୦ । ହସନ୍ତୀ—ନାଅଁ ଉଦ୍ଦେଇ, ନାଶି-ସୂତ, ନାଶାର-ଶଯ୍ୟା ।
୩୧ । ତରୁ—ସ୍ଥିତ ବା ବକ୍ଷ ।
୩୨ । (ଶୀତଦିନ, ବସ୍ତ୍ର ମକରମାସ) ଏ ଶୀତ ତ ବସ୍ତ୍ର ମକରପର କଷ୍ଟଦେବ ।
୩୫ । ଗୋଡ଼ ଓ ହାତ, ପଶାପାଲି, ଗୃହପାଲି, ଚଉକ ତଳକ ହେଲା ଛକ, କୁଚ ହେଲା ସାର, ଦେହ ହେଲା ଦାନ ।
୩୬ । କୁସୁମଶର—କନ୍ଦର୍ପ, ପଶାରେ ଯେବେ ହାରେ, ଏ ପଶାରେ କନ୍ଦର୍ପ ହାରିଯିବ ।
୩୮ । ବୀରମାତା-ଲବଣ୍ୟବତୀ ଶାଶୁ, ପ୍ରିୟାପ୍ରତିପଟ୍ଟ-ଲବଣ୍ୟବତୀର ଚିତ୍ରପଟ୍ଟ
୩୯ । ଭରମ ବରନା—ସୁନାଗୋରୀ ।

ଚୋପନା ଚନ୍ଦ୍ରମାଲପନା ନ ମଣିଲ୍ଲ ନିଜ ସ୍ନେହ । ଜଳେ ପ୍ରତିବିମ୍ବ ନିରେଖି
କେଶରୀ ଯେମନ୍ତ କଲବ କୋହ । ୪୦ । ମାନ ଅରମ୍ଭ ରମ୍ଭୋରୁ କଲା ଥାଇଁ
ମଦନ ପରା ବିପକ୍ଷ । କହେ ଉପେନ୍ଦ୍ର ଭଞ୍ଜ ବୀରବର ରାମଚନ୍ଦ୍ର ରକ୍ଷାକକ୍ଷ ।୪୧।

---

## ସପ୍ତତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ ମାନ କରନ୍ତେ ଚନ୍ଦ୍ରଭାନୁର ଗୃହୁ )

ରାଗ—କାଳି

ଅତି କାତରେ ନିଜ କାନ୍ତରେ ଶଙ୍କା ଚିତ୍ତରେ ଲଭି ।
କୋପ ଅଙ୍କୁର ମଣ୍ଡି ମୁକୁର କଲା ଚିକୁର ଶୋଭି ।
ରତିଅବେଶୀ ରତନବେଶୀ ଗଣ୍ଡେ ନିବେଶି କର ।
ନୟନନୀରରୁହରୁ ନୀର ଢାଳିଲା ନିରନ୍ତର । ୧ ।

---

୪୦ । ଚୋପନା—ରାଗୀ, ଲପନ—ମୁହଁ, କେଶରୀ—ସିଂହ, ପ୍ରତିବିମ୍ବ—ଛାଇ ।

୪୧ । ରମ୍ଭୋରୁ—ସୁନ୍ଦରୀ, ବିପକ୍ଷ—ଶତ୍ରୁ ।
ଋତୁଭେଦ ନେଇ ସ୍ତ୍ରୀ ପୁରୁଷ ଉଭୟେ ହାସ ପରିହାସ ଶୃଙ୍ଗାରାଦି ବିଷୟରେ ଲାବଣ୍ୟବତୀର ଚନ୍ଦ୍ରଭାନୁଙ୍କୁ ଅଭିମାନ କରିବା ।

---

### ସପ୍ତତ୍ରିଂଶ ଛାନ୍ଦ

୧ । କାତରେ—ବିକଳରେ, କାନ୍ତରେ—ସ୍ୱାମୀଠାରେ, ଶଙ୍କା—ଭୟ, ଏଠାରେ ସଉତୁଣୀର ଭୟ, କୋପ—ରାଗ, ମଣ୍ଡି —ଛଳ, ମୁକୁର—ଦର୍ପଣ, ଚିକୁରଶୋଭୀ-ବାଳଶୋଭିନୀ (ଲାବଣ୍ୟବତୀ), ରତିଅବେଶୀ-ରତିକୁଶଳା, ରତନବେଶୀ—ନାନାଦି ରତ୍ନ ଅଳଙ୍କାରରେ ଭୂଷିତା ( ଲାବଣ୍ୟବତୀ ), ନୟନନୀରରୁହ—ନେତ୍ରପଦ୍ମ, ନୀର—ଲୁହ, ନିରନ୍ତର—ସର୍ବଦା ।

ଶ୍ୱାସ ପ୍ରଖରେ ବହେ ଦୁଃଖରେ ଧରା ନଖରେ ଖରେ ।
ଓଷ୍ଠ କମ୍ପନ ହାସ ସ୍ୱପନ ମ୍ଳାନଲପନ ଧରେ ।
ଦେଖି ନାଗର ଅସି ଅଗର ଅନୁରାଗରେ ବଶେ ।
ଅତ ଅରତ ହୋଇ ପୀରତଯୁକ୍ତ ଭାରତୀ ଭାଷେ । ୨ ।
ତୋର ସୁଗତ ଅନଙ୍ଗଶତ ମାନ ସଞ୍ଚିତ ଯେଣୁ ।
ରେ ସର୍ବଭୂତ ମୋହ୍ନ ଅଦ୍ଭୁତ ମାନସମ୍ଭୂତ ଏଣୁ ।
ଉଦେ କମଳକୋଳେ କମଳଧର ନିର୍ମଳ ପ୍ରୀତ ।
ଧୈର୍ଯ୍ୟଭଞ୍ଜନ ମୋଦରଞ୍ଜନ କରେ ଖଞ୍ଜନ କାନ୍ତ ।୩।
ବସନ୍ତେ କଳକଣ୍ଠ ବିକଳ ଏ କି ସକଳମତେ ।
ଶାଣୁ ବିରାଜମାନ ନାରାଜ ମଦନରାଜ ହାତେ ।
କେ ତୋ ସମାନ କାହାକୁ ମାନ ଘେନ ତୋ ମାନସର ।
ତୋ ବିନା ଗତ ନାହିଁ ଜଗତୀ ମଧ୍ୟେ ସଗତ ମୋର । ୪ ।
ମୋ ନିବେଦନା ଘେନ ବେଦନା ଚନ୍ଦ୍ରବଦନା ହର ।
କର ବିକାଶ କୁସୁମକାଶ ହାସ ପ୍ରକାଶ କର ।
ରେ ବାଣୀଭାଷି ବାଣୀ ନ ଭାଷି ବସିଲେ ଭାସିଗଲି ।
କୋଳରେ ହାର କରୁ ବାହାର ଏବେ କାହାର ହେଲି ।୫।

---

୨ । ଶ୍ୱାସ—ନିଶ୍ୱାସ, ପ୍ରଖର—ଶୀଘ୍ର, ଧରା—ପୃଥିବୀ, ହାସ ସ୍ୱପନ—ହସ ସପନ ପରି ହେଲା, ମ୍ଳାନ—ମଳିଅ, ବିମର୍ଷ, ଲପନ-ମୁହଁ, ଅନୁରାଗ-ସ୍ନେହ, ଅରତ—ଉଳ୍ଲଣ୍ଠିତ, ପୀରତଯୁକ୍ତ—ସ୍ନେହପୂର୍ଣ୍ଣ, ଭାରତୀ—ବିନୟ, କଥା, ଭାଷେ—କହେ ।

୩ । ସର୍ବଭୂତ ମୋହ୍ନ—ସମସ୍ତ ପ୍ରାଣୀଙ୍କ ମୋହକାରିଣୀ, ଅଦ୍ଭୁତ-ଆଶ୍ଚର୍ଯ୍ୟ, ମାନ—ଅଭିମାନ, ଉଦେ—ପ୍ରକାଶେ, କମଳ—ପଦ୍ମ, କୋଳେ—ଭିତରେ, କମଳଧର-ସୂର୍ଯ୍ୟ, ଧୈର୍ଯ୍ୟଭଞ୍ଜନ—ଦମ୍ଭହତ, ଖଞ୍ଜନକାନ୍ତ—ଖଞ୍ଜନ ସଦୃଶ ଆଖି, ମୋଦରଞ୍ଜନ—ମୋଦପରି ପାଣିଚୋପା ।

୪ । କଳକଣ୍ଠ—କୋଇଲି, ଜଗତୀ ମଧ୍ୟେ—ସଂସାର ମଧ୍ୟରେ ।

୫ । ନିବେଦନ—ବିନୟ, ବେଦନା-ଦୁଃଖ, ବିକାଶ-ପ୍ରକାଶ, କାଶହାସ-କାଶତଣ୍ଡି ଫୁଲପରି ହାସ, ବାଣୀ—କଥା, କୋଳରେ ଯାହାକୁ ହାର ପରି କରିଥିଲ ଏବେ ତାକୁ ବାହାର କଲେ କାହାର ହେବ ?

ରସଜଦୟୀ ମୃଦୁ ହୃଦୟୀ ପର ତୋ ଦୟାବାର ।
ଜରୁ ନିବାଶ ରବିଗଗ୍ରସ ମୋତେ ପରସ କର ।
ମୁଁ ଯେ ସ୍ତବକସ୍ତନା ସେବକ ପାଦଯାବକ ପର ।
ଏବେ ଖଣ୍ଡ ନା ସୁଖ, ଦଣ୍ଡନା ମଣ୍ଡା ମଣ୍ଡନା ଗୋର ।୬।
ସବୁ ଭରସା ତୁ ମୋର ରସାଳସା ସାରସାନନା ।
ନୋହେ ଏ ମତ୍ତକାଶିନୀ ମତ ମୁଁ ତୋ କେମନ୍ତ ଅନା ।
ଗୃରଦ୍ୱିଗୁଣ ମଙ୍ଗଳାଗୁଣ ଅଙ୍କ କି ଗୁଣବନ୍ତୀ ।
ଦରଦ୍ରଧନ ତୁ ମୋର ଧନ କର ନିଧନ ଭ୍ରାନ୍ତି । ୭ ।
ଭଜୁଛୁ ବିନାଶକୁ ନବୀନା ମୁହିଁ ତ ବିନା ଦୋଷେ ।
ଦଣ୍ଡି ଯାହାକୁ ମଣ୍ଡି ତାହାକୁ ମୃଦୁଦେହାକୁ ଘୋଷେ ।
ଧରୁଛୁ ପଦ ନାଶ ବିପଦ ଇନ୍ଦ୍ର ସମ୍ପଦ ଦତ୍ତ ।
ରତ ରମଣୀ ରସିକ ମଣି ନାସିକାମଣି ନୃତ୍ୟ । ୮ ।
ଲେଖି ମକରୀ ସୁବେଣୀ କର ଢଅଇ କରଗତ ।
ଅଛୁ ରସନା ଅନେ ରସନା ହୁଅ ପ୍ରସନ୍ନମତ ।
ନୃପନନ୍ଦନା ଜଗତ୍‌ବନ୍ଦନା ଭଙ୍ଗ ଚନ୍ଦନାଙ୍କିତେ ।
ନୋହେ ଭୂଷଣ ରୋଷେ ଦୂଷଣ ଦେଇ କଷଣ କେତେ । ୯ ।

---

୬ । ମୃଦୁ ହୃଦୟ—କୋମଳମନା, ଦୟାବାର—ଦୟାର ଜଳ, ରବିଗଗ୍ରସ—ସୂର୍ଯ୍ୟ ତାପରେ ଅସ୍ଥିର, ଏଠାରେ କନ୍ଦର୍ପର ଗ୍ରାସ, ପରସ—ଦୁଃଖ, ସ୍ତବକସ୍ତନା—ବର୍ତ୍ତୁଳ ସ୍ତନା, ସେବକ—ଗୁଙ୍କର, ପାଦଯାବକ—ଗୋଡ଼ର ଅଳତା ।

୭ । ସାରସାନନା—(ସାରସ+ଆନନା)ସାରସ—ପଦ୍ମ, ଅନନ—ମୁଖ, ମତ୍ତକାଶିନୀ—ସୁନ୍ଦରୀ, ଗୃରଦ୍‌ଗୁଣ—ଅଠ, ଅଠମଙ୍ଗଳାରେ ପୁରୁଷ ସ୍ତ୍ରୀର ଦେଖାଦେଖି ମନା । କରନିଧନ ଭ୍ରାନ୍ତି—ମରିବାକୁ ଭୟ କରିବା, ଅର୍ଥାତ୍ ମୁଁ ତୋ ଦୟା ବିନା ମରିବି ।

୮ । ବିନାଶକୁ—ମରିବାକୁ, ଦଣ୍ଡି—ଦଣ୍ଡଦେବା, ମଣ୍ଡି—କ୍ଷମାଦେବା, ମୃଦୁଦେହୀ—କୋମଳାଙ୍ଗୀ, ରସିକାମଣି—ରସିକାଶ୍ରେଷ୍ଠ, ରମଣୀ—ସୁନ୍ଦରୀ ।

୯ । ମକରୀ—ଗାଲରେ ମଗର ଲେଖିବା, ସୁବେଣୀ—ଉତ୍ତମବେଣୀ ପକାଇ ଦେବା, କରଗତ—ଗଜଗମନା, ରସନା—ଜିଭ, ରସ—ମଜ୍ଜ, ଭୂଷଣ—ଭରତ, ଦୂଷଣ—ମନ୍ଦ, ନିନ୍ଦା, କଷଣ—ଦୁଃଖ ।

ସରସଲତା ପାଦେ ଅଳତା ମଞ୍ଜୁଲଲତା କୁଚେ ।
ଅରେ ହେମାଙ୍ଗି ସୁଜଙ୍ଘମାଙ୍ଗି ଥିଲି ଯେ ମାଗି ତୋତେ ।
ମୋର ବର୍ତ୍ତିନ ସୁଧା ଯତନ ମହ୍ନିପତନ କରୁ ।
ହେଠଅଧରୁ କେଉଁ କୋଧରୁ ଚଢେ ନ ଧଂଲୁ ଖିଲୁ । ୧୦ ।
ନ କର ଦଣ୍ଡ ଝଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ ।
ବାହୁପାଶରେ ବାନ୍ଧ ପାଶରେ ରଖ ତୋଷରେ ତୁହି ।
କୁଚମନ୍ଦର ଠେଁସି ହୃଦର ଦଅ ମୋ ଦର ନାହିଁ ।
ନଖକରତ ତହିଁ କରତ ତନୁ ନିରତ ସହି । ୧୧ ।
ଦୁଃଖ ସିହାଣି ବକଗୃହାଣୀ ଖଡଗେ ହାଣି ପକା ।
ଭାବେ ନିଉନ ନୋହେ ମୁଁ ଭନ୍ଦ କୁହ ମଜନା ଏକା ।
ପରେ ପ୍ରାଭବ ଦଥାଇ ଭବ ମଧ୍ୟରେ ଭବମୋହି ।
ହେବ କୀରତ ନନ୍ଦତ ରତିରମ୍ୟସୁରତ ସହି । ୧୨ ।
ସେବେ ଅଳପଦନ୍ତୁ କଳପ ତୁ ଯେ କଳପତରୁ ।
ପୂର୍ଣ୍ଣ ନ କର ବାଞ୍ଛାନିକର ମୋର କି କରମରୁ ।
ରବାକରଣେ ଥିଲେ ବାରଣେ ଅହା କାରଣେ ଭଟବ ।
ନାହିଁ ଜଗତେ କେହି ଯୁଗତେ ତୋ କନ୍ତୁ ଗତେ ଏବେ ।୧୩।
ରେ ପ୍ରେମକଳା କୁଟିଳ କଳା ତୋ କେଶକଳାପର ।
ଯହୁଁ ରହିଲେ ନିନ୍ଦା ନୋହିଲେ ସେ ଯେ ମୋହିଲେ ସୁର ।
ମନ୍ଦ କଦର ହାସେ ସୁନ୍ଦର ତୋହ ଅଦରବଶେ ।
ମୁଁ କି ଅସାର ଏଥୁଁ ସଂସାର-ସ୍ୱନ୍ଦସି ସାର ଘୋଷେ । ୧୪ ।

---

୧୦ । ସୁରସଲତା—ସୁନ୍ଦରୀ, ମଞ୍ଜୁଲଲତା-ସୁନ୍ଦରଲଟା, ହେମାଙ୍ଗି—ସୁନାଦେହୀ, ବର୍ତ୍ତିନ—ପାଉଣା, ମହ୍ନିପତନ—ଛଳେ ପକାଇବା । ହେଠ—ତଳକୁ ।

୧୧ । ଦଣ୍ଡ—ସମସ୍ତ, ଦଣ୍ଡ—କଷ୍ଟ, ସଦା, ଅଦଣ୍ଡ—ଇଷ୍ଟ ସନ୍ତୋଷ, ଦର—ଭୟ, କରତ—ଚିରିବା ଅସ୍ତ୍ର, ତନୁ—ଦେହ ।

୧୨ । ଦୁଃଖ—କଷ୍ଟ; ବକଗୃହାଁଣୀ—ବକେଇ ଗୃହିବା, ଭାବେ—ଅଳାପରେ, ମନେକରେ, ନିଉନ—ଊଣା, ଭବ—ସଂସାର, ଭବମୋହୀ—ମହାଦେବ ମୋହକାରଣୀ, କୀରତ—ଯଶ ।

୧୩ । ଅଳପଦନ୍ତୁ—ଫିଲ୍ପଦନ୍ତୁ, କଳପ—ମନେକର ।

୧୪ । କେଶକଳାପ—ବାଳସବୁ, ସୁର—ଦେବତା ।

ରାମାରତନେ ପ୍ରେମରତନେ ହୋଇ ଯତନେ ବନ୍ଧ ।
ଦୁଃଖ ପାଇଲି କାହିଁ ନୋହିଲି ତ୍ୟାଜ୍ୟ ହୋଇଲି ନାଥ ।
କୃପା କୃପଣ ଏ ଚନ୍ଦ୍ରପଣ ଶୋଭା ଦର୍ପଣମୁଖ ।
ପକାଇ ନ ଦେ ସନ୍ତାପନଦେ ପିକନିନାଦେ ସଖି । ୧୫ ।
ବର୍ତ୍ତୁଳଭିନ୍ନ ତୋଳା ପିତୁଳା ମୋର କି ତୁଳା ତୋତେ ।
ଏହି ଭୁବନ ମୁଁ ପିଣ୍ଡ ବନଜାକ୍ଷି ଜୀବନ ସତେ ।
ହେବ ମୁଁ ବଳା ପ୍ରାୟ ଅବଳା ସ୍ନେହ ପ୍ରବଳା ଯେଣ ।
ଛନ୍ଦ ଚରଣେ ତ୍ୟକ୍ତକରଣେ ନାହିଁ ଶରଣେ ଆନ । ୧୬ ।
ଜଳଦରସେ ଗୃତକ ରସେ ସେ ନ ବରଷେ ଯେବେ ।
ଯାଇ ଆଶାରେ ନଦୀକାସାରେ ମହାତୃଷାରେ କେବେ ।
ନ ପାଇ ମଧୁ ଭୁଲନ୍ତି ମଧୁକର କି ମଧୁରକୁ ।
ଡରେ ମୁଁ ବିଧୁ କୁମୁଦ ବଧୂହାସି ତୋ ବିଧୁରକୁ । ୧୭ ।
ଚନ୍ଦ୍ର ଯାମିନୀ ଦେଖି ଦାମିନୀକାନ୍ତି କାମିନୀବନ୍ଧୁ ।
ନୋହୁ ଫୂରୁଣା କପାଁ ଅରୁଣାଧର କରୁଣାସିନ୍ଧୁ ।
କେଳିଆରାମ କି ଅଭିରାମ ଅନା ରେ ରାମଦୃଶା ।
ଆଜ ଶୋକର ବଶେ ନ କର ଚକ୍ରବାକର ଦଶା । ୧୮ ।

---

୧୫ । ତ୍ୟାଜ୍ୟ—ଛାଡ଼ିବା, କୃପା—ଦୟା, କୃପଣ—ଲୋଭୀ, ସନ୍ତାପନଦେ—ଦୁଃଖ ନଦୀରେ, ପିକ ନିନାଦେ—କୋଇଲି ବଚନେ ।

୧୬ । ବର୍ତ୍ତୁଳଭିନ୍ନ—ଗୋଲକଙ୍ଘୀ, ତୁଳା—ସମାନ, ବନଜାକ୍ଷୀ—ବନଜ+ଅକ୍ଷି, ବନଜ—ପଦ୍ମ, ତ୍ୟକ୍ତ କରଣେ—ଛାଡ଼ିବାରେ ।

୧୭ । ଜଳଦରସେ-ବର୍ଷା ଜଳରେ, ନଦୀ—ନଈ, କାସାରେ—ପୋଖରୀରେ ମଧୁ—ମଦ୍ଧୁ, ମଧୁକର—ଭ୍ରମର, ବିଧୁ—ଚନ୍ଦ୍ର, କୁମୁଦ—କଇଁ, ବିଧୁର—ବିଚ୍ଛେଦ ।

ବର୍ଷା ଜଳବିନା ଗୃତକ ଅନ୍ୟ ପାଣି ପିଏ ନାହିଁ । ମଧୁଛଡ଼ା ଗୁଡ଼କୁ ଭ୍ରମରମାନେ ଆଦର କରନ୍ତି ନାହିଁ । ଚନ୍ଦ୍ର ଓ କୁମୁଦ ପରି ତୋ ଭ ମୋର ଭାବ ବିଚ୍ଛେଦ ହେତୁ ମୁଁ ଦୁଃଖିତ ହେଉଛି ।

୧୮ । ଚନ୍ଦ୍ରଯାମିନୀ—ଜହ୍ନରାତି, ଦାମିନୀକାନ୍ତି—ବିଜୁଳିରୂପା, କାମିନୀ—ସୁନ୍ଦରୀ, ଫୂରୁଣା—ଆନନ୍ଦ, ଅରୁଣାଧରୀ—ଅରୁଣ+ଅଧରୀ, ଅରୁଣ—ରକ୍ତବର୍ଣ୍ଣ, ଅଧର—ଓଷ୍ଠ, କେଳି ଆରାମ—କ୍ରୀଡ଼ାଘର, ଅଭିରାମ—ସୁନ୍ଦର, ରାମ—ମୃଗ, ରାମଦୃଶା—ମୃଗାକ୍ଷି ।

ତୋ ଏ ଚରିତ ନାଶ୍ରେ ସରିତ ସ୍ନେହବାରିତ ହୋଇ ।
ଗୃଧ୍ନୁଜଘନେ ଦୁଃଖ ସଘନେ ଶଙ୍କ୍ୟ ଲଙ୍ଘନେ ନାହିଁ ।
ମାନ ରଜନୀ ଅନ୍ତ ସଜନି ମୋ ସୁଖ ଜନ୍ମି ଭଲେ ।
କେ ମୋ ରକ୍ଷଣେ ନାହିଁ ଈକ୍ଷଣେ ଲୋଚକ କ୍ଷଣେ ଥିଲେ । ୧୯ ।
ବ୍ରଣ୍ଟରେଁ ଧୀରେ ରସନଧିରେ ଅଚ୍ଛୁ ବଧିରେ ଦୋଷ ।
କରେ ବାଳକା ଗୁଞ୍ଜାମାଳିକା ଚିତ୍ରଅଳକା ନାଶ ।
କାମପ୍ରବଳେ ସୁରତ ବଳେ ରଚେ ଶବଳେକ୍ଷଣି ।
ଦୀପପ୍ରକରେ ଚନ୍ଦ୍ରମାକରେ ବିବାସ କରେ ପୁଣି । ୨୦ ।
କରେ କରଜକ୍ଷତ ଉରଜ ଗୃଧ୍ନୁ ନୀରଜ କଢ଼େ ।
ମୁଁ ନ ଛାଡ଼ଇ ଓଷ୍ଠ ପୀଡ଼ଇ କୁଳେ ଭିଡ଼ଇ ଗାଢ଼େ ।
ତୋର ନିସତ ନ ଘେନେ ସତ ଦୋଷୀ ମୁଁ ସନ୍ତତର ।
ମୋ କଷ୍ଟ ଗରିଷ୍ଠ ରେ ନାଗରି କ୍ଷମା ସାଗରି ହର । ୨୧ ।
ଲବ ଅନ୍ତର ବଶେ କାତର ହୋଇ ମାତର ଗୋରି ।
ନୋହେ କପଟ ଦେଖି ଲମ୍ପଟ ତୋ ରୂପପଟ ଧରି ।
ସପତ୍ନୀଦର ଘେନି କି ଦରକଣ୍ଠି ସାଦର ବ୍ରୋଷେ ।
କିସ ଏ ଥରେ ଭାବ ତ ଥରେ ହୃଦ ପଥରେ ବିଶେ । ୨୨ ।
ଏହୁ ବଚନାମୃତ ରଚନା କଲା ଶୋଚନା ଦୂର ।
ବନ୍ଧେ ଗୃହିଲା ମନ ମୋହିଲା ନେତ୍ରୁଁ ବହିଲା ନୀର ।

---

୧୯ । ସରିତ—ନଈ, ସ୍ନେହବାରିତ—ସ୍ନେହରୁ ବର୍ଜିତ, ସ୍ନେହରୂପ ଜଳ, ଗୃଧ୍ନୁ—ସୁନ୍ଦର, ଜଘନ—ଜଙ୍ଘ, ଅନ୍ତ—ଶେଷ ।

୨୦ । ଗୁଞ୍ଜାମାଳିକା—ଗୁଞ୍ଜାହୋଇ ଥିବା ଫୁଲମାଳ, ଚିତ୍ରଅଳକା—ଗଣ୍ଡରେ ମକରି ପ୍ରଭୃତି ଚିତ୍ରସବୁ, ଶବଳେକ୍ଷଣୀ—ସୁଲୋଚନୀ, ଦୀପପ୍ରକରେ—ଦୀପ ଆଲୁଅରେ, ଚନ୍ଦ୍ରମାକରେ—ଚନ୍ଦ୍ର କିରଣରେ, ବିବସନ—ଲଙ୍ଗଳା ।

୨୧ । କରଜ—ନଖ, କ୍ଷତ—ଖଣ୍ଡିଆ, ଗୃଧ୍ନୁ—ସୁନ୍ଦର, ନୀରଜକଢ଼ି—ପଦ୍ମକଢ଼, ନିସତ—ଅବଶ ମନା, ଗରିଷ୍ଠ—ଅଧିକ । ସନ୍ତତର—ସବୁବେଳେ ।

୨୨ । ଲବ—କ୍ଷଣ, ଅନ୍ତର ବଶେ—ଅଲଗାହେବାରୁ, ରୂପପଟ—ଚିତ୍ରପଟ, ସପତ୍ନୀଦର—ସଉତୁଣୀଭୟ, ବ୍ରୋଷେ—ସ୍ୱଗରେ, ହୃଦପଥରେ—ମନମଧ୍ୟରେ, ବିଶେ—ଆଲୋଚନାକର ଟିକିଏ ।

ବଳେ ବାହାର ହେଲ ତାହାର ହାସ ନିହାରଶ୍ରାନ୍ତୁ ।
ଛାଡ଼ ହୁଣ୍ଡିଲ କଥା ପୋଡ଼ିଲ ବୋଲ୍ ଜଡ଼ିଲ ତନୁ । ୨୩ ।
ଫୁଲଶାୟକବଶନାୟକ-ପ୍ରେମଦାୟକ ବାଳା ।
ନୋହେ କହୁତ ଅଶେଷ ହୃତ ଯେତେ ବାହୁତ ଲୀଳା ।
ସେ ବିଚକ୍ଷଣେ କଲେ ଯେ କ୍ଷଣ ପର୍ଯ୍ୟନ୍ତେ କ୍ଷଣଦାକୁ ।
ବାସ ହରିଲେ ସେ ବାହୁରିଲେ ବେଗେ ଭରିଲେ ଦକୁ । ୨୪ ।
ତପସ୍ୟାଭଙ୍ଗୀ କୋପିତଭଙ୍ଗୀ ଖ୍ୟାତ ତ୍ରିଭଙ୍ଗୀଛନ୍ଦ ।
ବୁଧମୋହନ ଖଳଗହନ ନାଶେ ଦହନ ଛାନ୍ଦ ।
ହେ ରାମ ଘନଶ୍ୟାମ ସଘନ ଦୁରିତ ଘନ ହର ।
ଭଞ୍ଜ ଉପେନ୍ଦ୍ର ଅପ-ଦ୍ୱିପେନ୍ଦ୍ର ହରି ନୃପେନ୍ଦ୍ର ଦର । ୨୫ ।

---

## ଅଷ୍ଟତ୍ରିଂଶ ଛାନ୍ଦ

( ଲବଣ୍ୟବତୀ କେଳିରେ ସନ୍ତୋଷ ହୋଇ ଚନ୍ଦ୍ରଭାନୁର ପ୍ରଶଂସା )

ରାଗ—ବରାଡ଼ି

ସୁରତଶେଷେ ପୀରତନିଧିକି ଅଗରେ ପଡ ବସାଇ ବସି ପଲ୍ୟଙ୍କ ପରେ । ଅବେଶ ହୋଇ ସୁବେଶ କରି ସାରି ସେ ଜୀବେଶ କରକୁ

---

୨୩ । ବଚନାମୃତ—କଥାସୁଧା, ଶୋଚନା—ଦୁଃଖ, ନୀର—ଲୁହ, ହାସନିହାର ଭାନୁ—ଚନ୍ଦ୍ରପରି ହାସ ।

୨୪ । ଫୁଲଶାୟକ ବଶ—କନ୍ଦର୍ପ ଅଧୀନ, ବିଚକ୍ଷଣ—ରତିକୁଶଳ, କ୍ଷଣଦାକୁ—ରାତିକୁ, ଦକୁ-ଭଯ୍ୟରୁ ।

୨୫ । ତପସ୍ୟାଭଙ୍ଗ—ଯେ ତପସ୍ୟାକୁ ଭାଙ୍ଗିପାରେ, ଖ୍ୟାତ—ବିଖ୍ୟାତ, ବୁଧ ମୋହନ—ପଣ୍ଡିତ ତୃପ୍ତିକାରକ, ଖଳ ଗହନ ମୂର୍ଖରୂପକ ବଣ, ଦହନ—ଅଗ୍ନିରେ ପୋଡ଼ିବା, ସଘନ-ବେଶି, ଦୁରିତ—ପାପ, ଘନହର—ନାଶକର, ତାପ—ଦୁଃଖ, ଦ୍ୱିପେନ୍ଦ୍ର—ହାତୀ, ହରି—ସିଂହ, ଦର—ଭୟ ।

ଚନ୍ଦ୍ରଭାନୁର ଲବଣ୍ୟବତୀ ବିଚ୍ଛେଦରେ ଅନୁତାପ କରିବାର ବିଷୟ କୁହା ଯାଇଛି ।

---

## ଅଷ୍ଟତ୍ରିଂଶ ଛାନ୍ଦ

୧ । ଅବେଶ—ଆନନ୍ଦରେ ମନଯୋଗ, ସୁବେଶ—ଉତ୍ତମବେଶ, ଜୀବେଶ—ସ୍ୱାମୀ, ଚିବୁକ—ଗାଲ, ସନ୍ଦର୍ଭ—ଆନନ୍ଦ, ସୁଗର୍ଭ—ରସପରିପୂରିତ ପୂର୍ଣ୍ଣ ରସଗର୍ଭ—ରସରସିଆ, ବଚନ—କଥା ।

ନାବେଶ ରାଜ ଶରୁଙ୍କରେ । ସେ ମନୋହର । ଏବେ ବସନ୍ତ ଗୃହକୀ ଲୀଗୀ ।
ମନ୍ଦର୍ଭଗର୍ଭସୁହାସି ଶୋଭାଗୁଣଙ୍କୁ ପ୍ରଶଂସି ରସଗର୍ଭ ବଚନଙ୍କୁ ଭାଷି ସେ । ୧ ।
ମନ୍ଦରସ୍ତନା ସୁନ୍ଦରୀ ପୁରନ୍ଦରୀ କୃଶୋଦରୀ ଦରିଦ୍ର ମୁଁ ତୁ ନିଧିପ୍ରତିମା ।
ଦର୍ପକଦର୍ପବର୍ଦ୍ଧିନୀ ଧନୀ ଦର୍ପଣବଦନ ଅଶେଷ ଅନଙ୍ଗ ରଙ୍ଗସୀମାରେ ।
ଜୀବେଶ୍ୱର । ତେତେ ଉପମା ହୋଇଣ ତୁହି । ସାରଭାଗ ତୋ ଶ୍ରୀମୁଖ
ସେ ପିଠା ଶୀତମୟୂଖ ତୋଷେ ଦେବଙ୍କୁ ଅମୃତ ଦେଇ ରେ । ୨ । ରମା
କଳନା ପାଖିଲ ରମା ଉମା ନିର୍ମିଣିଲ ହସ୍ତ ବଳିବାକୁ ଆଗ ବଧି ।
ହେମପିତୁଳା ନିର୍ମିଣି ରସରେ ରସାଣି ପୁଣି ଭାବ ହାବ ଯୋଗେ ଜୀବ
ଦେଇ ରେ । ଜୀବେଶ୍ୱର । ଶୋଭା ଗୃହିଁ ହୋଇଲା କାତର । ବାନ୍ଧୁ ବାନ୍ଧୁ
ସୁକୁନ୍ତଳ ହେଲ ଶକ୍ତଣ କୁଟିଳ ସ୍ୱେଦ କମ୍ପ ବହୁଥିବ କର ରେ । ୩ ।
ଗଣେଶ ତୋ ଶୋଭା ଗୃହିଁ ଗଣେ କରେ ମାଳା ବହୁ କେଉଁ ଅଙ୍ଗେ କ
ଉପମା ଦେବ । ଅଶେଷମୁଖ ବହିଲ ଶେଷ କହି ନ ପାରିଲ ଦେଖି

ପ୍ରୀତି ଶେଷରେ ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ପଲଙ୍କରେ ବସାଇ ତାର ଇତସ୍ତତଃ ହୋଇଥିବା ବେଶକୁ ଭଲରୂପେ ସଜାଡ଼ି ଦେଇ ରସରସିଆ କଥା କହିଲ ।

୨ । ମନ୍ଦରସ୍ତନା—ପର୍ବତସ୍ତନା,ସୁନ୍ଦରୀ ପୁରନ୍ଦରୀ—ସୁନ୍ଦରୀ ଶ୍ରେଷ୍ଠା,କୃଶୋଦରୀ—କ୍ଷୀଣଉଦରୀ,ନିଧି—ରତ୍ନାଦି ସମ୍ପତ୍ତି,ଦର୍ପକ—କନ୍ଦର୍ପ,ଦର୍ପ—ଗର୍ବ । ଶୀତମୟୂଖ—ଚନ୍ଦ୍ର, ଚନ୍ଦ୍ରରୁ ଦେବତାମାନେ ଅମୃତ ଖାଇବାରୁ ସେ ପିଠା ଦେଖା ଯାଏ ।

୩ । ରେ ରମା ! ରେ ସୁନ୍ଦରୀ ! ମୁଁ ମନେକରେ ବିଧି-ଯେ ବିଧାତା, ସେ ରମା କି ଲକ୍ଷ୍ମୀ ଉମା କି ପାର୍ବତୀ ଏହି ଦୁହିଙ୍କୁ ପ୍ରଥମେ କରି ତାଙ୍କର ହାତ ଠିକ ହେବା ପରେ ତୋତେ କଲା, ତେଣୁ ତୁ ତାଙ୍କଠାରୁ ସୁନ୍ଦରୀ ଅଟୁ । ହେମ ପିତୁଳା ନିର୍ମିଣ—ସୁନାର ପ୍ରତିମାଟିଏ କରି ରସରେ ରସାଣି—ଅଧରସରେ ପାଲିସ କରି ଜୀବଦାନ ଦେବାକୁ ଏପରି ସୁନ୍ଦରୀ ହେଲୁ, ତୋର ବାଳକୁ ବାନ୍ଧୁ ବାନ୍ଧୁ ବିଧାତାର ହାତ କମ୍ପିଲା ଅର୍ଥାତ୍ ସେ ମଧ୍ୟ ମଦନରେ ଅସ୍ଥିର ହେଲା ତେଣୁ ତା ହାତ କମ୍ପିବାରୁ ତୋ ବାଳ କୁଞ୍ଚି କୁଞ୍ଚିଆ ହୋଇଗଲା ।

୪ । ଗଣେଶ ତୋର ସୁନ୍ଦର ପଣ ଦେଖି କେଉଁ ଅଙ୍ଗକୁ କି ଉପମା ଦେବେ ବୋଲି ଠିକ୍ କରି ନ ପାରି କରରେ ମାଳା ଧରି ଗଣନା କଲେ । ଶେଷଦେବ ତୋର ନାସିକାର ଛବିକୁ ସହସ୍ର ମୁଖ ଧରି ସୁଦ୍ଧା

ନାସିକା ନାସିକା ଛବିରେ । ଜାବେଶ୍ୱର । ଗୁଣ ଶୋଭା ଅକଥନ ତୋର । ଗୁରୁସ୍ତନ ରମ୍ଭାଭରୁ ଏହୁ ଶବଦ ଶୁଭରୁ ରମ୍ଭା କଲେ ସ୍ୱର୍ଗେ ଅଲଙ୍କାର ବେ । ୫ । ଧନ୍ୟ ତୋ ନୟନରଙ୍ଗ ନୀଳ ଧବଳ ସୁରଙ୍ଗ ତିନିବର୍ଣ୍ଣ ତ୍ରିଭୁବନ ତୋଷେ । ପୁଣି ସ୍ୱପତି ଶଙ୍କର ସବିତା କମଳାକର ନିଜଗୁଣି କରିବାର ଅଶେ ରେ । ଜାବେଶ୍ୱର । ସେ ତନ୍ତ୍ରରୁ କରିବେ ସେ ସ୍ତୁତି । ସୁରଶରରେ ତୁ ଇଶ ଅମ୍ଭେ ତ ସରଶବଶ ପାଇଲେ ବିନାଶ କର ଯତି ରେ । ୬ । ତୋପରି ଗୁଲିବା ଇଚ୍ଛି ଇନ୍ଦ୍ର ଗଜେନ୍ଦ୍ର ଚଢ଼ିଛୁ ମୁନି ଶାପତାପ ଲୋପ ମନ୍ତ୍ର । ତପ କରି କେତେ କାହିଁ କେତେଁ ଦେବତା ମନାଇ ମୁହିଁ ତୋତେ

---

କହି ପାରିଲ ନାହିଁ । ତୋର ଗୁଣ ଓ ସୌନ୍ଦର୍ଯ୍ୟ ବଡ଼ ଅକଥନୀୟ । ତୋର ଗୁରୁସ୍ତନ କ ସ୍ଥୂଳ କୁଚ ଓ ରମ୍ଭାଭରୁ କ କଦଳୀ ଗଛପରି ଜଙ୍ଘଦେଖି ସ୍ୱର୍ଗରେ ଦେବତାମାନେ ରମ୍ଭାକୁ ଶ୍ରେଷ୍ଠ କରିଥିଲେ ମାତ୍ର ତୋତେ ଦେଖି ତାଙ୍କର ସେ ଭ୍ରମ ଦୂରହେଲା ଅର୍ଥାତ୍ ତୁ ରମ୍ଭାଠାରୁ ଅଧିକ ସୁନ୍ଦରୀ ହେଲୁ ।

୬ । ରେ ସଖି ; ତୋର ନୟନ ରଙ୍ଗ, କ ଆଖି ରଙ୍ଗ, ନୀଳ କ ନେଳିଆ ଧବଳକ ଧଳା ଓ ସୁରଙ୍ଗ କ ଲାଲ ଏହି ତିନିବର୍ଣ୍ଣ ଯଥା—ନୀଳବର୍ଣ୍ଣ ବିଷ୍ଣୁ, ଧଳା ବର୍ଣ୍ଣ ଶଙ୍କର ଓ ଲାଲବର୍ଣ୍ଣ ସୂର୍ଯ୍ୟ ଏ ତିନିଦେବ ତ୍ରିଭୁବନକୁ ତୋଷ କରନ୍ତି ସେହିପରି ତୋ ଆଖିକି ଦେଖିଲେ ତିନିପୁର ଲୋକ ତୋଷ ହୁଅନ୍ତି ପୁଣି ବିଷ୍ଣୁ, ଶିବ ଓ ସୂର୍ଯ୍ୟ ତୋର ଆଖିରେ ଏତିକି ପ୍ରକାର ଶୋଭା ଦେଖି ତୋତେ ମାନ୍ୟ କରିବା ଇଚ୍ଛା କରନ୍ତି, ତୋର ଜ୍ୟୋତି ତାଙ୍କର ତେଜରୁ ଅଧିକ ପୁଣି ଦେବତାମାନେ ଆମ୍ଭକୁ ସିନା ସ୍ତୁତି କରନ୍ତି ଯେ କ ପ୍ରଧାନ ବୋଲି ମାନନ୍ତି କିନ୍ତୁ କନ୍ଦର୍ପ ବାଣରେ ମୋହିତ ହୋଇ ତୋତେ ସମସ୍ତେ ସ୍ତୁତି କରନ୍ତି ଓ ଶ୍ରେଷ୍ଠ ବୋଲି ମାନନ୍ତି । ଯତି କ ତପସ୍ୱୀମାନଙ୍କର ସୁରସରସ କ ମଧୁର ଭକ୍ତି ରସରେ ଅମ୍ଭେ ସିନା ତାଙ୍କୁ ରକ୍ଷା କରୁ କିନ୍ତୁ ତୋ ଶୋଭା ଦେଖି ଯତିମାନେ ସୁରସରସ କନ୍ଦର୍ପ ରସରେ ଘାରିହୋଇ ମରିବେ ।

୭ । ଗଜେନ୍ଦ୍ର—ଐରାବତ ହସ୍ତୀ, ତୋର ଗତିକି ଦେଖି ଇନ୍ଦ୍ର ଐରାବତ ଚଢ଼ିଛୁ ମୁନିଶାପ ତାପ ଲୋପ ମନ୍ତ୍ର—ମନକୁ ମୁନିଙ୍କର ଶାପକୁ ଲୋପ କରୁଛି ଅର୍ଥାତ୍ ତାକୁ ବରବୋଲି ମଣିଛି—କାରଣ ଇନ୍ଦ୍ର ଗୌତମନାରୀ

ଲଭିଲି ସୁତନୁରେ । ଜୀବେଶ୍ୱର । ନରେନ୍ଦ୍ର ତୁ ନରେନ୍ଦ୍ରକୁମାରୀ । ଅନଙ୍ଗ ଭୁଜଙ୍ଗଶର ବିରହ ସନ୍ତାପ ମୋର ସ୍ମରଣେ ହରୁଛୁ ଯେଣୁ ହରି ଯେ । ୬ । ଅନବରତରେ ହାସବଦନ ରଦନବାସ ରସ ରହସ ସ୍ୱରୂପ ପ୍ରିୟେ । ନବଗଙ୍ଗାଜଳ ଅଣି ସୁରଙ୍ଗ ପ୍ରୀତ-ବରଣି ଜଗତେ ତାଳ ହୋଇଲା ପ୍ରାୟେ ରେ । ଜୀବେଶ୍ୱର । ତୁହି ମୁଁ ମଜ୍ଜନ ହୋଇ ଉହିଁ । ବିଶେଷ କାମକଲୁଷ ସହଜେ କରୁଛୁ ନାଶ ସୁଗତ ତୁ ମୋ ସୁମତଦାୟିରେ ।୭। ହେଜୁଥାଇମନେ ମନ ତୁ ମୋ ଅମୂଲ୍ୟ ରତନ ବୋଲନ୍ତି ଯେ ରନ୍ତୁ ମୂଲ୍ୟ ହୋଇ । ନାଶ କଲୁ ଏ ସଂଶୟ ରମଣୀୟ ରତ୍ନ-ମୟ ଅର୍ଥେ ରମଣୀରତ୍ନ ବୋଲଇ ରେ । ଜୀବେଶ୍ୱର । ପଦ୍ମରାଗ ଓଷ୍ଠ ପାଦ ପାଣି । ହାସ ଦନ୍ତ ହୀର ମୋତି ଭୂରୁ ତୋଳା ରୋମପନ୍ତି ଶକୁର ଅଳକା ନୀଳମଣିରେ । ୮ । ଭଲ ବିବେକ ବିଜ୍ଞାଣି କଟିନଗୁଣକୁ ଘେନି ଘଟସ୍ତନ କଲା ତୋ ଘଟଣା । ହୃଦରେ ପଦକ ମୋର ବାନ୍ଧବ ହେବାକୁ ତୋର ଅବୟବଯାକ କଲା ସୁନାରେ । ଜୀବେଶ୍ୱର । ଏଣୁ ଦିବ୍ୟଗୁଣେ ତୁ ରଞ୍ଜନ । ଫନ୍ଦା କରି ତୋତେ ପାଇ କରୁଛୁ ମୋର ଚିନ୍ତା ନାହିଁ ଏ ଧେନ ବୋଲଇଁ ପିନା ଧନ୍ୟ ରେ । ୯ । ଛଇଲ ଭ୍ରମର ବୋଲି ବୋଲିବାକୁ ମୋତେ ବାଳ ଛଳ ମୋ ନୋହିବ ଜଣାଉଛୁ । ଶ୍ରୀମୁଖ ଚଞ୍ଚଳ ନେତ୍ର ଚଳନ ପଦ୍ମ ବିକଶିତ ଅଧର ବଧୂଲି ଚୁମ୍ବ ଇଚ୍ଛି ରେ । ଜୀବେଶ୍ୱର । କାନ୍ତ କେତକୀ ଜୃମ୍ଭଳ ବାସ । ଭରଜ ନୀରଜକୋଷ ପ୍ରଫୁଲ୍ଲ ମଲ୍ଲିକାହାସ ନୋହିଲା ମୋ କେଉଁ ଫୁଲେ ଅଶରେ । ୧୦ । ପ୍ରିୟେ

---

ଅହଲ୍ୟାକୁ ହରନ୍ତେ ଗୌତମ ଶାପରେ ତାଙ୍କର ଦେହରେ ସହସ୍ର ଚକ୍ଷୁ ହେଲ,' ମାତ୍ର ସେ ସହସ୍ର ଚକ୍ଷୁରେ ତୋ ଶୋଭା ଦେଖିବାକୁ ଖୁସି ହୋଇ ଶାପକୁ ବର ବୋଲି ମନେକଲେ ।—ରେ ନରେନ୍ଦ୍ରକୁମାରୀ—ରଜାଝିଅ ତୁ ନରେନ୍ଦ୍ର—ନରେନ୍ଦ୍ର ପୁଷ୍କରଣୀ ତୀର୍ଥ ଅଟୁ, ଭୁଜଙ୍ଗ—ସର୍ପ, ସର୍ପର ବିଷପରି କନ୍ଦର୍ପର ତେଜ, ତୋତେ ଛୁଇଁଲାକ୍ଷଣି ଦୂର ହେଉଛୁ ।

୭ । ଅନବରତ—ସର୍ବଦା, ରଦନବାସ—ଦାନ୍ତସବୁ, ଓଷ୍ଠ, ସୁରଙ୍ଗ ପ୍ରୀତ ସୁଗତ—ମୁକ୍ତି ଓ ଉତ୍ତମଗତ ।

୮ । ପଦ୍ମରାଗ—ଲାଲବର୍ଣ୍ଣ ମଣି, ପାଣି—ହାତ ଏଠାରେ ପାପୁଲି, ଅଳକ —ମୁଣ୍ଡର ଛୋଟବାଳ,

୯ । ଘଟ—ମାଠିଆ—କୁମ୍ଭ, ଅବୟବ-ଶରୀର ବା ଦେହ ।

୧୦ । ବାଳ—ଯୁବକ, ନୀରଜକୋଷ-ପଦ୍ମକଢ଼, ପ୍ରଫୁଲ୍ଲ ମଲ୍ଲିକା—ଫୁଟିଲାମଲ୍ଲି

ତୋର ସଙ୍ଗ ନୋହୁଁ ଚମ୍ପା ମାଳା ପରି ବାହୁ ଭିଡ଼ ଲୋଡ଼େ ଗଳେ ବାନ୍ଧିବାକୁ । ଚନ୍ଦ୍ର ଚନ୍ଦନ ଲେପନ କରୁଥାଇ ଅପଘନ କ୍ଷଣେ ପୀତାମ୍ବର ପିନ୍ଧିବାକୁ ରେ । ଜୀବେଶ୍ୱର । ଲଗାଇ ନବପଲ୍ଲବେ ଶିର । ପ୍ରିୟା ତୋ ପ୍ରତି ପ୍ରତିମା ଦେଖିଲାଦିନୁ ତ୍ରିଯାମା ଘନେ ଏହି ବ୍ୟବସାୟ ମୋର ରେ ।୧୧।

ଯାବତ ଶୋଭା ସଂଗ୍ରହ ପାଇ ବିଗ୍ରହେ ବିଗ୍ରହ ଲଗିଲା ଯେଉଁ ସ୍ୱପନ ଭ୍ରମେ । ନିଦେଷ୍ଟ ସେ ସ୍ୱପ୍ନ ଦେବୀର ମହାମହ ଉପକାର ଶୁଝି ନୋହିବ ସହସ୍ର ଜନ୍ମେ ରେ । ଜୀବେଶ୍ୱର । କସ୍ତୁରି ସୁଗନ୍ଧା ସକୋମଳା । ଚତୁରି ଶ୍ରେଣୀରେ ମଣି ବୋଲି ତୋ ଚତୁରି ବାଣୀ ପ୍ରେମ ପତ୍ରିକାରେ ଜଣାଇଲା ରେ ।୧୨।

ଘେନରେ ହରିଣଦୃଶି ମାନସ ହଂସେ ନ ରସି ହଂସର ମାନସ ସରୁ ଫଂଧା । ଭାନୁ-ଜଳଜ ଜଳଦ ଚାତକ ଚନ୍ଦ୍ର କୁମୁଦ ପ୍ରୀତି ଲକ୍ଷ୍ୟ ଯାକ କଲୁ ନିନ୍ଦାରେ । ଜୀବେଶ୍ୱର । ଅଛି ପୁଣି ବିଚ୍ଛେଦ ତାଙ୍କର । ଦେହକୁ ନ ଛାଡ଼େ ଛାଇ ଛାଇ ଦେହ ନ ଛାଡ଼ଇ ଧନ୍ୟ ତୋର ଅନୁରାଗ ସାର ରେ ।୧୩।

ଫୁଲ ଭ୍ରମର ବାଞ୍ଛଇ ଭ୍ରମର ଫୁଲ ଇଚ୍ଛଇ ମଧୁଦେଇ ଫୁଲ ତୋଷ କରେ । ଅନୁସରଇ ଭ୍ରମର ତୋର ମୋର ଏ ପ୍ରକାର ସ୍ନେହ ନ ତୁଟିବ ଜୀଇଁବାରେ ରେ । ଜୀବେଶ୍ୱର । ନିଷ୍ଠା କର ଜାଣେ ମୁଁ ଏ କଥା । ମାଜିଲା ମୁକୁର ପରି ନିର୍ମଳ ତୋ ହୃଦ ଗୋରି ପ୍ରତିବିମ୍ବେ ମୋର ହୃଦବ୍ୟଥା ରେ ।୧୪।

---

୧୧ । ସଙ୍ଗନୋହୁ—ଏକତ୍ର ନୋହୁ, ପ୍ରତିପ୍ରତିମା—ଚିତ୍ରପଟ, ତ୍ରିଯାମା—ରାତି, ଚନ୍ଦ୍ର ଚନ୍ଦନ—କର୍ପୂର ଚନ୍ଦନ, ଅପଘନ—ଦେହ, ପୀତାମ୍ବର—ହଳଦିଆ ପାଟଲୁଗା, ନବପଲ୍ଲବ—ନୂଆପତ୍ର (ଲାଲ) ।

୧୨ । ବିଗ୍ରହ—ଦେହ ବା ଶରୀର, ପତ୍ରିକା—ଚିଠି, ବିଗ୍ରହ—ବିସ୍ତାରିତ ।

୧୩ । ମାନସ—ମନ ଓ ମାନସରୋବର, ଭାନୁ—ସୂର୍ଯ୍ୟ, ଜଳଜ—ପଦ୍ମ, ଜଳଦ—ମେଘ, କୁମୁଦ—କଇଁ, ହଂସ—ମାନସରୋବର, ସୂର୍ଯ୍ୟ—ପଦ୍ମ, ଚନ୍ଦ୍ର—କଇଁ, ମେଘ ଓ ଚାତକ, ଏମାନଙ୍କ ପ୍ରୀତିରେ ବିଚ୍ଛେଦ ଅଛି, ମାତ୍ର ତୋର ମୋର ପ୍ରୀତିରେ ଦେହ ଛାଇ ପରି ବିଚ୍ଛେଦ ନାହିଁ ।

୧୪ । ନିଷ୍ଠା—ନିଶ୍ଚୟ, ମୁକୁର—ଦର୍ପଣ, ପ୍ରତିବିମ୍ବେ—ଦେଖାଯାଏ । ଫୁଲରେ ମଧୁ ସକାଶେ ଭ୍ରମର ଫୁଲକୁ ଅନୁସରଣ କରେ, ମୁଁ ମଧ୍ୟ ତୋ ପାଖରେ ସେହିପରି ।

ଦାମାଶେଷ୍ଠ ଲାବଣ୍ୟବତୀ ଦର୍ଶନେ ଦେବ ସମସ୍ତ ଲୋଚନ ଯୁଗଳୁ ଯାଚାଦେଲ । ସମ୍ପୂର୍ଣ୍ଣ ପ୍ରେମ ରତନ ସମ୍ପୁଟକ ପ୍ରାଣଧନ ଭାବଭୋଳେ କରେ ଦେଇ ଯାଉ ରେ । ଜୀବେଶ୍ୱର । ପଗ୍ରହୁଛ କହୁଛୁଟି ସତ । ଶିରୀଷକୁସୁମଦେହ କାହିଁ ପାଇଁ କରୁ ନାହିଁ ମାଗିଲା ବେଳକୁ ବିପରୀତ ରେ । ୧୫ । ମଧ୍ୟ ତୃଣାଙ୍କୁର-ଠାରୁ ସରୁ ଭାଜିବାକୁ ଡରୁ କବା ଘାରୁ ଏ ନ୍ୟହଇ କରୁ । ବଡ଼େ କୁଚ ମେରୁଭାର କେଶରୀ ପ୍ରଶଂସା ତାର କୁଳଶ ଦେହାଇ ପ୍ରଶଂସା ଅଛୁ ରେ । ଜୀବେଶ୍ୱର । ହେଜ ପାର ନାହୁଁ ଭାବଭୋଳେ । ମୁକୁର ବିତାନେ ରତ ଜଳଦ ଦେଖି ଯୁବତୀ କେଳେ ରସିକୁ ମୋ ପୁଣ୍ୟଫଳରେ ।୧୬। କହିବାକୁ ଅଗୋଚର ସେ ଶୋଭା ପୁଣି ତୋହର ଭଲଗ୍ନ ସୁଲଗ୍ନେ ହୋଇଥିଲା । ଉଚେ ଜଗନା ଉଦିତ ମୋ ସୁଖରାଶିରେ ମିତ ନାଶାମଣି ଯାହା ଝଟକିଲା ରେ । ଜୀବେଶ୍ୱର । ଇନ୍ଦ୍ରପଦ ପଦତଳେ ଦେଲା । କାମଚକ୍ରବର୍ତ୍ତୀ ପଣେ ଅଧିକାରୀ ଯୁବାଗଣେ ତାକୁ ଇଷିତରେ ଜଣାଇଲା ରେ ।୧୭। ସବୁ ବଢ଼ପଣ ପ୍ରାଣବନ୍ଧୁ ଘେନ ମୋର ଜାଣ ଦହୁଥିଲେ ଯେଉଁ ଚନ୍ଦ୍ର ବାତ । ସେ ତୋହର ସଙ୍ଗ ମାତ୍ରେ ସୁଖଦ ହେଲେ ରତାନ୍ତେ ବହୁତ ରୂପେ ହରଲେ ଶ୍ରାନ୍ତ ରେ । ଜୀବେଶ୍ୱର । ତୋ ବଢ଼ିମା ଅଖିଳରେ ସାର । ଝଙ୍କାର ଭଲ୍ଲପ୍ରକାର ଯେଉଁ ଭୃଙ୍ଗ ପିକସ୍ୱର ସେହ ଏବେ ଶୁଭିଲା ମଧୁର ।୧୮। ଏରୂପେ ଗୁଢ଼ୁ ପ୍ରକାଶି ବଲ୍ଲଭ ବଲ୍ଲଭୀ ତୋଷି ଅନୁଗ୍ରହ ଚୁମ୍ବ ଆଲିଙ୍ଗନେ । ଲଭି ହେଲେ ହରଷିତ ଜାଯୁମ କଲା ଏମନ୍ତ ରସବତୀ ନ କରିବୁ ମାନ ରେ । ଜୀବେଶ୍ୱର । ପରବାସ ନ କରିବ କେବେ । କଲା ଏମନ୍ତ ସମ୍ମତ ଶଙ୍କା ହୋଇଗଲା ହତ ମାତଲେ ବିଳାସ ମହୋତ୍ସବେ ରେ ।୧୯। ମିଥିଲା

---

୧୫ । ଲୋଚନଯୁଗ—ଦୁଇ ଆଖି, ସଂପୁଟକ—ଫରୁଆ ।

୧୬ । ତୃଣାଙ୍କୁର—ଘାସଗଜା, ମଧ୍ୟ—ଅଣ୍ଟା, କେଶରୀ—ସିଂହ, କୁଳଶ—ବଜ୍ର, ମୁକୁରବିତାନ—ଦର୍ପଣ ଗୃହ୍ନ୍ଦୁଆ ।

୧୭ । ସଲଗ୍ନ—ଉତ୍ତମବେଳ, ଉଚେ—ବଢ଼ଭାବରେ, ଜଗନା—ଶୁକ୍ର (ତାରା), ନାସାମଣି—ନାକଚଣା ।

୧୮ । ବାତ—ପବନ, ଅଧିକ—ସମସ୍ତ, ଭଲ୍ଲ—ଭ୍ରମ ।

୧୯ । ବଲ୍ଲଭ—ପୁରୁଷ, ବଲ୍ଲଭୀ—ସ୍ତ୍ରୀ, ବିଳାସ—ଅମୋଦ ପ୍ରମୋଦ ।

ନବସଙ୍ଗମ କାଳେ ଯେ କଲେ ନିୟମ ଏକପତ୍ନି ଏକପତ୍ନୀ ବ୍ରତ । ଜଗତେ ସେହୁ ଦମ୍ପତ୍ତି ସାଧୁଙ୍କ ସୁଖ ସମ୍ପତ୍ତି ମଧୁର ଅମୃତ ଅଲୌକିତ ସେ । ତାଙ୍କ ପାଦ । ମହାବିପଦକୁ ନାଶ କରେ । ଚନ୍ଦ୍ର ଚରିତ୍ରେ ଉପଇନ୍ଦ୍ରଭଞ୍ଜ ପରମ ଆନନ୍ଦ କହେ ରସିକ ଜନଙ୍କ ହିତ ହେ ।୨୦।

---

## ଊନଚତ୍ୱାରିଂଶ ଛାନ୍ଦ

(ଦେବତାମାନଙ୍କ ଅଭିଶାପରେ ଚଣ୍ଡୀଦ୍ୱାରା ସ୍ତ୍ରୀ ପୁରୁଷର ବିଚ୍ଛେଦ ବର୍ଣ୍ଣନ)

ରାଗ—ମୁଖାବରୀ, ଅଷାଢ଼ଶୁକ୍ଳ ବାଣୀ

ଏଥୁ ଅନ୍ତରେ ସାଧୁଜନେ ଶୁଣ । ଦୁଷ୍ଟ ପୁଲୋମ କାଲକେୟଗଣ ।
ମେଳ ହୋଇ ସେ ସଂସପ୍ତକ ସଙ୍ଗ । ନାଶ କରନ୍ତି ଋଷିବୃନ୍ଦ ଯାଗ ।
ରକ୍ଷା ଚନ୍ଦ୍ରକାନ୍ତ । ଏହୁ ଶବଦ ଶୁଭିଲା ଗଗନ୍ତୁ । ୧ ।
ସର୍ବଜ୍ଞ ସହକେ ମୁନି କଳାପ । ଯୋଗବଳେ ଜାଣି ଦେବଙ୍କ ଶାପ ।
ନିଃଶ୍ୱାସିକାଚଣ୍ଡୀ ସିନ୍ଧୁ ଦେଶରେ । ଥିଲା ମିଳିଲେ ଯାଇ ତା ପାଶରେ ।
ମନାଇ ତାହାକୁ । ପେଷିଲେ ଚନ୍ଦ୍ରକାନ୍ତ ହରିବାକୁ । ୨ ।
ମଧୁର ମାଧବେ ମନ ଉଲ୍ଲାସେ । ମାନସ ବଳାଇ ବନ ବିଳାସେ ।
ଭଦ୍ରୋଦୟ ବନେ କାବେରୀ କୂଳେ । କୁମାର କୁମାରୀ କ୍ରୀଡ଼ନ୍ତି ଖେଳେ ।
ଦେଖଇ ସେ ଶୋଭା । ସୁମନା ମନ କରୁଅଛି ଲୋଭା । ୩ ।

---

୨୦ । ନବସଙ୍ଗମ କାଳେ—ନୂଆ ହୋଇ ଏକତ୍ର ହେବାବେଳେ, ଏକ ପତ୍ନୀ—ଗୋଟିଏ ସ୍ତ୍ରୀ ।

ଏ ଛାନ୍ଦରେ ଲାବଣ୍ୟବତୀର କେଳି ଓ କାମ କେଳିର ଅଙ୍ଗଭଙ୍ଗୀଆଦି ବର୍ଣ୍ଣିତ ହୋଇଅଛି ।

---

## ଊନଚତ୍ୱାରିଂଶ ଛାନ୍ଦ

୧ । ପୁଲୋମ—ରାକ୍ଷସ, କାଲକେୟ—ଅସୁର, ସଂସପ୍ତକ—ଦାନବ, ଋଷିବୃନ୍ଦ—ମୁନିସବୁ ।

୨ । ସର୍ବଜ୍ଞ—ସବୁ ଜାଣିବା ବ୍ୟକ୍ତି, ମୁନିକଳାପ—ଋଷିସବୁ, ନିଃଶ୍ୱାସିକା ଚଣ୍ଡୀ—ଦେବତାଙ୍କ ନିଃଶ୍ୱାସରୁ ବାହାରିଥିବା ଚଣ୍ଡୀ ।

୩ । ମାଧବ—ବସନ୍ତ ସମୟ, ସୁମନା—ସ୍ତ୍ରୀ ଓ ଫୁଲ ।

କଳକଣ୍ଠ କାଳକଣ୍ଠ ସ୍ୱହର । ଭ୍ରମରେ ହୋଇଛୁ ମହାମାଧୁରୀ ।
ବହୁଛୁ ସାରସଗନ୍ଧ ସମୀର । ସ୍ୱାଦୁରେ ସଘନ ଅମୃତକର ।
ଯୋଗୀମନ ମୋହ । କାମଶରାଳରେ ଛନ୍ଦ କରାଇ । ୪ ।
କାନ୍ତ କାନ୍ତା ତହିଁ ବିହାର କରେ । କୁଞ୍ଜକୁଟୀରେ ଅମ୍ବୁଜକୁଟିରେ ।
ଅନୁସରି ଅନୁସର କଳିତ । ଚୁଅ ଚନ୍ଦନେ ପିଚକା ରଚିତ ।
ସୁମନ ମଣ୍ଡନ । ବିନା ଅଳଙ୍କାରେ ଯହିଁ ସୁମନ । ୫ ।
କ୍ଷଣେ ଭିନ୍ନ ନୋହୁ ପ୍ରିୟ କଣେଶୋରୀ । ଚଉରୀ ବିଳାସ ଦେଲେ ପାସୋର ।
ପ୍ରବାଳ ନାବରେ ଭାବରେ ବସି । ପରିବାଦନୀ ବାଦନ ପ୍ରକାଶି ।
ବୋଲଇ କୁମର । କେଳି ପ୍ରବୀଣା ତୁ ବୀଣା ମୋହର ।୬।
ଅଶେଷ ଭାବ କରିବାରୁ ଜାତ । କେ ସବୁ ଅଛୁ ରଞ୍ଜିବାକୁ ଚିତ୍ତ ।
ଏଣୁକରି ସାର ଗୁଣା ମଞ୍ଜୁଳା । ସ୍ୱର୍ଣ୍ଣକଷ ତୁମ୍ବୀ ବହୁଛୁ ବାଳା ।
ହେଉଛୁ ମୋ ମନ । ଶୁଣିବା ଅରେ ହେଲେ ଗୀତ ଗାନ ।୭।
ଚତୁରୀ ସ୍ନେହରସ୍ତୁତି ବଢ଼ାଇ । ଦଣ୍ଡେ ଛାଡ଼ିଦେଇ ଶୁକ ପଢ଼ାଇ ।
ବନପ୍ରିୟ ଭଳ ମୂନ ବିଭୁତ । ସପତ ସ୍ୱର ବିସୋର ଦଅନ୍ତ ।
ତା ରସିକ ଜାଣି । ସ୍ନେହଭରେ କରେ ଲଗାଇ ଅଣି । ୮ ।

---

୪ । କଳକଣ୍ଠ—କୋଇଲି, କାଳକଣ୍ଠ—ଡାହୁକ, ସାରସଗନ୍ଧ—ପଦ୍ମଗନ୍ଧ, ସମୀର—ପବନ, ଅମୃତାକର—ଅମୃତର ଖଣି, ଯୋଗୀଶ୍ରୀ, ଛନ୍ଦ—ଉଚ୍ଛନ୍ନ, ଶରାଳ—ଶରସବୁ ।

୫ । କୁଟିର—କୁଡ଼ିଅ ଘର, ଅମ୍ବୁଜକୁଟି—ଜଳ ମଧ୍ୟସ୍ଥ କୁଡ଼ିଅ ଘର ବା ଦ୍ୱୀପଦଣ୍ଡି, ସୁମନ—ଖୁସି, ଫୁଲ ଓ ଦେବତା ।

୬ । ଚଉରବିଳାସ—କୋଠାଘର କ୍ରୀଡ଼ା, ପରିବାଦନୀ—ବୀଣା, ବାଦନ-ବଜାଇବା, କେଳିପ୍ରବୀଣା—ରତିପଣ୍ଡିତା ।

୭ । ରାଗ—ସ୍ନେହ, ସ୍ୱର ଗୁଣୀ—ତାର ଗୁଣ, ବୀଣା ସହିତ ଲାବଣ୍ୟବତୀର ତୁଳନା ବୀଣାରେ ଅନେକ ସ୍ୱର ଜାତ ହୁଏ, ତୋର ମଧ୍ୟ ଅନେକ ସ୍ୱର ଅଛି, ବୀଣାରେ ମନ ମୁଗ୍ଧ ହୁଏ, ତୋ ସ୍ନେହରେ ମନ ମୁଗ୍ଧ ହୁଏ, ବୀଣାରେ ମଧ୍ୟ ତାର ଅଛି, ତୋର ଅନେକ ଗୁଣ ଅଛି, ଲାଉ ତୁମ୍ବୀ ବୀଣାରେ ସୁନା ଛାଉଣି, ତୋ କୁଚ ତୁମ୍ବୀରେ ସ୍ୱର୍ଣ୍ଣ ଅଳଙ୍କାର ତେଣୁ ବୀଣାଗୀତ ଶୁଣିବାକୁ ଯେପରି ମନେ ହୁଏ, ତୋ ଗୀତ ଶୁଣିବାକୁ ମନ ସେହିପରି ହେଉଛି ।

୮ । ବନପ୍ରିୟ—କୋଇଲି, ମୂନାବଭୁତ—ମୂନାପରି ମୁଖ, ବିସୋର—ଭୁଲି, କର—ହାତ ।

ଢୋଲେ ବସାଇବାବେଳେ ନାଗର । ହୃଦରୁ ତରଳ କରଇ ଦୂର ॥
ଜାଣି ହସିଲ ହୋଇଲା ନାଗରୀ । ମଧୁରେ ଭାଷଇ ଚିବୁକ ଧରି ।
ମାଡ଼ୁଥାଇ ଡର । ଚକ୍ଷ ଗୃହିଁ ଦନ୍ତ ହେଲା କାତର । ୯ ।
ଗୁରୁତର ପ୍ରୀତି ଦେଖିଲା ଦେବୀ । ଅଙ୍ଗନାର ଅଙ୍ଗେ ଅନାଇ ଭାବି ।
ଫୁଲରୁ ଫୁଲ ରଚନ୍ତୁ ରତନ । ଫଳୁ ଫଳ ଜାତ ଅତି ଯତନ ।
ପ୍ରକାଶରେ ହାସ । ଯହିଁ ମନ ସେହି ପରି ସେ ଦୃଶ୍ୟ ।୧୦।
ଷଡ଼ ସୁମନ ସୁକାନ୍ତ ଏ ବହି । ସ୍ତ୍ରୀମାନଙ୍କରେ ଅମୂଲ୍ୟ ଏହି ।
ଷଣ୍ଣ ପକ୍ଷୀରେ ତ ଗାତ୍ର ଘଟିତ । ତନ୍ତୁ ଏ ନିନ୍ଦୁଥିବ ବେଣୁପତ୍ର ।
ଅଛି କଳେବରେ । ବିଧାନ ହୋଇଛି ପଞ୍ଚ ଫଳରେ । ୧୧ ।
ଚିତ୍ତେ ଚିନ୍ତାଭର ଶ୍ୱାସ ଯୋଗିନୀ । ଲବେ ଅନ୍ତର ତ ନୁହନ୍ତି ବେଣୀ ।
କି କରି ହରିବ କୁମାରବର । ଶାପ କି ବ୍ୟର୍ଥ ହେବ ଦେବଙ୍କର ।
ଷଷ୍ଠର ମରାଳୀ । ହୋଇ କରୁଥାଏ ସେ ବନେ କେଳି ।୧୨।
ଏମନ୍ତେ ତହିଁ କୁସୁମ ସମୟେ । ବାଳା କୁସୁମ ସମୟ ଉଦୟେ ।
ଷଡ଼ ମିତ୍ରଙ୍କୁ କୁମର ଡକାଇ । ଷଡ଼ ସଜନୀଙ୍କୁ ନୃପଜା ନେଇ ।
ଭିନ୍ନ ଭିନ୍ନ ହୋଇ । ବନରେ କେଳି ବିରଚିଲେ ସେହି ।୧୩।

---

୯ । ତରଳ—ରତ୍ନମାଳା ବା ପଦକ ମାଳା ।

୧୦ । ଗୁରୁତର—ଅତି ଅଧିକ, ଅଙ୍ଗନା—ଲାବଣ୍ୟବତୀ, ଫୁଲରୁ ଫୁଲ, ମୁହଁର ଅକ୍ଷି ଏ ଦୁହେଁ ପଦ୍ମ ଓ ନୀଳକଇଁ ହେଲେ, ଫଳରୁ ଫଳ—କୁଚ ହେଲା ବେଲ, କୁଚାଗ୍ର ହେଲା ଷୋଟଗୁଆ ।

୧୧ । ଷଡ଼ ସୁମନ—ଷଡ଼ପ୍ରକାର ଫୁଲ, (କେତକୀ, ଶତପତ୍ର, ଚମ୍ପା ଓ କନିଅର) ଲାବଣ୍ୟବତୀର କାନ୍ତି—ବର୍ଣ୍ଣ—ଏ ଷଡ଼ପ୍ରକାର ଫୁଲପରି ଷଣ୍ଣ ପକ୍ଷୀ—ଛଅଗୋଟି ଚଢ଼େଇ—ଚକୁଆ ଚକୋଇ ପରି କୁଚ, ଖଞ୍ଜନ ପରି ନେତ୍ର, କୁଆପରି ନଖ, ତନୁ-ଦେହ ବା ପେଟ ପଦ୍ମପତ୍ର ପରି, ପିଠି କଦଳୀପତ୍ର ପରି, ଦେହ-ପାଞ୍ଚଫଳ, ଓଠ-କଇଁଚ କାକୁଡ଼ି, ନେତ୍ର-ନାରଙ୍ଗ, କୁଚ-ବେଲ, କୁଚାଗ୍ର-ଗୁଆ, ପିଣ୍ଡ-ଟଭା ।

୧୨ । ମରାଳୀ—ମାଈହଂସ ।

୧୩ । କୁସୁମ ସମୟ—ଋତୁକାଳ ବା ବସନ୍ତ କାଳ ।

ଏକାଳେ ବହି ପ୍ରଚଣ୍ଡ ପବନ । ରଜେ ବୁଜି ହୋଇଗଲା ନୟନ ।
ମିତ୍ର ସହ କୁମାରଙ୍କୁ ହରିଲା । ଏଲାବୃତ୍ତ ଖଣ୍ଡେ ବନେ ରଖିଲା ।
ନିବର୍ତ୍ତିଲା ବାତ । ସୁନ୍ଦରୀ ଜାଣିଲା ଅନ୍ତର କାନ୍ତ । ୧୪ ।
ମନେ କଲା ସେ ଅମରପୁରୁଷ । ମେଳ କରିଥିଲା ମୋ ଭାଗ୍ୟବଶ ।
ଅପସରି ରସରଙ୍ଗ ଚଟ୍ଟୋଇ । ମୋହ ପାଶରୁ କି ଅସପରି ଯାଇ ।
ମୁଁ ଅଭାଗ୍ୟବନ୍ତ । ଖଣ୍ଡେ ଉପଫଳ କଲା ଏମନ୍ତ ।୧୫।
ଯାହାକୁ କରିଥାଇ ପ୍ରାଣ ସରି । ତାକୁ ନିକି ଏଡ଼େ ନିରାଶ କରି ।
ଦାସୀକରି ହେଲେ ରଖିଲ ନାହିଁ । ଭ୍ରମର ପ୍ରୀତି କେତେକାଳ ଥାଇ ।
ଏକ ସେନେହ କଲ । ଗୁଣ୍ଡଲ ପରି କରି ଛଡ଼ାଫୁଲ ।୧୬।
ଏଡ଼େ କପଟକୁ ନୁହଇ ଭୁଲ । ଅନ୍ତର ହେବାକୁ କି ଦୋଷ କଲି ।
ତନୁ ପୁଲକ ନ ସହିଲା ଜନେ । ଏ ହଟ କରିଛ କି ଘେନି ମନେ ।
ମୁଁ ଥରମ୍ଭି ମାନ । ଘେନିବ ନାହିଁଟି ଗୁହ୍ଣୁ ବଚନ ।୧୭।
ଏମନ୍ତ ଭାଷି ଲୁଚିଥିବେ ବୋଲି । ଖୋଜିଲେ ସେ କେଳି କାନନ ବୁଲି ।
କାହିଁ ନ ପାଇଲା ତରୁଣୀ ଈଶ । ବେଳୁଁବେଳ ଉଡ଼ିଗଲା ସାହସ ।
ସେ ଜ୍ୟୋତିଷୀବାଲୀ । ଶକୁନେ ଜାଣିଲା ବିଚ୍ଛେଦ ବୋଲି ।୧୮।
କର୍ଣ୍ଣାଟ ଜନକ ଜନକ ତାରି । ଶୁଣି ଏ ଗୋଳ ହୋଇଲେ କାତରି ।
ଇଷ୍ଟଦେବୀଙ୍କୁ ଜପ କରାଇଲେ । ବିବୁଧ ଶାପୁଁ ବିଚ୍ଛେଦ ଜାଣିଲେ ।
ପୁରୋହିତ ସୁତା । ବଦନ୍ତୁ ଜାଣିଲା ନବବନିତା । ୧୯ ।
ସେହିଠାରୁ ସେ ଶୋଭା କୁବଳୟ । ଏକା ରଖିଲା କରର ବଳୟ ।
ନୀର ନିଳୟ ନେତ୍ର କୁବଳୟ । କରି କୁମାରଠାରେ କଲା ଲୟ ।
ତା ଗୁଣ-କଳାପ । ମୃଣାଳ ନାଳ ମାଳେ କରେ ଜପ ।୨୦।

---

୧୪ । ରଜ—ଧୂଳି, ଏଲାବୃତ୍ତଖଣ୍ଡ—ଦେଶ ବିଶେଷ, ସାଇବେରିଆ ।
୧୫ । ଅମରପୁରୁଷ—ଦେବତା, ଖଣ୍ଡଉପଫଳ—ଅଳ୍ପ ଉପଫଳ ।
୧୭ । ଅନ୍ତର—ପୃଥକ, ତନୁପୁଲକ—ଦେହ ଜଳୁସିବା ।
୧୮ । କେଳିକାନନ—କେଳିବନ, ଶକୁନ—ଚଢ଼େଇ ।
୧୯ । ଜନକ—ରାଜା, ପିତା ଓ ଜନକ ଋଷି, ବିବୁଧ—ଦେବତା ଓ ପଣ୍ଡିତ, ନବବନିତା—ନୂଆ ସ୍ତ୍ରୀ (ଲାବଣ୍ୟବତୀ) ।
୨୦ । କୁବଳୟ—ଶ୍ରେଷ୍ଠ, ପଦ୍ମ, ସାଗର । ବଳୟ—ଖଡ଼ୁ, ନୀରନିଳୟ—ଲୁହଘର, ଗୁଣକଳାପ—ଗୁଣସବୁ, ମୃଣାଳ ନାଳମାଳେ—ପଦ୍ମନାଡ଼ ମାଳରେ ।

ତେଣେ ମାଧୁରୀ ଦୂର କୁମରଗୃହିଁ । ଶୋଭା ମନ୍ଦିର ମନ୍ଦଗ୍ରୀଷୀ ନାହିଁ ।
ନିଜ ଅଗ୍ରମ ଅଭିରାମ ପର । ସେ ସ୍ଥାନ ବନ ହୋଇଛୁ ମାଧୂରୀ ।
ବୋଲଇ ରେ ଧନ । କାହିଁ ଲୁଚିଅଛୁ ଦେଖା ବଦନ । ୨୧ ।
କାହିଁକି ଦାସରେ ଏଡ଼େ କପଟ । କପଟ ଭିତରେ ଯାଉଛୁ ଘଟ ।
ଘଟ ଥିଉ ଜେତେଦିନ ରହିବ । ଜୀବ ଯେବେ ଭିନ୍ନ କଲ୍ପ ଦାଇବ ।
ବୁଝିଲେ ଚେତନା । ଭୋଗ ନ କରନ୍ତି ଟିକି ବେଦନା ।୨୨ ।
ଭୋଗ କରୁଥାଇ ଯୋଗରେ ମୁହିଁ । ଯୋଗରେ ଶିବ ଯୋଗରେ ମନାଇ ।
ଯାହା ହେଲା ତୋର ମୋର ବିଚ୍ଛେଦ । ନୋହିଲା କାହିଁପାଇଁ ଶିରଚ୍ଛେଦ ।
ଯୁବାଙ୍କ ଯୁବତୀ । ବିଚ୍ଛେଦରୁ ଅଭ ନାହିଁ ବିପତ୍ତି । ୨୩ ।
କାନ୍ତ ବୋଲିବାକୁ ପାଇଲେ ଲାଜ । ଦାସ ହୁଅନ୍ତି କପାଁ କଲ ତ୍ୟାଜ ।
ନାହିଁ ତୋର ମୋ ତଳକ ଅନ୍ତର । ତରୁଣୀ ତଳକ ତଳକ ମୋର ।
ଯୌବନରେ ବନିତା । ମୁଁ ତୋର ପଦ୍ମର ଅଳତା ଲତା । ୨୪ ।
ମଞ୍ଜିଷ୍ଠା ରଙ୍ଗ କି ହୀନ ବସନ୍ତ । ଧୋଇ ଦେଲେ ଛାଡ଼ିଯାଏ ସତନ୍ତ ।
ସେହି ପରକାରେ ପଙ୍କଜ ମୁହିଁ । ଛାଡ଼ିଲେ ତୁ ତ ମୁଁ ଛାଡ଼ିବି ନାହିଁ ।
ମୋ ସବୁ ଭରସା । ରସା ମଧ୍ୟରେ ଏକା ରସାଳସା । ୨୫ ।
ପୁଣି ଭ୍ରମେ ଭ୍ରମେ ବିପିନ ସ୍ଥଳେ । ଯେଉଁ ପାଦପରେ ପଲ୍ଲବ ଚଳେ ।
ହିଁକାର ହୁଙ୍କାର ଶୁଣଇ ଯହିଁ । ମନେକରେ ବାଳାମଣି ଅଛଇ ।
ଲୁଚିଥିଲା କାହିଁ । ମୋହର ମାନସ ବୁଝିବା ପାଇଁ । ୨୬ ।
ଯେଉଁ ଲତାପରେ ବସନ୍ତ ପିକେ । ପ୍ରତେ ପରାଣବନ୍ଧୁ ଷଡ଼ ଡାକେ ।
ନିକଟକୁ ଯାଇ ରମଣ ମଣି । ଲତା କୋଳ କରି ଧରଇ ପୁଣି ।
ପୁନଃ ପୁନଃ ଚୁମ୍ବେ । ହାସ ଓଷ୍ଠ ଛବି ପୁଷ୍ପ ପଲ୍ଲବେ ।୨୭।

---

୨୧ । ଶୋଭାମନ୍ଦିର—ସବୁ ସୁନ୍ଦର ସ୍ଥାନ, ମନ୍ଦଗ୍ରୀଷୀ—ସୁଲୋଚନା, ଅଭିରାମ —ସୁନ୍ଦର ।

୨୩ । ଯୋଗ—ତପସ୍ୟା ସମସ୍ତ, ଯୋଗରେ ମନାଇ—ସହବାସପାଇଁ ସ୍ରାଳ୍ପ କରଇ ।

୨୪ । ତଳକ—ଶଡ଼ା, ପଦ୍ମର—ପାଦ ।

୨୫ । ମଞ୍ଜିଷ୍ଠାରଙ୍ଗ—ମଞ୍ଜୁଆତରଙ୍ଗ, ରସା—ପୃଥିବୀ; ରସାଳସା —ରସିକା

୨୬ । ହୁଙ୍କାର—ଶବ୍ଦ, ମାନସ—ମନ ।

ଗୁଣ୍ଡ ଦେଇଣ ଉଡ଼ିଗଲେ ପିକ । ପ୍ରିୟାଙ୍କୁ ସୁମରି କରଇ ଶୋକ ।
ପୁଲକାଇ ଦେଉଥାଇ ଶରୀର । ତାହାର ଭାବେ ହୋଇ ଜରଜର ।
ଫୁଲମାଳା କରି । ତମାଳେ ମଣ୍ଡିଇ କେଶ ବିସ୍ତୁରି ।୨୮।
ନାରିକେଳଫଳ ନାସି ଉରଜ । ସମାନ୍ତୁଁ ଚକ୍ଷେ ଦେଖାଇ କରଜ ।
ଅଳିଙ୍ଗନେ ତୁହି ବିଲଗ୍ନ କରୁ । ଏବେ ଧନ ଭିନ୍ନ ତୋହ ଯୋଗରୁ ।
କରଗତ ହେଲେ । ଏଥର ଏ ଦଣ୍ଡ ପାଇବୁ ଭଲେ । ୨୯ ।
କହଇ ବୃକ୍ଷଙ୍କୁ ଅଛ ପାବନୀ । ଜାମ୍ବବ ଡାଳିମ୍ବ କୁନ୍ଦକୁ ଘେନି ।
ପୁଣି ପନସ କଞ୍ଚନ ଚନ୍ଦନ । ଏହୁ ହୋଇଛନ୍ତି ମହାରଞ୍ଜନ ।
ଦିଅ ମୋ ବନିତା । ଶ୍ରୀରାମଙ୍କୁ ଦେଲେ ହନ୍ତିଲ ସୀତା ।୩୦।
ଯେଣୁ ସାଧୁ ନାମ ସ୍ମରଣ କଲା । ଶୂନ୍ୟେ ବଲ୍ଲକୀ ଶବଦ ଶୁଭିଲା ।
ଯୁବରାଜନ ମନରେ ନ ଭାଳ । ବଳା ଲଭିବ କାରୁଣ୍ୟ ସମ୍ଭାଳ ।
ଅମର ଶାପରେ । ହେବ ବିଚ୍ଛେଦ ମାସ ସମ୍ବତ୍ସରେ ।୩୧।
ନାରଦ ମୁଖ ଗଲା ଦିଶି ଦିଶି । ହେତୁ ପ୍ରସାରିଲା ସେଠାରେ ବସି ।
ଜାଣିଲା ନୁହଇ ନିଜ ଭବନ । କାବେରୀ ତଟ ରସୋଦୟ ବନ ।
ଦେଖେ ମେରୁ ଗିରି । ମହୀ-ମହିଳା କୁଚ ସ୍ତନ ପରି । ୩୨ ।
ଅର୍ଦ୍ଧ ଭାଗରେ ଚନ୍ଦ୍ର ସୂର୍ଯ୍ୟ ଗତ । ରତନ ଶୃଙ୍ଗମାନ ଜଳୁଛନ୍ତି ।
ମନେ କଲା ଏ ଏଲାବୃତ୍ତଖଣ୍ଡ । କନକଧୂଳି ମଣିଶିଳ ଗଣ୍ଡ ।
ଭ୍ରମି ତା ଦେଖଇ । ଗୃହମିତ୍ର ସଙ୍ଗେ ବ୍ୟାକୁଳ ହୋଇ । ୩୩।

---

୨୮ । ପୁଲକାଇଦେବା—ରୋମ ଟାଙ୍କୁରିବା ।

୨୯ । ବିଲଗ୍ନକରୁ—ଅଲଗା କରୁ ।

୩୦ । ପାବନୀ—ହନୁମାନ, ଭୀମ, ହରିଡ଼ାଗଛ' ଜାମ୍ବବ—ଜାମୁକୋଳିଗଛ । ପନସ—ପଣସଗଛ ଓ କଞ୍ଚନ—କଞ୍ଚନଗଛ ଓ କଞ୍ଚନ ମାଙ୍କଡ଼, ଚନ୍ଦନଗଛ ଓ ଚନ୍ଦନ ନାମକ ମାଙ୍କଡ଼, ମହାରଞ୍ଜନ—ଅତି ସୁନ୍ଦର ।

୩୧ । ଶୂନ୍ୟ—ଆକାଶ, ବଲ୍ଲକୀ—ବାଣୀ, କାରୁଣ୍ୟ—ବେଦନ ।

୩୨ । ହେତୁ ପ୍ରସରିଲା—ଚେତାହେଲା, ଭବନ—ଘର ।

୩୩ । ଅର୍ଦ୍ଧଭାଗରେ—ଅଧାରୁଆରେ, ମେରୁର ଏକ ପାଖରେ ସୂର୍ଯ୍ୟ ଚନ୍ଦ୍ର ଗତକରେ ।

ଦେଖିଲେ ତାଙ୍କୁ ଗନ୍ଧର୍ବ କନ୍ୟାରେ । ଏମନ୍ତ ଅଶଙ୍କା କଲେ ମନରେ ।
ଦେଖିବେ ଯେବେ ଏ ପୁଂସମାଧୁରୀ । ଭ୍ରଷ୍ଟା ହୋଇବେ ଅମ୍ଭ ମନୋହାରୀ ।
ତାକ ତାଙ୍କୁ ନେଲେ । ଅମୂଲ୍ୟମଣି ଗୁହାରେ ଥୋଇଲେ । ୩୪ ।
ସ୍ତ୍ରିରୀ ପୁରୁଷ ଅନୁରାଗ ହେଲା । ହେବା ପାଇଁ ବାହ୍ୟ ବିଚ୍ଛେଦ କଲା ।
ବେଦ ଜଡ଼ ହେଲେ ରସିକପଣ । ବଡ଼ ହୋଇଅଛୁ ସୁଜନେ ଜାଣ ।
ଏ ବିଚାର ଛାନ୍ଦ । ଭଣିଲ ରାମ ଚନ୍ଦ୍ର ଉପେନ୍ଦ୍ର । ୩୫ ।

---

# ଚତ୍ୱାରିଂଶ ଛାନ୍ଦ

( ବିରହ ଅବସ୍ଥାରେ ଗ୍ରୀଷ୍ମଋତୁ ବର୍ଣ୍ଣନ )

ରାଗ—ବଙ୍ଗଳାଶ୍ରୀ

ଗ୍ରୀଷମ ସମୟ ପ୍ରବେଶ ହୋଇଲା ନବୀନା ଦୂତୀ ପ୍ରକାର ।
ପତି ସଙ୍ଗତେ ଶୁଆଇ ଚନ୍ଦ୍ର କରେ ଲାଜ କରାଇଲା ଦୂର ।
ବିରହିଚିତା ପରାୟେ ଦଣ୍ଡେ ଦଣ୍ଡେ ଦଣିଲେ ବନ ଅନଳ ।
ରଜନୀକର ପବନ ବହି ଦେବଦୀପକୁ କଲା ଅକ୍ଳଳ । ୧ ।
ସନ୍ତତ ହୋଇଲେ ଜଗତି ପରାଏ ଘନରସ ବିହୀନରେ ।
ରସିକ ରସାଧବ ପ୍ରାୟ ସରସୀ ମଣ୍ଡପୀ ଅଲଙ୍ଗନରେ ।

---

୩୪ । ଅଶଙ୍କା—ଭୟ ।

ଚନ୍ଦ୍ରଭାନୁ ଲାବଣ୍ୟବତୀ ସହ ଗୃହମିତ୍ରଙ୍କୁ ନେଇ ଜଳକେଳି ଓ ବନବିହାର କରିବାବେଳେ ଋଷିମାନେ ନାରୀପଦ ସତ୍କାରେ ଦେବୀ ପୂଜା କରି ଦେବୀ ମାୟାରେ ଚନ୍ଦ୍ରଭାନୁ ଆଦି ଗୃହମିତ୍ରଙ୍କୁ ହରଣ କରିନେଲେ । ତହୁଁ ଲାବଣ୍ୟବତୀ ସହ ଆନନ୍ଦ ସଙ୍ଗିନୀମାନେ ବିରହରେ ଉଚ୍ଛନ୍ନ ହେଲେ ।

---

# ଚତ୍ୱାରିଂଶ ଛାନ୍ଦ

୧ । ବିରହିଚିତା—ବିରହୀଙ୍କ ଚିତାଅଗ୍ନି, ଦଣ୍ଡେ—ଦଣ୍ଡରେ, ବନଅନଳ—ବନଅଗ୍ନି, ରଜନୀକର—ଧୂଳିସବୁ, ଦେବଦୀପ—ଚକ୍ଷୁ ।
ଏଠାରେ ଖରାଦିନ ଦୂତୀପରି ହେଲା—କାରଣ ଦୂତୀ ସ୍ତ୍ରୀ ପୁରୁଷଙ୍କ ମନକୁ ନାନାକଥା କହି ଭୁଲାଇ ଦିଏ । ଖରା ହେତୁ ଚନ୍ଦ୍ର କିରଣରେ ଶୋଇବାରୁ ଦେହରେ ଲୁଗା ରହିଲା ନାହିଁ ପରସ୍ପରକୁ ଦେଖି ଲାଜ ଦୂର ହେଲା—ଧୂଳି ଉଡ଼ିବାରୁ ଆଖିରେ ପଡ଼ି ମଧ୍ୟ କଷ୍ଟହେଲା ।

ମୃଗେ ପ୍ରକଟ ରସନା କଲେ ବିପରୀତ-ରତା ପ୍ରାପ୍ତ ହୋଇ ।
ପଦ୍ମାବଳୀ ସ୍ଥାନେ ରତାନ୍ତ ନାୟିକା ସମାନ ଭରୁଏ ବହି । ୨ ।
ଜନେ ଚନ୍ଦ୍ରମାରେ ହିଜତ ହୋଇଲେ ଗୃହିଣୀ ନିଶା ଯେମନ୍ତ ।
ତୂଳାରାଶିରେ ଯୁକ୍ତ ହେଲେ ଶାଳ୍ମଳୀ ମୃଗ ମଳମସ ବତ ।
କରେ ତାପିତ କଲେ ରବିମଣ୍ଡଳ ପ୍ରତାପୀ ରାଜା ଯେସନ ।
ଭୁଜଙ୍ଗ ପଞ୍ଚଷ୍ଣୁଇରେ ରଙ୍ଗ ଶିଖୀ କୁଳଟାନାରୀ ସମାନ । ୩ ।
କାମ ଚଳାଇଲା ସରଣୀ ଧାମରେ ନାଗରୀ ଦୋଷୀ ବିଦେଶୀ ।
ନବୋଢ଼ା ଗାଢ଼-ସୁରତ କାଳ ପ୍ରାପ୍ତ ଭୃଙ୍ଗ ମଲ୍ଲୀ ମଲ୍ ଭାଷି ।

---

୨ । ସରିତ—ନଦୀ, ଘନରସ—ପାଣି, ଜରତୀ—ବୁଢ଼ୀ, ସରସୀ-ପୋଖରୀ, ଖରାଦିନେ ପୋଖରୀରେ ମଧ୍ୟ ପଙ୍କ ଘାଣ୍ଟିଲାପରି—ରସିକ ରାଜାମାନେ ରସ ଅଶାରେ ମଧ ରାଣୀମାନଙ୍କୁ ଆଲିଙ୍ଗନ କରି ରସସବୁ ଘାଣ୍ଟିଲେ । ରସନା—ଜିଭ, ଅଣ୍ଟାଘାଗୁଡ଼, ପ୍ରକଟ –ବାହାର, ଖରାହେତୁ ମୃଗମାନେ ଜିଭ କାଢ଼ିଲେ—ଖରାହେତୁ ଏ ପାଖ ସେପାଖ ହେବାରୁ ଅଣ୍ଟାଘାଗୁଡ଼ି ଟାଜିଲା, ତରୁ-ଗଛ, ଗଛରୁ ପତ୍ର ଶୁଖିଯାଇ, ଝଡ଼ିବାରୁ ସ୍ତ୍ରୀମାନେ ରତ କାଳରେ ଶତା ଲଭିଥିବାରୁ ସେହିପରି ଦିଶିଲା ।
୩ । ଗୃହିଣୀନିଶା—ଜହ୍ନରାତି, ରଜିତ—ସୁନ୍ଦର, ଶାଳ୍ମଳୀ—ଶିମିଳି, ମୃଗମଳ, ମସବତ—କାରଣ ମଳିନ ସଦୃଶ, ତାପିତ-କଷ୍ଟ, ଶିଖୀ—ମୟୂର ଭୁଜଙ୍ଗ—ସାପ, ଦାସ—ପୁରୁଷ, ତୂଳାରାଶି—କାର୍ତ୍ତିକମାସ ଓ ତୂଳାସବୁ ।
ଗରମ ହେତୁ ଜହ୍ନ ରାତିରେ ଲୋକମାନେ ଚନ୍ଦ୍ର—କିରଣରେ ଶୋଇବାକୁ ପଦାରେ ଇଚ୍ଛାକଲେ, ଶିମିଳିଗଛର ମଞ୍ଜିଫାଟି ତୂଳା ବାହାରିଲା—ଚନ୍ଦ୍ର ମଧ ତୂଳରାଶିକୁ ଗଢ଼ିକଲା, ରାଜା ଖଜଣା ପାଇଁ ପ୍ରଜାଙ୍କୁ କଷ୍ଟ ଦେଲା, ଖରାରେ ଲୋକେ କଷ୍ଟ ପାଇଲେ ମୟୂର ଖରାହେତୁ ପୁଚ୍ଛଟେକି ବିକଳ ହେଲା ଓ ସାପକୁ ଗୋଡ଼ାଇଲା—ବିଟପୀମାନେ ପରପୁରୁଷଙ୍କୁ ମଧ ଅଶ୍ରୟ ଦେଲେ ।
୪ । ଧାମ—ପୋଡ଼ାନିଅାଁ, ସରଣୀ—ବାଟ ।
ପଣା ସଂକ୍ରାନ୍ତିରେ ପାନ୍ଥୁଆମାନେ ନିଆଁରେ ପଶିଲେ—କନ୍ଦର୍ପ ହେତୁ ବିଦେଶରେ ଥିବା ପୁରୁଷ ନିଜ ସ୍ତ୍ରୀ ସକାଶେ ବାଟରେ ଖରା ହେତୁ କଷ୍ଟ ପାଇଲେ ।
ନବୋଢ଼ା—ନୂଆ ଯୁବତୀ, ନୂଆ ସ୍ତ୍ରୀମାନେ ଗାଢ଼ ସୁରତରେ ମଲ୍ ମଲ୍ କହିଲାପରି, ଭଅଁରମାନେ ପବନରେ ଦୋହଲୁଥିବା ମଲ୍ଲୀଫୁଲରେ ବସି ନ ପାରି ଗୁଣୁ ଗୁଣୁ ଶବ୍ଦ ( ମଲ୍ ମଲ୍ ) କଲେ ।

ଧୀବର-ରମା କଳେବର ପରାୟେ ଗନ୍ଧେ ସିନ୍ଧୁବାର ଫୁଲ୍ ।
ଝିଙ୍କାର ଝଂକାର ଝଂଝିଅ ଶବଦେ ବିପିନ ନଟିକା ତୁଲ୍ । ୪ ।

ଏତେ ପ୍ରଭଞ୍ଜନ ରଞ୍ଜନ ହୋଇଲା ବ୍ୟଞ୍ଜନ ଉତର ପକ୍ଷୀ ।
ବିନାଶିଲେ ଭାନୁ ସନ୍ତାପକୁ ଶଶୀ ଦିବସ ତାପକୁ ଜିଣି ।
ଶ୍ଳେଷ୍ମ-ଅଶ୍ରିତ ଗାୟକ ସ୍ୱର ପ୍ରାୟେ ଶୁଭଇ କୋକିଳ ନାଦ ।
ଏ ଋତୁ ଗୁହିଁ ଚନ୍ଦ୍ରକାନ୍ତ ବଗୃରେ ଲଭ ବଲ୍ଲଭା ବିଚ୍ଛେଦ । ୫ ।

ପଦେ ପଦେ ଅଣି ପରତେ କରାଇ ବିଧାତା ବିଧାନ ଦେଖ ।
ପୀରତ ହୋଇ କଥାଏ ଉପୁଜଇ ପରଶ ପରମ ସୁଖ ।
ପ୍ରାଣରୁ ଅଧିକ ଯେଉଁ ଯେନାଯେନ ତାହା ଯାହା କରେ ଭଙ୍ଗ ।
ପବି ପତନ ଶିରେ କୃପା ନ କରେ ଜାଣିଲ ଅତ ପିଶୁନ । ୬ ।

ମନ ଜାଣିବାକୁ ପ୍ରିୟାସମ ଜଣେ ଖୋଜିଲେ ନ ଥିବ କାହିଁ ।
ମୋ ମନ ଦେଖୁଛି ପ୍ରୀତ ଦେଖିବାକୁ ତାହାର ସମାନ ସେହି ।
ତାହା ପ୍ରତିବିମ୍ବ ସୁନ୍ଦରପଣକୁ ତାକୁ ପ୍ରତିତୁଲ୍ୟ ଅଛି ।
ଏମନ୍ତ ପଦାର୍ଥ ପାଇ ହରାଇଲେ ପଶୁ କି ପାରିବ ମୂର୍ଚ୍ଛି । ୭ ।

ଜାଣି ନଥିଲକୁ ଏ ରସ ଏମନ୍ତ ସ୍ମରକୁ ଦହିଲେ ହର ।
ଜାଣିଲ ଦିନରୁ ଯୁବତୀକି କଲେ ଅର୍ଦ୍ଧଅଙ୍ଗେ ଅଙ୍ଗୀକାର ।
ଅଜନ୍ମ ବ୍ରହ୍ମଚର୍ଯ୍ୟ ପର୍ଣେ କେ ବଡ଼ ବୁଝି ଋଷ୍ୟଶୃଙ୍ଗ ଠାରୁ ।
ନିଜ ଦୀକ୍ଷା ଛାଡ଼ି ଶିକ୍ଷା କଲେ ରସ ରୂପାଜୀବା କରି ଗୁରୁ । ୮ ।

ସୁଧା ସ୍ୱାଦୁ ପାଇ ଶିରଚ୍ଛେଦ ରାହୁ ନ ଛାଡ଼ିଲ କଦାଚିତ ।
ପ୍ରୀତ ଏମନ୍ତ ଚନ୍ଦ୍ରମଣି ପାଷାଣ ଚନ୍ଦ୍ର ଚାହିଁ ଦ୍ରବୀଭୂତ ।
ପ୍ରୀତ ଅନ୍ତର ଯେମନ୍ତ ହୋଇ କାଷ୍ଠ ହେଲେ ଫାଟିଯାନ୍ତା ସତେ ।
କାହିଁ ଘଟନା ହୋଇଛି ଘଟ ମୋର ଗୋଚର ନୋହିଲା ମୋତେ ।୯।

---

ସିନ୍ଧୁବାର-ବେଗୁନିଆ ଫୁଲ୍, ବିପିନ-ବଣ, ଧୀବର ରମା କଳେବର—ଖରାଦିନେ ମାଛ ଶୁଖାଇବାରେ ଓ ମାରିବାରେ କେଉଟୁଣୀମାନଙ୍କ ଦେହ ବେଗୁନିଆ ଫୁଲପରି ଅଇଁସିଣିଆ ଗନ୍ଧ ହେଲା । ବଣରେ ଝିଙ୍କାରି ଶବ୍ଦ ହେବାରୁ ଓ ପବନ ଯୋଗେ ବଣ ନାଚିଲା ପରି ଜାଣୁଥିଲି ହେଲା ।

୫ । ପ୍ରଭଞ୍ଜନ—ପ୍ରଳୟ ପବନ, ରଞ୍ଜନ—ସୁଖପ୍ରଦ, ଭାନୁ ସନ୍ତାପକୁ-ଖରା କଷ୍ଟକୁ, ଶ୍ଳେଷ୍ମ ଅଶ୍ରିତ—ଶରଦ, ନାଦ—ଶବ୍ଦ ।

୬ । ପବି—ବଜ୍ର, ପିଶୁନ—ଖଳଲୋକ ।

ଏହା ସ୍ମରବର୍ଦ୍ଧା ଠାରୁ ମରବାର ଭଲ ଘେନୁଅଛୁ ମନେ ।
ଅଜଯାଏ ଅଜନମସୁଖୀ ଦୁଃଖ ଦେଖି ନ ଥିଲି ସ୍ୱପନେ ।
ନୀରଜ କଢ଼ ଜରଜରେ କରଜ କ୍ଷତ କଲେ ବୋଲେ ଇଷି ।
ବିଷମବିଶିଖ ବିଶିଖକୁ ଲକ୍ଷ ସେ ହୋଇଲି ଏବେ ଅସି । ୧୦ ।
ମୋ ଭାବ ଭାବନା କର କରିଗତି ନୀର ନିରତରେ ବହୁ ।
ମୃଗ ଖଞ୍ଜନ ଗଞ୍ଜନ ଅଖିରେ ତା ଅଞ୍ଜନ ରଖିବ ନାହିଁ ।
ଲୁଚ ହୋଇଯାଏ ନିଜଗ୍ଳାନି ଥାଇ ଯେଉଁ ବଦନକୁ ଇନ୍ଦୁ ।
ନିହାର ନିକର ପତନ କମଳ ମଳିନ ବହିବ ବନ୍ଧୁ । ୧୧ ।
ହୃଦ ବନ୍ଧୁ ନିଦ କୁମୁଦହାସୀକି ପଲ୍ୟଙ୍କେ ଅସଇ ନାହିଁ ।
ଚଞ୍ଚଳେ ଅଞ୍ଚଳେ ମହୀରେ ମହିଲା ପଲଙ୍କେ ଶୋଇବ କେହୁ ।
ଘଣ୍ଟ ଘଣ୍ଟକରେ ନାଡ଼ୀ ଛୁଣ୍ଡଯାଇ ହେଉଥିବ ପରି ମୋହ ।
ବିରହେ ତପତ ହୋଇଥିବ ନବସପତ ବୟସୀ ଦେହ । ୧୨ ।
କିଶୋରୀ ତିଳକ ପାସୋର ଦେବନି ତିଳକ ରଚନା ଚଉଁ ।
ତିଳକ ଯୁଗ ପରିଯୁ ନ ସହିବ ଯୁଗଳ ନୋହିବା ହେତୁ ।
ରତି ସଦୃଶା ସୁଦୃଶାକୁ କି ଦଶା ଦେଲି ଦାରୁଣ ଦଇବ ।
ଚିତ୍ତେ ପରତେ ନ ଥିଲି ମୋର ସହୀ ଅନ୍ତର ସତେ ହୋଇବ ।୧୩।
ଧନକ ଧନକ କନକଅଙ୍ଗୀର ଅନେକ ଭାବକୁ ଧ୍ୟାୟି ।
ଜୀବ ଥିବାଯାକ ଜୀବିକା କରି ମୁଁ ବୁଲୁଥିବ ଯୋଗୀ ହୋଇ ।
ସୁରୁଶୀଳା ନାମ ଉଚ୍ଚାରୁଁ ଉଚ୍ଚାରୁଁ ମାରୁ ଏକା ମୋତେ ମାର ।
ରସିକ ସଂସାର ମଧ୍ୟରେ ପ୍ରଶଂସା ସାର ହୋଇ ରହୁ ମୋର । ୧୪ ।

---

୮ । ସ୍ମର- କନ୍ଦର୍ପ, ଦୀକ୍ଷା-ତପସ୍ୟା, ରୂପାଜୀବା-ବେଶ୍ୟା ।
୯ । ପାଷାଣ-ପଥର, ଚନ୍ଦ୍ରମଣି-ପଥରବିଶେଷ, ଘଟ-ଦେହ ।
୧୦ । ନୀରଜ—ପଦ୍ମ, କରଜ—ନଖ, ବିଷମ ବିଶିଖ—କନ୍ଦର୍ପ ଶର ।
୧୧ । କରୀଗତି—ଗଜଗମନ, ଗଞ୍ଜନ—ପରାସ୍ତ ନିଜଗ୍ଲଇବା—ମାନିବା, ଇନ୍ଦୁ—ଚନ୍ଦ୍ର, ନିହାର-କାକର, ନିକର-ସମୂହ ।
୧୨ । ମହୀରେ-ତଳେ, ତପତ-ତତଲ, ନବସପତ-ଷୋହଳ ।
୧୩ । କିଶୋରୀ ତିଳକ—ନାରୀଶ୍ରେଷ୍ଠ, ତିଳକ ରଚନା—ଟିକା ଦେନିବା, ରତିସଦୃଶା—ରତିତୁଲ୍ୟା, ସୁଦୃଶା—ସୁନ୍ଦରୀ ।
୧୪ । କନକଅଙ୍ଗୀ—ସୁନାଗୋରୀ, ସୁରୁଶୀଳା—ସୁନ୍ଦରୀ ।

ରସଲତା ପାଦେ ଅଲତା ରଞ୍ଜିବାପାଇଁ ବଢ଼ାଇଲେ କର ।
ବଧୂଲି ଅଧର ଧରଣ ବୋଲଇ କୁସୁମେ କବରୀ କର ।
ବେଣୀଟି ବୋଲ କହିବାକୁ ଜାଣି ତା ନୋହିବ ତାହିଁକି କହି ।
ଅସନମତ ସନମତ ସେ ମତ୍ତକାଶିନୀ ଭାଷାରେ ଥାଇ । ୧୫ ।
ଧର ପାନ ବୋଲ୍ ଯାଚନ୍ତି ବେଳକୁ ମାଗିଲେ ଅପୂର୍ବ ଭର ।
ଏହି କଥା ନାକ ଜୀବକା ହେଲା କି ରସିକାବର ଭଣ୍ଡାର ।
ଅବଳା ବଳ ଫିଟିଗଲେ ଖଞ୍ଜି ମୁଁ ରଞ୍ଜିବା ବଗୃରୁଂ ମନ ।
ଅନନ କମାଇ ଅନ କଥା ନାହିଁ ବୋଲ୍ ଯେ ପକାଇ ଅନ । ୧୬ ।
ମଦାଳସା ଓଷ୍ଠ ଶୋଷ କରୁଥାଇ ଚୁମ୍ବନ ଲାଳସୀ ହୋଇ ।
ପିକବାଣୀ ପାନପିକ ପକାଇବା ବ୍ୟାଜରେ ଲାଜେ ବଞ୍ଚାଇ ।
ଧନକୁ ସମ ମନକୁ ଅଣିବାକୁ ନୋହିବେ ସର୍ବଜ୍ଞମାନେ ।
କସ୍ତୁରୀ ଗୋଳୁଁ ମୁଁ ଚତୁରୀ ସ୍ତନକୁ ଗ୍ରେଳେ ଅଚ୍ଛାଦିଲା ଘନେ ।୧୭।
ଧେଣ୍ଟ ରସାଳ ରସାଳସା ଭାଷିଲା ଚଣା କର ଦିଅ କି ନା ।
ବୋଇଲ୍ ଅନ ନ ଜାଣଇ ନାରୀ ମୁଁ ନାରକେଳ ଚଣା ଚନା ।
ଜାଣିଛ ବୋଲ୍ ଅଣିଛୁ କି ଭଙ୍ଗୀକି ଅଳପ ହସିଲା ହୋଇ ।
ଯେଣେ ଅନାଇଲେ ତେଣେ ତ ଦିଶଇ ଜଣେ ସିନା ଚନ୍ଦ୍ରମୁହିଁ ।୧୮।
ମନେ ନୋହିଥିଲା ସୁମନରଜ କି କବରୀ ଧୂପିତ ଧୂମ ।
ଲାଗି କୋମଳାଙ୍ଗୀ ଜଳଜନୟନ୍ତ ଜଳ ଯେ ହେଲା ଜନମ ।

---

୧୫ । ରସଲତା—ରସିକା, କବରୀ—କେଶବିନ୍ୟାସ, ଜୁଡ଼ା, ଅସମ୍ମତ—ନାହିଁ କରିବା ।

୧୬ । ଧର ପାନକୁ ଧର, 'ଅ' ଲଗାନ୍ତେ ଅଧର-ଓଷ୍ଠ ପାନ, ଜୀବକା—ବ୍ୟବସାୟ, ଅବଳା—ସ୍ତ୍ରୀ, ଅନନ—ମୁହଁ, ଅନ-ଅନ୍ୟ, ଅନ-ଋଣ ।

୧୭ । ଚୁମ୍ବନ ଲାଳସୀ—ବୋକରେ ପ୍ରିୟ, ପିକବାଣୀ—କୋଇଲି କଣ୍ଠି, ଗ୍ରେଳେ—ଢାଙ୍କିଲାରେ ।

୧୮ । ରସାଳ—ଅମ୍ବ, ନାରକେଳ—ନଡ଼ିଆ, ଅମ୍ବସଙ୍ଗେ ଗାଲ—ନଡ଼ିଆ ସଙ୍ଗେ କୁଚ ।

୧୯ । ସୁମନରଜ—ଫୁଲରେଣୁ, କବରୀଧୂପିତ ଧୂପ—ବାଳ ଶୁଖାଇବା ଧୂଆଁ, ପୂର୍ବେ ଝୁଣା ଗୋଗୁଳ ଧୂଆଁରେ ବାଳକୁ ଶୁଖାଉଥିଲେ, ସାରମାଳ—ପଦ୍ମଭୁଇ ବା ଉତ୍ତମ ସ୍ତ୍ରୀ, ଝୁଣା ଧୂଆଁରେ ଦେହ ଦେଖି ବା ଦେଖି ମନେ ହେଲା ମାନକଲା, ତେଣୁ ପଦ୍ମ ଭୁଇଟି ବା ପାଦପଦ୍ମରେ ଶିର ରଖି । ଶୋଭିତଲେ ପଦ୍ମକୁ କହିବାକୁ ସେ

ବିବଶ ହୋଇ ସାରସଫୁଲ ନେଇ ଲଗାଇ ଦେବାକୁ ଶିରେ ।
ପୋଛିଲା ନେତ୍ର ପୁଚ୍ଛିଲା ମନମଥ ଅଛଟି କି ଜୀବନରେ । ୧୯ ।
କିସ ବିଚାରିଲା ପୁଣ ପଚାରିଲା ଜଳେ ଜାତ ମୀନ ବୋଲି ।
ତେତେକ ବେଳକୁ ଭ୍ରୂବଲ୍ଲୀ କମ୍ପିଲା ନାସିକା ଉଠିଲା ଫୁଲି ।
ବୋଇଲି ସୁତନୁ ଅଖିଳକୁ ଧନ୍ୟ ପାଖିଲି ଏ କଥା ମୁହିଁ ।
ପାଣି ଦେଉଥିଲି ଶାଣିବା ବାଣକୁ ବାନ୍ଧବ କନ୍ଦରୁ କାହିଁ । ୨୦ ।
ମୁଁ ନିଜ ସହ ମୁନିଙ୍କି ବନ୍ଧି କହ କି ଯଶ ଅଛି ତହିଁରେ ।
ଅଛି କାରଣ ସୁର ଅନୁସରଣ କରିଛି ପ୍ରହାର ହରେ ।
ଚତୁରଦଶଭୁବନ ମୋହିନୀ କି ଚତୁର ପଣ କହିଲା ।
ତହିଁକି କିଛି ନ କହି ତା ସ୍ତନକୁ ଚାହିଁଲା ହୋଇ ରହିଲା ।୨୧।
ଏହି କାଳେ କୋଳେ ଚାନ୍ଦନୀ ଉପରେ ଚାରୁଚୂରୁ ଥାଇ ଶୋଇ ।
ହେଉଥାଇ ମନ ବାଳାବିବସନ ଦର୍ଶନ କରିବା ପାଇଁ ।
ଚନ୍ଦ୍ରକୁ ଅସୁଛି ହୃଦକୁ ରଚିଲା କୃଷ୍ଣ ସପତ୍ନୀ ନିଶି ।
ବନ୍ଧୁ ମୋ ବନ୍ଧ ସଂଯୋଗେ ଥାଉ ଥାଉ ଅକାଶେ ପ୍ରକାଶ ଶଶୀ ।୨୨।
ଏଣେ ମରୁଥାଇ ଏଣୀଇକ୍ଷଣୀ ଯେ ମନ ମିଶିବାକୁ ଗାଢେ ।
ତେଣେ ନେଉଥାଇ କରକ ରଦନୀ କର ଢାଙ୍କିବାକୁ ନେଢେ ।
ହେଲଟି ବୋଲି ଯେ ଲଜେ ନେଉଥାଇ ମୋ ଉରଜକଟେ ମୁଖ ।
ଚାହିଁ ବୋଲୁଥାଇଁ ନ ପାଇ ପାଇଛି ନୟନ ପରମ ସୁଖ । ୨୩ ।
ଭାବ ଉପରେ ଯେ ଭାବ ଉପୁଜିଲା ରତାନ୍ତେ ଶ୍ରାନ୍ତେ ଅଧୁର ।
ଲଜ୍ଜା କାତରେ ତରତରେ ତରୁଣୀ ପିନ୍ଧିଲା ବାସ ମୋହର ।
ମୁଁ ଯେ ଭାଷିଲି ଦଶି ଦଶି ଅସୁଛି ଏଣିକି ସୁଭାଗ୍ୟ ସିନା ।
ମୋହପରା ହୋଇବାକୁ ହୋଇଲାଣି ପରାଣେଶ୍ୱରୀ ଭାବନା । ୨୪ ।

---

କହିଲ କନ୍ଦର୍ପ ତ ଅଛି, ସ୍ତ୍ରୀମାନେ କେଉଁଣ ଧୈର୍ଯ୍ୟ ଧରି ପାରିବେ ଏ କି କଥା ? ଜଳଜ—ପଦ୍ମ ।

୨୦ । ଭ୍ରୂବଲ୍ଲୀ—ଭ୍ରୂଲତା ଦୁଇ ।

୨୧ । ଚତୁରଦଶ—ଚଉଦ, ସ୍ତନକୁ ଚାହିଁଲେ—ତଳକୁ ମୁହଁ ପୋତିଲେ ।

୨୨ । ଚାରୁଚୂରୁ—ସୁନ୍ଦର, ବିବସନ—ଲଙ୍ଗଳା ।

୨୩ । ଏଣୀକ୍ଷଣି—ମୃଗନେତ୍ରୀ, କରକରଦନୀ—ଡାଳିମ୍ବଦନ୍ତୀ ।

୨୪ । ରତାନ୍ତେ—ରତି ଶେଷରେ, ଶ୍ରାନ୍ତେ—ଅବଶରେ ।

ଶ୍ରବଣେ ତରକ କର କି ଭାବରେ ଢୋରକାକୃତ ସେ କଲା ।
ପଣତେ ପଣତେ ପିଣ୍ଡ ବୋଧ ମୋତେ ବାସପାଲଟାଇ ନେଲା ।
ସେ ତଭ ଶୋଭାରେ ଲେଉ ହେଲ ଅଖି ଅନକ ଦେଖିବ ଆଜ ।
ଗୁଣି ହେଉଅଛୁ ପୁଣି ହେବ କି ସେ ଉତ୍ସବ ଜୀବନେ ଥାଉଁ ।୨୫।
କେତକୀ ଗୋଟା ଚରମ ମନୋରମ ଏତେକ ଦେଖିଛୁ ମୁହିଁ ।
ହେମ ରମ୍ଭାପଙ୍କ କାମପ୍ରଭା ମାନ କି ଉପମା ଦେବା ତହିଁ ।
ଉପରୁଁ ଚୀର ଦୂର କର କଣୁଁ ତନୁ ପୀଡ଼ନେ ଯତନ ।
ମୋର ପ୍ରବେଶରେ ଲଜ୍ଜା ଅବେଶରେ ପଛକର ଉଭା ଧନ ।୨୬।
କୃସୁମ ଲଙ୍ଘିଲ ଅମରମୋହନୀ ବୋଲ ମୁଁ ବୋଲିବାବେଳେ ।
ହୃଦ କଷଟିରେ କାନ୍ତି କନକକୁ କଷିଲ କୁଙ୍କୁମ ଛଳେ ।
ପ୍ରେମପଞ୍ଜରା ପଢ଼ାଶାରୀ ପଞ୍ଜରୀ ସେ ଧନ ଅଦ୍ୟରୁ ଦ୍ୱାରେ ।
ମୋ ପିବା କହିବାପାଇଁ ଲମ୍ବାଇ ଯେ ସୁବେଶ ହୁଅଇ ପୁରେ ।୨୭।
ଅଳକା ରେଖୁଥିଲ ବସି ହଁଲକାନନୀ ଯେ କଉିଶ ଘେନି ।
ଭବର କାବଡ଼ ମାବ ମୋକ୍ଷ ଭାବ ପଛୁଁ ଗଲ ହୋଇ ତୂନି ।
ବିମ୍ବଓଷ୍ଠା ବିମ୍ବ ଦେଖି ଆଦରଶେ ହରଷେ ଧର ମୋ କର ।
ରଙ୍ଗେର ଗଲଟି ଧର ବୋଲ ସେ ଧବମଣ୍ଡନା ଭାଷିଲ ଗିର । ୨୮ ।
କଞ୍ଚୁତ ଦୋଷକୁ ଜଚନ୍ତ ଏ ଦଣ୍ଡ ବାନ୍ଧବା ବାନ୍ଧ ତୋ ଭୁଜେ ।
ବୋଲିବାକୁ ମୋର ସଙ୍ଗୀତପଟିମା ଭଲ ଇଙ୍ଗିତ କଲ ଯେ ।
ନଗ୍ନଇ ଭ୍ରୁକୁ କୋଦଣ୍ଡ ତେବେ ଦଣ୍ଡ ପିନା ସେ ନୋହେ ତା ଭାବ ।
ଉଲ୍ଲଭ ଛାଉ ବନତ ହେଲେ ଅଜ ମାଟିଲେ ଥରେ କେ ଦେବ ।୨୯।

---

୨୫ । ଶ୍ରବଣେ—ଶୁଣିଲକ୍ଷଣି, କର—ହାତ, ଢୋରକାକୃତ—ହାତରେ ମୁହଁ ଘୋଡ଼ାଇ, ବାସ—ଲୁଗା,ପାଲଟାଇ—ଲେଉଟାଇ, ଉତ୍ସବ—ଆନନ୍ଦ ।

୨୬ । ଚରମ-ପିଠି, ତନୁ ପୀଡ଼ନେ—କର ଲେଉଟାଇବାରେ, ଉଭା—ଠିଆ ।

୨୭ । ଅମରମୋହନୀ-ଦେବତା ମୋହକାରିଣୀ, ପଢ଼ା ଶାରୀ ପଞ୍ଜରୀ—ପଢ଼ିଲ ଶାରୀ ପିଞ୍ଜରା । ସୁବେଶ—ଭଲ ଭାବରେ ବେଶ ହେବା ।

୨୮ । କଉିଶ—କଜ୍ଜଳ; ଆଦରଶେ—ଦର୍ପଣରେ, ଧବମଣ୍ଡନା—ସ୍ତ୍ରୀ (ଲାବଣ୍ୟବତୀ).

୨୯ । ଭୁଜେ—ବାହୁରେ, ଉଲ୍ଲଭ—ବଡ଼ପଣ, ଟାଣ ।

ହେମନ୍ତେ ପୀରତ ସୁରତଶାନ୍ତକୁ ପ୍ରାନ୍ତ କରୁଥାଇ ମୋର ।
କୁନ୍ଦନ କୁମ୍ଭକୁରେ ଲେପି ଚନ୍ଦନ ଠେଁସି ଦିଏ ହୃଦୟୁର ।
କି କଲି ବୋଲି ଲଗିଲା ନ ଲଟିଲା ହେଜୁଥାଇ ସେ ନବୀନା ।
ସେ ହୃଦ ବେଦନା କଲେ ନିବେଦନା ଘେନିବ କେ ତାହା ବିନା ।୩୦।
ଏରୂପେ ଭାବିନୀ ଭାବକୁ ଭାବନା କରୁଁ କରୁଁ ଭଜେ ମହୀ ।
ସଖୀ ଆଶ୍ୱାସନା ରଚିଲେ ମୁଖରେ ନୀର ସିଞ୍ଚି ବିଞ୍ଚି ଦେଇ ।
ସମସ୍ତେ ନେନେ ଲୋତକ ପୂରିଲେ ଚେତ ଏ ବାଣୀ ପ୍ରକଟ ।
ଲାବଣ୍ୟବତୀ ବତିଶାର୍ଦ୍ଧ ବୟସୀ କେଉଁଦିନ ହେବ ଭେଟ ।୩୧।
ଏ ଋତୁ ଗୃହିଁ ମକରକେତୁ ତାପେ ଆରତ ନୃପକୁମାରୀ ।
ବସି କାନ୍ତ ଗୁଣ ଗୁଣି ପୁଣ ପୁଣ ମନରେ ବିଗୃର କରି ।
କ୍ଷିତି ଭିତରେ ଯୁବତୀଙ୍କ ହେମନ୍ତ ପତି ମିଳିବାର ପୁଣ୍ୟ ।
ପ୍ରଭୁତ୍ୱ ଥିଲେ ଭୃତ୍ୟଠାରୁ ଅଧିକ ବିନୟୀ ରସିକ ଧନ୍ୟ ।୩୨।
ଦିନେ ବନେ ଭ୍ରମି ତପନ ତାପରେ ବିରସ ମୋର ଲପନ ।
ଦେଖି ସଖୀଙ୍କ ପୁଚ୍ଛିଲେ ମୋର ଶିର ଅମ୍ଳାନ ଗର୍ଭ ତ ମ୍ଳାନ ।
ରଖି ନ ପାରି ଧଇର୍ଯ୍ୟ ନିଜ ଶିର ଛୁଇଁ ମୋ ପାଦକୁ କଲେ ।
ଆଉ ଦିନେ କଲେ ଏରୂପେ ଅବଶ୍ୟ ରୁଷି ବସିବି ମୁଁ ବୋଲେ ।୩୩।
ସେ ଦନ୍ତୁ ଭାନୁ ଥିବାରେ ଯେ ସଦନ୍ତୁ ବାହାର ନ କଲେ ମୋତେ ।
କୋଟିକ ରତନ ଦେବାରୁ ଅଧିକ ଗୋଟିକ ବଚନ ସତେ ।
ଦିନେ ପଗ୍ଭରଲେ ଭିନେଭଙ୍ଗୀ କରି ଯୁବତୀ ପୁରୁଷ ପ୍ରାଣ ।
ତାହା କିନ୍ତୁ ଗାତ୍ର ଯାହା ବହେ ଚିତ୍ର ଏ କଥା ନୋହେ କି ପୁଣ ।୩୪।

---

୩୦ । କୁନ୍ଦନ କୁମ୍ଭକୁରେ—କୁନ୍ଦା ହୋଇଥିବା ସୁନାକଳସପରି କୁଚରେ ।
୩୧ । ଭାବିନୀ—ସ୍ତ୍ରୀ, ମହୀ—ପୃଥିବୀ, ନୀର—ଜଳ, ବତିଶାର୍ଦ୍ଧ-ଷୋହଳ ।
୩୨ । ମକରକେତୁ—କନ୍ଦର୍ପ, କ୍ଷିତି—ପୃଥିବୀ, ପ୍ରଭୁତ୍ୱ—ଅଧିକାର ।
୩୩ । ତପନ ତାପରେ—ଖରା ତେଜରେ, ବିରସ—ମଳିନ, ଲପନ-ମୁହଁ, ଅମ୍ଳାନ—ଅତି ସୁନ୍ଦର, ମ୍ଳାନ—ମଳିନ, ମୁଣ୍ଡରେ ଛୁଇଁ ସ୍ତ୍ରୀ ପାଦତଳେ ପଡ଼ିବା ।
୩୪ । ଭାନୁ—ସୂର୍ଯ୍ୟ, ସଦନ୍ତୁ-ଘରୁ, ଗାତ୍ର—ଦେହ, ଚିତ୍ର—ଅଶ୍ଚର୍ଯ୍ୟ ।

ଦୁର୍ଗା ପଦ୍ମନାଭ କରନ୍ତୁ ଏ ଶୁଭ ବଲ୍ଲଭ ମନେ ଏ ପ୍ରୀତ ।
ନ ପଡ଼ୁ ପୋଡ଼ୁ ଏ ବିଚ୍ଛେଦ ବିପତ୍ତି ବୋଲି ସେ ଭଜିଲା କ୍ଷିତ ।୩୪।
ଲଳନା ପଲ୍ଲବ ଗୁଳନା କରଣ ମୁଖେ ଦେଲେ ଶୀତ ବାରି ।
ତେଣୁଁ ଶୁଭସ୍ୱପ୍ନ ହେତୁକୁ କହିଲେ ହଂସକେତୁ ତାପ ହରି ।୩୫।
ଏ ରସେ ମନ ନ ଦେନଇ ଯାହାର ସେହି ନର ପଶୁ ଦେନ ।
ଯେଉଁ ରସରେ ବ୍ରହ୍ମା ବଶ ହୋଇଛନ୍ତି ତାହିଁକି ତାହା ସମାନ ।
ଜାନକୀ ରାମ ବିଶେଷ କରି ଜାଣେ ଭାବି ତାଙ୍କ ଶ୍ରୀପଯୁର ।
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଛାନ୍ଦ ରସ ରତ୍ନାକର । ୩୬ ।

---

## ଏକଚତ୍ୱାରିଂଶ ଛାନ୍ଦ

( ବିରହ ଅବସ୍ଥାରେ ବର୍ଷାଋତୁର ବର୍ଣ୍ଣନ )

ରାଗ ବରାଡ଼ି—ଅଷାଢ଼ଶୁକ୍ଳ ବାଣୀ

ପ୍ରବେଶ ହୋଇଲା ବରଷାକାଳ । ପ୍ରମାଦମାନଙ୍କ ଜନମ ସ୍ଥଳ ।
ଜଳଦ କଜ୍ଜ୍ୱଳକାନ୍ତି ଶାର୍ଦ୍ଦୂଳ । ସୁଖେ ବିହରିଲେ ଶିଖରଚୂଳ ।
ଗର୍ଜିଲା ସନ୍ତତ । ପ୍ରକାଶି ହଁଳା ବକାବଳୀଦନ୍ତ । ୧ ।

---

୩୫ । ପଦ୍ମନାଭ—ବିଷ୍ଣୁ, ଶୁଭ—ମଙ୍ଗଳ, ବଲ୍ଲଭ—ସ୍ୱାମୀ, କ୍ଷିତ-ପୃଥିବୀ, ଲଳନା—ସଖିମାନେ,ପଲ୍ଲବ ଗୁଳନା କଲେ—ପଦ୍ମପତ୍ରରେ ବିଞ୍ଚିଲେ, ଶୀତବାରି—ଥଣ୍ଡା ଜଳ, ହଂସକେତୁ—କନ୍ଦର୍ପ, ହରି—ହରଣକରି ।

୩୬ । ରସ ରତ୍ନାକର—ରସ ସମୁଦ୍ର ।

ଗ୍ରୀଷ୍ମସମୟରେ ଦମ୍ପତ ଯେ ସବୁ ପ୍ରକାର କାମ ରସରେ ମତ୍ତଥାନ୍ତି ସ୍ୱାମୀ ବିଚ୍ଛେଦ ହେତୁ ସେହି ଗ୍ରୀଷ୍ମଋତୁର ବିରହଦଶା ବିଶେଷ ଭାବେ ବୁଝା ଯାଇଛି ।

---

## ଏକଚତ୍ୱାରିଂଶ ଛାନ୍ଦ

୧ । ପ୍ରମାଦ—ଦୁଃଖ, ଜଳଦ—ମେଘ,କଜ୍ଜ୍ୱଳକାନ୍ତି-କଳାବର୍ଣ୍ଣ, ଶାର୍ଦ୍ଦୂଳ—ବାଘ, ଶିଖରଚୂଳ—ପର୍ବତ ଉପରେ, ବକାବଳୀ—ବଗସବୁ ଧାଡ଼ି ଧାଡ଼ି ହୋଇ ଉଡ଼ିବା ।

ମେଘ ବାଘପରି ପର୍ବତ ଶିଖରେ ବାହାରିଲା—ବଗମାନେ ଧାଡ଼ି ଧାଡ଼ି ଉଡ଼ିବାରୁ ବାଘ ଦାନ୍ତ ଦେଖାଇଲା ପରି ଜଣାଗଲା ।

କୁରଙ୍ଗ ତୁରଙ୍ଗ ଥିଲେ ସକାଶେ । ଚନ୍ଦ୍ର ସୂର୍ଯ୍ୟ ଲୁଚି ରହେ ଅକାଶେ ।
ମୁନିଏ ମୃଗଚର୍ମ ଥିଲେ ଧରି । ହିମାଳୟୁ ଉର୍କ୍ଷ ଗଲେ ଶୃଙ୍ଗକୁ ।
ଋକ୍ଷପନ୍ତି ଲୀନ । ଅଗଣିତ ସେ ଗିଳିଦେଲେ ଦିନ । ୨ ।
ଜାତୁଧମାନେ ଡାକଦେଲେ ତହିଁ । ସିଂହ ଅସୁଅଛି ସନ୍ଦେହ ନାହିଁ ।
ଶୁଣି ବିୟୋଗିନୀ ଲଭି ଦରକୁ । ଛିଣ୍ଡାଇ ହାର ଘୋଡ଼ାଇ ଉରକୁ ।
ସେ ମିଥ୍ୟା ନ କଲେ । କାଳିକାକୁ ଯେଣୁ ଅନାଇ ଦେଲେ । ୩ ।
ବିଧାତା ବିଧାନ ଚିତା ବିଜୁଳି । କାଷ୍ଠାବଳୀ ଯୋଗେ ଜଳିଲା ଜଳି ।
ଝଞ୍ଜାନିଳଲଗି ପ୍ରଭା ପ୍ରକାଶି । ସଜୀବରେ ଦହି ଦିଏ ବିଦେଶୀ ।
ତହୁଁ ଅଗ୍ନିକୋଣ । ଜଡ଼ ବୋଲାଇଲେ ଜ୍ୟୋତିରିଙ୍ଗଣ । ୪ ।

---

୨ । କୁରଙ୍ଗୀ—ମୃଗ, ତୁରଙ୍ଗ—ଘୋଡ଼ା, ଋକ୍ଷପନ୍ତି—ଭାଲୁମାନେ ଓ ତାରାମାନେ ।

ଉପର ପଦରେ ବାଘ ଥିବାରୁ ଚନ୍ଦ୍ରଙ୍କ ମୃଗ ଓ ସୂର୍ଯ୍ୟଙ୍କ ଘୋଡ଼ା ଭୟରେ ଲୁଚିଲେ; ଚନ୍ଦ୍ର ସୂର୍ଯ୍ୟଙ୍କୁ ମେଘ ଘୋଡ଼ାଇ ଦେଲା, ମୁନିଙ୍କ ପାଖରେ ମୃଗଚର୍ମ ଥାଏ କାଳେ ବାଘ ମୃଗ ମନେକରି ଖାଇବ ତେଣୁ ପାହାଡ଼ ଉପରକୁ ପଳାଇଲେ, ଅର୍ଥାତ୍ ପର୍ବତତଳେ ବର୍ଷା ହୁଏ ହିମାଳୟ ଉପରେ ବର୍ଷା ହୁଏ ନାହିଁ—ବର୍ଷାହେତୁ ମୁନିମାନେ ହିମାଳୟ ଉପରକୁ ଗଲେ । ଭାଲୁମାନେ ବାଘ ମନେକରି କାଳେ ସେ ଦିନରେ ଖାଇବ, ତେଣୁ ଅନ୍ଧାରକୁ ଗଲେ ଅର୍ଥାତ୍ ତାରା ସବୁ ମେଘ ହେତୁ ଦିଶିଲେ ନାହିଁ ।

୩ । ମେଘ ଦେଖି ଜାତୁଧମାନେ ବୋବାଇଲେ, ବିଚ୍ଛେଦନୀ ସ୍ତ୍ରୀମାନେ ତାଙ୍କର ମୁକ୍ତାହାରକୁ ଛିଣ୍ଡାଇ ଗଜକୁ ଦେଖିଲେ ସିଂହ ଗୋଡ଼ାଇବ, ତେଣୁ ସେ ଗଜମୁକ୍ତା ହାରକୁ ଛିଣ୍ଡାଇ ଦେଲେ ଓ ମୁକ୍ତାକୁ ଫୋପାଡ଼ି ଦେଲେ—ମୁକ୍ତାମାଳା ହେଲା ତାରା, ସିଂହହେଲା, ମେଘ, କାଳିକା ବା ଦୁର୍ଗାଙ୍କୁ ଦେଖି ଅର୍ଥାତ୍ କଳା ମେଘକୁ ଦେଖି ଭୟ କଲେ, ଦୁର୍ଗା ବାହନ ସିଂହ କାଳେ ଗୋଡ଼ାଇବ ।

୪ । ଚିତା—ନିଆଁ, କାଷ୍ଠାବଳୀ—କାଠସବୁ, ଜ୍ୟୋତିରିଙ୍ଗଣ—ଜୁଳୁଜୁଳିଆ ପୋକ ।

ମଲାମଣିଷକୁ ପୋଡ଼ିଲାବେଳେ ଚିତାରେ କାଠ ଦେଲେ, ଜଳେ ପବନ ଦେଲେ ନିଆଁରୁ ଅଗ୍ନିକଣା ଉଠି ଗୃହଅଙ୍କେ ପଡ଼େ, ଏଠାରେ ବିଜୁଳି ହେଲା ଚିତା ଅଗ୍ନି, କାଠଦେଲେ ଚିତା ଅଗ୍ନି ଯେପରି ଦାଉଦାଉ ଜଳେ ମେଘରେ ବିଜୁଳି ସେହିପରି ଚକ ଚକ ହେଲା, ଚିତାରେ ମଲା ଲୋକକୁ ପୋଡ଼ନ୍ତି ମାତ୍ର ବିଚ୍ଛେଦୀମାନେ ବିଜୁଳି ଦେଖି କାମାତୁର ହୋଇ

କରକାଲେଷ୍ଟ ପତନ ବହୁତ । ଯୁବାଙ୍କ ଲାଗିଲା ଅନଙ୍ଗ ଭୂତ ।
ଇନ୍ଦ୍ର କୋଦଣ୍ଡ ଦଣ୍ଡ ନଭେ ରାଜି । ମାନିନୀ-ମାନ-ଦମ୍ଭ କୁମ୍ଭ ଭାଜି ।
ସେ ବନା ପ୍ରହାରେ । ଏହା ଦେଖିଲା ନ ଥିବ ସଂସାରେ । ୫ ।
ନଦୀ ନାଗ କଲେ ବେଗ ଗମନ । ଲହରୀ ରସନା ଫୁତ୍କାର ସ୍ୱନ ।
ଫେନ କଞ୍ଚୁକ ଭ୍ରମ ଚକ୍ରେ ଶୋଭି । ସାଗର ବିଲେ ରହିବାକୁ ଯାଇ ।
ତା ଗ୍ରହି ଚପଳେ । ପଳାଇ ଗଲେ ମେରୁକୁ ମରାଳେ । ୬ ।
ପର ଅପର ଏହାଠାରେ ନାହିଁ । ଦେଖ ଦେମ୍ନିକୂଳ ଗ୍ରାସ କରଇ ।
ପଥିକ ନିକର ଗ୍ରହି ଶଙ୍କିଲେ । ଉଡୁପ ଭୂଷଣ ନାମେ ଡାକିଲେ ।
ଅତୁର ଦର୍ଦ୍ଦୁର । ନିରତେ ଆରମ୍ଭି ଅରତ ସ୍ୱର । ୭ ।

---

ତାଙ୍କ ମନ ପୋଡ଼ିଗଲା, ଚାତା ଅଗ୍ନିକଣା ଗୁଡ଼ିଅଡ଼େ ପବନରେ ପଡ଼ିବା ପରି ହେଲା, ବର୍ଷାହେତୁ ଜୁଳୁଜୁଳିଆ ପୋକ ଗୁଡ଼ିଅଡ଼େ ଉଡ଼ିଲେ ।

୫ । କରକାଲେଷ୍ଟ—କୁଆପଥର, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, ନଭେ—ଆକାଶରେ, ରାଜି—ସୁନ୍ଦରଦଶି, ମାନିନୀ—ରୁଷିଥିବାସ୍ତ୍ରୀ, କୁମ୍ଭ—ମାଟିଆ । ଯେଉଁ ସ୍ତ୍ରୀମାନେ ରୁଷିଥାନ୍ତି ସେମାନେ ଇନ୍ଦ୍ରଧନୁ ଦେଖି ମଦନ ଆତୁରରେ ରୁଷିବା ଛାଡ଼ି ପୁରୁଷଙ୍କୁ ତୋଷିବାକୁ ଦଉଡ଼ନ୍ତି ।

୬ । ନଦୀ-ନଈ, ନାଗ—ସାପ, ବର୍ଷାଦିନେ ନଈ ବଢ଼ିବାରୁ ସାପ ଦଉଡ଼ୁଥିଲେ ଯେପରି ଜିଭକାଢ଼ି ସୁ ସୁ ହୁଏ, ନଈ ସୁଅ ତେଜ ଦେଇ ସୁ ସୁ ଦଉଡ଼ିଲା, ଫେନ—ଫେଣ, କଞ୍ଚୁକ—ଖୋଳ, ଚକ୍ର—ଚକ୍ରଚିହ୍ନ—ଭଉଁର, ସାପଫେଣ ବାହାର କରେ ଖୋଳ ଛାଡ଼େ । ତାର ଚକ୍ରଚିହ୍ନ ଥାଏ, ସେହିପରି ନଈର ଫେଣ ବାହାରେ ଖୋଳ ପରି ତେଜ ହୁଏ ଭଉଁର ବୁଲି ଚକ୍ରପରି ଦେଖାଯାଏ, ବିଲ—ଗାତ, ବର୍ଷାରେ ସାପ ଗାତକୁ ଯାଏ ନଈ ସମୁଦ୍ର ଭିତରକୁ ଯାଏ । ସାପ ଆସୁଛି ବୋଲି ହଂସମାନେ ମେରୁ ପର୍ବତ ମାନସରୋବର ପଳାଇଲେ—ବର୍ଷାଦିନେ ନଈ ପୋଖରୀରେ ହଂସମାନେ ରହନ୍ତି ନାହିଁ ।

୭ । ସାପଠାରେ ଯେପରି ନିଜ ଓ ପର ବିଚାର ନାହିଁ, ନଈଠାରେ ମଧ୍ୟ ସେହିପରି ବିଚାର ନାହିଁ, ବେମ୍ନିକୂଳ—ବେଙ୍ଗ ଓ ଦୁଇକୂଳ, ନଈଦୁଇ କୂଳ; ସାପ ବେଙ୍ଗଙ୍କୁ ଖାଏ, ପଥିକ ବା ବାଟୋଇ ସାପକୁ ଦେଖିଲେ ଡରନ୍ତି, ନଈ ବଢ଼ିକୁ ଦେଖିଲେ ମଧ୍ୟ ପାରହେବାକୁ ଡରନ୍ତି, ଉରଗ ଭୂଷଣ—ମହାଦେବ ଓ ନାଉରୀ, ବାଟୋଇ ମନେ ସାପ ଭୟରେ ମହାଦେବଙ୍କୁ ଡାକିଲେ; ବାଟୋଇମାନେ ବଢ଼ି ଭୟରେ ପାରହେବାକୁ ନାଉରୀକୁ ଡାକିଲେ, ଦର୍ଦ୍ଦୁର—ବେଙ୍ଗ, ଅତିସ୍ୱର—ବିକଳକଣ୍ଠ,

ଟେକି ଶିଖଣ୍ଡ କେକୀ ଷଣ୍ଡମତ । ନାସ୍ତ୍ରମଣ୍ଡଳୀ ମଧ୍ୟେ କଲ୍ଲ ନୃତ୍ୟ ।
ଦେଖି ସୁମନା-ଗଣିକା ନିକର । ଦରବିକାଶ ହାସେ ମନୋହର ।
ଶୁହିଁ ସେ ମତ୍ତକୁ । ବାକ୍ୟ ନ ସ୍ଫୁରିଲା ପରଭୃତକୁ । ୮ ।
ଏ ଋତୁ ଶୁହିଁ କୁମାର ବିବେଣ୍ଣି । ମିତ୍ର ବଦନକୁ ଅନାଇ କହି ।
ବିଜୁଳି କାମୁକା ଘନାଳିନଳି । ସ୍ତନିତ ଟୁଣ୍ଢ କୁଳିଶ ଗୁଳି ।
ମହୀଧର ଲକ୍ଷ । ପଥର ଫୁଟି ଯାଉଅଛୁ ଦେଖ । ୯ ।
ଜାଣିଲି ମୋ ହୃଦ ଅତି କଠିନ । ଫାଟି ନ ଗିବାରୁ ପ୍ରିୟା ବିହୀନ ।
ନ ଫୁଟିବ ଭଲ କୁସୁମ ବାଣ । କାମ କରୁଛୁ ଏ ଅସ୍ତ୍ର ଭିଅଣ ।
ରକ୍ଷା ହେବ କେହି । ଅଜଡ଼ ମୋତେ ବୁଦ୍ଧି ଦଶୁନାହିଁ । ୧୦ ।
ସଖା ବୋଇଲେ କି ବିଗୁର ଅଉ । ବାଳାମଣି ନାମ ସୁମନ୍ତ ଥାଉଁ ।
ସ୍ୱଭାବେ ମନ ଏକଲସ୍ୟ ଯହିଁ । ବିଶେଷେ ମଜ୍ଜିଲା ଦୀକ୍ଷାକୁ ପାଇ ।
ବିଗୁରଇ ମନେ । ମୁଁ ନିକ ମୂର୍ଚ୍ଛି ପାରିବି ଜୀବନେ । ୧୧ ।

---

ବେଙ୍ଗମାନେ ସାପକୁ ଦେଖି ବିକଳସ୍ୱର କଲେ—ବେଙ୍ଗ ଗାତରେ ପାଣି ପଶିବାରୁ ବିକଳ ସ୍ୱର କଲେ ।

୮ । ଶିଖଣ୍ଡ—ପୁଚ୍ଛ, କେକୀ—ମୟୂର, ଷଣ୍ଡ—ନପୁଂସକ । ନାସ୍ତ୍ରମଣ୍ଡଳୀ—ସ୍ତ୍ରୀ ସବୁ, ନୃତ୍ୟ—ନାଚ, ସୁମନା—ମାଳତୀଫୁଲ, ଗଣିକା—ଯୁଇଫୁଲ, ନିକର—ସମୂହ, ଦରବିକାଶ—ଅଳ୍ପଫୁଟିବା, ପରଭୃତ—କୋଇଲି । ବର୍ଷା ହେବାରୁ ମୟୂର ପୁଚ୍ଛଟେକି ନାଚିଲା—ଅର୍ଥାତ୍ ମୟୂର ନୃତ୍ୟଦେଖି ସ୍ତ୍ରୀମାନଙ୍କ ମନ କାମରସରେ ନଚିଲା ଏ ସମୟରେ ମାଳତୀ ଫୁଲ ଓ ଯୁଇଫୁଲ ସବୁ ଅଳ୍ପ ଫୁଟିବାରୁ ସୁନ୍ଦର ଦେଖାଗଲା । ଏ ସବୁକୁ ଦେଖି କୋଇଲିର ଅଉ କଥା ବାହାରିଲା ନାହିଁ । ବର୍ଷାଦିନେ କୋଇଲି ବୋବାଏ ନାହିଁ ।

୯ । କାମୁକା—ନିଅଁ ବରଅ, ଘନାଳି—ମେଘମାନେ, ନଳୀ—ବନ୍ଧୁକ, ସ୍ତନିତ—ଘଡ଼ଘଡ଼ି, କୁଳିଶ—ବଜ୍ର, ବନ୍ଧୁକ ଫୁଟାଇବାରୁ ନିଅଁ ବରଅ ହେଲା ବିଜୁଳି, ମେଘ ହେଲା ବନ୍ଧୁକ, ବନ୍ଧୁକରୁ ଗୁଳିଯାଏ ଏଠାରେ ଗୁଳିହେଲା ବଜ୍ର, ପର୍ବତ ହେଲା ଲକ୍ଷ, ବଜ୍ରର ଟୁଣ୍ଢ ହୁଏ । ବନ୍ଧୁକର ଟୁଣ୍ଢ ହୁଏ ।

୧୦ । କନ୍ଦର୍ପର ବାଣ ଫୁଲରେ ହୋଇଥିବାରୁ ତାହା ଦେହରେ ଅଘାତ ନ କରି ମରମରେ ଭେଦକରେ ।

୧୧ । ବାଳାମଣି—ସ୍ତ୍ରୀଶ୍ରେଷ୍ଠ, ସୁ—ଉତ୍ତମ ।

ଯେ ପ୍ରାଣ ପର କରିଥିଲ ମୋତେ । ସେ ପୁଣି ମୂର୍ଚ୍ଛି ପାରିବ କେମନ୍ତେ ।
ଘନଘନଙ୍କର ପୀତବସ୍ତ୍ର । ଚିତ୍ତୁଅଣକୁ ଏ ବରଷା ଦୂତୀ ।
ହୋଇ ହେଲ ସିନା । କେହ୍ନେ ବଞ୍ଚିବ ସ୍ନେହ ପରାଧୀନା ।୧୨।
ଘନେ ଜାନୁରେ କରଭରା ଦେଇ । ସୁତନୁ ଇନ୍ଦ୍ରଧନୁ ଥିଲ ଚାହିଁ ।
ଗୋକୁଳଈଶ ରସ ମନେ ଭାବି । ପଛୁଁ କୋଳକରି ଧରନ୍ତେ ନୀବି ।
ଭୀତ ଉପୁଜାଇ । ଭିତ୍ତି ଅନ୍ତରେ ଥିବେ ପରା ସହି । ୧୩ ।
ଘନେ କାମିନୀ ଯାମିନୀ ନ ପାନ୍ତୁଁ । କୁସୁମ ବିକାଶେ ଅନ୍ତର ହେଉଁ ।
ହୃଦ ବିଲଗରୁ ଭାଜିଲ ନିଦ । ଡାକିଲ ବନ୍ଧୁ ବୋଲି ଲଭି ଖେଦ ।
ସେ ଶୁଣିଲ ନାହିଁ । ଦାମିନୀ ଝଟକ ଦେଲା ଦେଖାଇ । ୧୪ ।
ଏତେ ବଞ୍ଚନା କାହିଁକି ଦାସରେ । ବୋଲି ଯାନ୍ତେ ପ୍ରାଣବନ୍ଧୁ ପାଶରେ ।
ତ୍ରପାରେ ପ୍ରକାଶ କରି ହାସକୁ । ଅଚ୍ଛାଦ ଲାବଣ୍ୟ ଅଙ୍ଗେ ବାସକୁ ।
ମହୀକି ଅନାଇଁ । କିଛି ନ କହି ସେ ପଙ୍କଜମୁହିଁ । ୧୫ ।
ଫିଙ୍ଗିଲ ଫୁଲ ଝଲକ କମାଇ । ଭ୍ରମିଲ ଏ ଶରେ ଭ୍ରମିଲ ମୁହିଁ ।
ଭୃଙ୍ଗ ଚୁମ୍ବଇ ପୁଷ୍ପବତୀ ଲତା । ବୋଲିବାକୁ ବୋଲିଅଛି ବିଧାତା ।
କି ବିରସ ମୋତେ । ବିଚ୍ଛେଦ ସହି ନୋହିଥିଲ ଏତେ । ୧୬ ।
ଘନେ ଦୁର୍ଦ୍ଦିନେ ପାହିବାରୁ ରାତି । ଜଣା ନ ଯିବାରୁ ଆରମ୍ଭ ରତି ।
ସେକାଳେ ପଢ଼ିଲ ପଞ୍ଜରା କୀର । ଜାନୁ ଛନ୍ଦଦେଇ ମଧ୍ୟରେ ମୋର ।
ତୃନ କରି କହେ । ବିଧି ନିଷେଧ ନ ମାନିବ କହେ । ୧୭ ।

---

୧୨ । ଚିତ୍ତୁଅଣକୁ—ମନେପକାଇ ଦେବାକୁ, ଦୂତୀ ଯେପରି ଆଗକଥା ସବୁ ମନେ ପକାଇ ଦିଏ ବର୍ଷାକୁ ଦେଖି ପୂର୍ବର ଭାବସବୁ ମନେପଡ଼େ, ସ୍ନେହ ପରାଧୀନା—ସ୍ନେହରେ ଯେ ବଶ ।

୧୩ । ଜାନୁ—ଜଙ୍ଘ, ସୁତନୁ—ସୁନ୍ଦରୀ, ଗୋକୁଳଈଶ—ଷଣ୍ଢ, ବୃଷଭରଙ୍କ ବୃଷବନ୍ଧ, ଭିତ୍ତିଅନ୍ତରେ—ଘରଭିତରେ ।

୧୫ । କାମିନୀ—ରସିକା, ଯାମିନୀ—ରାତି, କୁସୁମ ବିକାଶେ—ଋତୁମତୀ ହୋଇ, ବିଲଗ—ଅଲଗା ହେବା, ଖେଦ—ଦୁଃଖ, ଦାମିନୀ—ବିଜୁଳି, ବିଜୁଳିର ଝଟକରେ ଦଶିଲା ।

୧୫ । ବଞ୍ଚନା—କପଟ, ଦାସ—ଚାକର, ତ୍ରପା—ଲଜ୍ଜା, ଲାବଣ୍ୟ—ସୁନ୍ଦର, ବାସ—ଲୁଗା, ମହୀ—ପୃଥିବୀ, ପଙ୍କଜମୁହିଁ—ପଦ୍ମବଦନୀ

୧୬ । ଫିଙ୍ଗିଲ—ଫୋପାଡ଼ିଲ, ଭୃଙ୍ଗ—ଭଅଁର, ପୁଷ୍ପବତୀ—ଫୁଲଫୁଟିବା । ଋତୁମତୀ ହେବାରୁ ଫୁଲଫୋପାଡ଼ି ଦେଇ ଋତୁମତୀର ସଙ୍କେତ ଦେଲା ।

ମୁହିଁ କହିଲି ଲାବଣ୍ୟନିଧିଙ୍କ । ଏ ନାକ ବଙ୍କ ବିଧି ଅବଧିଙ୍କ ।
ଏତେକେ ଧନ ଜାଣିଲା ମୋ ମନ । ରତାନ୍ତପାଏ ହେଲା ଅଲିଙ୍ଗନ ।
ଜପୁଜାଇ ଗତ । ପ୍ରତିଅଙ୍ଗ ଶୋଭା ଦର୍ଶିବା ବ୍ରତ । ୧୮ ।
ଧନେ ଅତ ପ୍ରାତୁଁ ପଙ୍କ୍ତିବମ୍ବୋଷ୍ଠୀ । ଗଲା ଗୋପ୍ୟ ପୁରେ ମୋପାଶୁ ଉଠି ।
ଉଦଜେ କରଜ ଚିହ୍ନ ଦେଖଇ । ମୁହିଁ ଗବାକ୍ଷେ ଗୁହିଁବାକୁ ଯାଇଁ ।
ସେହି ଧରେ କେକୀ । ସ୍ୱନାମେ ଡାକିଲା ପୁଚ୍ଛକୁ ଟେକି । ୧୯ ।
ତାକୁ ଅନାଉଁ ଯେ ଦେଖିଲା ମୋତେ । ଅପରାଧ କ୍ଷମାକର ବୋଲନ୍ତେ ।
ମୁଖ ନ ଟେକିଲା ତ୍ରପା ତ୍ରାସରେ । ହାସ ପ୍ରକାଶିଲା କୃପାବଶରେ ।
ତା ସେହି ଗୃହୁରୁ । ନୟନେ ମୋର ବହିଅଛୁ ପୂର । ୨୦ ।
ଧନେ ଜାଳିଦେଇ ଦୀପାବଳୀଙ୍କ । ବଳେ ବିବସନ କଲୁଁ ବାଳୀଙ୍କ ।
ଚମକିଲା ହୋଇ ଲଜ୍ଜା ଅକୁଳେ । ପ୍ରଦୀପ ହତ ହେଲା ଝଞ୍ଜାନିଳେ ।
ଲଭି କି ସନ୍ତୋଷ । ରସ ଲସା ହେଲା ରସରେ ବଶ । ୨୧ ।
ଧନେ ହେ ପାଶକୁ ଅଣାଇ ପଣ । ଖେଳିବା କି ବୋଲି ବୋଇଲା ଯୋଷା ।
ମୁହିଁ ବୋଇଲି ବସି ହୁଡ଼ କର । ଶୁଣି ସୁନ୍ଦରୀ ଦେଖାଇଲା ହାର ।
ମୁଁ ବୋଇଲି ଧନ । ନ ଜାଣୁ କି ଯହିଁ ଥାଇ ମୋ ମନ । ୨୨ ।
ତହିଁ କି କଲା ସେ ଭଙ୍ଗୀ ରଚନା । ହେଲେହେବ ପଛେ ହାରିଲେ ସିନା
ଖେଳ ଅରମ୍ଭ ଅତ ଅନୁରାଗେ । କଳକଣ୍ଠକଣ୍ଠୀ ଧ୍ୱ ରଲା ଯୋଗେ ।
ପଣ ମାଗୁଁ ସଖୀ । ବୋଇଲା ଅସେ ସଖୀଠାରୁ ଶିଖି । ୨୩ ।
ଏବେ ଇନ୍ଦ୍ର ଧନୁ ଉଇଁଥିବ । ବିଦ୍ୟୁ ଝଟକିବ ଅନ୍ଧାର ହେବ ।
ପ୍ରକଟ କେକୀ ନାଟ ଝଞ୍ଜାବାତ । ହେବେନି ଜନେ ପଶା ଖେଳେ ରତ ।
ଚିନ୍ତି ଏ ଭାବକୁ । ବିଦାର ହେଉଥିବ ପରା ବୁକୁ । ୨୪ ।

---

୧୭ । ଦୁର୍ଦ୍ଦିନ—ବର୍ଷାଦିନ, ଜାର—ଶୁଅ, ମଧ୍ୟ—ଅଣ୍ଟା, ଦିନରେ ରତି କରିବା ନୃପୁମର ବିରୁଦ୍ଧ, କାରଣ ଅପୂଷ ଜନ୍ମେ ।
୧୮ । ଜପୁଜାଇବା—ଜନ୍ମାଇବା ।
୧୯ । ପ୍ରାତୁଁ—ସକାଳୁ, ପଙ୍କ୍ତିବମ୍ବୋଷ୍ଠୀ—ପାଚିଲା କଇଁଚ କାକୁଡ଼ିପରି ଓଷ୍ଠ ରକ୍ତବର୍ଣ୍ଣ, କରଜ—ନଖ, ଗବାକ୍ଷ-ଝରକା, ସ୍ୱନାମେ-ଅପଣା ନାମେ
୨୦ । ତ୍ରପା—ଲଜ, ତ୍ରାସ—ଭୟ, କୃପା—ଦୟା, ସ୍ନେହ ।
୨୧ । ଝଞ୍ଜାନିଳ—ଝଞ୍ଜାପବନ, ହତ—ଲିଭିଯିବା ।
୨୨ । ହୁଡ଼—ପଣ,
୨୩ । କଳକଣ୍ଠ—କୋଇଲି, ବିପରୀତ ମାଗିବାରୁ ସେ ସଖୀଠାରୁ ଶିଖି ଅସେ କହି ଗୁଳିଗଲା ।

ଛୁଞ୍ଚ ନ ଥିବ ମୋ ଗୁନ୍ଥିଲା ହାର । ଲଭି ନ ଥିବ ସ୍ତନ ନଖଗିର ।
ଫିଟାଇବ ନାହିଁ ମୋ ବନ୍ଧାବେଣୀ । ରେଖାଇଥିବ ପ୍ରୀତି ପ୍ରତ୍ୟକ୍ଷଣି ।
ଧ୍ରମାଦେ ପ୍ରମାଦ । ପଡ଼ାଇଥିବ ପ୍ରକାଶେ ଜଳଦ । ୨୫ ।
ଦରଶନ ମାତ୍ରେ ରସବତୀକ । ଚତୁଅଙ୍ଗେଁଥିବ ଏହି ପ୍ରୀତିକ ।
ପୟୋଧର ଗିର ଗ୍ରାସିବା ଗୁହିଁ । ପୟୋଧର ବେଳ କରେ ଘୋଡ଼ାଇ ।
ସିହାଣୀ ବୋଲୁଛୁ । କବିଙ୍କ ଉପମା କ୍ରୁହଇ କହୁ । ୨୬ ।
ନୂଆଁ କାଚ ଚୂଡ଼ି ଲଗାଇ ଥିଲା । ସଞ୍ଚା ନ ଦଶିଲା ଗାତ୍ରେ ଭଞ୍ଜିଲା
ପାନକଲ ପୂରିଥିଲା ଯେ ତୁଣ୍ଡେ । ବୋଲ ନ ଲଗିଲା ଚୁମ୍ବିଲା ଗଣ୍ଡେ ।
ସେ ଏମନ୍ତ ଚେତୁଁ । ଗୃହଁ ଗୃହଁ ତାର ବୁଝିଲା ହେତୁ ।୨୭।
ସଖୀ ଏ ପଦ୍ମତଳ୍ପରେ ଶୁଆଇ । ଚେତନା ବଶରେ ଏମନ୍ତ ଧାଇଁ ।
ହାହାରେ କୋମଳା ସ୍ନେହଅଧୀନା । ଜାତଦଳେ ଶଯ୍ୟା କର ରଚନା ।
ରତେ ଥାଇ ମନ । ପ୍ରବେଶ ହେଲେ ମୁଁ ତା ସନ୍ନିଧାନ । ୨୮ ।
ପାଙ୍କ୍ତେଟି ନାଅଇ ଅସନ ତେଜ । କର ଧରୁଥାଇ ଉଚ୍ଛନ୍ନ ଭଜ ।
କୋଳେ ବସାଇ ଧରୁଥାଇ ନୀବ । ବ୍ୟାଜେ ବୋଲଇ ଅଜ ନ ପାରିବ ।
ଏ ରସ ଭାବନ୍ତେ । ଫୁଲ୍ଲ ଭାବଯୋଗ ପଡ଼ିଲା ଚିତ୍ତେ ।୨୯।
ଧନେ ମୋ ପ୍ରୀତିଗୀତ ଯୋଡ଼ି ବାଳା । ବସି କେତକୀପତ୍ରେ ଲେଖୁଥିଲା ।
ଏତେକ ପଢ଼ିଲି ପଛରୁ ଯାଇ । ପ୍ରିୟ ପାଇଛୁ ମୁଁ ଗଙ୍ଗାରେ ଦାହି ।
ତା ଙ୍କ କର ଜାଣି । ଚଉଁରୁ କର ଚିରିଲା ରମଣୀ । ୩୦ ।
ବୋଇଲି ରେ ଶିଖି ଶିଖଣ୍ଡକେଶି । ଶିଖିବାକୁ ଥିଲା ମୋ ମନ ରସି ।
ମଥା ନମାଇ ନ ଜାଣିଲା ପର । କେଉଁ କଥା କ ବୋଲି ସେ ପଗ୍ଦିର ।
କହୁଛୁ ପ୍ରାଣକୁ । ଲଜ୍ଜାଯାଇ ତୋ ଉଦାରପଣକୁ ।୩୧।

---

୨୫ । ପ୍ରମାଦେ ପ୍ରମାଦ—ଦୁଃଖ ଉପରେ ଦୁଃଖ ।
୨୬ । ପୟୋଧର—ମେଘ ବା ବଉଦ, ସ୍ତନ, ସିହାଣୀ—ଚନ୍ଦ୍ରୁସ୍ତ୍ରୀ ।
୨୭ । ସଞ୍ଚା—ଦାଗ, ହେତୁ—ଚେଷ୍ଟା ।
୨୮ । ପଦ୍ମତଳ୍ପରେ—ପଦ୍ମପତ୍ର ଶେଯରେ, କୋମଳ—ସ୍ନେହାଧୀନା ଲବଣ୍ୟବତୀ, ଜାତଦଳେ—ଜାଣି ପାଖୁଡ଼ାରେ ।
୨୯ । ବ୍ୟାଜେ—ଛଳନାରେ, ଫୁଲଭାବ—ଫୁଲମାଳ ଦଅନ୍ତଅ ବେଳେ ଯେଉଁସବୁ କଥା ହୋଇଛୁ ।
୩୦ । ଶିଖିଶିଖଣ୍ଡ—ମୟୂରପୁଚ୍ଛ ପରି କେଶ ।

ଘେନେ ଯେ ଗୁନ୍ଥି ସୁମନା ମାଳାକୁ । ଶ୍ରୀକରେ ଦେଇ ବୋଇଲା ବାଳାକୁ ।
ଆଜଠାରୁ ତୋର ମୋର ମାଳତୀ । ହୋଇ ନ କଲା ସେ ବଦନ ପୋତି ।
କେଶୁ କୁରୁବକ । ଦେଖାଇ ବୋଇଲା ଏ ନାମେ ଡାକ । ୩୨ ।
ସୁନ୍ଦରୀ ମେତେ ଗୁଣବତୀ ତେତେ । ଜୀବନପ୍ରଭୁ ମୋ ବନସ୍ତୀ କେତେ ।
ଥାଉ ଆଜ ଏ ଘେନାଘେନ ଭାବ । ମନ୍ତୁ ଜୀବ ଯିବାଯାଏ ନ ଯିବ ।
ଦଇବ କି କଲା । ତାହିଁ ବିଚ୍ଛେଦ ଦଣ୍ଡ ରଖିଥିଲା । ୩୩ ।
ଫୁଟିଲେଣି ଏବେ ଜାତୀ କେତକୀ । ମାଳତୀ ଗୃହିଁ ଶଢୋଇ ଏତିକି ।
ଶୋକ ଜଳଧିରେ ବୁଡ଼ି ବହିବ । ଲୋତକ କଲ୍ଲୋଳେ ଭସାଇ ଦେବ ।
ଧଇର୍ଯ୍ୟମାନଙ୍କୁ । କି ଦଶା ପଡ଼ିଲା ପ୍ରାଣଧନକୁ । ୩୪ ।
ଏକାଳେ ସେହୁ ନେତ୍ରୁ ମୁଞ୍ଚି ନୀର । କୁମାରୀ କୁମାର ଭାବେ ଜର୍ଜ୍ଜର ।
ଚିତ୍ତେ ଚିନ୍ତାଇଲା ଏତିକି ସ୍ନେହ । କ୍ଷଣକ୍ଷଣକରେ ହୋଇଲା ମୋହ ।
ଚେତ ଦଣ୍ଡେ ଦଣ୍ଡେ । ଏହି ବାଣୀମାନ ଉଚ୍ଚାରି ତୁଣ୍ଡେ । ୩୫ ।
ପାସୋରିଲେ ମୋତେ କୃପାଜଳଧି । ରଖିଲେ କି ପୁଂସ ଭ୍ରମର ସିଦ୍ଧି ।
ମୋହିଲା ଅବା କେଉଁ ମନୋହାରୀ । ନ ଜାଣନ୍ତି ବା ପଥ ତଥ୍ୟକରି ।
ନ ଯାଇ ଜୀବନ । ପ୍ରିୟତନୁ ହେଲା ବଜ୍ର କଠିନ । ୩୬ ।
ଚନ୍ଦନପାଟିଏ ଥିବ କପାଳେ । ତନୁ ପୂରିଥିବ କମଳନାଳେ ।
ଏ ବିଧି ଶରୀର ବେଶରୁ ଯୁବା । ମାର ହର ଭ୍ରମ କରୁଛି ଅବା ।
ବିଳମ୍ବ ଏଥିକି । ଏମନ୍ତ ବୋଲି ଭଜିଲା ଯେତିକି । ୩୭ ।

---

୩୨ । ସୁମନା—ମାଳତୀ, ଦୁହେଁଯାକ ମାଳତୀ ବୋଲି ଡାକିବା, କେଶୁ—ଗଭୀରୁ, କୁରୁଣ୍ଟକ—ଦାସକେରଣ୍ଟା ଅର୍ଥାତ୍ ଦାସୀ ।

୩୪ । ଜଳଧି—ସମୁଦ୍ର, ଲୋତକ—ଲୁହ ।

୩୫ । ନେତ୍ରୁ—ଆଖିରୁ, ମୁଞ୍ଚି—ପୋଛି ବା ବନ୍ଦ କରି ।

୩୬ । କୃପାଜଳଧି—ଦୟାସାଗର, ମନୋହାରୀ—ସୁନ୍ଦରୀ, ତଥ୍ୟକରି—ଠିକକରି, ପ୍ରିୟତନୁ—ସ୍ୱାମୀଦେହ ।

୩୭ । କମଳନାଳେ—ପଦ୍ମ ନାଡ଼ରେ । ଯୁବା ପୁରୁଷକୁ କନ୍ଦର୍ପ ମହାଦେବ ମନେ କରୁଛି, କାରଣ ମହାଦେବଙ୍କ ମୁଣ୍ଡରେ ଚନ୍ଦ୍ର ଥାଏ, ପୁରୁଷ ମୁଣ୍ଡରେ ଚନ୍ଦନ ଟିକା ଚନ୍ଦ୍ରପରି ଅଛି, ମହାଦେବଙ୍କ ଦେହରେ ସାପ, ପୁରୁଷ ଦେହରେ କମଳ ନାଡ଼, ମାର ମହାଦେବ ମନେକରି ଶର ମାରୁ ନାହିଁ । ଏଣୁ ସେ ମୋ କଥା ମନେ ପକାଉ ନାହାନ୍ତି, ଏହା କହି ମାଟିରେ ଶୋଇଲା ।

ନଳ ଦମୟନ୍ତୀ ଜାଣେ ଏ କଥା । ସମର୍ଥ ଶ୍ରମ ହରିବାକୁ ବ୍ୟଥା ।
ଚିତ୍ତରେ ତାଙ୍କୁ ନିରନ୍ତରେ ଧ୍ୟାୟି । ଉପେନ୍ଦ୍ର ବୀରବର କହଇ ।
ଏ ବଚନ ଛାନ୍ଦ । ହୃଦ-କୁମୁଦ-ଉଲ୍ଲାସକୁ ଚନ୍ଦ । ୩୮ ।

## ଦ୍ୱିଚତ୍ୱାରିଂଶ ଛାନ୍ଦ

(ବିରହରେ ଶରତ୍ ଋତୁର ବର୍ଣ୍ଣନ)

ରାଗ—ଦେଶାକ୍ଷ, ଚକ୍ରକେଳି ବାଣୀ

ଦେଖି ନୀରଦ ଦ୍ୱିରଦ ଶରଦ । ଋତୁ କେଶରୀ ପ୍ରସର ବିଷଦ । ୧ ।
ଗୃହିଁ ତମସ ନାଶ ବନଦେଶ । ସ୍ଫୁଟେ ପ୍ରକାଶ କଲେ କାଶହାସ । ୨ ।
ଘୋର ଭେକ ଡାକ ଶୁଣିମା କର୍ଣ୍ଣେ । ଯାଇଥିଲେ ମାନସେ ଏହୁମାନେ । ୩ ।
ଯହୁଁ ସେମାନେ ଗଲେ ଗର୍ଜି ଗର୍ଜି । ମହୀ ପ୍ରବେଶ ହେଲେ ହଂସରାଜି । ୪ ।
କେହୁ ଖଦ୍ୟୋତ ସଙ୍ଗେ ଉଦେ ହେବା । ଲୁକେ ତାରକା ଲୁଚିଥିଲେ କିବା ॥
ତାଙ୍କ ସ୍ନେହର ଅବଦତ ଶଶୀ । ଏବେ ନିର୍ମଳ ଆକାଶେ ପ୍ରକାଶି । ୬ ।

---

୩୮ । ହୃଦକୁମୁଦ ଉଲ୍ଲାସକୁ—ହୃଦୟ କଇଁ ଆନନ୍ଦକୁ ।
ବିରହିଣୀ ବର୍ଷା ଋତୁରେ ମେଘ ଘଡ଼ଘଡ଼ି, ବିଜୁଳି, ଥଣ୍ଡା ପବନ ବତାସ ଇତ୍ୟାଦି ଦେଖି ପୁରୁଷକୁ ମନେପକାଇ ବିରହରେ ଅସ୍ଥିର ହୁଏ—ଲାବଣ୍ୟବତୀ ଏଠାରେ ସେହିପରି ହେଉଛି ।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

୧ । ନୀରଦ—ମେଘ, ଦ୍ୱିରଦ—ହାତୀ, ଶରଦ—ଶରତ୍‌କାଳ, କେଶରୀ—ସିଂହ ।
ଶରତ୍ କାଳ ମେଘରୂପକ ହାତୀକୁ ଦେଖି ସିଂହପରି ପରିସ୍ଫାର ହେଲା, ଶରତ କାଳରେ ଆକାଶ ନିର୍ମଳ ହୁଏ ।

୨ । ତମ—ମେଘ ଅନ୍ଧାର, ମେଘନାଶ ହେବାର ଦେଖି ପରିସ୍କାର ହାସ ପ୍ରକାଶକଲେ । ଏ ସମୟରେ ମେଘ ନ ଥିବାରୁ ବଣରେ କାଶତଣ୍ଡି ଫୁଲ ଫୁଟିବା ହେତୁ ହସିବା ପରି ଦେଖାଯାଏ ।

୩ । ବର୍ଷାଦିନେ ବେଙ୍ଗ ଡାକନ୍ତି—ଘୋର ବେଙ୍ଗ ଡାକ ଶୁଣିବେ ନାହିଁ ବୋଲି ହଂସମାନେ ମାନସରୋବରକୁ ପଳାଥାନ୍ତି—

୪ । ବେଙ୍ଗ ଗର୍ଜି ଗର୍ଜି ବନ୍ଦ ହେବାରୁ ବର୍ଷାକାଳ ଯିବାରୁ ହଂସମାନେ ଫେରିଆସିଲେ ।

୫-୬ । ଖଦ୍ୟୋତ—ଜୁଳୁଜୁଳିଆ ପୋକ ।

ବୃଷ ମତ୍ତ ହୋଇ ଋଷଭ ସ୍ୱରେ । କହୁଛନ୍ତି କି ଏମନ୍ତ ବ୍ୟାଜରେ । ୭ ।
ଦେଖି ଦେଖି ଭଜିଲେଟି ସ୍ତ୍ରୀନକୁ । କେକୀ ଷଣ୍ଢମତ କେତେ ଧନକୁ ।୮ ।
ଧଣେ ଦକ୍ଷିଣେ ଅଗସ୍ତି ସୁନ୍ଦର । ଲେଉଟିଛି ଭାବି ତୋଷ ମନ୍ଦର । ୯ ।
ପଦ୍ମ ଅନୁରାଗ କେମନ୍ତ ଭାବ । ଉଦେ ମେଘ ଭିତରେ ଥିଲେ ରବି । ୧୦ ।
କୁଳବଧୂ ଗୀତ ଶୁଭେ କେଦାରେ । ଯେହ୍ନେ ପଥିକ ହୃଦସ୍ଥଳ ଦାରେ । ୧୧ ।
ଏତଲୁକୁ ଗୃହି ନୃପନନ୍ଦନ । ପ୍ରାଣବନ୍ଧୁ ଭାବ କଲା ଧିଆନ । ୧୨ ।
ସେହି ଶରଦ ଋତୁ ସେ ଚନ୍ଦ୍ରମା । ସେହି ପ୍ରକାଶେ ହୋଇଛି ସୁଷମା । ୧୩ ।
ସେହି ମୁହିଁ ଜୀବନେ ଅଛି ପୁଣି । ଏ ତ ବିଚିତ୍ର ଦୂର ମୋ ତରୁଣୀ । ୧୪ ।
ଏଥେଁ ଦେଇଛି ଭାବମାନ ଯେତେ । ଏକ୍ଷଣି ସେ କଲା ପ୍ରାପ୍ତ ପ୍ରତେ ।୧୫।
ମହା ଦରିଦ୍ର କରେ ଦେଇ ନିଧି । ଏ କି ଦୁର୍ଦ୍ଦଶା ହରିନେଲା ବିଧି । ୧୬ ।
ଦିନେ ଚୁମ୍ବନ ଦେଇ ଚୁମ୍ବ ମାଗୁଁ । ନାହିଁ ନ କଲା ଅତି ଅନୁରାଗୁଁ । ୧୭ ।
ଦେବ ବୋଲି ଅଧର କରୁ ଗୋଜ । ସେହି ସମୟେ ବାରିଦେଲା ଲାଜ ।୧୮।
ମୁଁ ଯେ ବୋଇଲି ବେଳେ ଦେଉ କିନା । ଲାଜ କାହାକୁ ମୁଁ ତୋ ଦାସ ସିନା ।
ଧୀରେ ଗୀର ପ୍ରକାଶ କଲା ତହିଁ । ଚୁମ୍ବ ଦେବାର ମୋତେ ଆସୁନାହିଁ । ୨୦ ।
ଅଜଯାଏ ସେ ଚତୁରୀ ବଚନ । ନେଣେ ମନେ କରିଅଛି ସଦନ । ୨୧ ।
ସେହି ଦିନ ପ୍ରଥମେ କଥା ଶୁଣା । ଦିନେ ସାରି ପଢ଼ାଉଁ ସୁଲକ୍ଷଣା । ୨୨ ।
ଜାଣି ଲଭି ମୁଁ ଶୁଣିଥିଲି ସ୍ୱଚ୍ଛେ । ଶାରି ପଢ଼ି ଯେ ଦେଲା କାନ୍ତ ପଛେ ।୨୩।
ସଲଜ୍ଜିତେ ଜିତେନ୍ଦ୍ରିୟ ମୋହିନୀ । ଦେଇ ଗୃହୁ ଚିବୁକରେ ତର୍ଜ୍ଜନୀ । ୨୪ ।

---

୭-୮ । ବୃଷ—ଷଣ୍ଢ, ଋଷଭସ୍ୱର—ହମ୍ବାରଡ଼ି, ଷଣ୍ଢ—ପୁରୁଷ, ମୟୂରମାନଙ୍କ ସ୍ତ୍ରୀ ପୁରୁଷ ସଙ୍ଗମ ହୁଏ ନାହିଁ,

୯ । ଅଗସ୍ତି—ଦକ୍ଷିଣରେ ଉଦୁଥିବା ଗୋଟିଏ ବଡ଼ ତାରା ନାମ ଅଗସ୍ତି-ମନ୍ଦର ବଢ଼ିବାରୁ ସୂର୍ଯ୍ୟ ଗତିରୋଧ ହେଲା—ଅଗସ୍ତି ପହଞ୍ଚନ୍ତେ ମନ୍ଦର ମୁଣ୍ଡ ତଳକୁ କରି ଚୋଡ଼ତଳେ ପଡ଼ିଲା—ଅଗସ୍ତି କହିଲେ ମୁଁ ଦକ୍ଷିଣରୁ ଫେରିବାଯାଏ ଏହିପରି ଥା ।

୧୦ । ବର୍ଷା ଦିନରେ ପଦ୍ମରେ—ସୂର୍ଯ୍ୟ ମେଘରେ ଲୁଚେ ଶରତରେ ପଦ୍ମ ପ୍ରକାଶ ହୁଏ—ସୂର୍ଯ୍ୟ ଭଲ ଦେଖାଯାଏ ।

୧୧ । କୁଳବଧୂ—କୁଳବୁଆସୁଣୀ, ପଥିକ—ବାଟୋଇ, ହୃଦସ୍ଥଳଦହେ—ଛାତି କରତ ପକାଏ ।

୧୨ । ଧ୍ୟାନ—ଏକଲୟରେ ରହିବା ।

୨୪ । ସଲଜ୍ଜିତେ—ଲାଜ ଲାଜ ହୋଇ, ଜିତେନ୍ଦ୍ରିୟ ମୋହିନୀ—ଋଷି-ମୋହିନୀ, ତର୍ଜ୍ଜନୀ—ବଣି ଅଙ୍ଗୁଠି ।

ନାସାପୁଡ଼ାକୁ ଫୁଲାଇଲା କର । ଅଧୋମୁଖେ ରହିଲା କୃଶୋଦରୀ ।୨୫।
ନବସପତ ବୟସୀଙ୍କ ମୁହିଁ । ମୋହ ଶପଥ ମକାଇଲି ତହିଁ ।୨୬।
ମଥା ଟେକି କଥା କହ ବୋଲନ୍ତେ । କିସ କହିବି କହିଦିଅ ମୋତେ ।୨୭।
ବୋଲିବାରି ସଙ୍ଗତେ ଅଣିମାଦି । ସୁଖ ଦେବାକୁ ଥିଲା ଯେ ସମ୍ବାଦ ।୨୮।
ଲବେ ଛାଡ଼ି ନ ପାରଇ ତୁଳକୁ । ଲଙ୍ଘି ନ ପାରଇ ମୋର ବୋଲକୁ ।୨୯।
ଧନେ କର୍ଣ୍ଣେ କହିଲି ତୁନକର । ଚନ୍ଦ୍ରକରେ ରତି ଦେବୁ ସୁନ୍ଦରି ।୩୦।
ସେହିକ୍ଷଣି ସେ କଲା ପ୍ରତିଭାଷ । 'ବୋଲ କେବେ ନ କରିବ ପ୍ରବାସ' ।୩୧।
ମୁଁ ବୋଇଲି କାମ ଅଛୁ ଜୀବନେ । ତୋତେ ମୁଁ ଛାଡ଼ି ପାରିବି କେସନେ ॥
ଯେବେ ମନରେ ଶଙ୍କା ତୋ ବାନ୍ଧିବ । ଯେଉଁ ନିୟମ ବୋଲିବୁ କରିବି ।୩୩।
ବାଣୀ ପ୍ରମାଣ ନିୟମ ତାହାଙ୍କ । ନେଇ ତାଳ ଯେ ବୋଇଲା ତହିଁକି ।୩୪।
କେତେ ସିହାଣୀ ଲେଉଡ଼ିଲା ବଞ୍ଚାଇ । ସ୍ୱନେ ଚନ୍ଦ୍ରକରେ ଶେଯ ପକାଇ ।୩୫।
ତହିଁ ମିଳୁଁ ମୁଁ ହରଷେ ଅନାଇଁ । ପାନ ପିକ ଦେଲା ଅଗେ ପକାଇ ।୩୬।
ବାସେ ପୋଛୁ ପୁଣି ଭାଲ ସିନ୍ଦୁର । ମୋର ହୃଦ କରାଇଲା କାତର ।୩୭।
ଏତେ ବୁଦ୍ଧି ସ୍ଫୁରିଲା ଯୋଗେ ତହିଁ । ମୁଁ ଯେ କହିଲି କହ ମୋତେ ଗୁହିଁ ।୩୮
ଏ ବଚନ ବଳେ ହାସ ବାହାର । କରାଇଲା ଚନ୍ଦ୍ରମୁଖୁଁ ତାହାର ।୩୯।
ରକ୍ଷା ପାଇଲି ବୋଲି ବୋଲ କଲି । ମୁଁ ଯେ ଶେଯପରକୁ ଘେନଗଲି ।୪୦।
ନାହିଁ ନାହିଁ କହୁଥିଲା ମୋ ଧନ । ଗତ ବହୁ ମୁଁ କଲି ବିବସନ ।୪୧।
ଏବେ ଶ୍ରୀଅଙ୍ଗ କେତକୀରୁ ଗୋରି । ଶଶୀକରେ ଦିଶିଲା କେଡ଼େ ତୋରି ।୪୨।
ରସାଣିଲା ହେମକୁ ଲକ୍ଷ ଗୁଣେ । ନିନ୍ଦା କରୁ ଯେ ଥିଲା ଝାଳପଣେ ୪୩।
ଏହି ସମୟେ ଶଯ୍ୟାରୁ ନାଚସ୍ୱ । ଘେନି କର୍ପୂର ରଜ ନେନେ ମାର ।୪୪।
ତେଣୁ ବୁଜି ହୋଇଗଲା ମୋ ଆଖି । ଭଲ କରି ମୁଁ ନ ପାରିଲି ଦେଖି ।୪୫।
କର ଧରିବା ବେଳକୁ ଶୋଭାଙ୍ଗୀ । ଭଙ୍ଗୀବଶେ ଯେ ଦେଉଥିଲା ପିଙ୍ଗି ।୪୬।
ଯୋଗେ ପଡ଼ିଲା ସେ କାମ ସଦନେ । ଲବଣୀରୁ କୋମଳ କଲି ମନେ ।୪୭।
ନଖ ଚଳାଇ ଦେବାରୁ ତହିଁରେ । ରୋମାଙ୍କୁର ହୋଇଲା ଯେ ଦେହରେ ।୪୮।

---

୨୫ । ଅଧୋମୁଖ—ତଳକୁ ମୁହଁ ପୋତିବା ।
୪୨ । ଶଶିକରେ—ଚନ୍ଦ୍ରକିରଣରେ ।
୪୩ । ରସାଣିଲା—ପାଲିସ କଲା ।
୪୪ । କର୍ପୂରରଜ—କର୍ପୂର ଗୁଣ୍ଡ ।
୪୮ । ରୋମାଙ୍କୁର—ରୋମାଞ୍ଚାଙ୍କୁରିବା ।

ଦଂଶିଲା ଯେ ଭଦମ୍ଭ ପୁଷ୍ପ ପର । ଏ କିସ ଗୋ ବୋଲିବାର ଗୃହ୍ରୁସୀ ।୪୯।
ଯିବ ସହସ୍ର ଜନ୍ମେ କି ପାସୋର । ଅମୃତରୁ ପ୍ରିୟ ବାଣୀ ମଧୁର ।୫୦।
ଆଜ ଭେଟିବ ନୋହୁଛୁ ପରତେ । ଭେଟ ହେବା ଉପାୟ ଅଛୁ ଏତେ ।୫୧।
ପୁଣି ବିରହ ଅନଳେ ଦହନ । ହୋନ୍ତା ଏ ମୋହର ତନୁ ବହନ ।୫୨।
ଭସ୍ମ ଉଡ଼ାଇ କୃପାରେ ପବନ । ନେଇ ପକାନ୍ତା କାନ୍ତା ସନ୍ନିଧାନ ।୫୩।
କିସ ବୋଲି ବାଳା କରନ୍ତା ଦୃଷ୍ଟି । ତହିଁପରେ ହୁଅନ୍ତା ସୁଧାବୃଷ୍ଟି ।୫୪।
ହୋଇ ମୂର୍ତ୍ତିମନ୍ତ ମୁଁ ଗୃହି ମୁଖ । କରଯୋଡ଼ି କହନ୍ତି ସବୁ ଦୁଃଖ ।୫୫।
ଆହା ବୋଲି ସାହା ହୋଇ ସୁମୁଖୀ । ମୋତେ କରନ୍ତା ସେହୁକ୍ଷଣି ସୁଖୀ ।୫୬।
ମୋର ଭରସା ହୋଇଛୁ ଏଥକୁ । ଜୀବ ଦେଇଛୁ ଭସ୍ମ ମନ୍ମଥକୁ ।୫୭।
ତହୁଁ ସବୁରୂପେ ମୁଁ ଯେ ଅଧିକ । ନିତ୍ୟ ଅନୁସରିଲାର ସେବକ । ୫୮ ।
ମନ ମୋହର ଭ୍ରମୁଛୁ ନିରତେ । ମଶା ମଶାରିରେ ପଡ଼ି ଯେମନ୍ତେ ।୫୯।
ମୁହିଁ ଭ୍ରମର ସଙ୍ଗେ ହେଲି ମିତ । ସେହୁ ମାଳତୀ ବିରହେ ଯେମନ୍ତ ।୬୦।
ଏତେ ବୋଲୁଁ ବୋଲୁଁ ସ୍ତମ୍ଭ ଭଜିଲା । ହା ହା ପ୍ରିୟେ ବୋଲି ଶ୍ୱାସ ତେଜିଲା ॥
ଦହି ନ ପାରୁଛୁ କାମ-ଅନଳ । କରେ ତୋ ଭାବ ଭାବନା ଶୀତଳ ।୬୨।
ପୁଣି ପ୍ରିୟ ସ୍ୱରୂପ ଲେଖି ପଟେ । ସ୍ନେହବଶେ ଲଗାଇ ହୃଦତଟେ ।୬୩।
ପଟ ପ୍ରସଙ୍ଗ ମନରେ ହୋଇଲା । ତାହା ସେ ଦିନ କି ହେଲା ବୋଇଲା ।୬୪।
ବନ୍ଧ ପିତୁଳା ଦେଖୁଁ ଦେଖୁଁ ବସି । ଗଣ୍ଡେ ଅଇଲା ଯେ ଲୋମ ଉଲ୍ଲସି ।୬୫।
ହସି କର୍ଣ୍ଣପାଶେ ଦେଲା ବଦନ । କି କହିବ କରୁଛୁ ମୋର ମନ ।୬୬।
ପ୍ରେମସିନ୍ଧୁ କାମ ଅନାୟୁତ୍ତରେ । ଜିହ୍ୱା ଗୃଳିଲା ଶ୍ରବଣ ଭିତରେ ।୬୭।
ବାଧି ନିଷେଧ-ଅନଳେ ଅଦ୍ଭୁତ । କରି ରଚିଲ ଦବଦେ ସୁରତ ।୬୮।
କୁଚଅଗ୍ରେ ବୁଲାଇଲି ରସନା । ବେଳୁଁ ବେଳ ହେଲା ହତ ଚେତନା ।୬୯।
ମୁଦୁଥିଲା ଫେଡ଼ୁଥିଲା ଲୋଚନ । ପୁନଃ ପୁନଃ ଭାଷି ହୁଁ ହୁଁ ବଚନ ।୭୦।
କଟୀ ସଙ୍ଗତେ ମଦନ ମନ୍ଦର । ଚମକାଇବା କେଡ଼େ ସୁଖକର ।୭୧।
ମଧ୍ୟତନୁକୁ କାନ୍ତ ଭୁଜେ ଛନ୍ଦ । ମଦ ହତ ଯାଏ ସେ କଲା ବନ୍ଧ ।୭୨।

---

୫୭ । ମହାଦେବଙ୍କ କ୍ରୋଧାନଳେ କନ୍ଦର୍ପ ଭସ୍ମ ହୋଇଥିଲା । ପୁଣି ପଛରେ ଜୀବନ ପାଇଲା ।
୬୧ । ସ୍ତମ୍ଭ—କାବା ହେବା ।
୬୪ । ପଟପ୍ରସଙ୍ଗ—ଚିତ୍ରପଟ ଦେଖାଇବା ବେଳ କଥା ।
୬୭ । ପ୍ରେମବନ୍ଧୁ—ପ୍ରେମସାଗର ( ଜିଭକୁ କାନ ଭିତରେ ପୁରାଇଲେ ବେଶ ଉନ୍ମାଦ ଜନ୍ମେ )
୭୨ । ମଧ୍ୟତନୁ—ଅଣ୍ଟା ଓ ବେକ, ଭୁଜ—ବାହୁ ।

ଡୋଳା ପିତୁଳା ସେ ଦନ୍ତ ଘଜଡ଼ି । ନେନେ ରହିଲ ସେହି ଶୋଭା ଜଡ଼ି ।୭୩।
ଏହା ଚନ୍ଦ୍ର ଫାଟି ଯାରେ ଖୋଇଲା । ପୁନଃ ପୁନଃ ହୃଦେ କର ମାଇଲା ।୭୪।
ତେତେଣେ ନୃପକୁମାରୀ ସୁକୁମାରୀ । ବସି ଏକାନ୍ତେ କାନ୍ତକୁ ସୁମରି ।
ଅହା ଦନ ବଞ୍ଚୁଥିବେ କେମନ୍ତେ । ଦଣ୍ଡେ ମୂର୍ଚ୍ଛି ନ ପାରନ୍ତି ସେ ମୋତେ ।୭୬।
ଦନେ ମନ ଜାଣିବାକୁ ପଡରେ । ଲୁଚି ରହିଲି ଗୁପତ ମନ୍ଦିରେ ।୭୭।
ବଳା ନୂପୁର କଙ୍କିଣୀ ବାହାର । ଅଗୁ କଢ଼ିଥିଲି କରି ବାଗୁର ।୭୮।
ଅସି ଭୃତି ପରମେଶ୍ୱରୀ ବୋଲି । ଖୋଜିଲେ ଯେ ଅନେକ ପୁର ବୁଲି ।୭୯।
ଲୋଡ଼ି ନ ପାଇ ପ୍ରକାଶି ଏ ଭାଷା । କାହିଁଗଲ ପ୍ରିୟେ ଦେଇ କି ଦଶା ।୮୦।
ବୋଲିବାକୁ ନେଇଁ ନୀର ବାହାର । ଅଛୁ ଏ ପୁରେ କହିଦେଲା କୀର ।୮୧।
ତାହା କହିବାକୁ ତାଙ୍କ ଆରତ । ଶୁଣି ଧରି ମୁଁ ନ ପାରିଲି ଚିତ୍ତ ।୮୨।
ପୋଛୁ ପଣନ୍ତେ ନୟନ ଜଳକୁ । ଧାଇଁ ଯାଇ କୋଳ କଲବେଳକୁ ।୮୩।
ବୋଇଲେ ରେ ଅଜ ଥରେ କପଟ । ରସେ ଏରୂପେ ହୋଇଲେ ଲମ୍ପଟ ।୮୪।
କାନ୍ତ ବୋଲି ଡାକିବା ଅଜୁଁ ଲୋପ । ତୁ ଅନ୍ତରେ ରସବନ୍ତୀ କଳାପ ।୮୫।
ମୁଁ ଯେ ବୋଇଲି ଯାଇକନା ଓଣା । ଚୁମ୍ବ ଦେଇ ଚିତ୍ତ କଲି ଫୁରୁଣା ।୮୬।
ଏହି ଭାବ ଗୋଟିକ ସୁମରଣ । କରି ଲଭନ୍ତି ଏକ୍ଷଣି ମରଣ ।୮୭।
ପ୍ରିୟ ନିନ୍ଦା ଯେ ନ ପାରନ୍ତି ସହି । ଜୀବ ରଖିଛୁ ସେ କଥାକୁ ମୁହିଁ ।୮୮।
ରଙ୍ଗ ଅଧରୁ ଅମୃତ ପିଇଛୁ । ତାହା ବ୍ୟର୍ଥ କରିବ ମୃତ୍ୟୁଇଚ୍ଛି ।୮୯।
ଏହା ବୋଲି ସେ ପ୍ରଳୟକୁ ପାଇ । ଶୀତ ଉପଗ୍ରହରେ ସଖୀ ଚେତାଇ ।୯୦।
ଚେତ ସୁନ୍ଦରୀ ବୋଲୁଛୁ ଏମନ୍ତ । ମହା ସୁନ୍ଦରବର ମୋର କାନ୍ତ ।୯୧।
ମୋତେ ମାଇଲେ ମାରକୁ ମଦନ । ମୁଁ କି ବୋଲିବି ତୁ ତାଙ୍କ ସମାନ ।୯୨।
ଏହା ବୋଲୁଁ କଥାଏ ମନେ ପଡ଼ି । ତାହା ଭାବନା କରି ଗଲି ସଢ଼ି ।୯୩।
ଦନେ ଏହି ଶରଦ ରଜନୀରେ । ବସିଥିଲୁଁ ଯେ ଚନ୍ଦ୍ର ଗୃହନୀରେ ।୯୪।
ଗୃହିଁ ଶଶୀକି ମୋର ବଦନକୁ । ସମାନ ଅଣିଲେ ତାଙ୍କ ମନକୁ ।୯୫।
ବଳା ଦେଖିବା ଛଳେ ମୋର ପାଦ । ନ ଘୁଞ୍ଚିଲେ ବୋଲୁଁ ଏ କି ପ୍ରମାଦ ।୯୬।

---

୮୧ । ନେଇଁ—ଅଖିରୁ, ନୀର—ଲୁହ ।

୮୫ । କାନ୍ତଲୋପ—ମୁଁ ମରି ଯାଆନ୍ତି, କଳାପ—ଶ୍ରେଷ୍ଠ ।

୮୬ । ଫୁରୁଣା—ଆନନ୍ଦ ।

୮୯ । ମନୁଷ୍ୟ ଅମୃତ ଖାଇଲେ ଅମର ହେବ, ମୁଁ ତ ସ୍ତ୍ରୀର ଅଧରରୁ ଅମୃତ ପିଇଛୁ, ମୋର ମରଣ ଅକାରଣେ ହେବ ।

୯୦ । ପ୍ରଳୟ—ଅଚେତ ହେବା ।

ଚନ୍ଦ୍ରମୁଖୀ ଯେ ବୋ'ଲଇ ବାନ୍ଧବ । ଛାଡ଼ିଲି ଏ ଦୋଷ ବୋଲି ଛାଡ଼ିବ ।୯୭।
କହିବାର ଘେନାଘେନ ବଚନ । ତୁଳେ ସମ ନୋହେ କୋଟି ରତନ ।୯୮।
ଏହି ଶନ୍ଦନ କରୁଁ କରୁଁ ମନ । ନେତ୍ର ନୀରରେ ଜର ଜର ସ୍ତନ ।୯୯।
ଅନୁଭବ କ ଗୋଚର ଏ ରସ । ବୁଝାଇଲେ ମୂର୍ଖ ହେବ ସନ୍ତୋଷ ।୧୦୦।
ପଶ୍ୱ ସହିବାର କଷ୍ଟ ନୁହଇ । କଲେ ବିଚ୍ଛେଦ ହର ତାହିଁପାଇଁ ।୧୦୧।
ତାଙ୍କ ବେଲକୁ ଅନ୍ତର କୋଳରୁ । ନ କରନ୍ତୁ କମଳାକ୍ଷ ସ୍ନେହରୁ ।୧୦୨।
ସ୍ନେହ ଦେବ ସରସିଜ ଚରଣ । ଉପେନ୍ଦ୍ର ବୀରବର ଶରଣ ।୧୦୩।
ଛାନ୍ଦ ନାମ ରସିକ ରତ୍ନମାଳା । ଶୁଭେ ଏବେ ଏଠାରୁ ଶେଷ ହେଲା ।୧୦୪।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

( ବିରହାବସ୍ଥାରେ ହେମନ୍ତ ଋତୁର ବର୍ଣ୍ଣନ )

ରାଗ—କୁମ୍ଭକାମୋଦୀ

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବିଧାତା । ବେଳା ତନୁ ଏକ କଲା ସ୍ନେହରେ ପୁରୁଷ ବନିତା । ଜଳ ଆଦର ଅନଳରେ ନିବେଶି ଅନିଳ ଅସ୍ନେହ । ଜଳରେ ପୁରାଇ ପୁଷ୍ପବତୀ କଲା ସେବତୀ

---

୯୭ । ଚନ୍ଦ୍ର ତୋ ମୁହଁ ଠାରୁ ସୁନ୍ଦର' ପଣରେ ହୀନ, ଏହି କାରଣରୁ ତୋତେ ଚନ୍ଦ୍ରମୁଖୀ ବୋଲି ଡାକିବା ଠିକ୍ ନୁହେଁ ।

ଶରତ ଋତୁରେ ବେଙ୍ଗର ମକମକ ଶବ୍ଦ, ଚନ୍ଦ୍ରକିରଣ ଉଜ୍ଜ୍ୱଳ ହୁଏ । ଆକାଶ ନିର୍ମଳ ଦେଖାଯାଏ ପୁରୁଷ ଏ ସମୟରେ ନାରୀ ବିଚ୍ଛେଦରେ ପ୍ରିୟତମାର ପ୍ରେମାଳାପ କଥା ମନେ ପକାଇ କାମ ତାପରେ ଅଧୀର ହେବା ବର୍ଣ୍ଣନା ହୋଇଛି ।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

୧ । ହେମନ୍ତଋତୁ-କାର୍ତ୍ତିକ ଓ ମାର୍ଗଶିର, ବେଳାତନୁ-ଦୁଇଶରୀର । ହେମନ୍ତ-ଋତୁକୁ ପୁରୁଷ କଲେ ତାର ସ୍ତ୍ରୀ ଦୁଇଶରୀର ଯାଇ ଏକତ୍ର କଲା ଅର୍ଥାତ୍ ଶୀତ ହେତୁ ସ୍ତ୍ରୀ ପୁରୁଷ ଦୁହେଁ ଯାକିଯୁକ ହୋଇ ଶୋଇଲେ । ପୁଣି ଶରତରେ ପାଣିକି ଆଦର କରୁଥିଲେ ଏବେ ପାଣିକି ଆଦର କଲେ ନାହିଁ ସେ ଆଦର ନିଆଁ ଠାରେ ହେଲା, ଅନିଳ ଯେ ପବନ, ତାକୁ ମଧ୍ୟ ସ୍ନେହ କଲେ ନାହିଁ, ସେ ବଣଗଛ ସମସ୍ତ ଫୁଲରେ ଭରି ହେଲା ।

ସନ୍ତୋଷ । ୧ । ପ୍ରଦୀପ ଛଳେ ଜଳାଇଲା ମନ୍ଦରେ ହସନ୍ତମାନଙ୍କୁ । ଶାଶି ନିଦ୍ରାବେଳେ ନତ କରାଇଲା ଜ୍ୟନ୍ଥ ଜନଙ୍କୁ । ଚନ୍ଦ୍ର ଚନ୍ଦନକୁ ଅଦର ଛୁଟାଇ ରଖିଲା ବସନେ । ସମସ୍ତ ତନୁକୁ ଆଚ୍ଛାଦିତ କଲା ଯୁବତୀ-ବିଧାନେ । ୨ । ଦିନ କ୍ଷୀଣ କଲା ରଜନୀ ବୃଦ୍ଧିକି କରାଇ ହରଷେ । ସକଳ ଅଙ୍ଗେ ବେପଥୁ ଜାତ କଲା ପବନସ୍ୱରୂପେ । ରବି କିରଣରେ ଅଧର କରାଇ ଚନ୍ଦ୍ରମା ପ୍ରକାରେ । ଜାନୁ ଅଲିଙ୍ଗନ କରାଇଲା ଏକ ଦରିଦ୍ରଜନରେ ।୩। ସକଳଗାତ୍ର ମସୃଣ ହୋଇ ଦେଲା କରଟ ନିକରେ । ଶୁକ ଶିଶୁଙ୍କ ପାଳନକୁ ଉଦ୍ୟ କରାଇ ଲୋକରେ । କର ଘେନାଇଣ କୃଷକ କୂଳକୁ କରାଇ ଅଇଣୀ । କପୋତ ଗୁଟେ ଦୁହାଇ ଏ କାଳକୁ ଗତଟି ତରୁଣୀ । ୪ । କେଦାର ସମ୍ପତ୍ତି ସଦନରେ ସ୍ଥିତ ସତ୍ୱରେ କରାଇ । ମୋଦରେ ପ୍ରତି-ମନ୍ଦରେ ମଶାରିରେ ସଖୀଙ୍କି ଶୁଆଇ । ଘନ ପ୍ରଭବନ୍ଧେ ଗିରିଙ୍କି ବେଢ଼ାଇ କୁଜ୍‌ଝଟି ପ୍ରକାଶେ । ଏ ଋତୁ ଗୃହିଁ କୁମାର କର୍ଷୁରଇ କିରସ ମାନସେ ।୫। କି କରିବି ଏ ତୁହିନ ଋତୁ ହୀନ ପଦ୍ମିନୀ ନଶନ । ପ୍ରିୟା ମୋ ପଦ୍ମିନୀ ପଦ୍ମପାଦ ପାଣି ସୁବାସ ତେସନ । ପଦ୍ମ ପରି ଅଖି ପଦ୍ମମୁଖୀ ପଦ୍ମପତ୍ରର ଉଦରି । ତାହା ଅଭାବେ ସ୍ୱଭାବେ ମୋ କି ଗତ ଏଥକୁ ମୁଁ ଦରି । ୬ । ଦାରୁବ୍ରହ୍ମକୁ କେ ବଡ଼ ଘୋଡ଼ ଲାଗି ଜାଡ଼କୁ ଡରଣ । ଅନଳକୋଣକୁ ଅଶ୍ରେ କଲେ ଭାନୁ ତେଜସ୍ୱୀ ହୋଇଣ । ଜନ ମଧ୍ୟଗତ ଶରଣ ପଶିଲ ଅନଳ ଆରତେ । ଗୋଖି କୁଚ ଗିରି ଦରି ପାଶେ ନାହିଁ ବଞ୍ଚିବ

୨ । ହସନ୍ତ—ନିଆଁ ଉନ୍ଧେଇ, ଜ୍ୟନ୍ଥଜନ—ବୁଢ଼ାମାନେ, ନତ—ପାକୁଳିକ ହେବା, ଚନ୍ଦ୍ର—କର୍ପୂର, ପିଧାନ—ଘୋଡ଼ହେବା—ଯୁବତୀପିଧାନ ସ୍ତ୍ରୀ କୁ ଘୋଡ଼ହେବା ଅର୍ଥାତ, ସ୍ତ୍ରୀ କୁ ଉପରେ ନେଇ ଶୋଇବା ।

୩ । ବେପଥୁ—କମ୍ପ, ପବନ ସ୍ୱରୂପେ—ପବନ ଲାଗିଲାପରି, ଅଲିଙ୍ଗନ—କୁଣ୍ଢାଇବା ।

୪ । ଗାତ୍ର—ଦେହ, ମସୃଣ—ଚିକ୍କଣ, କରଟ—କୁଅ, ଶୁକଶିଶୁ—ଶୁଆଛୁଆ, କର—ଖଜଣା, କୃଷକ—ଚଷା ।

୫ । କେଦାର-କିଆରି, ସମ୍ପତ୍ତି-ଧାନଇତ୍ୟାଦି, ସଦନେ-ଘରେ, ମୋଦରେ —ଆନନ୍ଦରେ, କୁଜ୍‌ଝଟି—କୁହୁଡ଼ି ।

୬ । ହୀନ—ମନ୍ଦ, ପଦ୍ମିନୀ-ସର୍ବସୁଲକ୍ଷଣୀ ଓ ପଦ୍ମିନୀଜାତୀୟା ସ୍ତ୍ରୀ, ସୁବାସ—ବାସନା, ଦରି—ଭୟଙ୍କର ।

୭ । ଦାରୁବ୍ରହ୍ମ—ଜଗନ୍ନାଥ, ଘୋଡ଼ଲାଗି—ପୀତାମ୍ବର ଘେରହେବା, ଅନଳକୋଣ—ଅଗ୍ନିକୋଣ, ଦରି—ଗୁମ୍ଫା ।

ଭେମନ୍ତେ । ୭ । ବଧି ବୋଲନ୍ତି ବଧାଡାକୁ କାହିଁକି ଅବଧି ଭଲାଡ । ଅମୃତ ଭୁଞ୍ଜାଇ ପିଚୁମର୍ଦ୍ଦଛଦ ତାମ୍ବୁଳ ଦେଲାଡ । ଏହି ସମୟେ ଯେତେ ରୂପେ ଭାବକୁ ଦେଇଛୁ କଶୋରୀ । ବ୍ରହ୍ମପଦବୀ ପାଇଲେ ତ ନ ଯିବ ମନରୁ ପାସୋର । ୮ । କୁଙ୍କୁମ କୁସୁମହାସୀ ଅଙ୍ଗ କାନ୍ତି ଶୀତକୁ ନାଶଇ । ଯିଦ୍ଧରୁ ପଦ୍ମଣୀ ଏ ଭ୍ରମ କି ରଙ୍ଗେ ଅଙ୍ଗରେ ମିଶଇ । ନିଶାରେ ମୀଶାରେ ଅନାଦର ହେଲେ ରତେ କି ପୀରତି । ଗୁଣ ତ ଅପାର ପଣନ୍ତ ଘୋଡ଼ାଇ ଦଅଇ ସୁରତି । ୯ । ମଣାର ଉଦରେ ଅନ୍ଧାର ଅନେକ ଦୀପତ ଥିବାରେ । ଅଜନୁସୁଖୀ ସୁଖଦାୟୀ ହୁଅଇ ସୁରତି ଦେବାରେ । ତାହା ମୋହର ପ୍ରଶଂସା ହୋଇଥାଇ ଯାମିନୀ ବୃଦ୍ଧିକି । କଛୁ ଅବକାଶ ହେବ ବୋଲି ବନ ମାନଙ୍କ ବଧିକି ।୧୦। ଯେତେ ମୋହପାର ତେତେ ବଧିରସ ହୁଅଇ ଜନାତ । ଏଣୁ ବସୁରୁଛୁ କ୍ଷୀର ଉପକାର ପସିଣ ଧନୀ ତ । ଇକ୍ଷୁରସ ଜାତ ଦ୍ରବ୍ୟ ପ୍ରାୟ ବେଳୁ ବେଳ ସେ ମଧୁର । ଏଭିକି ଅଭାଗ୍ୟବନ୍ତ ମୁଁ ସେ ବାଳା ହୋଇଛୁ ଅନ୍ତର । ୧୧ । ଦନେଟି ଜରୁଁ ଜର ଦୂର ହୋଇଲା ଅଚେତ ବଶରେ । ଝଟପସି ନିଦ୍ରା ଭାଙ୍ଗିଗଲା ମୋର ଜାଡ଼ରେ ହାସରେ । ମନେ କଲି ପୁଷ୍ପବତୀ ହୋଇ ପାଶୁଁ ଗଲା କି ସଜନୀ । କି ଦଣ୍ଡ ପଡ଼ିଲା ଏ କାଳେ କି ରୂପେ ନେବି ଏ ରଜନୀ । ୧୨ । ଲେଭୁ ଶେଯରେ କରେ ହସ୍ତ ପଡ଼ିଲା ହେଲି କି ଅବେଶ । ମୃତ୍ୟୁ ପାଇଥିଲା ପିଣ୍ଡରେ ପୁଣି କି ପସିଣ ପ୍ରବେଶ । ଅଣିମାଦ ସୁଖ ଅଣିକର ଅଣି ଢୋଳକୁ ପାଇଲି । ସେହି ପ୍ରକାରେ ନିଧୁବନ ଭବନେ ମାବକ ଫେଇଲି । ୧୩ । ମଲିଟି

---

୮ । ପିଚୁମର୍ଦ୍ଦଛଦ—ନିମ୍ବପତ୍ର (ଏଠାରେ) ଖଇର, ତାମ୍ବୁଳ—ପାନ, କଶୋରୀ—ଯୁବତୀ, ପଦବୀ—ପଦ ।

୯ । ଅଙ୍ଗରେ—ଦେହରେ, ପଦ୍ମନୀ—ପାଟଘୋଡ଼ହେଲା, ମୀଶାର ଘୋଡ଼ହେଲା ଶେଯରେ, ନିଶା—ରାତି ।

୧୦ । ଯାମିନୀବୃଦ୍ଧି—ରାତିବଢ଼ିବା ।

୧୧ । କ୍ଷୀର—ଦୁଧ, ବଧିରସ—ଲହୁଣୀ, କନ୍ଦର୍ପ, ଦୁଧକୁ ମୋହିଲେ ଲହୁଣୀ ବାହାରେ ଲାବଣ୍ୟବତୀଙ୍କ ଖୁସାମତ କଲେ ରସ ଲହୁଣୀ ବାହାରେ ।

୧୨ । ଜର—ଘୃତ, ହାସରେ—ଭୟରେ, ପୁଷ୍ପବତୀ—ଋତୁମତୀ, ଅବେଶ —ଉଛାଟ ।

୧୩ । ଅଣିକର—ଅଣେଇକର । ନିଧୁବନ—ରତି । ମାବ—ଖୋସଣି ।

୧୪ । ମଦନ ଅଣି—କନ୍ଦର୍ପ ଗନ୍ଧ ।

ବୋଲି ଭିଡ଼ି ଧରି ମୋତେ ସେ ଅଳପ କମ୍ପିଲା । ଅଙ୍ଗ ଏ କି ରଙ୍ଗ ବୋଲି ସେ ସୁରଙ୍ଗ ଅଧର ଚୁପିଲା । ମଦନ ଅଣିକ ଭାଙ୍ଗିଲି ସେ ଦିନ ସମସ୍ତ ରୂପରେ । ରସ ଜାଣିବାକୁ ଯୁବତୀ ନ ଥିବ ଜଗତେ ତା ପରେ ।୧୪। ବାନ୍ଧବୀଙ୍କ ଦିନେ ବନ୍ଧବିଧାନରେ କୋଳରେ ବସାଇ । ମୋ ମୁଖ ପାନ ତା ମୁଖେ ଦେଲି ଓଷ୍ଠ ଓଷ୍ଠରେ ମିଶାଇ । ମୋ ମୁଖେ ତୁ ଦିଅ ଲେଉଟାଇ ବୋଲୁଁ ନ କଲା ସମ୍ମତ । ବୋଇଲା ପଣତ ପ୍ରସାରି ମାଗୁଛୁ ନ ବୋଲ ଏମନ୍ତ । ୧୫ । ମୁଁ ବୋଇଲି ବନ୍ଧୁ ଅଧର ବିଧୁରୁ ମଧୁର ନ ପାଇ । ଏଥକୁ ବିରୋଧ ଲାବଣ୍ୟନିଧିରେ ହେଉଛୁ କିପାଇଁ । ବୋଇଲା ଦେବତା ପ୍ରତିଷ୍ଠା ସରଘା ଉଚ୍ଛିଷ୍ଟ ରସରେ । ତେମନ୍ତ ହୋଇଅଛୁ କି ଅଜ କଥା ଶାସ୍ତ୍ରାନ ଦୋଷରେ । ୧୬ । ଭାଷାରେ ଜିଣି ନ ପାରି ମୁଁ ପ୍ରିୟାର ଚୁମ୍ବିଲି ଲପନ । ଥାଉ ସେ ବିଧିରେ କେଳି ରଚାବାର ଦେଖିବା ସ୍ୱପନ । ନିଦ୍ରା ହିଁ ହେଲେ ନୟନେ ନ ଆସଇ ସ୍ୱପନେ ସଙ୍ଗତ । ହେଉଥିଲେ ମୋର ହେଉଥାନ୍ତା ଟିକି ଏ ରୂପେ ସୁଗତ ।୧୭। ତାମ୍ବୁଳ ଭାଙ୍ଗି ବଢ଼ାଇ ଦେଉଁ ଦିନେ ସେ ଅନୁରାଗରୁ । ଯାଚିଲା ତୁଚ୍ଛ କର କାମ କାତରେ ବଶେ ମୋ ଭାଗ୍ୟରୁ । ଚେତାଇ ଦେଲି କଷତଳେ ଚଳାଇ ମୁଁ ତୀକ୍ଷ୍ଣ କରଜ । ଲଜ୍ଜ ପାଇଲା ପରି ହୋଇ ନୁଆଇଁ ବଦନ ସରୋଜ । ୧୮ । ପୁରେ ରହୁ ଯାଇ କପାଟ ପାରୁଶେ ବଙ୍କରେ ଅନାଇ । ମନକୁ ମୋର ଅଧୀନ କରି ନେଲା ତତ୍‌କ୍ଷଣେ ମନାଇ । ଅର୍ଦ୍ଧ ଅଙ୍ଗ ଅଙ୍ଗୀକାର ହେଉଛୁ, କି ଭାଷୁଁ ମୁଁ ସମ୍ଭାଳି । ଶରୀରଯାକ କାହାର କହ ପ୍ରିୟା ଭାଷିଲା ତହିଁକି । ୧୯ । ବିଶେଷତ କ୍ୱଣା ବୀଣା ବଚନୀର ଏ ଗୀରେ ହୋଇଲି । ପଲ୍ୟଙ୍କ ଅଙ୍କକୁ କରି ଧରି ନେଇ ସୁରସ ବିହ୍ୱଳି । ନୀବି ବାନ୍ଧୁ ବାନ୍ଧୁ ଅଧରେ ଭିଡ଼ଇ ସ୍ୱଭାବେ ରଦନ । ବୋଇଲି କାହାକୁ ଏତେ କୋପ ପଳାଇଲାଣି ମଦନ । ୨୦ ।

---

୧୬ । ଅଧର ବିଧୁରୁ—ଓଷ୍ଠ ଚନ୍ଦ୍ରରୁ, ସରଘା ଯେ ମହୁମାଛିର ଅଇଁଠା ଦେବତା ଖାଆନ୍ତି । ତୋ ଅଧର ପାନକୁ ଅଇଁଠା ବୋଲି କହୁ ସେଥିରେ ଦୋଷ ନାହିଁ ସ୍ତ୍ରୀ କହିଲା ମହୁରେ ଦୋଷ ନ ଥିବାର ବିଧି ଅଛି ଅନ୍ୟରେ ନାହିଁ ।

୧୭ । ଲପନ—ମୁହଁ ।

୧୮ । ଅନୁରାଗ—ସ୍ନେହ, ତୁଚ୍ଛ କର—ଖାଲି ହାତ ।

୧୯ । କପାଟ—କବାଟ, ଅର୍ଦ୍ଧଅଙ୍ଗ—କୋଡ଼ ।

୨୦ । ଅଧରେ—ଓଠରେ, ରଦନ-ଦାନ୍ତ ।

ତହିଁକି କହୁଲି ମୁଁ ନିକି ଭଜନ ଏମନ୍ତ ଭଙ୍ଗିକି । ଧେନାଧେନରେ ଚୂଲି ହୋଇ ନାହିଁତ କୋମଳ ଅଙ୍ଗୀକି । ବଦ ଦେହ୍ରରେ ଲଗିଥିଲି ଅଳତା ଲିଲାଟେ ଗୁହିଁଲି । ପୋଛୁ ଦେଇ ମୋତେ ସଖୀ କି ବୋଲନ୍ତେ ବୋଲି ଯେ ବୋଇଲି । ୨୧ । ମୁଁ ବୋଇଲି କି ବୋଲନ୍ତେ କପାଁ ତୁ ମୋ ଶିରର ଭୂଷଣ । ତୁ ଅବା ମନକୁ କି ଧେନିଛୁ ମୋତେ ନୁହଇ ଦୂଷଣ । ଏ ବଚନେ କୃତକୃତ୍ୟ ହେଲାପରି ହୋଇଲି ଜୀବନ । ନୁଛୁ ହୋଇଯାଇ କି ନା ବୋଲି ଦେଲି ଅମୂଲ୍ୟ ଚୁମ୍ବନ । ୨୨ । କବରୀ କରି ଦିଅ ମୋତେ ପ୍ରତ୍ୟକ୍ଷେ ନ ବୋଲେ ବାଳିକା । କୁନ୍ଦ କରବୀର କୁସୁମ ମିଶାଇ ବିରଚି ମାଳିକା । ସ୍ୱନ୍ଦରମାଳା ହେଲି ବୋଲି ଦେଖାଇ ଧଇର୍ଯ୍ୟ ଖଣ୍ଡନା । ରମଣୀ ହୃଦୟମଣି ମୁଁ ତା ବେଶ କରନ୍ତେ ମଣ୍ଡନା । ୨୩ । ଅନୁଗ୍ରହ ପାଇଲାର ଭୃତ୍ୟ ପରି ଓଳଗି କରଇ । କେମନ୍ତ ଧେନାଧେନି ଧେନା ସୁମନା ମନକୁ ହରଇ । ଗୃହୁଁ ସ୍ନେହ ବଶେ ବସାଉଁ କୋଳେ ମୁଁ ଲବଣ୍ୟବତୀକି । ଥରେ କେତେ ଖସି ବସି ଅବକାଶରେ ବଢ଼ାଇ ପ୍ରୀତିକି । ୨୪ । ଅଜ୍ ପାଇବି କି ଯୁବତୀ ବରକୁ ନୋହୁଛୁ ପରତେ । ଯୋଗୀ ହୋଇ ଯାଇ ଦେଲି ଭାବ ମାନ ଜପିବି ନିରତେ । ବାଞ୍ଛା ତରୁତଳେ ବସି କାଶୀବାସୀ ତୋଷି ଏ କାମନା । ଗଙ୍ଗାସାଗରେ ଝାସି ହେଲେ ଲଭିବ ଗଜେନ୍ଦ୍ର ଗମନା । ୨୫ । ଯେଉଁ ରୂପେ ହସେ ମୁଖୁଁ ସୁଧା ଖସେ ଦଶେ ସେ ଦିଶୁଛୁ । ଯେଉଁରୂପେ ଅସେ ପୁରତେ ମୋ ବସେ ମନେ ସେ ପଶୁଛୁ । ଯେଉଁରୂପେ ଭାଷେ ବଚନ କର୍ଣ୍ଣେ କି ଏକ୍ଷଣି କହୁଛୁ । ତେବେ ଅତ୍ୟନ୍ତ ଶୀତଳ କରୁଥିଲି ଏବେ ତ ଦହୁଛୁ । ୨୬ । ଏଣୀ ନୟନାକୁ ପାଇଲେ ଏଣିକି ଏମନ୍ତ କରିବି । ଦନ୍ତେହେ ନ ଛାଡ଼ି ଚଞ୍ଚୁ ନ ପିଚ୍ଛାଡ଼ି କୋଳରେ ଧରିବି । ମୁହିଁ ସଖୀ ହୋଇ ନୀତକି ବଢ଼ାଇ ଦେବି ଯେ ତାହାର । କୁସୁମ ପକାଇ ପଞ୍ଚଗ୍ରାସୀ ପରି କରିବି ଅହାର । ୨୭ । ଦିବସ କାଳରେ ରତି ସିନା

---

୨୨ । ଶିରର ଭୂଷଣ—ମଉଡ଼ମଣି, କୃତକୃତ୍ୟ—ଅତିଆନନ୍ଦ ।

୨୩ । କରବୀର-କନିଅର, ବିରଚି-ଗୁନ୍ଥି, ହୃଦୟମଣି-ମନକଥା ଜାଣି ।

୨୪ । ଧେନାଧେନି—ସ୍ନେହ ।

୨୫ । ବାଞ୍ଛାତରୁ—କଳ୍ପବଟ, କାଶୀବାସୀ—କାଶୀବିଶ୍ୱନାଥ ।

୨୬ । ଦଶେ—ଦିଗମାନଙ୍କରେ, ପୁରତେ—ଅଗରେ ।

୨୭ । ଏଣୀନୟନା—ମୃଗାକ୍ଷୀ, ଚଞ୍ଚୁ—ଅଣ୍ଟ, ପିଚ୍ଛାଡ଼ିବା—ପଡା ପକାଇବା ।

ନାହିଁ କରିଛୁ ଦଇବ । ଭୁଜେ ଭୁଜ ଛନ୍ଦା ଛନ୍ଦ ହୋଇ ହୃଦ ଉପରେ ଶୋଇବ । ବର୍ତ୍ତିଥିବାଯାକ ବ୍ରତୀ ହୋଇଥିବି ତାହାକୁ ପାଇଲେ । ରତି କେବଳ ନିଷେଧ ନ କରିବ ଏମନ୍ତ ହୋଇଲେ ।୨୮। ରାତି ତ ରାତି ଦିବସ ଏହିମତି କରିବି ମୋ ମନ । ଯେବେ ଯାଉଥିବ ଗ୍ଳାନି ପ୍ରାୟେ ପଛେ କରିବି ଗମନ । ଗଣ୍ଠି ଦେଇଥିବି ବସନେ ବସନ ରଜନୀ ଦିବସେ । ଏମନ୍ତ ଯତ୍ନ କରିଥିଲେ ଅଉ କି ଅନ୍ତର ହେବ ସେ । ୨୯ । ବିଗ୍ରହୁ ବିଗ୍ରହୁ ଭୀରୁଙ୍କର ମାନ ଲଭିଲା ମୋହକୁ । ଶୀତ ଉପଚାରରେ ସଖୀଏ ସାନ୍ତ୍ୱନା କଲେ ତା ଦେହକୁ । ଜ୍ଞାନବଶେ ଭାଷେ ଏରୂପେ ଦିନେତ ବିଅର୍ଥ ମରଣ । ଲଭିବି ପ୍ରିୟା ଅଧା କଲେ ସିନା ମୁଁ ଲଭନ୍ତି କାରଣ ।୩୦। ବୁଝାଉ ଥାଇ ଜୀବ ଛୋଟତ କେତେ ମୁଁ ନ କଲି ବୋଲରେ । ଥାଉ ଥାଉ ଜୀବେଶ୍ୱରୀ ସୁକୁମାରୀ ସୁନ୍ଦରୀ ତୁଲରେ । କହୁ କହୁ ପ୍ରିୟା ବୋଲି ତାକୁ ଗୁହୁଁ ଗୁହୁଁ ତା ମୁଖକୁ । ଯାଇଥିଲେ ପାଇଥାନ୍ତୁ ତୁ ପରମ ନିର୍ବାଣ ସୁଖକୁ । ୩୧ । ତେଣେ ନୃପସୁତା ବିରହ ଅରତି କହଇ ସଖୀଙ୍କି । ସତେ ପରାଣଈଶ୍ୱରଙ୍କୁ ବାରେ ମୁଁ ପାଇବି ଦେଖିକି । ଅଭିନ୍ନ ବୋଲି ତାକୁ ଥାନ୍ତି ମୋତେ ସେ କି ଚିନ୍ତେ ମନରେ । ଅକାର ହରଣି କଲାତ ବିଧାତା ଅଲପଦିନରେ ୩୨ । ଏକା ହୋଇ ଏ କଠୋର ଯାମିନୀରେ କେମନ୍ତେ ଶୋଇବେ । ନୃପତି ନନ୍ଦନ କଷଣ-ସହ ସେ ନୁହନ୍ତି ଦଇବେ । ନ ପୁଣି ମୋ ଅଙ୍ଗ ଗନ୍ଧ ଅନେକ ଅଙ୍ଗ କରି ସେ କୁମାର । ଦିନ ବଞ୍ଚୁଥିବେ, କେମନ୍ତେ ଅସିବେ ପୁରୁଷ ଭ୍ରମର ।୩୩। ଏମନ୍ତ ହୋଇଥିଲେ ତ ଭଲ କଥା ଥିବାର ସେ ଜାଣିବେ । ଦିନ ଦିନକ ପୀରତି ଭାବି ମୋର ଲୋଡ଼ିକ ଚେତିବେ । ମୋହ ପ୍ରସଙ୍ଗ ଦିନେ ଦିନେ ବଲ୍ଲଭୀ ଆଗରେ କହିବେ । ଅଉ କି ଜୀବେ ଥିବ ବନ୍ଧୁ ବୋଲି ଅକୁଳ ହୋଇବେ । ୩୪ । ସଖୀ ଚେତାଇ କହିଲେ ରେ ସଜନୀ

---

୩୦ । ଭୀରୁ—ସ୍ତ୍ରୀ, ସଖୀଏ—ସଙ୍ଗିମାନେ ।

୩୧ । ପରମନିର୍ବାଣ—ଶ୍ରେଷ୍ଠମୁକ୍ତି, ବିଷ୍ଣୁ ଅଙ୍ଗରେ ଲୀନ ହେବାକୁ ନିର୍ବାଣ କହନ୍ତି ।

୩୨ । ଅରତି—ଦୁଃଖ, ଅଭିନ୍ନରୁ ଅ ଟି କାଢ଼ିନେଲେ ଭିନ୍ନ ହୁଏ ।

୩୩ । ଯାମିନୀ—ରାତି, କଷଣ—କଷ୍ଟ ।

୩୪ । ବଲ୍ଲଭୀ—ସ୍ତ୍ରୀ, ପ୍ରସଙ୍ଗ—କଥା ।

ଛୁହନ୍ତ ଗୁଣିକ । ଜଡ଼ ବିଦ୍ରୁମାଳ ଯେନାହିଁ ଯେ ପୁଣି ବହଇ ମାଣିକ୍ୟ । ଧନକ ପଥ ମାସକେ ନ ସରଇ ଦୁର୍ବଳ ବଶରେ । ତୋହ ଅଶାରେ ଅସି ସେ ହୋଇବେନି ନିକଟ ଦେଶରେ । ୩୫ । ସ୍ୱପନେ ଦେଖିଲି ଜନକ-ନନ୍ଦନୀ ସ୍ୱରୂପେ ଭାମିନୀ । କହିଲେ ନିକଟେ କାନ୍ତକୁ ଲଭିବ କରୀନ୍ଦ୍ର ଗମନୀ । କହେ ଉପଇନ୍ଦ୍ର ସାରବର ଅଶା ଏଣୁ ତା ଉଦିତ । ରସିକଭ୍ରମର ତୋଷଦ ମାଳତୀ ଏ ଛାନ୍ଦ ବିଦିତ । ୩୬ ।

---

## ଚତୁଃଚତ୍ୱାରିଂଶ ଛାନ୍ଦ

( ବିରହବିଧୁର ଦମ୍ପତିର ଶିଶିର ଏବଂ ବସନ୍ତ ଋତୁର ବର୍ଣ୍ଣନ )

ରାଗ—ଛଡ଼ାନ ଦେଶାକ୍ଷ

ଶିଶିରକାଳ କାଳ ପ୍ରାୟୁ ପ୍ରବେଶ ନାଶ କଲା ପଦ୍ମିନୀକ ।
ଧନବନ୍ଧୁ ପରି ପନ୍ତ ଥାଇଁ ବାରେ ନଗର ପାଶେ ତହିଁକ ।
ଶିବାଧ୍ୱନି ତେଙ୍ଗୁରକ । ବିଯୋଗୀ ଶୁଣି ଜହ୍ନୁକ । ୧ ।
ତୁଷାର ଜଳରେ ପ୍ରଳୟ ରଚିଲା ବିଦେଶୀ ନ ପାଇ ସ୍ଥଳ ।
ମକର ମୁଖରୁ ଅଜ କି ବଞ୍ଚିବା ଭାବି ସେ ହେଲେ ବିକଳ ।
ରଜନୀ ପାଶରେ ଜନ । ବନ୍ଧନ ପରି ଶୟନ । ୨ ।
ଏମନ୍ତ ଋତୁକୁ ଗୃହିଁ ନୃପସୁତ ଲୋଚନେ ଲୋତକ ଭରି ।
ଯୋଜି ମାସକୁ ବାଘ ଭଳି ମନରେ କହୁଅଛୁ ପୁରଃସରି ।
ମୋତେ ତ କଲେ ଅହାର । ପୂରବ ତ୍ରିମ୍ନ ଉଦର । ୩ ।

---

୩୫ । ଜନକ ନନ୍ଦନୀ—ସୀତା, ଭାମିନୀ—ସ୍ତ୍ରୀ ।

ହେମନ୍ତ ଋତୁ ଓ ଶୀତ ସମୟ—ଏ ସମୟରେ ସ୍ତ୍ରୀ ପୁରୁଷ ଅସ୍ଥିର ହେଲେ ଯାହା ଯାହା କାମ ରସର ଦୁଃଖ ଅନୁଭବ ହୁଏ ତାହା ଅନୁଭବୀ ମାନେ ଅଜଣା ନାହିଁ—ତେଣୁ ଲବଣ୍ୟବତୀ ଓ ଚନ୍ଦ୍ରଭାନୁ ପରସ୍ପରକୁ ଚିନ୍ତା କରି ବ୍ୟତିବ୍ୟସ୍ତ ହେବା ବର୍ଣ୍ଣନା କରାଯାଇଛି ।

---

### ଚତୁଃଚତ୍ୱାରିଂଶ ଛାନ୍ଦ

୧ । ଶିଶିରକାଳ—ପୁଷ, ମାଘ, ଧନବନ୍ଧୁ—ସୂର୍ଯ୍ୟ, ତେଙ୍ଗୁରକ-ନାଗରି, ବିଯୋଗୀ—ବିଚ୍ଛେଦ, ଜହ୍ନୁକ—ଉତ୍କଣ୍ଠିତ, ଦୁଃଖିତ ।

୨ । ତୁଷାର—କାକର, ମକର—ମଗର, ଶୀତରେ ସମସ୍ତେ ଯାକ ଯୁକ୍ତ ହୋଇ ଶୋଇଲେ ।

୩ । ପୁରଃସରି—ଅଗକରି ।

ତାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାର ମୁହିଁ ।
ମୋ ଅପୁତ୍ର ପାଇ ଜାଇଁଥାନ୍ତି ପଛେ ଶରଦ ଅମ୍ବୁଜ ମୁହିଁ ।
ଏରୂପେ ଯେଉଁ ବାଳାକୁ । ଦେଖିବ ଚେତିବ ତାକୁ । ୪ ।
ଶ୍ରାବଣଗିରି ଶୋଭାକୁ ବହୁଥିବ ଯାହାର ଉତ୍ତୁଙ୍ଗସ୍ତନ ।
ଲୋଚନ ଜଳରେ ଜରଜର ହୋଇ ନ ଥିବ ପନସ ପୁନଃ ।
ଶ୍ୟାମା ବାମ କୋପଭରୁ । ବିଗତ ପଲ୍ଲବ ତରୁ । ୫ ।
ଅର୍ଦ୍ଧଶଶୀ ଅର୍ଦ୍ଧ ନବଜଳଧର ଖଣ୍ଡେ ଗଲା ପ୍ରାୟ ପଶି ।
ବଢ଼ି ଯହାର ଅଳକ ବଳଥିବ ଫୁଲ ଅଳକକୁ ଗ୍ରାସି ।
ତାଟଙ୍କ କଙ୍କଣ ଦୁଇ । ଯେ ମାନଙ୍କ ଥିବ ବନ୍ଧୁ । ୬ ।
ସଖୀ ଅବା ବଳେ ଲେଖି ଦେଉଥିବେ ନୟନେ କଜ୍ଜ୍ୱଳ ଗାର ।
ମଧୁକ ପୁଷ୍ପେ ଭୃଙ୍ଗପରି ସେ ଜଳ ଗଣ୍ଡେ ବହୁଥିବ ଯାର ।
ଦେଖି ଯେ କମଳନାଡ଼ । ସୁମରୁଥିବ ଗରୁଡ଼ । ୭ ।
କଷଟି ପାଷାଣେ ବାରବାନ୍ନସୁନା ଗିରିପରି ହୋଇ ଯେହୁ ।
ପଙ୍କଜ ପଲ୍ଲବ ଶେଯେ ଶୋଇଥିବ ମୋହର ବଲ୍ଲଭୀ ସେହୁ ।
ଛାଡ଼ିବୁ ତାକୁ ମାତର । ଏତକ ପ୍ରାର୍ଥନା ମୋର । ୮ ।
ତୁ ଅବା ବୋଲିବୁ ତୋ ସୃଷ୍ଟି କୁହୁଡ଼ି ଗଲ୍ପଠାରୁ ଚୋର ଜୀବ ।
ତା ଶୁଭ ଏଥିକି ବାଞ୍ଛା କରଇଁ ମୁଁ ମୋତେ ସେ ଗତି କରିବ ।
ଜଳଦାନ ଲୋଚନରେ । ବ୍ରୋଦନସ୍ୱନ ବାକ୍ୟରେ । ୯ ।

---

୪ । ଅମ୍ବୁଜ—ଚନ୍ଦ୍ର, ପଦ୍ମବାଳା—ସୁନ୍ଦରୀ ।

୫ । ଶ୍ରବଣଗିରି—ଶ୍ରାବଣ ମାସର ପର୍ବତ, ଉତ୍ତୁଙ୍ଗ ସ୍ତନ—ଉନ୍ନତ କୁଚ, ପନସ—ପନସବୃକ୍ଷ, ଶଢାସବୃ; ବିଗତ—ଶୂନ୍ୟ, ତରୁ—ବୃକ୍ଷ ।

୬ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର, ନବଜଳଧର—ମେଘ, ଖଣ୍ଡେ-ଭିତରେ, ଅଳକ—ଚୂନାବାଳ, ମୁଣ୍ଡର ସୁନା ଅଳକା, ତାଟଙ୍କ—କାନ ଗହଣା, କଙ୍କଣ—ହାତଗହଣା, ଅଧାଚନ୍ଦ୍ର ମେଘ ଭିତରେ ପଶିଗଲେ ଯେପରି ଦିଶେ ତାର ଚୂନାବାଳ ମୁଣ୍ଡର ସୁନା ଅଳକାକୁ ଘୋଡ଼ାଇବାରୁ ସେହିପରି ଦିଶନ୍ତି । କାନରେ ସୁନାର ତାଟଙ୍କ ହାତରେ ଖଡ଼ୁ ଛଡ଼ା ଅନ୍ୟ କିଛି ପିନ୍ଧି ନ ଥିବ ।

୭ । ମଧୁକ—ସୂର୍ଯ୍ୟମୁଖିଫୁଲ, ଭୃଙ୍ଗ—ଭଅଁର, ବିରହ ଉପଶମ ପାଇଁ ପଦ୍ମନାଡ଼ ଦେବାରେ ତାକୁ ସାପ ମନେକରି ଗରୁଡ଼କୁ ଡାକିବା ।

୮ । ପଙ୍କଜପଲ୍ଲବ—ପଦ୍ମପତ୍ର, କଷଟି ପାଷାଣ—କଷଟି ପଥର, ବାରବାନ୍ନ—ଉତ୍ତମ ।

ଅଦ୍ଭୁତ କଥାଏ ଯଥା ଏକ ନାମ ଅଶ୍ୱିନୀକୁମାର ଦୁଇ ।
ସେହି ପ୍ରକାରେ ତା ମୋର ଏକପ୍ରାଣ କେବଳ ଯୁଗଳ ଦେହୀ ।
ଯେବେ ମୋର ପ୍ରାଣ ଯିବ । ବାଳା ଦେହେ ସମ୍ଭାଳିବ । ୧୦ ।

ଜବାଧରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର ।
ପରମ ପଦବୀ ଏମନ୍ତ ବୋଇଲେ ଭୋଗ ନୋହିବ କି ମୋର ।
ଏସନ ଭାବନା କରି । ଶିଶିର-ଋତୁକୁ ହରି । ୧୧ ।

ଏ ଅନ୍ତେ ମନୋହର ହୋଇ ପ୍ରବେଶ ହୋଇଲା ଋତୁ ରାଜନ ।
ପଞ୍ଚମ ସ୍ୱରରେ ପରଭୃତ କଲେ ମଙ୍ଗଳ ଗୀତ ଗାୟନ ।
ଝଙ୍କାର ଝଙ୍କାରସ୍ୱର । ବାଜିଲା ରଜପୁତୁର । ୧୨ ।

ନବପଲ୍ଲବ ଚଳନ୍ତ ଛଳେ ଚୂଳେ ଖଦି ତରୁ ପରିକର ।
କୁବେଳି ମୂଳ ଚୂଅର ପରି ସେହି ନାରତେ କରି ଅଦର ।
ଜଡ଼େ କୁସୁମ ପରାଗ । ପ୍ରକାଶ ଚଉଁରୀ ରଙ୍ଗ । ୧୩ ।

ଭୃଙ୍ଗଧ୍ୱନି ଛଳେ ନବ କମଳିନୀମାନେ ଦେଲେ ହୁଳହୁଳି ।
ନାଗକେଶର ପାଦପ ପୁଷ୍ପଛଳେ ଧଇଲା କି ଛନ୍ଦ ତୋଳି ।
କାନନ ନଗରେ ଝଳି । ସୁନାରୀ ବନ୍ଧୁ ପାଟଳୀ । ୧୪ ।

ମଲ୍ଲିକାଅଳକା ଚମ୍ପା ନାଥଅଳକା ନବୀନ କୁସୁମବତୀ ।
ତଥାପି ମଧୁପୀ ସକଳ ଅଙ୍କରେ ଶୟନେ ବଳାଇ ମତି ।
ମଳୟ ପବନ ଚୂର । ସଧୀରେ ଅଟେ ପ୍ରଚୁର ।୧୫।

---

୯ । ତୁ କହିବୁ ତୁ ମଲେ ଗଲା,ପାଉ ମୁଁ ତା । ଶୁଭ ଇଚ୍ଛା କରେ,ପିଣ୍ଡଦାନ ଜଳ ତର୍ପଣ ପରି ମୋ ମଲାପରେ ତାର ଲୋତକ ବନ୍ଧୁ ମୋତେ ମୁକ୍ତ କରିବ ।

୧୦ । ଅଶ୍ୱିନୀ କୁମାର, ଏ ଦୁଇନାମ ହେଲେ ମଧ୍ୟ ବୈଦ୍ୟ ପଣରେ ଏକ, ସେହିପରି ତା ପିଣ୍ଡ ମୋ ପିଣ୍ଡ ପୃଥକ ହେଲେ ମଧ୍ୟ ଜୀବ ଏକ, ମୋ ଜୀବଗଲେ ତା ପିଣ୍ଡରେ ରହିବ ।

୧୧ । ତାର ଦେହତ ଅନ୍ୟ କିଛି ନୁହେ ସାକ୍ଷାତ ବୈକୁଣ୍ଠପୁର ତେଣୁ ସେଠାକୁ ମୁଁ ଗଲେ ମୋତେ ଶ୍ରେଷ୍ଠ ମୁକ୍ତି ମିଳିବ । ଏହିପରି ଭାବିଲା ।

୧୨ । ଋତୁରାଜନ—ବସନ୍ତକାଳ, ପରଭୃତ—କୋଇଲି, ତୂର—ତୂରୀ ।

୧୩-୧୪-୧୫ । ପରିକର—ଚୂକର, ଚଉଁରୀ—ଚୂନେରଖେଳ, (ଫଗୁଖେଳ) ନବକମଳିନୀ—ନୂଆ ଫୁଟିଥିବା ପଦ୍ମଫୁଲ ଓ ଯୁବତୀ, ହୁଳହୁଳି ପରି ଭ୍ରମର ଗୁଣୁ ଗୁଣୁ ଶବ୍ଦ, ପାଦପ—ବୃକ୍ଷ,ଛନ୍ଦ—ଛତା, ନଗର—ରଜପୁରୀ, ସୁନାରୀ—ସୁନାରୀଫୁଲ ଓ ସୁନ୍ଦରୀ ସ୍ତ୍ରୀ, ବନ୍ଧୁ—ଧାସଫୁଲ, ମଲ୍ଲିକା ମଲ୍ଲୀଅଳକା ଫୁଲ ସବୁ, ନାଥଅଳକା—ନାଥଅଳକଫୁଲ, ଅଙ୍କ—କୋଳ, ସଲୀଳେ—କ୍ରୀଡ଼ା କୌତୁକରେ,ଜଳଳେ—ଜଳରେ,

କାମସେନା କି କେତକୀ ଛତ୍ର ଯମଦାଢ଼କୁ କରି ବିକୋଷ ।
ବିଦେଶୀ ପରେ ତର୍ଜ୍ଜିନା ଏକ କହେ ଏଥିରେ କରିବି ନାଶ ।
ଲୁହିଅନା ହୋଇ ବାଣୀ । ପ୍ରକଟ ହୋଇଲା ପୁଣି । ୧୬ ।
କାମମିତ୍ର ମନ୍ତ୍ରୀ ଏମନ୍ତ ଶିଖାଇ ବିଦେଶୀ ଗୋଟି ନ ରଖ ।
ଜ୍ଞାନ ଧନମାନ ଲୁଟି କରିବାକୁ ଦେଖିବା ସନ୍ତ୍ରକ ଲେଖ ।
ସମ୍ବାଦ ଏଣୁ କେତକୀ । ବିଯୋଗୀ ବଡ଼ପାତକୀ । ୧୭ ।
ଏ ରସମସ୍ତ ସମସ୍ତଙ୍କୁ ଅନାଇଁ ବିକଳେ ଲବଣ୍ୟବତୀ ।
ବିଶୃରେ ଏ ଯୁବାବୟସେ ଏ ମାସେ ମୋର କୋଟିଲ ନାହିଁ ପତି ।
କେମନ୍ତେ ବଞ୍ଚିବି ଧନ । କି କଲେ ପଦ୍ମଲୋଚନ । ୧୮ ।
ଚନ୍ଦନ ପିଚକା ସଜାଡ଼ି ମାରନ୍ତି ମୋ ଉର କରି ଯେ ଲଖ ।
ତାହା ବଞ୍ଚାଇ ମୁଁ ନଗୃଲେ ଭୁଲୁ କଜମାନ୍ତ କେଡ଼େ ସୁଖ ।
ବୋଲନ୍ତି ଗୃପରେ ବାଣ । ସନ୍ଧ କରନ୍ତୁ କି ରଣ । ୧୯ ।
ରତିଶ୍ରମରେ ଘର୍ମହେଲେ ବାହାର ପୂଛନ୍ତି ବାଧିଲା କି ରେ ।
ଶେଷରେ ବାସରେ ପୋଛିଦେଇ ଚୁମ୍ବ ଦଅନ୍ତି କେଡ଼େ ସ୍ନେହରେ ।
ଲେପନ୍ତି ଚନ୍ଦନ ତନୁ । ସେ ଭାବ କି ଫିଟ ମନୁ । ୨୦ ।

---

ଏ ଋତୁରେ ମଲ୍ଲୀ, ଚମ୍ପା, କଅଁଳ ଫୁଲ ନୂଆ ହୋଇ ଫୁଟିଲେ, ଖଗ ତେଜ ହେଲା—ମହୁଷୀମାନେ ପାଣିରେ ବୁଡ଼ିଲେ । ଅନ୍ୟାର୍ଥ ସହଜରେ ବୁଝା ଯାଉଛି ।

୧୬ । କାମସେନା—କନ୍ଦର୍ପସେନା, କେତକୀଛତ୍ର-ଯମଦାଢ଼, କେତକୀଫୁଲ କଢ଼ହେଲା ଯମଦାଢ଼ ଖଣ୍ଡା ବା ଏକମୁନା, ବିକୋଷ-କୋଷରୁ ବାହାର କରି, ବିଦେଶୀ—ବିଦେଶରେ ଥିବା ବା ଅନ୍ୟଦେଶ ଲୋକ, ଲୁହିଅନା—ଲୁହିଅନା ଫୁଲ—ଲୁହିକୁ ଅନାଇ ଦେଖ, ପ୍ରକଟ-ପ୍ରକାଶ

୧୭ । କାମମିତ୍ର ମନ୍ତ୍ରୀ—ବସନ୍ତ ମନ୍ତ୍ରୀ, ଏଣେ ବସନ୍ତରାଜା—ତା ମନ୍ତ୍ରୀଙ୍କୁ କହୁଛି କାମରେ ଯେଉଁମାନେ ଜ୍ଞାନ ହରାଇଛନ୍ତି ସେମାନଙ୍କ ଚିହ୍ନ ଲେଖ, କନ୍ଦର୍ପରେ ଯେଉଁମାନେ ଅସ୍ପୃହ ସେମାନଙ୍କ ତାଲିକା କର ।

୧୮ । ପଦ୍ମଲୋଚନ—ବିଷ୍ଣୁ ।

୧୯ । ଚନ୍ଦନପିଚକା—ଚନ୍ଦନରେ ପିଚକାରି ମାରିବା, ଉର—ବକ୍ଷ, ଗୃପ—ଧନୁ ।

୨୦ । ଘର୍ମ—ଝାଳ, ବାସରେ—ଲୁଗାରେ, ତନୁ—ଦେହ ।

ଏ ଭାବ ସୁମର ଜାଣ୍ଡେ ଏବେ ମଲ୍ ଧନେ ନାଗେଶ୍ୱର ଗୁଣ୍ଡି ।
ମୃଚ୍ଛଳ କରବା ବ୍ୟାଜରେ ଅଣାଇ ମୋର ଜୁରଜରେ ମଣ୍ଡି ।
ଅଲିଙ୍ଗନରେ ପ୍ରମୋଦେ । ଦ୍ରୁଦ ଲଗାଇଲେ ହୃଦେ । ୨୧ ।
ମୁହିଁ ଅଳପ ହସିଲ ହୋଇଲକୁ ବୋଇଲ ଧଣିବ ଶୋଭା ।
ଜାତ ଅଗ୍ରମକୁ ଯାଇଁ ଏହୁପର କରବା କନକ—ପ୍ରଭା ।
ରହିଲ୍ ମୁଁ ଲଜ ପାଇ । ବୋଇଲେ କର ତ ହୋଇ ।୨୨।
ଏମନ୍ତ କହୁଁ ସେ ସଖିଙ୍କ ମଖିଙ୍କ ମହିଳାରତନ ଚଳି ।
ଏ ଉତୁ ଅଗମେ ଭୁଲ ନ ପାରଲ ବଲ୍ଲଭ ବଲ୍ଲଭା କେଳି ।
ସୁମର ଶ୍ରୀରାମଚନ୍ଦ୍ର । କହେ ଭଞ୍ଜ ଉପଇନ୍ଦ୍ର । ୨୩ ।

---

## ପଞ୍ଚଚତ୍ୱାରିଂଶ ଛାନ୍ଦ

( ଅସୁରମାନଙ୍କ ଦୌରାତ୍ମ୍ୟ ହେତୁ ଚନ୍ଦ୍ରଭାନୁର
ଯୁଦ୍ଧ ଓ ଯୁଦ୍ଧରେ ବନ୍ଦୀହେବାରୁ କୀର୍ତ୍ତି ବର୍ଣ୍ଣନ )

ରାଗ—କଳ୍ପସଗୁଜ୍ଜରୀ

ଏ ଅନ୍ତେ ଶୁଣ କୋବଦେ ଚନ୍ଦ୍ରଭାନୁ କୀର୍ତ୍ତି ଉଦେ ଏତେସ୍ଥାନେ ଚନ୍ଦ୍ର ପ୍ରାପ୍ତ ହେବ ହେ । ଜମ୍ବୁ ପ୍ଲକ୍ଷ କୁଶ କ୍ରୌଞ୍ଚ ଶାକ ଶାଲ୍ମଳିରେ ଘଞ୍ଚ ହୋଇ ପୁଷ୍କରକୁ ବୋଲ୍ ଯିବ ହେ । ୧ । ଏଥିରେ ନୃହନ୍ତେ ଠାବ ବଳେ ପଶି ତଳେ ଯିବ ଅତଳ ଜାତଳ ବାତଳକୁ ହେ । ଗଭସ୍ତି ମହାକ୍ଷ ଘେନ ସୁତଳ ପାତାଳ ସ୍ଥାନ ଜାରତେ କରବ ଉଜ୍ଜ୍ୱଳକୁ ହେ । ୨ । ପାଦ ବାଧୁ

---

୨୧ । ମୃଚ୍ଛଳ—ମୃଚ୍ଛୋ, ବ୍ୟାଜରେ—ଛଳନାରେ, ଅଲିଙ୍ଗନ କରେ—କୋଳରେ ।

୨୨ । ଅଗ୍ରମ—ବଗିଚ୍ଚା ।

୨୩ । ମହିଳାରତନ—ସ୍ତ୍ରୀ ଶ୍ରେଷ୍ଠ, ମଖିକ—ପୃଥିବୀକ, ଚଳକୁ,
ହେମନ୍ତ ଋତୁପର ଶିଶିର ଋତୁରେ ବରହୀ ବରହଣୀର ମିଳନ ସୁଖ ନ ଘଟିଲେ ଯେଉଁ ବନ୍ଧୁଚନ୍ତା ଅଏ ତାହା ବର୍ଣ୍ଣନା କରା ଯାଇଅଛି ।

---

## ପଞ୍ଚଚତ୍ୱାରିଂଶ ଛାନ୍ଦ

୧ । କୋବଦେ—ପଣ୍ଡିତମାନେ, କୀର୍ତ୍ତି—ଯଶ, ଘଞ୍ଚ—ଲଗାଲଗି ।

୨ । ବଳେ—ଗାତରେ, ଉଜ୍ଜ୍ୱଳ—ପରଷ୍କାର ।

ପାବଚ୍ଛରେ ଦେଇ ଗମିବ ସ୍ୱଚ୍ଛରେ ଊର୍ଦ୍ଧ୍ୱକୁ କାର୍ତ୍ତ ପଟଳ ତାର ହେ । ଭୂର୍ଭୁବ ସ୍ୱ ମହ ଜନ ତପ୍ସ ସତ୍ୟାଦ୍ଧ ଭୁବନ ଗ୍ରାସେ ହୋଇ ପୃଥୁ କଳେବର ହେ । ୩ । ଫୁଟିବ ବ୍ରହ୍ମାଣ୍ଡ ଖଣ୍ଡ ଅତ ବୃଦ୍ଧି ହୋଇ ପିଣ୍ଡ ଉପରକୁ ଯିବ ସେ ବାହାର ହେ । ପ୍ରଳୟରେ ଅବକାଶ ଯହିଁରେ ନାହିଁତ ଯଶ ଶର ହୋଇ ରହିବ ଈହର ହେ । ୪ । ଯେବଣ ଜମ୍ବୁର କୁରୁବାସୀ ଅସ୍ତ୍ରପ-ଭସ୍ମରୁ ରମ୍ୟକ ଭଦ୍ରାସ୍ୱେ ନିଦ୍ରା ନୋହୁ ଯେ । ତମ୍ଭୁଥାଇ କିଂପୁରୁଷ ଇଳାବୃତ ହରିବର୍ଷ କେତୁମାଳ ଉଚ୍ଛନ୍ନ କରାଇ ଯେ । ୫ । ପାଦଘାତେ ଟଳେ ଯାର ହିରଣ୍ମୟ ନିରନ୍ତର ହିମାଳୟତଳ ଉଷି ଗ୍ରାସି ହେ । ହେ ଭରତ ଖଣ୍ଡବୀର ଚନ୍ଦ୍ରଭାନୁ ରକ୍ଷ କର କୋଟି ପରମିତ ଉଠେ ଭ୍ରମି ହେ ।୬। କ୍ଷେପଷ୍ଟିତ ଅଦଭୂତେ ସ୍ୟନ୍ଦନେ ହେଲ ପୁରତେ ଧବ୍ୟାୟୁଧେ ହୋଇଛୁ ମଣ୍ଡିତ ଯେ । ହୂଳ ହେଲ ମନ୍ତ୍ରୀ ମୃତ ପାଶେ ଅଜ ତନ୍ନିମିତ ଗଲ ସେ ଅର କର ଖଣ୍ଡିତ ମେ ।୭। ଋପୁବଳ ଗୁହିଁ ବପୁ ପ୍ରକାଶ କରଣେ କୋପୁଁ ଅଟ୍ଟହାସ ପରକାଶ କଲ ହେ । ସ୍ଫୁଟ କୋକନଦ ପ୍ରାୟେ ନେତ୍ରଯୁଗ୍ମ ଶୋଭାପାଏ ବାହାସ୍ଫୋଟ ପୁନଃପୁନଃ ଦେଲ ହେ ।୮। ଅଧରେ ରଦନ ତହିଁ ଗୃପରେ ଶ୍ୱେପ ବସାଇ ବୀର କେଶରେ ପକାଇ କର ହେ । ଅଶନି ଅଭେଦ୍ୟ ପିଣ୍ଡମାନ କଲ ଖଣ୍ଡ ଖଣ୍ଡ ଶର ଉପରେ ପ୍ରହାର ଶର ହେ ।୯।

---

୩ । ଈଧୁ—ଚନ୍ଦ୍ର ଓ ଧଳା, ପାବଚ୍ଛ—ପାହାଚ, ଭୂ, ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ—ଏ ସପ୍ତ ସ୍ୱର୍ଗ, ପୃଥୁ—ବଡ଼, କଳେବର—ଦେହ ।

୪ । ବୃଦ୍ଧ—ବଡ଼, ପିଣ୍ଡ—ଦେହ, ଅବକାଶ—ଫାଙ୍କ ସ୍ଥାନ ।

୫ । ଅସ୍ତ୍ରପଭସ୍ମରୁ—ଅସୁରଙ୍କ ଭୟରୁ, ରମ୍ୟକ—ଦ୍ୱୀପ, ଭଦ୍ରାଶ୍ୱ—ସ୍ୱର୍ଣ୍ଣ । କିଂପୁରୁଷ—କିନ୍ନର ସବୁ, ଏଳାବୃତ—ହରିବର୍ଷ, କେତୁମାଳ—ଗୋଟିଏ ଗୋଟିଏ ଦେଶ ।

୬ । ହିରଣ୍ମୟ—ସୁନାପୂର୍ଣ୍ଣ ମେରୁ, କୋଟିପରମିତ—ସହସ୍ର ସହସ୍ରବାର, ଉଠେଭ୍ରମି—ବଡ଼ପାଟିରେ ଆଙ୍କେ ।

୭ । ଧବ୍ୟାୟୁଧେ—ଉତ୍ତମ ଅସ୍ତ୍ର ସବୁ, ସ୍ୟନ୍ଦନ—ରଥ, ପୁରତେ—ଆଗରେ । ସୂତ—ସାରଥି ।

୮ । ଋପୁବଳ—ଶତ୍ରୁ ସୈନ୍ୟ, ବପୁ—ବଳ, ଦେହ, ଅଟ୍ଟହାସ—ଉଚ୍ଚହାସ, ସ୍ଫୁଟ—ଫୁଟିଥିବା, କୋକନଦ—ଲାଲ୍ କଇଁ ।

୯ । ଅଧର—ଓଠ, ରଦନ—ଦାନ୍ତ, ଗୃପ—ଅନ୍ତ୍ର, ଶ୍ୱେପ—ଶର, ବୀରକେଶ—ଲଗ, ଅଶନି—ବଜ୍ର, ଅଭେଦ୍ୟ—ଭେଦ ନ ପାରିବା ।

ଯହିଁ ମାନ୍ଦ୍ର ଜଳଧାର ଧନୁ ଇନ୍ଦ୍ରଚନ୍ଦ୍ର ପର ପୁଣ ପୁଣ ଧ୍ୱନିତ ସ୍ତନିତ ହେ ।
ଦର କୃପାଣେ ବିଚ୍ଛ ଶମ୍ପା ଚହଟ ଛଟକ ବାଟୁଳି କରକାବଳୀ ମତ ହେ ।୧୦।
ଏମନ୍ତ ବୃଷ୍ଟି ସମ୍ବାଦ ଚଳାଲେ ଏମନ୍ତ ନଦୀ କବନ୍ଧ ନାଚ ପ୍ରକଟ ହୋଇ
ଯେ । କୀଲାଳ କି ଲାଲ ଫଳ ଜମ୍ବାଳ ହେଲା ଅଭାଳ ପତାକା ଲହରୀ ଶୋଭା
ଯହିଁ ହେ ।୧୧। ସ୍ୟନ୍ଦନ ତରଣୀ ଶୈର ଉପୃନ୍ଦ କୁମ୍ଭୀ କୁମ୍ଭୀର ମୀନ
ତୁରଙ୍ଗ ବସନ ଫେନ ହେ । ଚର୍ମଅଙ୍ଗଣୀ କମଠ ଭୁଜ ଭୁଜଙ୍ଗ ପ୍ରକଟ ପତ୍ତି
ଅଭିରବ ଭେକସ୍ୱନ ହେ ।୧୨। ପତିପନ୍ଥୀ ଦମ୍ଭ ତଟବିଟପୀ ହୋଇଲେ
ଭଗ୍ନ ବୃଡେ଼ ଦୁଷ୍କୂଳ ଗୁହିଁବାରେ ହେ । ରବିରଥ ମଧ୍ୟପଥ ପୂର୍ଣ୍ଣ ହେଲା
ଦେବସୂତ ଶ୍ରମ ହେଲେ ରଥ ବାହୁଚାରେ ଯେ ।୧୩। ତୁଳନା କର ତୁମର
ବେଶ୍ୟା ଅପସରୀବାର ମଳୟ୍ହାଦ ଗନ୍ଧସାର ଶେଷ ହେ । ଚୈତ୍ରରଥ ନନ୍ଦନ
ହୋଇଲେ ପୁଷ୍ପବିହୀନ ଅତି ଶଘନ ସମନବାସ ହେ ।୧୪। କେଶମୁକ୍ତା

---

୧୦ । ଗୁରୁଧ୍ୱନି—ଟମ୍ବୁରେ ଦିଆଯାଉଥିବା ଡଗଡ଼ର ଶବ୍ଦ, ସ୍ତନିତ—ଘଡ଼ ଘଡ଼, ଶମ୍ପା—ବିଜୁଳି, କରକାବଳୀ—କୁଆପଥର ସବୁ ।

୧୧ । ବର୍ଷାରେ ନଈବଢ଼େ—ଏଠାରେ ନଈ ବଢ଼ିଲା, କବନ୍ଧଜନ—ମୁଣ୍ଡ ନଥିବା ଗଣ୍ଡି, ନଈରେ ଜଳ ନାଚ ଯାଏ—ଏଠାରେ କବନ୍ଧ ନାଚନାଚ ଯାଏ, କୀଲାଳ—ଲାଲକର୍ଦ୍ଦ, ଲାଲପଦାର୍ଥ, ରକ୍ତ ଘଣ୍ଡରେ ରକ୍ତବର୍ଣ୍ଣ ଛଇଁଅଦ ଦେଖାଯାଏ ଏଠାରେ ହେଲା ରକ୍ତମୁଣ୍ଡା ଭାସୁଥାଏ, ଜମ୍ବାଳ—କାଦୁଅ, ଅଭାଲ—ଗୋଳିଆ, ଅପବସ୍ମାର, ନଈରେ କାଦୁଅ ପାଣି ଗୋଳିଆ ହୁଏ, ଏଠାରେ ରକ୍ତରେ କାଦୁଅ ହୋଇ ଅପବସ୍ମାର ହୁଏ, ନଈରେ ଲହରୀ ହୁଏ ଏଠାରେ ପତାକା ସବୁ ଲହରୀ ପ୍ରାପ୍ତ ହେଲା ।

୧୨ । ତରଣୀ—ଡଙ୍ଗା, ଉପୃନ୍ଦ—ଜାତ, କୁମ୍ଭୀ—ହାତୀ, ତୁରଙ୍ଗ—ଘୋଡ଼ା, ମୀନ—ମାଛ, କମଠ—କଇଁଛ, ଫେନ—ଫେଣ, ଚର୍ମଅଙ୍ଗଣୀ—ଚମଢାଲ, ଭୁଜ—ହାତ, ଭୁଜଙ୍ଗ—ସାପ, ପତ୍ତି—ପାଇକ, ଅଭିରବ—ବଡ଼ଲ ଡାକ, ଭେକ—ବେଙ୍ଗ, ରଥ—ଡଙ୍ଗା, ହାତୀ—କୁମ୍ଭୀର, ଘୋଡ଼ା—ମାଛମଗର, ଲୁଗା—ଫେଣ, ବାହୁ—ସର୍ପ, ଭେକସ୍ୱନ—ବେଙ୍ଗଶବ୍ଦ ।

୧୩ । ବିଟପୀ—ଗଛ, ପାଇକଙ୍କ ଦମ୍ଭଭାଙ୍ଗିଲା ଦୁଇକୂଳ ଗଛ ନଈବଢ଼ିରେ ଉପୁଡ଼ିଲା ପରି ପାଇକଙ୍କ ଦମ୍ଭ ଭାଙ୍ଗିଲା, ସୂର୍ଯ୍ୟର ମଧ୍ୟପଥ—ମଝିବାଟ ବା ଆକାଶ, ଦେବସୂତ—ଅରୁଣ ସାରଥି ।

୧୪ । ଅପସରୀବାର—ସ୍ୱର୍ଗବେଶ୍ୟାମାନେ, ମଳୟ୍ହାଦ—ବାସନା ଜିନିସ, ଗନ୍ଧସାର—ଚନ୍ଦନ, ଚୈତ୍ରରଥ—ଇନ୍ଦ୍ର ନନ୍ଦନ—ନନ୍ଦନ ବନ, ପୁଷ୍ପ ବିହୀନ—ଫୁଲହୀନ, ସଘନ—ଶୀଘ୍ର, ଶମନବାସ-ଯମ ଭୁବନ ।

ଉବାସ ଦଶନେ କୁଣ ଅଜସ ପଳାୟିତ ହସ୍ତ କମ୍ପ ବଶେ ହେ । ସ୍ତ୍ରିଗ୍ଧ କେଶ ଧରି ନାସ୍ତ୍ରି ମଧ୍ୟେ କେ ନିର୍ବାସ କରି ଲତା ବୃକ୍ଷ ବୀର ପ୍ରାୟେ ଦଶେ ହେ ॥ ଅରି ନାସ୍ତ୍ରିଏ ତ୍ୱରିତ ରୋଦନସ୍ୱରେ ପୂରିତ ହରିତମାନଙ୍କୁ ତହିଁ କଲେ ହେ । ଅଶ୍ରୁରେ ପଙ୍କିଳ ମହୀ ହେବାରେ ହାଲିକେ ଗୃହିଁ କୃଷି କାରଣେ ଉତ୍ସାହୀ ହେଲେ ।୧୬। ବଗୃହ୍କୁ କରିକଙ୍କଣ ହୃଷ୍ଟ ହେଲେ ରିପୁଗଣ ବୁଣିଲେ ପ୍ରାୟ ଶସ୍ୟ-ବୀଜ ହେ । ତହୁଁରେ କରୁଣା କରି ଛାଡ଼ିଦେଲ କେତେ ଅରି ମହାକାରୁଣିକ ଯୁଗରାଜ ହେ ।୧୭। ଦେଖି ନୃପଙ୍କ ଚରିତ ଦେବଙ୍କୁ ଦେବେ କଥିତ ନବରସେ ନବଗ୍ରହ ଏହି ହେ । କୃପାରେ ସୁର ନିଷ୍ଠୟ ବୀରରସେ କେତୁ ପ୍ରାୟ ଅଦ୍ଭରସେ ବିବିପଣ ବହି ହେ ।୧୮। ଅଦ୍ଭୁତେ ମଙ୍ଗଳ ସତ ହାସ୍ୟରେ ମନ୍ଦ ବଦିତ ଭୟାନକେ ତମ ପରି ଜାଣ ହେ । ଗ୍ରହବର ବିବସ୍ତ୍ରରେ ବୁଧ ଏ ରୌଦ୍ରରସରେ ଶାନ୍ତରେ ଚନ୍ଦ୍ରମାପରି ଜାଣ ହେ । ୧୯। ଏ ଶତ୍ରୁ ସିଂହ ରାଶିରେ କୀଡ଼େ ଅମ୍ବୁ ଉପକାରେ ଏବେ ହେଉ କନ୍ୟାରେ ଏ ଯୋଗ ହେ । ଶାପକାଳ ହେଲା ଲୋପ ବିନାଶ ମାନସ ତାପ ପୁରେ କରୁ ମହାମହ ଭୋଗ ହେ । ୨୦ । ଏସନ ସନ୍ତୋଷ ଷଣେ ରଥ ଉଡ଼ିଲ ଗଗନେ ଭୂଅଖଣ୍ଡେ ଛାଡ଼ି ଅନ୍ତର୍ଦ୍ଧାନ ହେ । ପିଶାଚ ପ୍ରେତ କୁଷ୍ମାଣ୍ଡ ଜମ୍ବୁକ ଡାକିନୀ ତୁଣ୍ଡ ଗୃଧ୍ରବୃନ୍ଦ ମଣ୍ଡିଲେ ଶ୍ମଶାନେ ହେ ।୨୧। ଭୂତ ମଧ୍ୟରେ ଅଧିପ ଏ ତିନିହେଁ ଚଣ୍ଡରୂପ ଅଘୋରଘଣ୍ଟ କପୋଳଘଣ୍ଟ ହେ । ଗୃହିଁ ହିସ୍ତ୍ରୁ ହୋଇଲେ କି କୃତ୍ୟ କଲ ବୋଇଲେ ଏତେକାଳ ପ୍ରେତେ ହେବେ

---

୧୫ । ବାଲ-କେଶ, ଉବାସ-ଲଙ୍ଗଳା, ଅଜସ୍ର-ଅସଂଖ୍ୟ ।

୧୬ । ଅରିନାସ୍ତ୍ରି—ଶତ୍ରୁମାନଙ୍କ ସ୍ତ୍ରୀ, ରୋଦନ—କାନ୍ଦିବା, ହରିତ-ଦିଗ, ପଙ୍କିଳ—କାଦୁଅ, ହାଲିକ—ଚଷା ।

୧୮ । କୃପା-ଦୟା, ସୁର-ସୂର୍ଯ୍ୟ, ଶୂର-ବୀର, ରସ ୯ ପ୍ରକାର—ଅଦ୍ଭୁତ ବୀର, କରୁଣ, ହାସ୍ୟ, ରୌଦ୍ର, ଭୟାନକ, ଶୃଙ୍ଗାର, ବିଭତ୍ସ ଓ ଶାନ୍ତ ମାନସ ତାପ—ମନଦୁଃଖ, ମହାମହ—ଅତ୍ୟନ୍ତ ଆନନ୍ଦ ।

୨୧ । ପିଶାଚ-ପ୍ରେତ, କୁଷ୍ମାଣ୍ଡ ଏ ସବୁ ପ୍ରେତ, ଜମ୍ବୁକ-ବିଲୁଆ, ଗୃଧ୍ରବୃନ୍ଦ—ଶାଗୁଣା ସବୁ ।

୨୨ । ଭୂତମାନଙ୍କ ମଧ୍ୟରେ ଏ ତିନିଜଣ ରଜା । ଯଥା-ଚଣ୍ଡରୂପ, ଅଘୋର ଘଣ୍ଟ, କପୋଳ ଘଣ୍ଟ । ତୃପ୍ତ—ସନ୍ତୋଷ ।

ତୁଷ୍ଟ ହେ ।୨୨। ସୁରତେ ଏ ରୂପେ ରକ୍ତ ନଦୀ ହୋଇଥିଲା ବ୍ୟକ୍ତ ବୋଲି ଚଣ୍ଡରୂପ ପ୍ରଗଳ୍ଭିଲ ଯେ । କଲ୍କି ମାରଣରେ ଏତେ ଶବ ଦେଖିଥିଲି ନେତ୍ରେ ଅଲୋକିତ ଭୋଜ ପ୍ରେତେ ଦେଲ ଯେ ।୨୩। ପିଇଲେ ରୁଧିର ପଣା ପରରେ ପ୍ରେତ ଅଗଣା ମଣ୍ଡାପର ମୁଣ୍ଡ ଗ୍ରୈବା ଭଲେ ଯେ । ପାଇଲେ ଯେ ଭୁଜ ପାଦୁଁ ମତ୍ସ୍ୟ ଉପହାର ସ୍ୱାଦୁ ନଖ କଣ୍ଟକ ବାହାର କଲେ ଯେ ।୨୪। ଘୃତପର ପ୍ରେତ ଲେହ୍ୟ ନୃତ୍ୟ କଲେ ଗୀତ ଗାଇ ହୃଦେ ମେଦ ବ୍ୟଞ୍ଜନ ସୁସ୍ୱାଦେ ହେ । ମାତିଲେ ଜରଡମାନେ ପିଞ୍ଜା ମାଂସେ ଶବ ମୁନେ ପ୍ରବର୍ତ୍ତିଲେ ବୀର ଅଶୀର୍ବାଦେ ହେ ।୨୫। ପ୍ରେତରଙ୍କ ନିଃଶଙ୍କରେ ଶବ ପକାଇ ଅଙ୍କରେ ଚରଣ ଲମ୍ବାଇ ବସିଛନ୍ତି ଯେ । କରନ୍ତି କବଳ ପଳ ଦେଖାଇ ଆପଣା ବଳ ମାଡ଼ି ପାଦେ ଟେକି ଶିବାପନ୍ତି ଯେ ।୨୬। ଶ୍ୱାନ ପାଞ୍ଚସାତ ତୁଣ୍ଡ ଓଟାରନ୍ତି ମୃତ୍ୟୁପିଣ୍ଡ ଖଣ୍ଡଖଣ୍ଡ କରି ଘେନି ଯାଇ ହେ । ଲୁଗୁଇ ଗୁଳ୍ମ ତଳରେ ପୁଣିହିଁ ସେହି ପ୍ରକାରେ କୌଣପ ମଧ୍ୟକୁ ଆସେ ଧାଇଁ ହେ ।୨୭। ଗୃଧ୍ରେ ଯେ ହୋଇ ଫୁରୁଣା ଚଞ୍ଚୁକୁ ବିସ୍ତାରି ଡେଣା ହଲାଇ ମଜ୍ଜ-ପିଶିତ ଖାନେ ଯେ । ଯେ ଯେତେ ପାରିଲେ କେତେ ବହିଲେ ଭୋଜନ ଅନ୍ତେ ପ୍ରେତେ ବହୁତକାଳ ବଞ୍ଚନେ ହେ ।୨୮। କଇଲାସ ଦେଖି ଶୂନ୍ୟ ଜାଣିଲେ ପଞ୍ଚବଦନ କେତେ ସୁକଲ୍ୟାଣ କଲେ ତୋଷେ ସେ । ଅଶୀର୍ବାଦ କରିବାକୁ ମୁନି ନ ଦେଖି ବୀରକୁ ପ୍ରବେଶ ହେଲେ କର୍ଣ୍ଣାଟ ଦେଶେ ସେ ।୨୯।

---

୨୩ । କଲ୍କିମରଣରେ-କଲ୍କି ଅବତାର ବେଳେ ଯେତେବେଳେ ମ୍ଲେଚ୍ଛ ନାଶ ହେଲେ, ବ୍ୟକ୍ତ-ପ୍ରକାଶ ।

୨୪ । ଅଗଣା—ଅସଂଖ୍ୟ, ମତ୍ସ୍ୟ—ମାଛ ।

୨୫ । ଲେହ୍ୟ—ଗୁଣ୍ଡିବା, ମେଦ—ମାଂସ, ବ୍ୟଞ୍ଜନ—ତରକାରୀ ।

୨୬ । ପ୍ରେତରଙ୍କ—ପ୍ରେତଙ୍କ ମଧ୍ୟରେ ଯେଉଁମାନେ ରଙ୍କଲା, ନିଶଙ୍କରେ—ନିର୍ଭୟରେ, ଶବ—ମୃତ୍ୟୁ, ଅଙ୍କରେ—କୋଳରେ, ଚରଣ-ଗୋଡ଼ କବଳ—ଗ୍ରାସ, ପଳ—ମାଂସ, ଶିବାପନ୍ତି—ବିଲୁଆମାନେ ।

୨୭ । କୌଣପ—ଅସୁର ।

୨୮ । ଫୁରୁଣା—ଆନନ୍ଦ, ଚଞ୍ଚୁ—ଥଣ୍ଟ, ପିଶିତାଶନେ-ମାଂସ ଖାଇବାରେ, ଅନ୍ତେ—ଶେଷେ ।

୨୯ । ପଞ୍ଚବଦନ—ମହାଦେବ, ସୁକଲ୍ୟାଣ—ଅଶୀର୍ବାଦ ।

ଜରତ ବିମ୍ବ ଅଧର ଭରତଜ୍ୟେଷ୍ଠ ସୋଦର ନିରତେ ମୋ ଚିତ୍ତେ କର ସଦ୍ମ ହେ । କହେ ଉପେନ୍ଦ୍ରଭଞ୍ଜ ପ୍ରଭୁ ରଘୁବଂଶରାଜ ଅଯୋଧ୍ୟା ରାଜନ ପରଂବ୍ରହ୍ମ ହେ । ୩୦ ।

## ଷଟ୍‌ଚତ୍ୱାରିଂଶ ଛାନ୍ଦ

( ଚନ୍ଦ୍ରଭାନୁ ଯୁଦ୍ଧ ଜୟ କରି ସ୍ୱଦେଶ ଗମନ ଓ ଲାବଣ୍ୟବତୀ ସହ ମିଳନ )

ରାଗ କଳଶା—(ଅଶାବରୀ)

ଗୁଣବନ୍ତେ ଏ ଗୀତମଣିକି ମାଳା କର । ନିର୍ଗୁଣେ ନ ଘେନିବାକୁ ନାହିଁ ମୋ ବାରୁର ହେ । ୧ । କୁମର ଦେଖି ସ୍ୱଦେଶାଗତ ପୁରୁଷକୁ । ପଚାରିଲେ ନିଜ ରାଜ୍ୟ ଶୁଭ ସନ୍ଦେଶକୁ ଯେ ।୨। ସେ କହିଲା ସର୍ବଶୁଭ ମନ୍ଦ ଏତେ ମାତ୍ର । ସିଂହଳ ନୃପତି ଜେମା ଅତକ୍ଷୀଣ ଗାତ୍ର ହେ । ୩ । ନ ରହୁଛି ନିଜ ନୟନରେ ଅଜ୍ଞ ନୀର । ନ ଜୁଠୁଛି ଅବନୀଶଯୁକ୍ତ ନିରନ୍ତର ଯେ । ୪ । ନବଦ୍ୟ ତାପ ଲଭୁଛି ନୃପତିକୁମାରୀ । ବିଳାପ କଳାପ ତାର ଭୁତାବେଶ ପରି ଯେ । ୫ । ପଦ୍ମ୍ନୀରେ ଉପଚାର କରିବାକୁ ଘେନ ।

୩୦ । ଜରତ—ବୁଢ଼ା, ପାଚିଲା; ସୋଦର—ଭାଇ, ନୀରତେ—ସର୍ବଦା, ସଦ୍ମ—ଘର ।

ଚନ୍ଦ୍ରଭାନୁ ଦୂରଦେଶରେ ରହି ସେହିଠାରେ ଯୁଦ୍ଧକରି ଅନେକ ଦୁଷ୍ଟ ଅସୁରମାନଙ୍କୁ ମାରି ସମସ୍ତଙ୍କୁ ଅଭୟ ଦେବାରୁ ଓ ସପ୍ତଦ୍ୱୀପ ବୁଲି ବୁଲି ଦୁଷ୍ଟମାନଙ୍କୁ ନାଶିବାରୁ ତାର ଯଶ ସମସ୍ତ ସଂସାର ମର୍ତ୍ତ୍ୟ, ପାତାଳ ଓ ସ୍ୱର୍ଗରେ ମଧ୍ୟ ବ୍ୟାପିଲା, ଦେବତାମାନେ ତାର ତେଜ ଧୈର୍ଯ୍ୟ ଧାର୍ମିକତାରେ ସନ୍ତୋଷ ହୋଇ କଲ୍ୟାଣ କରି ଯୋଗିନୀ ଦ୍ୱାରା ନିଜ ଦେଶକୁ ପଠାଇ ଦେଲେ ।

## ଷଟ୍‌ଚତ୍ୱାରିଂଶ ଛାନ୍ଦ

୨ । ସ୍ୱଦେଶାଗତ—ନିଜଦେଶରୁ ଅସିଥିବା, ସନ୍ଦେଶ—ଖବର ।

୩ । ସିଂହଳ ନୃପତିଜେମା—ସିଂହଳ ରାଜକନ୍ୟା ଲାବଣ୍ୟବତୀ ।

୪ । ଅବନୀ—ପୃଥିବୀ, ନିରନ୍ତର—ସର୍ବଦା ।

୫ । ନବଦ୍ୟ-ଅତ୍ୟନ୍ତ, ତାପ-କଷ୍ଟ; (କାମକଷ୍ଟ) ଭୁତାବେଶ-ଭୁତଲାଗିବା, ବିଳାପ କଳାପ—କାନ୍ଦିବା ସବୁ ।

୬ । ପଦ୍ମ୍ନୀରେ—ଲାବଣ୍ୟବତୀଠାରେ, ସରସୀ—ପୋଖରୀ ।

ସରସୀମାନେ ହେଲେଣି ପଦ୍ମନାବହୀନ ଯେ ।୬। କାଲ୍‌ପରି ପଗଣ ତେଜିଲା-
ପରି ସେହି । ଦେହଲୀ ବଳି ଚଳିବା ଭଲ ବଳ ନାହିଁ ଯେ । ୭ । ହା
ଗ୍ରାବରେ ସଦନ ତ ଦଣ୍ଡେ ଶୂନ୍ୟ ନାହିଁ । ହା ଗ୍ରାବରେ ଭୁଜଙ୍ଗମ ଭ୍ରମ
ଜନ୍ମାଇ ଯେ ।୮। ଚତ୍ୱରେ ଦେଖିଲ ପୁଚ୍ଛିବାକୁ ତୁମ୍ଭ ବାର୍ତ୍ତା । ବଳଭୁକେ
ବଳିଦେଲ ନିବଳିଶୋଭିତା ଯେ । ୯ । ଯେତକ ବିଳମ୍ବ ତୁମ୍ଭ ପ୍ରଲମ୍ବ-
କୁନ୍ତଳା । ତେତକ ତେତକ କରୁଅଛୁ ଜୀବେ ହେଳା ଯେ । ୧୦ ।
କେଉଁ ଭାଗ୍ୟେ ଜୀଇଅଛୁ ନୁହଇ ଗୋଚର । ଦୂରକଲଣି ସମସ୍ତ ଅହାର
ବିହାର ଯେ । ୧୧ । ବାହାର ଏତକ ତୁମ୍ଭ ରୂପ ଧରେ ଧଣି । ଜଠି କୋଳ
କରିବାକୁ ହୁଅଇ ଲାଳସୀ ଯେ ।୧୨। ଅହାର ଏତକ ତବ ରସ ଅସ୍ୱାଦଇ ।
ତଳୁ ଛୁ ଲଭିବା ଲୋଭ ଅଛୁ କି ଜୀଅଇଁ ଯେ । ୧୩ । ବେନି ଅଳଙ୍କାରୁ
ବେନି ହୋଇଛୁ ମଣ୍ଡନ । କରରେ ଅତୁଲ୍ୟ ପ୍ରତିଅଙ୍ଗରେ ତପନ ଯେ ।୧୪।
ଜୀବେ ଅଛୁ ଶୁଣିବାରୁ ହରଷଳହରୀ । ବିରସ ସବୁରୁଁ ତାର ବାହାର
ବିହର ଯେ । ୧୫ । ସେ ରସିକ ସିନ୍ଧୁଜାତ ତୁରଙ୍ଗ ଅଣାଇ । ଅରୋହଣେ
ପବନ ପର୍ଯ୍ୟନ୍ତେ ଜଡ଼ଯାଇ ଯେ । ୧୬ । ଯାଉ ଯାଉ ବିସ୍ମର କରଇ ମନେ
ମନ । କରିବରଗମନା କରିବ ପତ୍ନୀ ମାନ ଯେ । ୧୭ । ତେତକ ତେଲିଲୁ
ବୁଦ୍ଧି ସ୍ଫୁରିଲଟି ମୋତେ । କଳ୍ପମୂଁ ବିଚ୍ଛେଦ ହୋଇଥିଲ କି ଅପୂର୍ବେ
ଗୋ । ୧୮ । ଶିବ କହିବେ ଏ ଶିବ ଏମନ୍ତ ବେଳରେ । ଭେଟ ହୋଇବାଟି
ମୋର ବାନ୍ଧବୀ ତୁଳରେ ଯେ । ୧୯ । ମୋ ପାଶକୁ ଦୂତ କରୁଥିବ

---

୭ । ଦେହଲୀ—ଦ୍ୱାରବନ୍ଧ ।

୮ । ହା ଗ୍ରାବରେ—ହା ଗଳାରେ-ବେକରେ ପିନ୍ଧିଥିବା ହାର ଶ୍ରେଷ୍ଠରେ,
ସଦନ—ଘର ।

୯ । ଚତ୍ୱରେ-ଶୀଘ୍ର, ବଳଭୁକେ-କୁଆମାନେ, ବଳି-ଗୃହଜଳ ଦେବା ।

୧୦ । ନିବଳୀଶୋଭିତା-ଲବଣ୍ୟବତୀ, ପ୍ରଲମ୍ବକୁନ୍ତଳା-ଘନ ଲମ୍ବ ବାଳଯୁକ୍ତା

୧୧ । ଅହାର—ଖାଇବା, ବିହାର—ଖେଳା ବୁଲା ।

୧୪ । ଅତୁଲ୍ୟ-ହାତଖଡ଼ୁ, ପ୍ରତିଅଙ୍ଗରେ-ଦେହଯାକ, ତପନ-ତାତିଲା ।

୧୬ । ସିନ୍ଧୁଜାତ ତୁରଙ୍ଗ—ଶୀଘ୍ର ଦୌଡ଼ି ପାରିବା ଘୋଡ଼ା, ଅରୋହଣେ—
ଚଢ଼ିବା ।

୧୭ । କରିବର ଗମନା—ଗଜଗମନା ।

୧୯ । ଶିବ—ମହାଦେବ, ମଙ୍ଗଳ ।

ମଦାଳସୀ । ଭୃଙ୍ଗ ଅବା କୋକିଳ ସରସ ରସଭାଷୀ ଯେ । ୨୦ । ଅଜାଣେ ମୁଁ ପଛୁଁ ଯାଇ କରିବି ଅଶ୍ଳେଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୧ । ଅହେ ନବଗ୍ରହେ ବନ୍ଧୁ ଦରଶନ ବେଳେ । ମୋର ରାଶି ଏକାଦଶେ ରହ ଏକମେଳେ ଯେ । ୨୨ । ଲେଖୁଥିବ ମୋ ପାଶକୁ ସପ୍ରେମ ଚିଠାଉ । ନ ଜାଣୁ ତା ନିକଟକୁ ସୌଭାଗ୍ୟ ଭେଟାଉ ଯେ । ୨୩ । କେବେ ବୋଲିବ ଅଲ୍ପ ତୋ ଲେଉଡ଼ି ଦାସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୪ । ଦୁର୍ଗାମାଧବ କରିବେ ଏମନ୍ତ ମଙ୍ଗଳ । ମୋ ସ୍ୱରୂପ ପଟେ ଦେଖି ହୋଇ ଭାବେ ଭୋଳ ହେ । ୨୫ । ଗୋଳ କରୁଥିବ ନିଜ ଅଧର ଚୁମ୍ବନେ । ଉରଜ ମୂଳକୁ ଗୃହି ଦେବ ନଖମୂନେ ଯେ । ୨୬ । ଚମକ ଗୃହିଁଲବେଳେ ଜନ୍ମିବ ହରଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ ।୨୭। ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ତୁଳେ । ମିଳିଥିବଟି ସୁନ୍ଦରୀ ମେଳ ହେବାକାଳେ ଯେ । ୨୮ । କେଉଁଦିନ ଆସିବେ ମୋ କାନ୍ତ ପରବାସୀ । ବୋଲି ଦେବାବେଳେ ବାଳା ଖଞ୍ଜୀକ ମନାସି ଯେ । ୨୯ । ଆଗେ ମିଳି ବୋଲିବ ମୋ ଛାର ଅପରାଧୀ । ଲଚ୍ଛିଯାଇ ତୋ ପ୍ରଭୁପଣକୁ କୃପାନିଧି ଗୋ । ୩୦ । ଶୁଣି ଏ ବାଣୀ ଅଧିକ ଦ୍ରବିବ ମାନସ । ନ ପାଇବ ସୁମୁଖୀ ମନକୁ ଅବକାଶ ଯେ ॥ ଲକ୍ଷ୍ମୀସହ ନୃସିଂହ କରନ୍ତୁ ଶୁଭ ଏବେ । ଯେତେବେଳେ ସଖୀ ଶୁଭ ସ୍ୱପ୍ନ କହୁଥିବେ ହେ । ।୩୨। ଅଜ ଆସିବେ ବଲ୍ଲଭ ଶୁଣି ତୋଷ ହୋଇ । ବାଳା ମାଳା ଗୁନ୍ଥି ରଖୁଥିବେ ମତ ପାଇଁ ଯେ । ୩୩ । ସାକ୍ଷୀ ହେଉଥିବ କଣେ ମିଳି ସହଚରୀ । ତେତେବେଳେ ପ୍ରବେଶ ମୁଁ ହେଲେ ଯାଇଁ କରି ଯେ ।୩୪। ସଖି ଡାକଦେବେ ଅନ୍ୟ ନିଜଗ୍ରୁଇ ଅସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ ।୩୫। ଏସନ ବାଗୁରମାନ କରଇ ମାନସ । ସରଳ ସରଣୀ କାଞ୍ଚି ନଗ୍ରେ ପରବେଶ ଯେ ।୩୬। ଠାବେ ଠାବେ ପଡ଼ିଅଛି ସମର ଚରିତ ।

---

୨୦ । ମଦାଳସୀ—ରସିକା, ସରସ ରସଭାସି—ଚତୁରତାରେ କଥା କହିବା ସ୍ତ୍ରୀ ।

୨୧ । ଅଶ୍ଳେଷ—ଅଲିଙ୍ଗନ, ଅବକାଶ—ପୁରୁଷତ୍ୱ ସମସ୍ତ ।

୨୨ । ଜନ୍ମ ରାଶିର ଏକାଦଶରେ ସବୁଗ୍ରହ ରହିଲେ ଶୁଭହୁଏ ।

୩୫ । ନିଜଗ୍ରୁଇ—ବଳାଇବାକୁ ।

୩୬ । ସରଣୀ—ବାଟ ।

ସଶପ୍ତକ କାଲକେଯୁ କରିବାର ହତ ଯେ । ୩୭ । ସାର ଅଦଭୁତ କୀର୍ତ୍ତି କରିବ ବଚନେ । ସ୍ଥାନେ ସ୍ଥାନେ ପଢ଼ୁଛନ୍ତି ବୋଧକାରମାନେ ଯେ ।୩୮। ସେ କରିବୁ ଅବେଶରେ ତୃଷ୍ଣା ନରେଶ୍ୱର । ପ୍ରବେଶରେ ଅଭିଷେକ କରିବେ କୁମର ହେ । ୩୯ । ଶୁଣି ମନେ କରୁଅଛୁ ସେ ଯୁବାଭୁଜାଣ । ଆଶୀର୍ବାଦ କର କର ଗଲେ ସୁର ମୁନି ଯେ । ୪୦ । ଯିବାର ଛଟକ କେହୁ ନ ଦେଖିବେ କେବେ । ଧନ୍ୟ ଅଶ୍ୱ ଧନ୍ୟ ସାଦୀ ବୋଇଲେ ସମସ୍ତେ ଯେ । ୪୧ । ସଦନଦ୍ୱାର ଦ୍ୱାଃସ୍ଥରେ ନମସ୍କାର ପାଇ । ଉତ୍ତର ସେ ଶୁଦ୍ଧାନ୍ତ ଗମନେ ଉତ୍ସୁ ହୋଇ ଯେ । ୪୨ । ତହିଁ ଶିଳ୍ପକାରକାଙ୍ଗ୍ୟେ କଥା ପରସ୍ପର । କ କରିବାଟି ହୋଇଲା ଅସର ବାସର ଯେ । ୪୩ । ଅସର ହୋଇବ କେବେ ମନସିଜ ସୁଖ । ପାଞ୍ଚ ନୋହେ ପାଞ୍ଚ ପାଞ୍ଚ କୋଟି ତା ବଶିଖ ଯେ । ୪୪ । ମାଲତୀ ବୋଲୁଛୁ ନିତମାଙ୍କ ଅସୁଥାଇ । ବରଷେ ହୋଇଲା ପୁଷ୍ପବାଟି ନ ସରଇ ଗୋ ।୪୫। ଚେଟୀଏ ବୋଲନ୍ତି ବନ୍ଦୀ ମୋକ୍ଷ ଶୁକ ସାମ୍ବ । ବାନ୍ଧି ବାଟି ଜଣୀର ଗଲାଣି ହସ୍ତ ସର ଗୋ । ୪୬ । ପ୍ରୋଢ଼ା ସଜନୀକ ତହିଁ ନବୋଢ଼ା ପଗୃରେ । ଫୁଲଶର ଭେଦେ କେହୁ ଗିରସ୍ତନା ଉରେ ଗୋ । ୪୭ । ସେ ତାହାଙ୍କୁ ପ୍ରତଭାଷ କରୁଛୁ ତହିଁକ । ଗଣନାରେ

---

୩୭ । ସଂଶପ୍ତକ-ପ୍ରତିଜ୍ଞାବନ୍ତ ଯୋଦ୍ଧା, କାଲକେୟୁ-ଦର୍ବୃତ୍ତ ରାକ୍ଷସମାନେ ।
୩୮ । ବୋଧକର—ଭାଟ ।
୪୦ । ଯୁବା ଭୁଜାନି—ଯୁବକର ଭୁଜବଳ, ଆଶୀର୍ବାଦ—କଲ୍ୟାଣ ।
୪୧ । ସାଦୀ—ଘୋଡ଼ସବାର ।
୪୨ । ଦ୍ୱାଃସ୍ଥ—ଦ୍ୱାରୀ, ଶୁଦ୍ଧାନ୍ତ—ଉଆସ ।
୪୩ । ଶିଳ୍ପକାରୀଏ—ସଖୀମାନେ ।
୪୪ । ଅସର—ଅସରନ୍ତି, ବାସର—ମିଳନ ଦିନ, ମନସିଜ-କନ୍ଦର୍ପ,ପାଞ୍ଚ—ଜାଣିବା, ପାଞ୍ଚଟି ।
୪୫ । ପୁଷ୍ପବାଟି—ଫୁଲ ବଗିଚ୍ଚ ।
୪୬ । ଚେଟୀଏ—ଦାସୀମାନେ, ବନ୍ଦୀମୋକ୍ଷ-ବନ୍ଧରୁ ଫିଟିବା, ଜଣୀର—ବେଣୀ ।
୪୭ । ପ୍ରୋଢ଼ା—ବୟୁସ୍କା, ପ୍ରବୃଦ୍ଧା, ନବୋଢ଼ା—ନୂଆସଙ୍ଗ, ଗିରସ୍ତନା—ପର୍ବତ ସ୍ତନା, ଉର—ବକ୍ଷ ।
୪୮ । ପ୍ରତଭାଷ—ଉତ୍ତର, ଅମ୍ବୁଜ—ପଦ୍ମ, ଚନ୍ଦ୍ର, କାମର ପଞ୍ଚଶରରେ ମଧ୍ୟ ପଦ୍ମ ଓ କଇଁ ଅଛୁ ।

ଅମ୍ବୁଜ ଯୋଡ଼ାଏ ଅଛୁଟିକ୍ତ ଗୋ । ୪୮ । ଶୁଖିଲା ମୃଣାଳ ନାଳେ ଚତ୍ବର ସଘନ । ପାକଚଳା ଶାକପରି ନବଛଦ ମାନ ଗୋ । ୪୯ । କର୍ପୂର ଚନ୍ଦନ କେ ଗୋଳୁଅଛୁ କେ ଚଳୁଅଛୁ । ସ୍ଫୋଟକ ଜନ୍ମିବ ଏଥୁଁ କୁହଇ ଏ କଛୁ ଗୋ । ୫୦ । ବ୍ୟଜନ ଧରି କେ ବାଇବାକୁ ସ୍ନେହଭରେ । ଉଡ଼ି ଯାଉଥାଇ ନାହିଁ ବୋଲି କେ ନବାରେ ଯେ । ୫୧ । କେ ବୋଲେ ତାହାକୁ ମୁଁ ଯାଉଛି ସ୍ନାନ କରି । ମୋହ ଗଲେ ମୁଖେ ନ ସିଞ୍ଚିବ ଶୀତ ବାରି ଗୋ ।୫୨। ବରଷା ପ୍ରାପ୍ତ ମଣିଲେ ପ୍ରମାଦ ପଡ଼ିବ । ଅଙ୍କରେ ପକାଇ ଶ୍ରବଣରେ ଫୁଙ୍କି ଦେବ ଗୋ । ୫୩ । କେବଣ ସଜନୀ ହୋଇ ସଜଳ ଲୋଚନା । ନବପଲ୍ଲବରେ ଶେଯ କରୁଅଛି ରଚନା ଯେ । ୫୪ । କେ ସଖୀ ପାଶରେ ବସି କରେ ଆଶ୍ୱାସନା । ବୋଲେ କଥାତ ନ କହୁ କରକ ରଦନା ଗୋ ॥ ଭଲ ନ ଦେଖିଲୁ ଧନେ ନାଗରୀ ତିଳକ । ଏହି କଥାହିଁ ତୋହର ନ ଗଲା ବାଳକ ଗୋ । ୫୬ । କୋଧଭରି ହୋଇ କେଉଁ ସଜନୀ ବୋଲୁଛି । କେ ତାହା ଭୋଗିବ ଯାହା ଅପେ ଅରଜୁଛି ଗୋ ।୫୭। ଅଭି କେ କହିଲା ଏହା ବୋଇଲି କି କରି । ସମଦ୍ରବ୍ୟେ ଅନୁରାଗୀ ହୋଇଲା ସୁନ୍ଦରୀ ଯେ ।୫୮। ରସାଣହେମ ଅଙ୍ଗୀକି ଥିଲା କି ଗୋଚର । ବଲ୍ଲଭ ହୃଦୟ ହେବ ପାଷାଣ

---

୪୯ । ମୃଣାଳନାଳେ-ପଦ୍ମନାଡ଼ରେ, ଚତ୍ୱର-ଅଗଣା, ଶାକ-ଶାଗ, ପାକ— ସିଦ୍ଧ, ନବଛଦ—କଅଁଳିଆ ପତ୍ର, ବିରହ ତାପ ହେତୁ ଲବଣ୍ୟବତୀ ଦେହରେ ପଦ୍ମନାଡ଼ ଦେବାରୁ ସେ ଶୁଖିଯାଇଛି ଦୁଅରକୁ ଫୋପଡ଼ା ହୋଇଛି । ପତ୍ରସବୁ ସିଝା ହେଲା ପରି ହୋଇଛି ।

୫୦ । ଚଳୁଛି—ଗାଲି ଦେଉଛି, ସ୍ଫୋଟ—ଫୋଟକା ।

୫୧ । ବ୍ୟଜନ—ବିଚଣା ।

୫୨ । ଶୀତ—ଥଣ୍ଡା, ବାରି—ଜଳ ।

୫୩ । ଅଙ୍କ—କୋଳ, ଶ୍ରବଣ—କାନ ।

୫୪ । ସଜଳ ଲୋଚନା—ଲୁହଯୁକ୍ତା ଆଖି (କାନ୍ଦ କାନ୍ଦ ଅବସ୍ଥା), ରଚନା— ତଆରି କରିବା ।

୫୫ । ଆଶ୍ୱାସନା—ବୋଧଦେବା, କରକ ରଦନା—ଡାଲିମ୍ବଦନ୍ତୀ ।

୫୬ । ନାଗରୀ ତିଳକ—ସ୍ତ୍ରୀ ଶ୍ରେଷ୍ଠା ।

୫୭ । କୋଧଭରି—ରାଗ ପୂର୍ଣ୍ଣ ।

୫୮ । ସମଦ୍ରବ୍ୟେ—ସମାନ ଜିନିଷରେ, ଅନୁରାଗୀ—ସ୍ନେହୀ ।

୬୦ । ରସାଣ ହେମଅଙ୍ଗୀ—ପାଲିସ ସୁନାପରିଦେହୀ, ଗୋଚର—ଜଣା, ପାଷାଣ—ପଥର ।

ପ୍ରକାର ଗୋ । ୭୦ । କେ ବୋଲୁଛୁ ରସିକ ରତନ ରଘୁବୀର । ବଦେଶୀ ଛାଡ଼ିଲେ ସୀତା ଯେଣ ସଙ୍କଟର ଯେ । ୭୧ । ଏଥିକାଳେ ସେ ପୁର ସୋପାନେ ବୀର ମିଳି । ମଦନ ସୁନ୍ଦର ବଚନେ କଲେ ଜଣେ ବୋଲି ଯେ ।୭୨। ଏ ବାଣୀ ଶ୍ରବଣେ ବମ୍ବୁର୍ଣ୍ଣଷ୍ଟୀ ଉଠିବାକୁ । ମନ କରୁ ପ୍ରାଣନାଥ ଗମିଲା ସେଠାକୁ ଯେ ।। ମଲି ମଲି ଅନାୟୃତ ହେଲି ଏହା କଲି । ଲବଣୀ ପିତୁଳାକୁ ବିଷମ ଶରେ ଦେଲି ଯେ । ୭୪ । ଯେ କଲି ବିଚ୍ଛେଦ ବଜ୍ର ପଡ଼ୁ ତାର ଶିରେ । ଏତେ ବୋଲି କୋଳ କରି ତୋଳିଲା ସତ୍ୱରେ ଯେ । ୭୫ । ହୃଦରେ ଲଗାଇଁ ଶୀତଳକୁ ଲଭି ବାଳା । ବିବେକ ପ୍ରସରି କାନ୍ତ ମୁଖକୁ ଗୃହିଁଲା ଯେ । ୭୬ । ବେନି ନେତ୍ର ଚକୋର ମୁଖହିଁ ଚନ୍ଦ୍ର ସତ । ଅନନ୍ଦ ଅଶ୍ରୁଜଳରେ କଲା ଦ୍ରବୀଭୁତ ହେ । ୭୭ । ଶୋଭି ରତ୍ନମୟ ଭୂମି ବେନି ଅପଘନ । ଛନ୍ଦ ନୋହେ ସଦ୍ମ କଲେ ନୟନ ଖଞ୍ଜନ ଯେ । ୭୮ । ପଦ୍ମିନୀର ଅଲିଙ୍ଗନ ଦୋହଦ ହୋଇଲା । ପୁଂସ ତନୁ ନୀପଫୁଲ ପୁଲକାଇ ଦେଲା ଯେ । ୭୯ । ପ୍ରଥମା ପର୍ଯ୍ୟ ବେନିଦଣ୍ଡ ସ୍ତମ୍ଭୀଭୂତ । ରାମଚନ୍ଦ୍ର ଚନ୍ତି ଉପଇନ୍ଦ୍ର କହେ ଗୀତ ଯେ । ୮୦ ।

---

୭୨ । ସୋପାନ—ପାହାଚ ।
୭୩ । ପ୍ରାଣନାଥ—ସ୍ୱାମୀ ।
୭୪ । ବିଷମରେ—କନ୍ଦର୍ପଶରରେ ।
୭୬ । ଶୀତଳ—ଥଣ୍ଡା, ବିବେକ ପ୍ରସରି—ଜ୍ଞାନ ପାଇବା, ଚେତାହୋଇ ।
୭୭ । ଦ୍ରବୀଭୂତ—ତନ୍ତାଇବା ।
୭୮ । ଅପଘନ—ଦେହ, ଛଦ୍ମ—ଛଳନା ।
୭୯ । ଦୋହଦ-ଅକାଳେ ଫୁଲ ଫୁଟିବା, ନୀପଫୁଲ--କଦମ୍ବଫୁଲ, ପଦ୍ମିନୀ ସ୍ତ୍ରୀ-ଲବଣ୍ୟବତୀ ଅଲିଙ୍ଗନ ହେତୁ ପୁନର୍ବାର ପୁଷ୍ପ ଫୁଟିଲା । ପୁରୁଷ କଦମ୍ବ ଫୁଲ ପରିହେଲା ଅର୍ଥାତ୍ ପୁରୁଷର ଲୋମ ଟାଙ୍କୁରି ଉଠିଲା ।

ଚନ୍ଦ୍ରଭାନୁ ଦେବକୁଣ୍ଡରେ ଦୁଷ୍ଟନାଶ ନିମନ୍ତେ ସ୍ଥାନାନ୍ତର ହୁଅନ୍ତେ ଲବଣ୍ୟବତୀ ଅଶନ ବସନ, ବେଶ ବିଳାସ-ଖାଦ୍ୟ, ପେୟ-ସୁଗନ୍ଧ ଶୀତଳ, ଗନ୍ଧ, ଚନ୍ଦନ ଇତ୍ୟାଦି ସମସ୍ତ ବିଳାସ ଛାଡ଼ି ଚନ୍ଦ୍ରଭାନୁ ଚିନ୍ତାରେ ଦିନକୁଦିନ କ୍ଷୀଣ ହୋଇବାରୁ ସଖୀମାନେ ନାନାପ୍ରକାର ଯତ୍ନ କରି କେବଳ ତାର ପ୍ରାଣ ରଖିଥିଲେ । ଚନ୍ଦ୍ରଭାନୁ ଏହି ସମୟରେ ପହଞ୍ଚି ସ୍ତ୍ରୀର ଅବସ୍ଥା ଦେଖି ତାକୁ କୋଳ କରନ୍ତେ ତାର ଚେତନା ଫେରିଲା ଓ ସେ କ୍ରମେ ସଚେତ ହେଲା ।

## ସପ୍ତଚତ୍ୱାରିଂଶ ଛାନ୍ଦ

( ବିଦେଶରେ ଚନ୍ଦ୍ରଭାନୁର ନିଜ ଦୁଃଖବର୍ଣ୍ଣନା ଓ ଖେଳ )

ରାଗ—ଖଣ୍ଡକାମୋଦୀ

ରାମା ବସାଇ ଆଗେ ରସାଇ ଅନୁରାଗେ ଗୁହ୍ଠି କରୁଛୁ ପତ୍ତ ଯେ । ବିଚ୍ଛେଦ ହେଲା ବିନୁ କି ଦଣ୍ଡ ଫୁଲଧନୁ ଦେଲାଟି ଦିନ ରାତ ରେ । ପ୍ରାଣବନ୍ଧୁ । କେମନ୍ତେ ବଞ୍ଚିଥିଲୁ ରେ । ସ୍ୱପନେ ଦୁଃଖ ଦେଖିନାହୁଁ ଅଜନ୍ମ ସୁଖୀ ମୋ ଲାଗି ଦୁଃଖୀ ହେଲୁ ରେ । ୧ ।

ଯେଣିକି ଗୁହେଁ ମୁହିଁ ସେ ଦିଗେ ଦିଶୁ ତୁହି ଯେମନ୍ତ ହସୁଥାଉ ରେ । ଅଙ୍କକାଇ ଅଙ୍କରେ ବସିବା ପଲ୍ୟଙ୍କରେ ନ ଥିଲା ମନେ ଅଉ ରେ । ପ୍ରାଣବନ୍ଧୁ । ସବୁ ଲାବଣ୍ୟସିନ୍ଧୁ ରେ । ମୋର କି ଭାଗ୍ୟ ଥିଲା ଧାତା ତୋତେ ରଖିଲା ମଦନ ବନ୍ଧୁ ବନ୍ଧୁ ରେ । ୨ ।

ଯେଉଁ ନୟନଭଙ୍ଗୀ ଯୋଗୀନ୍ଦ୍ର ଯୋଗଭଙ୍ଗି ଅଙ୍ଗୀକାର କରନ୍ତି ରେ । ଭାବ ମ୍ମରର ତହିଁ ଅଶ୍ରୁ ଥିଲୁ ପୂରାଇ ଏ ଗୁଣ ହେବ ମୂର୍ଚ୍ଛି ରେ । ପ୍ରାଣବନ୍ଧୁ । ମଲିଟି ଏଡ଼େ ଝୀଣେ ରେ । ବଳୟ ଅଛି କରେ ତୋ ଓଣା ରତି ଛିରେ ଦେଉଛି ସ୍ନେହାପଣେ ରେ । ୩ ।

ଅବନୀରେ ଅଞ୍ଚଳ ପାତ ପରି ଚଞ୍ଚଳ ହୋଇ ଶୟନ କରୁ ରେ । ସେ କଥାମାନ ଗୁଣି ଗୁଣି କହୁଛି ପୁଣି ଧିକ ମୋ ଜୀଇବାରୁ ରେ । ପ୍ରାଣବନ୍ଧୁ । ଏ କଥା ଅଛି ଦୁଢ଼ ରେ । ତୋ ବିନୁ ଜୀଇବାର ଦୋଷକୁ କ୍ଷମା କର କହୁଛି କର ଯୋଡ଼ି ରେ । ୪ ।

କି ଦେଖିଲା ଏ ଆଖି ଫୁଟି ନ ଯାଇ ସଖି ହୃଦ ଫାଟି ନ ଯାଇ ରେ । ମୃତ କରି ଦଶନ ପିତୁଳା ପରସନ୍ନ ତୁ ପୁଣି ଅଛୁ ବହି ରେ । ପ୍ରାଣବନ୍ଧୁ । କାଳ କି ନ କରଇ ରେ । ସବୁ ସହଇ ଅନାୟତ୍ତ ମୀନନୟନା ଯେନ ବିବେକୀ ତୁହି ରେ । ୫ ।

---

## ସପ୍ତଚତ୍ୱାରିଂଶ ଛାନ୍ଦ

୧ । ଅନୁରାଗ—ସ୍ନେହ, ଗୁହ୍ଠି—ବିନୟ କଥା, ବିଚ୍ଛେଦ—ପୃଥକ ।

୨ । ଲାବଣ୍ୟ ସିନ୍ଧୁ—ଶୋଭା ସମୁଦ୍ର ।

୩ । ଯୋଗୀନ୍ଦ୍ର—ବଡ଼ ଋଷି, ବଳୟ—ଖଡ଼ୁ ।

୫ । କରି—ହାତୀ, ଦଶନ—ଦାନ୍ତ, ପରସନ୍ନ—ଟୋଲାଦେଖାଇବା ।

କେଡ଼େ ପ୍ରସନ୍ନମୁଖ ପଦ୍ମ ଶୀତମୟୂଖ ଦର୍ପଣ ଦର୍ପହାରି ରେ । ଚରଣ ପରଗୃର ପାଇଁ ନାଗସ୍ୱବର ହେଲ ତ ଏତେସର ରେ । ପ୍ରାଣବନ୍ଧୁ । ନାହିଁ ଲେଶ ହରଷ ରେ । ଲବ ଅନ୍ତର ସୁହା ନ ଯାଉଥିଲା ଅହା ପୂର୍ଣ୍ଣ ହେଲା ବରଷ ରେ । ୬ ।

ଭିନ୍ନ ଧନ୍ତ୍ର ବନ୍ଧନ କରି ନାହୁଁ ସମନ ଦେବାରି ଥାଉଁ କେଶେ ରେ । ଲୁଚିଯାଇ ତୋ ଭାବ କେବେ ଶୁଣି ନୋହୁବ ସହସ୍ରେ ଅଂଶୁ ଅଂଶେ ରେ । ପ୍ରାଣବନ୍ଧୁ । ମନେ ଝୁରୁଥାଇଁ ରେ । ଇନ୍ଦ୍ର ସମ୍ପତ୍ତି ଦେଲା ଦରିଦ୍ରୁଁ ହୀନ କଲା କି ଅବିବେକି ବିଧି ରେ । ୭ ।

ପାଶେ ଥିଲା ଦିନରେ ମୋ ଭୋଜନ ଡ଼ର୍ତ୍ତିରେ ତୁହି ଭୋଜନ କରୁ ରେ । ଦୂରେ କେପାଁ ଅହାର ନ କରିଥିବୁ ଦୂର ଜାଣିଲି ଦୁର୍ବଳରୁ ରେ । ପ୍ରାଣବନ୍ଧୁ । କେଉଁ ଧର୍ମେ ବର୍ତ୍ତିଲୁ ରେ । ପରାଣ ପ୍ରତିଅଶା ସତେ ଗ୍ଳଡ଼ଣ ଯୋଷା ମୋତେ ବୁଡ଼ାଇଥିଲୁ ରେ । ୮ ।

ଗରଳ ହୋଏ ହୃତ ବେଗ ବଶେ ଯେମନ୍ତ ତୋ ରଷା ସେହି ଭାବ ରେ । ବରଷାକାଳେ ଘନଗର୍ଜ୍ଜନକୁ ବଞ୍ଚନ ମୋହହିଁ ହୋଇଥିବ ରେ । ପ୍ରାଣବନ୍ଧୁ । ନୟନେ ଅଶ୍ରୁ ପୁରି ରେ । ଶରଦ ଶଶଧର ନୋହୁଥିବ ତୋହର ଦରଶନ ଶର୍ବରୀ ରେ । ୯ ।

ବିରହଅଗ୍ନି ଜାତ ହୁହୁଁ ହୋଇ ସନ୍ତତ ଜାଣି ନ ଥିବୁ ଶୀତ ରେ । ଶୁଣି ବେଦନ ସ୍ୱନ ପିକ ହେବା ମଦନ ବଞ୍ଚାଇଲା ବସନ୍ତରେ । ପ୍ରାଣବନ୍ଧୁ । ନ ବଞ୍ଚାଇଲେ ତୋତେ ରେ । ସିଞ୍ଚିଲେ ମଧୁହାସ ମୋର ଘେନ ଗୁହାରି କଞ୍ଚିତେ କୃପା ଚଢ଼େ ରେ । ୧୦ ।

ନ ଅସୁଥିବ ନିଦ ନିଶିରେ ଲଭି ଖେଦ ଚିତ୍ତେ ପଡ଼ି ମୋ ସ୍ନେହ ରେ । କି ବୋଲୁଥାଅ ମୋତେ ମନେ ମନେ ତୁ ସତେ ଅନ ଅଛୁଟି କହରେ । ପ୍ରାଣବନ୍ଧୁ । ଯାହା ବୋଲନ୍ତି ଜନ ରେ । ପ୍ରିୟାନ୍ତ ମୁଁ ବୋୟୂର ବାଲ୍ଲକାଳ୍ରୁଁ ତୋହର ମୁହିଁଟି ଏକା ଘେନ ରେ । ୧୧ ।

---

୬ । ଶୀତମୟୂଖ—ଚନ୍ଦ୍ର, ଚରଣ—ଗୋଡ଼ପାଦ, ପରଗୃର—ଗୃକର ।

୭ । ସୁମନ—ଫୁଲ, ଅଂଶୁ—ଭ୍ରଗରୁ, ଅବିବେକ—ନିର୍ବୁଦ୍ଧିଆ ।

୮ । ଭୋଜନ—ଖାଇବା, ବର୍ତ୍ତିଲୁ—ବଞ୍ଚିଲୁ, ଯୋଷା—ସ୍ତ୍ରୀ ।

୯ । ଗରଳ—ବିଷ, ଘନ—ମେଘ, ଶଶଧର—ଚନ୍ଦ୍ର ।

୧୦ । ବେଦନ ଶବ୍ଦ—କାନ୍ଦବା ଶବ୍ଦ, ମଧୁହାସ—ଶ୍ରୀକୃଷ୍ଣ ।

୧୧ । ଅନ—ଗୁଣ, ବୋୟର—ଗୃକର ।

ବୋଲିବାକୁ ନିଷ୍ଠୁର ଷୋଭ ନାହିଁ ମୋହର ମନକୁ କର ସାକ୍ଷୀ ରେ । ତୋତେ ଧୂଅଇଁ ଯେତେ ଅକୁଳ ହୋଇ ଶତେ ଜାଣୁ ତ ଥିବୁ ଦେଖି ରେ । ପ୍ରାଣବନ୍ଧୁ । ଦୁଃଖକାଳେ ତୋହର ରେ । ସେବାକୁ ଅସି ନାହିଁ ଏଣୁ ଅପ୍ରାଧୀ ମୁହିଁ ବଗୁର ଦଣ୍ଡ କର ରେ । ୧୨ ।

ଥାଉଁ ମୋର ଅସୁଖ ଦେହ ବଳନ୍ତା ବଡ଼ ଭଲ ହେବାକୁ ସହ ରେ । ତେବେ ଦୂରେ ରହୁଣ ମନ ନୟନ ପ୍ରାଣ ତୋହର ପାଶେ ଥାଇ ରେ । ପ୍ରାଣବନ୍ଧୁ । ଏବେ ସେ ଅନୁଭବ ରେ । ବିପତ୍ତି ବିଚ୍ଛେଦରୁ ବନ୍ଧ ହୋଇ ରତ୍ନୋକୁ ଧାତା ବାହୁ ନ ଥିବ ରେ । ୧୩ ।

ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ ମନର ପ୍ରଭୁ ପ୍ରୀତି ରେ । ପ୍ରୀତିର ପ୍ରଭୁ ନାସ୍ତି ତାଙ୍କୁ ପୁଣି ପାସୋର କେହୁ ଧରବ ଧୃତି ରେ । ପ୍ରାଣବନ୍ଧୁ । ପୁଣି ଅବଗ୍ଧି ମୁହିଁ ରେ । ମନକୁ ଅନୁରୂପେ ଯୁବତୀ ମିଳେ ତପେ ଏଣୁ ଦୁର୍ଲ୍ଲଭ କହୁ ରେ । ୧୪ ।

ଯେଉଁ ରୂପ ଅନାଇଁ ପଶୁ ପାଷାଣ ଦୁଇ ବଶ ତରଳ ହେବେ ରେ । ପୁରୁଷ ମଧ୍ୟେ ସାର ଲୋକ ବୋଲନ୍ତି ମାର ଶବ୍ଦ ମଣୁଛୁ ଏବେ ରେ । ପ୍ରାଣବନ୍ଧୁ । ତୋହ ସମ୍ମୁଖେ ରହୁ ରେ । ପ୍ରହାର କଲା ଶର ସେ ଏଡ଼ିକ ନିଷ୍ଠୁର ହାତ ଚଳିଲ କେହୁ ରେ । ୧୫ ।

ଦେହ ମନ ଭିତର କ୍ଷଣେ ରହୁ ମାତର ଏମନ୍ତ ପାଞ୍ଚେ ନିତି ରେ । ବେଗେ ଦେବାକୁ ବାତେ ସ୍ତୁତି କରଇ କେତେ ପାଶେ ଅସିବା ମତି ରେ । ପ୍ରାଣବନ୍ଧୁ । ତୋ ରୂପ ପଟେ ଲେଖି ରେ । ପ୍ରାତୁଁ ଉଠି ଅନାଇଁ ନାମ ତୋର ଉପଇଁ ଗତ ନ ଥାଇ ସଖି ରେ । ୧୬ ।

---

୧୨ । ଷୋଭ—ଦୁଃଖ, ଧୂଅଇ—ଜ୍ୱଳି ।

୧୪ । ଧୃତି—ଧୈର୍ଯ୍ୟ, ଅନୁରୂପେ—ସମାନରେ, ଦୁର୍ଲ୍ଲଭ—କଷ୍ଟ ।

୧୫ । ପାଷାଣ—ପଥର, ନିଷ୍ଠୁର—ନିର୍ଦ୍ଦୟ ।

ଲୋକେ ମନେ କରନ୍ତି ପୁରୁଷ ମଧ୍ୟରେ କନ୍ଦର୍ପ ସୁନ୍ଦର ଓ ଶ୍ରେଷ୍ଠ ବୋଲି । କିନ୍ତୁ ମୁଁ ମନେ କରୁଛି ସେ ତୋର ଅଙ୍ଗ ସୁନ୍ଦର ମୁହଁ ଦେଖି ପଥର ପାଣି ଓ ପଶୁ ମଧ୍ୟ ବଶ ହେବ। ସେ ଏ ମୁହଁ ଦେଖି ତୋତେ ଶର ମାରିଲା ତେଣୁ ସେ ବଡ଼ ହୀନ ଅଟେ ।

୧୬ । ବାତେ—ପବନକୁ, ପ୍ରାତୁଁ—ସକାଳୁ ।

ମୁଁ ହେବାର ଏମନ୍ତ କେଉଁ ଅଧିକ ମିତ ଥାଇ ତୋ ଅବଧାନେ ରେ । ଏ କଥା ବଡ଼ ପିନା ମୋତେ ଗୁଣି ବେଦନା ସହୁ ତୁ ଘନେ ଘନେ ରେ । ପ୍ରାଣବନ୍ଧୁ । ତୋତେ ତୁ ପଞ୍ଚାନ୍ତର ରେ । ମୋର ଅଶେଷ ତପ ପୁଣ୍ୟ ନାରୀ ସ୍ୱରୂପ ହୋଇଛୁ ଗ୍ରମାବର ରେ । ୧୭ ।

ଯେ ଜନ ନାରୀ ହତେ ରହେ ପୁଣି ଜୀବନେ ଦନମାନଙ୍କୁ ବଞ୍ଚେ ରେ । ଇନ୍ଦୁକରେ ଯେ ଥାଇ ସେ କୁଳଣ ନୁହଇ ସେହି କୁଳଶ ନଷ୍ଟେ ରେ । ପ୍ରାଣବନ୍ଧୁ । ନାରୀ ପୁରୁଷ ଦୁଇ ରେ । ଯେଣ୍ଣ ଏକ ଜୀବନ କେବଳ ତନୁ ଭିନ୍ନ ଯୋଗେ ଏକତ୍ୱ ହୋଇ ରେ । ୧୮ ।

ନବ ରସରେ ସାର ଅଦ୍ୟେ ଲେଖି ଶୃଙ୍ଗାର ରତ ପରମ ସୁଖ ରେ । ଯିବା ପାଇଁ ପାସୋର ବଲ୍ଲଭୀ ନାମ ସାର ଦେଇଛୁ ଶାସ୍ତ୍ରେ ଦେଖ ରେ । ପ୍ରାଣବନ୍ଧୁ । ସେ ନାକ ମୂର୍ଚ୍ଛିବାର ରେ । ଥିଲ କେଉଁ ଦୁର୍ଦ୍ଦଶା ରଥାଙ୍ଗ ପ୍ରାପ୍ତ ନିଶା ନେବାକୁ ତୋର ମୋର ରେ । ୧୯ ।

ଦରଶନରୁ ଦୂର ହେଲାଣି ପାଇବାର ପୋର ଅଶେଷ ବ୍ୟଥା ରେ । ଭିନ୍ନ ନୋହେ ଏ ଖେଦ ତୋର ମୋର ବିଚ୍ଛେଦ ହୋଇ ରହିଲ କଥା ରେ । ପ୍ରାଣବନ୍ଧୁ । କରବେ ପରି ହାସ୍ୟରେ । ରସିକେ ପ୍ରିୟାହୀନେ ଏ ରହିଲ ଜୀବନେ ଏଥି ଉପାୟ କସ ରେ । ୨୦ ।

ବଲ୍ଲଭ ମୃଦୁବାଣୀ ଶୁଣି ତରୁଣୀମଣି ଧୀରେ କହେ କ ସ୍ନେହା ସେ । ସେ ଦୁଃଖ ପୋଡ଼ ଯାଉ ଶଙ୍କ ହିଁ ତା ନ ପାଉ ଚିତ୍ତୁ ପାସୋର ତାହା ଯେ । ପ୍ରାଣବନ୍ଧୁ । ଚିତ୍ତକୁ ଭ୍ରାନ୍ତ ପରି ସେ । ଏମନ୍ତ ବୋଲି ହସି ବନ୍ଦେ ଗୃହିଲ ରସି ରମଣୀ-ବନୃହାରୀ ସେ । ୨୧ ।

---

୧୭ । ଅବଧାନ—ଜାଣିବା, ବେଦନା—କଷ୍ଟ ।

୧୮ । ନାରୀହତେ—ସ୍ତ୍ରୀ ମରିବାରୁ, ବିଚ୍ଛେଦ ହେବାରୁ ।

୧୯ । ନବରସ—ନଅଟି ରସ ମଧ୍ୟରେ ପ୍ରଥମରେ ଶୃଙ୍ଗାର କ ଅଧରସକୁ ଲେଖନ୍ତି ।

କନ୍ଦର୍ପ କାଳେ ଭୁଲିଯିବ ବୋଲି ତା ବଲ୍ଲଭୀ ଯେ ସ୍ତ୍ରୀକୁ ରତନାମ ଦେଇଛୁ, ରଥାଙ୍ଗ—ଚକୁଆ ଚକୋଇ ରାମଙ୍କ ଶାପରେ ଏକାଠି ରହନ୍ତି ନାହିଁ ।

୨୦ । ପ୍ରିୟାହୀନ—ସ୍ତ୍ରୀ ହୀନ ବା ସ୍ତ୍ରୀ ବିଚ୍ଛେଦ ।

୨୧ । ଚିତ୍ତୁ—ମନରୁ ।

ଦୁହେଁ ଦୁହଙ୍କୁ ବେଶ କରିବ ରେ ଲାଳସ ଏମନ୍ତେ ଦିନ ଶେଷ ଯେ । କାମବିଜୟୀକାଳ ହେଲାଟି ଯୁବାକୁଳ ଶୁଭିଲା ଦର ଘୋଷ ଯେ । ଶଠଭୃଙ୍ଗ । ଉଠିଲେ ପଦ୍ମ ତେଜି ଯେ । ଛାଡ଼ି ଏକ ସୁହାଗ ଥରବେ ଅନୁରାଗ ପ୍ରାୟେ କୁମୁଦ ଭଜି ଯେ ।୨୨।

ଅଭିସାରିକା ଦୀପ ଫଣୀ ମଣି କଳାପ ତେଜିଲେ ଶ୍ୱାସ ଯେ । ଧରି ପଞ୍ଝାଲ ଗୌର ପ୍ରାୟେ ଗଣିକାବର ମନେ ଜନ୍ମିବ ତ୍ରାସ ଯେ । ଦ୍ୱିଜମାନେ । ସନ୍ଧ୍ୟା ବନ୍ଦନ ସାଧି ଯେ । ସାରଣୀ କଲେ ଧନ ଧନୀଅଳି ରଜନ ପରିସି ବାରବଧୂ ଯେ । ୨୩ ।

ନବରସେ ରସିକ ରମାମଣି ମାଣିକ୍ୟ ଭୋଜନେ ହେଲେ ତୋଷ ଯେ । ତହିଁ ଉତ୍ତରେ ହାସଗର୍ଭ ବଚନ ରସବଶରେ ପରକାଶ ଯେ । କାନ୍ତାକାନ୍ତ । ସଉଧେ ପରବେଶ ଯେ । ଦିବ୍ୟ ପର୍ଯ୍ୟଙ୍କ ଅଙ୍କେ ପ୍ରମୋଦରେ ନିଃଶଙ୍କେ ପ୍ରକାଶ କଲେ ରସ ଯେ ।୨୪।

ଷାଠିଏ ଗୃହ ବନ୍ଧ ବିଗୃହ ହେଲେ ବୋଧ ଛଇଲା ରମା ପୁଂସ ଯେ । ନିଦ୍ରାନାଶେ ସ୍ୱପନ ବିପତ୍ତି ଯଥା ଭିନ୍ନ ତଥା ବିସ୍ମର କ୍ଲେଶ ଯେ । ନିଶାପ୍ରାନ୍ତ । ପୂର୍ବେ ସବିତା ସ୍ଥିତ ଯେ । ଦିନ ଧରଇ ପାଠଛନ୍ଦ ହୋଇଲା ରାଠ ଏ କଥା ଅଦ୍ଭୁତ ଯେ ।୨୫।

---

୨୨ । କାମବିଜୟୀ କାଳ—କାମ ଅସିବା ସମୟ ଅର୍ଥାତ୍ ରାତ୍ର, ଦର—ଶଙ୍ଖ, ଶଠ—ଠକ, ଅନୁରାଗ—ସ୍ନେହ ।

୨୩ । ଫଣୀ—ସାପ, ମଣିକଳାପ—ମଣିସବୁ, ଗଣିକାବର—କଟପୀ ସ୍ତ୍ରୀ ତ୍ରାସ—ଭୟ, ସାରଣ—ଅସୂଲ, ଧନୀଅଳି—ଧନୀ, ବାରବଧୂ—ବେଶ୍ୟା । ସାପ ତାର ମଣି ତେଜକୁ ଦେଖି କଏ ବା ଲୋକ ଅସିବ ମନେ କଲା ପରି କାଟପୀ ସ୍ତ୍ରୀ ଗୋପନରେ ଯେଉଁ ପୁରୁଷ ପାଖକୁ ଯାଇ କନ୍‌କନ୍ ହୁଏ, ପ୍ରତାପୀ ରାଜାକୁ ବିନା ଅପତ୍ତିରେ କର ଦେଲା ପରି ରାଠ ପୁରୁଷ ବେଶ୍ୟାକୁ ଧନ ଦିଅନ୍ତି ।

୨୪ । ସଉଧେ—କୋଠା ଘରେ, ପର୍ଯ୍ୟଙ୍କ—ପଲଙ୍କ, ପ୍ରମୋଦରେ—ଆନନ୍ଦରେ, ନିଃଶଙ୍କେ—ନିର୍ଭୟେ ।

୨୫ । ସବିତା—ସୂର୍ଯ୍ୟ, ରାଠ—ରାଜା, ନିଶାପ୍ରାନ୍ତ—ଶେଷରାତ୍ର । ସ୍ୱପ୍ନରେ ଦେଖିବା ଜିନିଷ ନିଦପରେ ଭୁଲିଯାନ୍ତି, ସେହିପରି ଆନନ୍ଦରେ ମତ୍ତ ହେଲେ ଦୁଃଖ ମନେ ପଡ଼େ ନାହିଁ ।

ଏଣୁ କି ପାଇ ଲଜ୍ଜା ଚରମାଚଳେ ରାଜା ଲୁଚିଲେ ଅତିବେଗେ ସେ ।
ତାଙ୍କ ତା ଦାର ଯେଣୁ ମଳିନ ବେଶ ତେଣୁ କୌଶିକ ମନ୍ତ୍ରୀଭାବେ ସେ ।
ସେହି କାଳେ । ଧନ ଜଗର୍ କାକ ଯେ । ଗଲ୍ପ ରେ ଧର ମାର କହିଲେ
ନିରନ୍ତର ଜଟେ ଯା ଦେଲେ ଡାକ ସେ ।୨୬।

ଏକାଳେ ତେଜି ଶଯ୍ୟା ଦାଠି ଲଗିକି ରାଜା ଅସେ ମନ୍ତ୍ରୀଜ ମିଳ ଯେ ।
ଅହୁଁୟ ପ୍ରାନ୍ତ ପର୍ଯ୍ୟନ୍ତେ ସର୍ବ କହୁଁ ପୁରତେ ତୋଷ ସିନ୍ଧୁ ଉଚ୍ଛୁଳ ଯେ ।
ନୃପତିର । ନଗର ଜନେ ସୁଖୀ ଯେ । ମୃଦୁସୁଲରେ ଶୁଣି ଅନନ୍ଦ ହେଲେ
ରାଣୀ ସୁଫଳ କଲେ ଅର୍ଘ ଯେ ।୨୭।

କୁମର କୀର୍ତ୍ତି ସ୍ୱଚ୍ଛ ହୋଇ ପ୍ରକଟ ମସ୍ତ୍ୟ ମଘଅଦ ଦେଶରେ ଯେ ।
ମିଶ ନୃପତି ଯେତେ ହରଷ ହେଲେ ଶତ୍ରେ ଭସ୍ମ ଲଭିଲେ ପରେ ଯେ ।
ସାଧୁଜନେ । ଶୁଣେ ଏ ଛନ୍ଦ ଶେଷ ଯେ । ଶରଣ ରାମଚନ୍ଦ୍ର କହଇ ଉପଇନ୍ଦ୍ର
ବୀରବର ଏ ରସ ହେ ।୨୮।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

(ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ରାଜ ଅଭିଷେକ ଓ ରାଜ୍ୟ ଶାସନ ପ୍ରଣାଳୀ)

ରାଗ—ମଙ୍ଗଳ

ମନୋହର ଭଅଇ ଜନଙ୍କ ରାସ୍ୟେ—ବାଣୀରେ

ଶୁଣ ହେ ଚରିତ ଅବଶେଷରେ । କର୍ଣ୍ଣାଟ ମହୀପତି ତୋଷରେ ।୧।

---

୨୬ । ଚରମାଚଳ—ଅସ୍ତଗିରି, ଦାର—ସ୍ତ୍ରୀ, କୌଶିକ—ପେଚୁ ।
୨୭ । ଦାଠିଲଗି—ଦାନ୍ତଘଷା, ପୁରତେ—ଅଗରେ ।
୨୮ । କୀର୍ତ୍ତି—ଯଶ, ପ୍ରକଟ—ବିଖ୍ୟାତ, ପରେ—ଶତ୍ରୁମାନେ ।

ଚନ୍ଦ୍ରଭାନୁ ବିଦେଶରେ ଯେସବୁ କଷ୍ଟ ସହି ଦୁଷ୍ଟମାନଙ୍କ ସଂହାର କରି ନିଜ ଦେଶକୁ ଫେରିବା ପର୍ଯ୍ୟନ୍ତ ସମସ୍ତ ଦୁଃଖକଷ୍ଟ ଲାବଣ୍ୟବତୀ ଅଗରେ କହନ୍ତେ, ଲାବଣ୍ୟବତୀ ଶୁଣି ବଡ଼ ଅନୁତପ୍ତ ହେଲ ଓ ପରସ୍ପର ଅନନ୍ଦରେ ପ୍ରେମାଳାପରେ ମାତି ସମୟ କଟାଇଲେ, ରାଣୀ ଏହା ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ମିଶ ରାଜାଙ୍କର ଅନନ୍ଦ ବଢ଼ିଲା, ଶତ୍ରୁରାଜାଏ ଭୟ ବିହ୍ୱଳ ହେଲେ ।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

୧ । ମହୀପତି—ରାଜା ।

ଦାରୁବ ପିଶିତ ଦାନ ପ୍ରେତକୁ । ଦେବାର ଅଣି ଚକ ଚତ୍ତକୁ ।୨।
ଏକାଳେ ଯଶରେ ମଣ୍ଡିଲ୍ଲ ଧରା । ଶ୍ରୀରାମ ପାର୍ଶ୍ୱେ ମାରୁତ ପରା ।୩।
ଏଣୁ ଅନନ୍ଦ ହୋଇ ଦଣ୍ଡଧର । ସଚିବ ସଙ୍ଗେ ଭର ବିଗ୍ରର ।୪।
ନୃପତ ପଦବୀ ଦେଇଣ ପ୍ରୀତେ । ଚଳିଲେ ପୁରୁଷୋତ୍ତମ ଯେତେ ।୫।
ଯାହା ସମାନରେ ଅସମ ରତ । ହେଲାରୁ ଅଳପକୁ କହନ୍ତ ।୬।
ପଞ୍ଚମହୃଷୀ ସେ ଲାବଣ୍ୟବତୀ । ହୋଇଲା ଗୁଣନିଧାନ ମନ୍ତ୍ରୀ ।୭।
ବସନ୍ତକ ହେଲା ଜ୍ୟୋତିଷରାଜ । ପୁରୋଧା ଉତ୍ତୁଧ୍ୱଜ ଅଗ୍ରୀଜ ।୮।
ସେ ନରେଶ୍ୱର ପାଳିବାରେ ଦେଶ । ନୋହିଲା ଅଳ୍ପ ମିଥ୍ୟାବକାଶ ।୯।
ଦିବସ ନାମରେ ଦିନ ରହିଲା । ଦୀନକୁ ଦଣ୍ଡ ଅଶ୍ରୁ କଲା ।୧୦।
ଭସ୍ମ ଚିତାରେ ମାତ୍ର ଶୋଭା ବହି । ଯାଜ୍ଞିକ ଦ୍ୱିଜ ଲଲାଟେ ତହିଁ ।୧୧।
ଅଶେ କଲା ମନ୍ଦ ମଳୟାନିଳେ । କଳଙ୍କ ଯାଇ ଚନ୍ଦ୍ରମଣ୍ଡଳେ ।୧୨।
କୁଟିଳ ନଦୀ ବୀଚରେ ଲଭିଲେ । ଷଟ୍‌ପଦୀ ବୃକ୍ଷ ହୋଇ ବର୍ତ୍ତିଲେ ।୧୩।
କଳୀ ସ୍ଥାନ କଲା ପୃଷ୍ପବଲ୍ଲୀକ । ମଧୁପ ପଦ ଶୋଭା ଅଳକ ।୧୪।

---

୨ । ପିଶିତ—ମାଂସ, ଚକ—ଅଶ୍ବର୍ଯ୍ୟ ।
୩ । ଧରା—ପୃଥିବୀ, ମାରୁତ—ହନୁମାନ ।
୪ । ଦଣ୍ଡଧର—ରାଜା, ସଚିବ—ମନ୍ତ୍ରୀ ।
୫ । ନୃପତ ପଦବୀ—ରାଜଗାଦୀ, ରାଜ ଉପାଧି ।
୬ । ରତ—ଓଣା, ଅସମ—ନ୍ୟୂନ ।
୭ । ପଞ୍ଚମହୃଷୀ—ପାଟରାଣୀ ।
୮ । ପୁରୋଧା—ପୁରୋହିତ ।
୯ । ନରେଶ୍ୱର—ରାଜା, ମିଥ୍ୟାବକାଶ—ମିଛ କହିବା ।
୧୦ । ଦୀନ—ଦୁଃଖୀ, ଦଣ୍ଡ—ସଜା ।
୧୧ । ଭସ୍ମ—ନଷ୍ଟ, ଯଜ୍ଞ କରିବା ବ୍ରାହ୍ମଣଙ୍କ ମୁଣ୍ଡରେ ଭସ୍ମ ରହିଲା, ଅନ୍ୟ କେହି ନଷ୍ଟ ହେଲେ ନାହିଁ ।
୧୨ । ମଳୟାନିଳ—ବସନ୍ତ ପବନ ବା ସୁଗନ୍ଧ ପବନ, ମନ୍ଦ—ଧୀର, ସେଠାରେ ମନ୍ଦ କିଛି ରହିଲା ନାହିଁ କେବଳ ବସନ୍ତ ପବନରେ ଧୀର ଗୁଣ ରହିଲା ।
୧୩ । କୁଟିଳ—ଦୁଷ୍ଟଲୋକ, ବୀଚ—ଲହରୀ, ଷଟ୍‌ପଦୀ—ଅସତୀ, ଗଛ, ବୃକ୍ଷ—ଗଛ ।
୧୪ । କଳୀ—ଫୁଲକଢ଼ି, କଳ—କଳ୍ପନା କରିବା, ଅନୁମାନ କର ।

ଶରଣ କଲା ବୈଦ୍ୟକୁ ମାରଣ । ଇନ୍ଧନେ ଦେଖାଦେଲା ଦାରଣ ।୧୫।
ରହିଲା କୂଳ ଲଙ୍ଘନ ସରିତେ । ଶ୍ରୁତିରେ ଘୁଙ୍ଗୁର ଶବଦ ସତେ ।୧୬।
ବିଷ ଭକ୍ଷଣେ ହଂସେ ରହେ ଏକା । ସ୍ତନରେ କରପୀଡ଼ା ଅଶଙ୍କା ।୧୭।
ବନ୍ଧନ ରହିଲା ବାହୁରେ ମାତ୍ର । ମୃଗସ୍ତ୍ରୀ ଯହିଁ ହୋଇଲା ଛନ୍ଦ ।୧୮।
ରଣନିପୁଣେ ରହିଲେ ପ୍ରମୋଦେ । ନାଗର କଟି କଙ୍କିଣୀ ନାଦେ ।୧୯।
କେବଳ ମଦନ ବଇର ପଦେ । ପାଞ୍ଚର ତାଙ୍କୁ ଜଣିବା ବାଦେ ।୨୦।
ନ୍ୟାସ୍ତ୍ରବଳ ରାଜା ଅଗ ପଦାତି । ଦୁର୍ବଳ ଶଙ୍କା ତହିଁରେ ସ୍ଥିତି ।୨୧।
ଜୀତହୋଇ ଲୋଭ ପ୍ରେମଧନରେ । ଇଚ୍ଛୁକ ହେତୁ ତନୁ ଦାନରେ ।୨୨।
ନୀବି ମୋକ୍ଷକାଳେ ଜପ୍ରୂଜେ ନାହିଁ । ମାଗିବା ଦ୍ରବ୍ୟ ଚୁମ୍ବନ ଯହିଁ ।୨୩।
ଲାଳସ ହୋଇଣ ପରସ୍ତ୍ରୀସ୍ୱରେ । ଗୃହିଁବା ରହେ ଛନ୍ଦ ନାସ୍ୱରେ ।୨୪।
ନ ଛୁଟିଲା ମାଢ଼ ପଣ ସାରକୁ । ବିମୁଖ କର୍ଣ୍ଣେ ଜପବାରକୁ ।୨୫।
ଶୁକ ଶକୁନ୍ତ ଚରଣରେ ଦେଖି । ଶିକୁଳି ପର ଶାଙ୍କୁଳୀ ଯୋଖି ।୨୬।
କାରା ହୋଇ ଯହିଁ ପଞ୍ଜରା ଅଛି । ଉଡୁକ ଏକା ଗୃହ ଧରଛି ।୨୭।

---

୧୫ । ମାରଣ—ଲୋକଙ୍କୁ ମାରିବା, ଔଷଧକୁ ଜାରଣ କରିବା, ଦାରଣ—କାଟିବା, ନ ମାରିବା, ଇନ୍ଧନ—ଜାଳକାଠ ।

୧୬ । ଲଙ୍ଘନ—ନଈକୂଳକୁ ଡେଇଁବା, କୁଳ ଲଙ୍ଘନ—ବଂଶ ବୁଡ଼େଇବା, ସରିତ—ନଈ, ଶ୍ରୁତିରେ—କାନରେ ।

୧୭ । ବିଷ ଭକ୍ଷଣ—ବିଷ ଖାଇବା, ପଦ୍ମନାଡ଼ ଖାଇବା, କରପୀଡ଼ା—ଚପୁଡ଼ା ମାରିବା, ଘଷିବା, ଖଜଣାରେ କଷ୍ଟ ।

୧୯ । ରଣନିପୁଣେ—ଯୁଦ୍ଧ କରିବା ଲୋକ, କଙ୍କିଣୀ—କଟିର ଗହଣା, ପ୍ରମୋଦେ—ଆନନ୍ଦରେ, ନାଦେ—ଶବ୍ଦରେ ।

୨୦ । ବଇର—ଶତ୍ରୁ, ବାଦେ—ବିପକ୍ଷଭାବେ, କଳହରେ ।

୨୧ । ପଦାତି—ପାଇକ ସୈନ୍ୟ, ରାଜାକୁ ପାଇକ ଭୟ କରେ; ମାତ୍ର ଏଠାରେ ଭୟ ନାହିଁ ।

୨୩ । ନୀବିମୋକ୍ଷ—ଘୋସଣି ଖୋଲିବା ।

୨୪ । ଲାଳସ—ଇଚ୍ଛା, ଛନ୍ଦରେ—ଛଳରେ ।

୨୫ । କର୍ଣ୍ଣେଜପ—ଖଚୁଆ ବା କାନକୁହା ।

୨୬ । ଶକୁନ୍ତ—ଶାଗୁଣା, ଶାଙ୍କୁଳ—ବେଡ଼ୀ ।

୨୭ । କାରା—ବନ୍ଦଘର, ପିଞ୍ଜରା, ଉଡୁ—ଚାନ୍ଦ, ଭୀତ—ଭୟ ।

ବନ୍ଦୀ ଯହିଁ କୀର୍ତ୍ତି ବନ୍ଦନ ଜନ । ତାହିଁକି ଜଣାଯିବ ଏମାନ ।୨୮।
ଭରମ ହୋଇଛନ୍ତି ଶୁଦ୍ଧ ସୁବର୍ଣ୍ଣ । ଭୂତହିଁ ପଞ୍ଚ ପ୍ରକାରେ ଯେନ ।୨୯।
କୁଣ୍ଡ ଦେଖା ଦୁର୍ଗୋତ୍ସବେ ସହଜେ । ଗୁଡ଼ରୁ ଖଣ୍ଡ ମାନ୍ଦ ଉପୁଜେ ।୩୦।
ପରାପର ଭାବ ଏକ ପ୍ରକାର । କରନ୍ତି ଯେଉଁ ନର ଈଶ୍ୱର ।୩୧।
ଚନ୍ଦ୍ର ସୂର୍ଯ୍ୟ ବାସ ଶିରେ ସଜ୍ଜିତ । ସର୍ବଦା କଞ୍ଚୁକରେ ବେଷ୍ଟିତ ।୩୨।
ସଘନ ପୃଥୁ କାର୍ତ୍ତସ୍ୱର ପାତ୍ର । ରଜନୀକରେ ଭୂଷିତ ଗାତ୍ର ।୩୩।
ମହିଷୀ ସଙ୍ଗେ ନଗରେ ଚଳସି । କେବଳ ଜନ ମନକୁ ତୋଷି ।୩୪।
ମର୍ତ୍ତ୍ୟେ ତ ଏହାର ଅସାଧ୍ୟ ନାହିଁ । ସ୍ୱର୍ଗେ ବା କଟକାଇ କରାଇ ।୩୫।
ନିତ ଦେବାର୍ଚ୍ଚନ ସରବାଯାଏ । କରଇ ମେରୁ ଦାନକୁ ଭୟେ ।୩୬।
ବ୍ରହ୍ମା ବୋଧ ଯହୁଁ ଦେବ ଶାସନ । ସେ କାହିଁ ଭାଙ୍ଗିଦେବ ଭବନ ।୩୭।
ହୟ ଅରୋହିଲେ ଯେଉଁ ନୃପତି । ଲଭଇ ହରିହୟ ଏ ଭ୍ରାନ୍ତି ।୩୮।
ବଳୀ ଯେବେ ତୁମ୍ଭେ ବଳାକ ମାର । କହିବା ଜୀବ କାହେ ବାଗୁର ।୩୯।

---

୨୮ । ବନ୍ଦୀ—ଭାଟ, ଅଟକ ହୋଇଥିବା ଲୋକ ।
୨୯ । ଭରମ—ସୁନା, ଭୁଲିଯିବା, ଭୂତ—ପଞ୍ଚଭୂତ ଅର୍ଥାତ୍ ପୃଥ୍ୱୀ, ଜଳ, ଅଗ୍ନି, ପବନ ଓ ଆକାଶ ।
୩୦ । କୁଣ୍ଡ—ଅଣବାଲୁଅ, ମାଟିକୁଣ୍ଡ ।
୩୧ । ନରେଶ୍ୱର—ରାଜା, ନର—ଲୋକ, ଈଶ୍ୱର—ମହାଦେବ ।
୩୨ । ବାସ—ବସ୍ତ୍ର, ଶିରେ—ମୁଣ୍ଡରେ, ସଜ୍ଜିତ—ଶୋଭିତ, କଞ୍ଚୁକ—ସାପ, ନଗର ରକ୍ଷକ, ବେଷ୍ଟିତ—ଆବୃତ, ସଘନ—ବଳିଷ୍ଠ, ପୃଥୁ—ମୋଟା ।
୩୩ । କାର୍ତ୍ତସ୍ୱର—ସୁନାର ରୂପ, ରଜନୀକର—କର୍ପୂର ।
୩୪ । ମହିଷୀ—ପାଟରାଣୀ, ଜନମନ—ଲୋକମାନଙ୍କ ମନ ।
୩୫ । ମର୍ତ୍ତ୍ୟେ—ପୃଥିବୀରେ, କଟକାଇ—ଅଭିଯାନ ।
୩୬ । ଦେବାର୍ଚ୍ଚନ—ଦେବପୂଜା, ମେରୁଦାନ—ମେରୁ ଯେ ସୁନାପର୍ବତ ଏଠାରେ ସୁନା ଦାନ ।
୩୭ । ଦେବଶାସନ—ଦେବତାମାନଙ୍କୁ ରକ୍ଷା କରିବା, ଭବନ—ଗୃହ, ଏଠାରେ ଦେବତା ଗୃହ ଅର୍ଥାତ୍ ମେରୁ ।
୩୮ । ହୟ—ଘୋଡ଼ା, ଆରୋହିଲେ—ଚଢ଼ିଲେ, ନୃପତି—ରାଜା, ହରିହୟ—ଗରୁଡ଼ ।
୩୯ । ବଳୀ—ଯୋଦ୍ଧା ଓ ବଳୁଆ ।

ଅଶ୍ୱଖୁର ରେଣୁ ଉଡ଼ିବା ଗୁହିଁ । ପୋତିବ ମୋତେ ସାଗର ଯାହିଁ ।୪୦।
ଧାତା ତୁଡ଼ ଯହୁଁ ରତନାକର । ବୋଇଲା ଥାଉ ଏହା ଭଣ୍ଡାର ।୪୧।
ସାର୍ବଭୌମପଦ କାର ବହିଲ । ଉତ୍ତର ଦନ୍ତୀ ଭୟୁ ପାଇଲ ।୪୨।
ମୁଁ ନୁହଇ ବୋଲି ଘୁଞ୍ଚିଲ ରଢ଼ି । ବରଷାକାଳେ ସେ ଘଡ଼ଘଡ଼ି ।୪୩।
ହୋଇଲେ ସେ ରାଜା ଏମନ୍ତ ତ୍ୟାଗୀ । ଜାଣିଲେ ନାହିଁ ଯାଚକେ ମାଗି ।୪୪।
କେ ଥିବ କଳ୍ପତରୁ ସନ୍ନିଧାନ । କାମନା ହେଲା ଉତ୍ତାରୁ ପୂର୍ଣ୍ଣ ।୪୫।
ତଇ ନୋହୁଥିଲେ ପଲ୍ଲବମାନ । କରନ୍ତେ ଅବା ମୃଗ ଅଶନ ।୪୬।
ମିଳନ୍ତେ ଫଳ ଥିଲେ ପକ୍ଷୀଗଣ । ବୃଅର୍ଥ ହେଲା ତା ଦାତାପଣ ।୪୭।
ପ୍ରତାପ ନାସିଲା ବଡ଼ବାନଳେ । ପଶିଲା ଯାଇଁ ସମୁଦ୍ର ଜଳେ ।୪୮।
କେ ଦେଖିବ ତାକୁ ଯେ ଲୁଚିଅଛି । ହୃଦୟ ସନ୍ତାପ ତା ଜଳୁଅଛି ।୪୯।
ଯଶକୁ ହାରଣ କୁମୁଦ ବନ୍ଧୁ । ହୋଇଲେ ପରସ୍ପରରେ ବନ୍ଧୁ ।୫୦।
ଅଳି କଳଙ୍କ ବାଳଙ୍କ ଧଇଲେ । ଗଙ୍ଗା ହିଁ ଅଙ୍କେ ପଙ୍କକୁ ବହିଲେ ।୫୧।
ହର ବର୍ଜିଲେ ଗଙ୍ଗା ଚନ୍ଦ୍ରକୁ । ପ୍ରଭବ କୀର୍ତ୍ତି କଲେବରକୁ ।୫୨।

---

୪୦ । ଅଶ୍ୱଖୁର—ଘୋଡ଼ା ଗୋଡ଼ ଖୁରା ।

୪୧ । ସାଗର—ସମୁଦ୍ର, ତୁଡ଼ା—ଭୁଲ, ଧାତା ଭୁଲରେ ସମୁଦ୍ରରେ ରତ୍ନ-ଭଣ୍ଡାର ରଖିଛି ।

୪୨ । ସାର୍ବଭୌମ—ସର୍ବଶ୍ରେଷ୍ଠ, ଏକାଙ୍ଗଚକ୍ରବର୍ତ୍ତୀ, ଉତ୍ତରଦନ୍ତୀ—ଉତ୍ତର ଦିଗହସ୍ତୀ ।

୪୩ । ରଢ଼ି—ଶବ୍ଦ ।

୪୪ । ଯାଚକେ—ଭିକାରି ।

୪୫ । କଳ୍ପତରୁ—କାମନା ପୂର୍ଣ୍ଣ କରିବା ଗଛ, ସନ୍ନିଧାନ—ପାଖ ।

୪୬ । ପଲ୍ଲବମାନ—ପତ୍ରସବୁ, ଅଶନ—ଭକ୍ଷଣ, ଖାଇବା ।

୪୭ । ବୃଅର୍ଥ—ଅକାରଣ, ଦାତାପଣ—ଦାନପଣିଆ ।

୪୮ । ପ୍ରତାପ—କ୍ଷମତା, ନାସିଲା—ଭୟଭୀତ, ବଡ଼ବାନଳେ—ସମୁଦ୍ର ମଧ୍ୟସ୍ଥ ଅଗ୍ନିରେ ।

୫୦ । ଯଶ-ସମ୍ମାନ, କୁମୁଦ ବନ୍ଧୁ—କଇଁଫୁଲ ଓ ଚନ୍ଦ୍ର, ପରସ୍ପରରେ—ଆପଣା ଆପଣା ମଧ୍ୟରେ ।

୫୧ । ଅଳି—ଭ୍ରମର, ଅଙ୍କେ—ଦେହରେ, କଳଙ୍କ-ନିନ୍ଦା, ସୂଚକ—ଚିହ୍ନ ।

୫୨ । ହର—ମହାଦେବ, କୀର୍ତ୍ତି—ଯଶ ।

ଏ[illegible] ହାକୁ ଥିବ ତ ଭୁଇଁ | ଥିବେ ଏ କଚ୍ଛୁ ଶୀତଳ ପାଇ ।୫୩।
ପୁଣି ତା କାନ୍ତି ଶାନ୍ତ ରସଭାବ | ଗରଳ ତାପ ଶାନ୍ତ କରବ ।୫୪।
ଏମନ୍ତ ବୋଲିଣି ବହୁଲେ ଶୀର୍ଷେ | ଚନ୍ଦ୍ରମାଚୂଡ଼ ଗଙ୍ଗାଧର ସେ ।୫୫।
ବଣରେ ଭେଳ କଜ୍ଜଳକ ତାର | କଳଙ୍କୀ ହୋଇ ଉଜ୍ଜ୍ୱଳତର ।୫୬।
କିଂ ପୁରୁଷକୁ ଅନୁସ୍ୱାର ଦୁର | କରଣି ଦେଲେ ପ୍ରାନ୍ତେ ଏକାର ।୫୭।
ସ୍ୱାଧୀନଭର୍ତ୍ତୃକା ନାରୀ ପାଇଛୁ | ନାୟକ ଅନୁକୂଳ ହୋଇଛୁ ।୫୮।
ସବୁ ଏକଠାବ କରନ୍ତୁ ବନ୍ଧୁ | ମଞ୍ଜିଷ୍ଠା ରାଗ ଉଦୟ ତହିଁ ।୫୯।
ଯାହା ଗୁଣ ରତ୍ନାଳଙ୍କାର ହେଲ | ମଣ୍ଡନ ଲୋକମାନେ ସେ କଲ ।୬୦।
କହୁଥିଲେ ସେ ତ ନୋହିବ ଶେଷ | ସମ୍ପୂର୍ଣ୍ଣ ଛାନ୍ଦ ଅଠଚ୍ଳିଶ ।୬୧।
ନାନା ଅବଧାନ ବିଧାନ ପର | ନାଟକ କାବ୍ୟ ଅଙ୍ଗେ ମାଧୁରୀ ।୬୨।
ଦୃଷ୍ଟି ସୃଷ୍ଟିରେ ହୋଇଛୁ ବିଚର୍ଯ୍ୟ | ରସିକ ଚିତ୍ତ ମୋହନ ମନ୍ତ୍ର ।୬୩।
ଖଳ ଗର୍ବ-ତୃଣ ଦାବ ଦହନ | ପଥିକ ମୂର୍ଖ ଅଗମ୍ୟ ବନ ।୬୪।
ଧନୀ ବଣିକ ପସରା ସମାନ | ବିବିଧ ରସଦ୍ରବ୍ୟରେ ପୂର୍ଣ୍ଣ ।୬୫।

---

୫୩ । ଶୀତଳ—ଥଣ୍ଡା ।
୫୪ । ଗରଳ—ବିଷ ।
୫୫ । ଶୀର୍ଷେ—ମୁଣ୍ଡଉପରେ, ଗଙ୍ଗାଧର—ମହାଦେବ ।
୫୬ । ଶ୍ରବଣ—ଶୁଣିଲାଷଣି କାନ ।
୫୭ । କିଂପୁରୁଷ—କୁତ୍ସିତନର, କି ପୁରୁଷ ଏ—କେଉଁ ପୁରୁଷ ଏ—ଚନ୍ଦ୍ର ଭାନୁ ଏହା ଠାରୁ ଅସୁନ୍ଦର ହେଲେ ।
୫୮ । ସ୍ୱାଧୀନ ଭର୍ତ୍ତୃକା—ଯେଉଁ ସ୍ତ୍ରୀର ସ୍ୱାମୀ ତାର ଅନୁଗତ ଓ ସେ ସ୍ତ୍ରୀ କଥାରେ ଚଳେ । ଅନୁକୂଳ ନାୟକ—ଯେ ପୁରୁଷ ସ୍ତ୍ରୀଠାରେ ଅତ୍ୟନ୍ତ ଅସକ୍ତ ହୋଇ ଲୋଭକର ସର୍ବଦା ତାର ପାଶରେ ଥାଏ ।
୫୯ । ମଞ୍ଜିଷ୍ଠାରାଗ—ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଯେଉଁ ଅଭେଦ ପ୍ରୀତି ।
୬୦ । ରତ୍ନାଳଙ୍କାର—ସୁନା ।
୬୨ । ବିଧାନ—ନିୟମ, ମାଧୁରୀ—ମଧୁରତା ।
୬୩ । ଦୃଷ୍ଟି—ଦେଖିବା, ସୃଷ୍ଟି—ବ୍ରହ୍ମାଣ୍ଡ, ବିଚର୍ଯ୍ୟ—ଅଶ୍ଚର୍ଯ୍ୟ ।
୬୪ । ଖଳଗର୍ବ ତୃଣ—ଦୁଷ୍ଟମାନଙ୍କର ଗର୍ବରୂପ ଘାସ, ଦାବ—ବଣ, ଦହନ—ପୋଡ଼ିବା, ପଥିକ—ବାଟୋଇ ।

ଉପଇନ୍ଦ୍ର ଭଞ୍ଜ ମନକୁମୁଦ । ବିଚକ୍ଷକର୍ମୀ ଶ୍ରୀରାମଚନ୍ଦ୍ର ।୨୬।
ରଜନୀ ଦିବସେ ବିକାଶ କରି । ଅଧିକ ପଦ୍ମ ଏଣୁ ବିହରି ।୨୭।
ପ୍ରବନ୍ଧ ଦୁଇସହସ୍ର ଊନଣ । ଷାଠିଏ ଏକପଦରେ ଶେଷ ।୨୮।

* * * *

୨୬ । ମନକୁମୁଦ—ହୃଦପଦ୍ମ, ବିଚକ୍ଷକର୍ମୀ—ଅଷ୍ଟର୍ଣ ଚକ୍ଷକର ।

୨୭ । ବିକାଶ—ପ୍ରକାଶ ।

ଚନ୍ଦ୍ରଭାନୁ ସ୍ୱଦେଶକୁ ଫେରି ଆସନ୍ତେ ରାଜା ବିଶେଷ ଆନନ୍ଦ ହୋଇ ଲବଣ୍ୟବତୀ ସହିତ ଚନ୍ଦ୍ରଭାନୁଙ୍କୁ ରାଜଗାଦିରେ ବସାଇ ଅଭିଷେକ କରି ରାଜଦଣ୍ଡ ଦେଇ ନିଜେ ରାଣୀସହ ବାନପ୍ରସ୍ଥ ଅବଲମ୍ବନ କରି ବନକୁ ଗଲେ ।

ଚନ୍ଦ୍ରଭାନୁ ରାଜଗାଦିରେ ବସି ରାଜାହୋଇ ସମସ୍ତ ପ୍ରଜାମାନଙ୍କୁ ପୁତ୍ରପରି ପାଳନ କଲେ । ତାହାଙ୍କ ଶାସନରେ କିଛି ଉପଦ୍ରବ ଓ ଅଶାନ୍ତି ରହିଲା ନାହିଁ । ପ୍ରଜାମାନେ କି ଧନୀ, କି ଗରିବ ସମସ୍ତେ ସମାନ ନ୍ୟାୟ ବିଚାର ପାଇଲେ, କାହାରି କୌଣସି କଷ୍ଟ ରହିଲା ନାହିଁ । ସମସ୍ତ ପ୍ରଜା ଏ ଆମୋଦ ପ୍ରମୋଦରେ ଦିନଯାପନ କଲେ । ଶ୍ରୀରାମଚନ୍ଦ୍ରଙ୍କ ରାଜଦଣ୍ଡରେ ପ୍ରଜାମାନେ ଯେପରି ପରମ ସୁଖରେ ଥିଲେ—ଏହାଙ୍କ ରାଜତ୍ୱରେ ସେହିପରି ସୁଖୀ ହେଲେ । ରାଜରାଣୀ ଅତ୍ୟନ୍ତ ଆନନ୍ଦରେ ଦିନକଟାଇଲେ । ତାଙ୍କର ଯଶକୀର୍ତ୍ତି ଚାରିଆଡ଼େ ବ୍ୟାପିଗଲା—ସମସ୍ତେ ଧନ୍ୟ ଧନ୍ୟ କଲେ ।




ମୁଦ୍ରାକର—ଶ୍ରୀ ତ୍ରିଲୋଚନ ଗଡ଼ବଡ଼ୁ, ଶ୍ରୀରାଧାରମଣ ପ୍ରେସ,
କଟକ—୧୯୨୫

## ନୂଆ ବହି - ଛପା ସୁନ୍ଦର - ରଙ୍ଗୀନ ମଲାଟ
## ମୂଲ୍ୟ କମ - କମିସନ ଅଧିକ - ଅର୍ଡର ପ୍ରାର୍ଥନୀୟ

### - ଉପନ୍ୟାସ -

| | |
|---|---|
| ଲଭଲ୍ ଲେଡି | ୩·୦୦ |
| ବାସର ଶେଜ | ୩·୦୦ |
| ମାନସୀର ଶେଷ ଅଶ୍ରୁ | ୨·୦୦ |
| ଅଭିମାନ | ୧·୭୫ |
| ପ୍ରୀତିର ପୂଜାରିଣୀ | ୧·୭୫ |
| ନହୁଲଝିଅର ପହିଲି ଆଶା | ୨·୦୦ |
| ପାପୀ [illegible] | [illegible] |
| ଫୁଲଶର | ୨·୦୦ |
| ବନକେତକୀ | ୨·୦୦ |
| ପତି ପରମ ଗୁରୁ | ୧·୭୫ |
| ଚୁମ୍ବନ ପିଆସି ପ୍ରିୟା | ୧·୫୦ |

### - ଡିଟେକଟିଭ୍ -

| | |
|---|---|
| ରଙ୍ଗ କୋଠିର ରହସ୍ୟ | ୧·୫୦ |
| ଡକ୍ଟର ଏକ୍ସ | ୨·୦୦ |
| ଦସ୍ୟୁ ମାନସିଂହ | ୨·୦୦ |
| ସୁନ୍ଦରବନର ଦସ୍ୟୁ | ୧·୫୦ |
| ମୌନୀ ପାହାଡ଼ର ବିଭୀଷିକା | ୧·୫୦ |
| ହାଇଦ୍ରାବାଦର ଷଡ଼ଯନ୍ତ୍ର | ୧·୨୫ |
| ମୃତ୍ୟୁ ଦୂତ | ୧·୭୫ |
| ସୌନ୍ଦର୍ଯ୍ୟର ମୃତ୍ୟୁ | ୧·୮ |
| ଦାନବୀ ମିସ୍ ମାଲା | ୨·[illegible] |
| ପାଷାଣ ପୁରୀର ଯକ୍ଷ | ୧·୭୫ |

### - ନାଟକ -

| | |
|---|---|
| ଚଉଠି ଘଡି | ୨·୦୦ |
| ନୂଆ ଜୀବନ | ୧·୫୦ |
| ଦାନବୀର ହରିଶ୍ଚନ୍ଦ୍ର | ୨·୫୦ |
| ବୀର ଅଭିମନ୍ୟୁ | ୨·୫୦ |
| ଭୀଷ୍ମାର୍ଜୁନ | ୨·୫୦ |
| କର୍ଣ୍ଣାର୍ଜୁନ | ୨·୫୦ |

### - ଅନ୍ୟାନ୍ୟ -

| | |
|---|---|
| ବିବାହ ରହସ୍ୟ | ୨·୫୦ |
| ଷୋଡଶ କୁମାର | ୨·୦୦ |
| ଷୋଡଶ କୁମାରୀ | ୨·୫୦ |
| ଗୋପାଳକୃଷ୍ଣ ପଦ୍ୟାବଳୀ | ୬·୦୦ |
| ଭାଗବତ ସେ ୧ (ରାଜକିଶୋର) | ୨୧·୦୦ |
| ଲାବଣ୍ୟବତୀ | ୬·୦୦ |
| କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ | ୬·୫୦ |
| ପଣ୍ଡିତ ସର୍ବସ୍ୱ | ୧୨·୦୦ |
| ଶ୍ରୀଶ୍ରୀ ଚୈତନ୍ୟ ଚରିତାମୃତ | ୧୬·୦୦ |
| ନବଗ୍ରହ ଦଶାଫଳ | ୫·୫୦ |
| ମରୁତୀର୍ଥ ହିଂଳାଜ (ଭ୍ରମଣ) | ୭·୫୦ |

**ଓଡ଼ିଶା ଜଗନ୍ନାଥ କମ୍ପାନୀ ବାଲୁବଜାର - କଟକ-୨**